# ଜୀବନାୟନ

ଲୋକରତ୍ନ ଡକ୍ଟର କୁଞ୍ଜ ବିହାରୀ ଦାଶ ଏମ୍. ଏ, ପିଏଚ୍.ଡ଼


ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ · କଟକ-୨

"ଜୀବନାୟନ"

ଲେଖକ :
ଡକ୍ଟର କୁଞ୍ଜବିହାରୀ ଦାଶ

ପ୍ରକାଶକ :
ନାଲନ୍ଦା
ବିନୋଦବିହାରୀ, କଟକ ୭୫୩୦୦୨

ପ୍ରଥମ ନାଲନ୍ଦା ସଂସ୍କରଣ—୧୯୭୮

ମୁଦ୍ରଣ :
ଇନ୍ଦ୍ରାଣୀ ପ୍ରିଣ୍ଟିଂ ପ୍ରେସ୍,
ତଲ ତେଲେଙ୍ଗା ବଜାର, କଟକ

ମୂଲ୍ୟ-ପନ୍ଦରଟଙ୍କା
ବୋର୍ଡ ବନ୍ଧେଇ : ଷୋଳଟଙ୍କା ପଚାଶ ପଇସା

Jibanayan

Written by :
Dr. Kunjabehari Dash

Published by :
Nalanda
Binodbehari Cuttack 753002

Ist Edition—1978

Printed by :
Indrani Printing Press,
Tal-Telenga bazar, Cuttack

Price : Rupees fifteen only.
Binding Rupees sixteen and fifty paise only.

# ସୂଚୀପତ୍ର





# ମୁଖବନ୍ଧ

'ଉତ୍କଳ ସାହିତ୍ୟ ସମାଜର ମୁଖପତ୍ର; ସେତେବେଳେ ଶ୍ରୀରାମଚନ୍ଦ୍ର ଭବନରେ ପରଲୋକଗତ କବି ବା ଲେଖକଙ୍କ ପ୍ରତିକୃତିଉନ୍ମୋଚନ ଥିଲା ଏକ ସ୍ୱାଭାବିକ କର୍ତ୍ତବ୍ୟ । କିଛି ଲେଖିବାକୁ ହେଉଥିଲା ; ତାକୁ ବଢ଼ାଇଦେବାରୁ ହେଲା 'ଜୀବନୀ ଓ ଜୀବନ'— ତେଇଶିଟି ଜୀବନୀର ସମାହାର । ପ୍ରକୃତପକ୍ଷେ ପୂଜ୍ୟ କେତେକ ମହାନ୍ ସାହିତ୍ୟିକଙ୍କ ପ୍ରତି ପୂଜାର ବ୍ୟତିକ୍ରମ ରହିଗଲା । ରୁହି ଅସନ୍ତୋଷ । ସେତେବେଳେ ଆଉ କେତେକଙ୍କ ବିଷୟରେ ଲେଖିବା କଳ୍ପନା କରିଥିଲି । ପରିଦର୍ଶୀ ଅଧ୍ୟାପକ ଭାବେ ବିଶ୍ୱଭାରତୀରେ ରହଣି ସେଥିଲାଗି ସୁଯୋଗ ଯୋଗାଇ ଦେଲା । ତାର ଫଳ 'ଜୀବନାୟନ'—ଊଣେଇଶିଟି ଜୀବନୀର ସମାହାର ।

ଓଡ଼ିଶାରେ ବହୁତ ବଡ଼ ବଡ଼ ସେବକ, କର୍ମୀ, କବି, ଲେଖକ ଜନ୍ମିଛନ୍ତି । ସେମାନଙ୍କୁ ଆମେ ଆଲୋକକୁ ଆଣି ପାରିନାହୁଁ, ଯେତେ ବଡ଼ କରି ଦେଖାଇବା କଥା ଦେଖାଇ ପାରିନାହୁଁ । ଆପଣା ସୁନା ଅନାଦରରେ ହୋଇଛି ଭେଣ୍ଡି । ପରସ୍ତ ପରସ୍ତ ହୋଇ କାଳର ଧୂଳି ଜମି ଯାଉଛି; ଯାହାକୁ ଯେମିତି ଅର୍ଘ୍ୟ ଦେବାର କଥା ନ ଦେଲେ ଏ ପ୍ରଦେଶରେ ମହାନ୍ ପ୍ରତିଭାର ଜନ୍ମ ଲାଗି କ୍ଷେତ୍ର ପ୍ରସ୍ତୁତ ହେବ କିପରି ?

ଆଧୁନିକ ଓଡ଼ିଆସାହିତ୍ୟକୁ ବଡ଼ କରିବା ଲାଗି ଅତୀତର ସାଧକମାନେ କିପରି ପ୍ରାଣପାତ ସାଧନା କରି ଯାଇଛନ୍ତି, ଜୀବନାୟନରୁ ତାର କିଞ୍ଚିତ୍ ଆଭାସ ମିଳିପାରିବ । ପୂର୍ଣ୍ଣାଙ୍ଗ ଜୀବନୀ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବା ଲାଗି ଏହା ସାହାଯ୍ୟ କରିବ, ମୋର ବିଶ୍ୱାସ । ସୁଲେଖକ, ପ୍ରକାଶକ ଶ୍ରୀ ଶୁକଦେବ ସାହୁ ସ୍ୱତଃ ଏହି ପୁସ୍ତକର ପ୍ରକାଶଦାୟିତ୍ୱ ବହନ କରିଛନ୍ତି । ସେ ସାଧୁବାଦର ପାତ୍ର ।

ତା ୧ । ୧୨ । ୧୯୭୮ — କୁଞ୍ଜବିହାରୀ ଦାଶ
କଟକ



ବୈଦ୍ୟନାଥ କର



ଉତ୍କଳପୁତ୍ର ପ୍ୟାରୀମୋହନ ଆଚାର୍ଯ୍ୟ



ଚନ୍ଦ୍ରମୋହନ ମହାରଣା



ଗୌରୀଶଙ୍କର ରାୟ



ଚାରଣୀ ଚରଣ ରଥ



ଗୋବିନ୍ଦ ରଥ



ଶଶିଭୂଷଣ ବସୁ



ବାଣୀଭୂଷଣ ମୃତ୍ୟୁଞ୍ଜୟ ରଥ



ଜଳନ୍ଧର ଦେବ



ପଣ୍ଡିତ ବାସୁଦେବ ମହାପାତ୍ର



ଗୋବିନ୍ଦ ଚନ୍ଦ୍ର ଶୂରଦେଓ



ବୈଷ୍ଣବ ପାଣି



ଡାକ୍ତର ରାଧାଚରଣ ପଣ୍ଡା



ବିଦ୍ୟୁତ ପ୍ରଭା



ଲଲ ନଗେନ୍ଦ୍ର କୁମାର ରାୟ



ବୈକୁଣ୍ଠନାଥ ପଟ୍ଟନାୟକ

# ବିଶ୍ୱନାଥ କର

ଜନ୍ମ—୧୮୬୪, ଡିସେମ୍ବର ୨୪ ତାରିଖ
ମୃତ୍ୟୁ—୧୯୩୪, ଅକ୍ଟୋବର, ୧୮ ତାରିଖ

---

ନିଃଶ୍ୱାସେ ଖଞ୍ଜି ଥିବା ବାଣୀସେବୀ ଅଟେ
ଜଳହଠେ ଗୋଟିଏ ଈଶ୍ୱର
ଅଧରେ ଯା ସରସ୍ୱତୀ
ଲେଖନୀରେ ହୁତାଶନ
ବିଶ୍ୱନାଥ କର ।

—କୁଞ୍ଜବିହାରୀ

ଊନବିଂଶ ଶତାବ୍ଦୀର ଶେଷପାଦରୁ ବିଂଶ ଶତାବ୍ଦୀର ଦ୍ୱିତୀୟ ପାଦ ପର୍ଯ୍ୟନ୍ତ ସେ ଜାଳିଥିଲେ ଏକ ମହାଯଜ୍ଞ, ସାହିତ୍ୟୋଷ୍ଟି ଯଜ୍ଞ; ଏଥିରେ ସେ ଆହୁତି ଦେଇଥିଲେ ତାଙ୍କର ଯାହା କିଛି ପ୍ରିୟରୁ ପ୍ରିୟତମ—ମାନ, ଧନ, ଧ୍ୟାନ, ସ୍ୱାସ୍ଥ୍ୟ, ଶାନ୍ତି । ପୂର୍ଣ୍ଣାହୁତି ସ୍ୱରୂପ ଶେଷରେ ଢାଳି ଦେଇଥିଲେ ନିଜକୁ, ସାହିତ୍ୟର ସେହି ମହା ବହ୍ନି । ଏହି ଯଜ୍ଞହିଁ ପ୍ରସବିଥିଲା ଆଧୁନିକ ଓଡ଼ିଆ ସାହିତ୍ୟକୁ । ଏଇ ଆଜୀବନ ସାଧନା ଓ ଅନୁବଳ ଆଜି ଆଧୁନିକ ଲେଖକର ପ୍ରସ୍ତୁତିର ପ୍ରେରଣା ।

୧୮୫୦ ରୁ ୧୯୫୦ ମଧ୍ୟରେ ବହୁ ସାହିତ୍ୟ ପତ୍ରିକାର ଆବିର୍ଭାବ ଘଟିଛି । ଅର୍ଥାଭାବ, ନିଷ୍ଠାର ଅଭାବ ବା ଗ୍ରାହକଙ୍କର ଅଭାବ, ଯେ କୌଣସି କାରଣରୁ ହେଉ, ସେଥିମଧ୍ୟରୁ ଗୋଟିଏ ହେଲେ ପତ୍ରିକା ଦୀର୍ଘଜୀବୀ ହୋଇ ପାରି ନାହିଁ । ବିଶ୍ୱନାଥଙ୍କ ସମ୍ପାଦକୀୟ ନିଷ୍ଠା, ଅଧ୍ୟବସାୟ, ଦୃଢ଼-ସଂକଳ୍ପ ଓ ତ୍ୟାଗ ଅନ୍ୟତ୍ର ବିରଳ । ଯେ କୌଣସି ପ୍ରତିକୂଳ ପରିସ୍ଥିତି ତାଙ୍କୁ ହତୋତ୍ସାହ ଓ ନିବୃତ୍ତ କରି ପାରି ନାହିଁ । ରାଧାନାଥ ରାୟ, ଫକୀରମୋହନ ସେନାପତି, ଗୋପୀନାଥ ନନ୍ଦ, ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରଭୃତି ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠାତା ପଞ୍ଚକଙ୍କ ମଧ୍ୟରେ ସେ ଜଣେ । ଗୋପାଳ ଚନ୍ଦ୍ର

ଡ଼ିହେରାଜ ଯଥାର୍ଥ ଲେଖିଛନ୍ତି—'ସରସ୍ୱତୀ ସେବା ଲାଗି ସେ ଜୀବନ ଉତ୍ସର୍ଗ କରିଥିଲେ । ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ରୂପେ ସେ ମୋ ଭଳି ବହୁ ଲେଖକଙ୍କର କର୍ଣ୍ଣଧାର, ସଂଶୋଧକ, ଉତ୍ସାହଦାତା ଓ ଗୁରୁସ୍ଥାନ ଅଧିକାର କରିଥିଲେ ।'

ବିଶ୍ୱନାଥ କରଙ୍କର ପ୍ରତିଭା ସଂଗଠନର ପ୍ରତିଭା । ନିଜେ କିଛୁ ସୃଷ୍ଟି କରିବା ଅପେକ୍ଷା କରାଇବାକୁ ପରିଷ୍ଟିତ ଦୃଷ୍ଟିରୁ ସେ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେ କରିଥିଲେ । ସାହିତ୍ୟର ନେତା ସେ, କଣ୍ଠରେ ତାଙ୍କର ସ୍ୱରଣର ଅଗ୍ନିଗର୍ଭ ବାଣୀ; ତାଙ୍କ ବାଗ୍‌ମିତା ଶ୍ରୋତା ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । ଏହି ଗୁଣିକଲାଙ୍କର ଆନ୍ତରିକତାକୁ ଉଡ଼ାଇ ଦେବା ବା କଥାକୁ ଏଡ଼ାଇ ଚାଲିଯିବା ଲୋକ ସମସାମୟିକ କୌଣସି ବଦରାଧର ନ ଥିଲା । କବି ମଦନମୋହନ ପଟ୍ଟନାୟକଙ୍କ ଉକ୍ତି ସ୍ମରଣୀୟ :—

"କଣ୍ଠେ ତାର କମାଣ ଗର୍ଜନ
ବକ୍ଷେ ଥିଲା ଦ୍ୱୀପଦେବ ପଣ
କୁସଂସ୍କାର କୁହେଳିକା ନାଶି
ଉଠିଥିଲା ଜ୍ୱଳନ୍ତ ତପନ ।"

୧୮୯୭ ଖ୍ରୀଷ୍ଟାବ୍ଦରୁ ୧୯୩୪ ପର୍ଯ୍ୟନ୍ତ ଅର୍ଥାତ୍ ଶେଷ ନିଃଶ୍ୱାସ ଯିବା ପର୍ଯ୍ୟନ୍ତ ୩୮ବର୍ଷ କାଳ ସେ ଯାବତ ଏକ ଭାବେ 'ଉତ୍କଳ ସାହିତ୍ୟ' ପତ୍ରିକା ଚଳାଇ ପାରିଥିଲେ । ଏହା ଏକ ଅସାଧାରଣ କୃତିତ୍ୱ । ଉନବିଂଶ ଶତାବ୍ଦୀରେ ନାନା ଭାବେ କ୍ଷୁଣ୍ଣ ସାହିତ୍ୟିକ ଆତ୍ମପ୍ରତ୍ୟୟ ଓ ଆତ୍ମମର୍ଯ୍ୟାଦାକୁ ସେ ଦୃଢ଼ଭାବେ ପ୍ରତିଷ୍ଠିତ କରିଥିଲେ । କ୍ଷୋଭ ଉପରେ କ୍ଷୋଭ । ଆଘାତ ପରେ ଆଘାତ । ତାଙ୍କ ଲେଖନୀ ସଜୀବ ଆଗ୍ନେୟଗିରି ପରି ମଧ୍ୟେ ମଧ୍ୟେ ଅଗ୍ନି ବମନ କରୁଥିଲା । ଜାତିର ମୂର୍ଚ୍ଛାହତ ପିଣ୍ଡରେ ନବ ଜୀବନ୍ୟାସ ଦେବା ଲାଗି ସେ ଏହି କୌଶଳ ଅବଲମ୍ବନ କରିଥିଲେ ।

ରାଧାନାଥ ଯୁଗରୁ ସବୁଜ ଯୁଗ ଶେଷ ପର୍ଯ୍ୟନ୍ତ ତାଙ୍କ ଲେଖନୀର ପରିସର ବିସ୍ତୃତ ଥିଲା । ପରିବର୍ତ୍ତନକୁ ଏକ ସ୍ୱାସ୍ଥ୍ୟଦାୟୀ କାମ୍ୟ ପ୍ରବୃତ୍ତି ଭାବେ ସେ ଗ୍ରହଣ କରିଥିଲେ । ଫଳରେ ତାଙ୍କ ପ୍ରାଣପ୍ରିୟ କନ୍ୟା ଉତ୍କଳ ସାହିତ୍ୟ ପତ୍ରିକା ତିନିଗୋଟି ଯୁଗ—ରାଧାନାଥ ଯୁଗ ବା ଫକୀରମୋହନ ଯୁଗ, ସତ୍ୟବାଦୀ ଯୁଗ, ସବୁଜ ଯୁଗକୁ ପଦକ ପରି ଧାରଣ କରିଥିଲା । ଜାଗ୍ରତ ତାରୁଣ୍ୟରେ ସେ ସବୁ ସମ୍ଭାବନା ପ୍ରତିଫଳିତ ଦେଖି ଥିଲେ । ଯାହା କିଛି ଶ୍ରେଷ୍ଠ ସୃଷ୍ଟି, ତା ମୂଳରେ ତରୁଣର ହିଁ ଉଚ୍ଛ୍ୱାସ ବା ଏକନିଷ୍ଠ ପ୍ରୟାସ, ପ୍ରତି ନବଯୁଗ ସୃଷ୍ଟିରେ ତାଙ୍କର ହିଁ ପ୍ରେରଣା ; ତରୁଣ ଲୋକ ଉପରେ ତାଙ୍କର ଅତୁଟ ଆସ୍ଥା ଓ ବିଶ୍ୱାସ । ତେଣୁ ଏକ ଜୀବନ ଭିତରେ ତିନିଯୁଗ ସୃଷ୍ଟି ସମ୍ଭବ ହୋଇଥିଲା;

ପୃଷ୍ଠପଟରେ ଥିଲା ତାଙ୍କ ଚିର ତାରୁଣ୍ୟର ଉତ୍ସ । ସୁଲେଖକ କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ ବିଶ୍ୱନାଥଙ୍କ ଚରିତ୍ରକୁ ନିମ୍ନଭାବେ ରୂପାୟିତ କରିଛନ୍ତି—

"ଉତ୍କଳ ସାହିତ୍ୟ ପ୍ରାଚୀନ ଓ ନବୀନ ଲେଖକଙ୍କ ମିଳନ ଭୂମି ଥିଲା, ବରଂ ନବୀନ ଲେଖକମାନଙ୍କୁ ସେ ସମଧିକ ଉତ୍ସାହ ଦେଉଥିଲେ ।"

ବିଶ୍ୱନାଥଙ୍କ ଚରିତ୍ରର ପରିଧି ବିପୁଳ । ପ୍ରାୟ ୨୫୦ ଜଣ ସାହିତ୍ୟିକ ଏହି ପରିବାର-ଭୁକ୍ତ; ୧୮୯୭ରୁ ୧୯୩୪ ମଧ୍ୟରେ ଉତ୍କଳ ସାହିତ୍ୟ ପତ୍ରିକାରେ ସେମାନେ ଲେଖିଛନ୍ତି; ବିଶ୍ୱନାଥଙ୍କ ସହିତ ସେମାନଙ୍କର ଚିରନ୍ତନ ସମ୍ପର୍କ ନିବିଡ଼; ସେମାନଙ୍କ ମଧ୍ୟରୁ କେହି କର୍ତ୍ତବ୍ୟ ଅନୁରୋଧରେ, କେହି କେହି ବା ପରିପ୍ରଶଂସା ଲିପ୍‌ସାରେ ଲେଖିଛନ୍ତି କିମ୍ବା ବିଶ୍ୱନାଥ ବାରମ୍ବାର ପତ୍ର ଲେଖି ସେମାନଙ୍କ ନିକଟରୁ ନେଇ ଲେଖା ସଂଗ୍ରହ କରିଛନ୍ତି । ଆଧୁନିକ ସାହିତ୍ୟ କହିଲେ ସେମାନଙ୍କ ମିଳିତ ଦାନ ବା ସମ୍ମିଳିତ ସାହିତ୍ୟ ଐଶ୍ୱର୍ଯ୍ୟକୁ ବୁଝାଏ । ସେମାନଙ୍କ ବିନା ଉପସ୍ଥିତିରେ ଏକାକୀ ଛାଡ଼ି କରିଦେଲେ ବିଶ୍ୱନାଥଙ୍କ ସମଗ୍ରତା କଳନା କରାଯାଇ ପାରିବ ନାହିଁ । ସେମାନଙ୍କ ସହିତ ଉପସ୍ଥିତିରୁ ସାହିତ୍ୟିକ ବିଶ୍ୱନାଥଙ୍କର ପ୍ରକୃତ ସ୍ୱରୂପ ହୃଦୟଙ୍ଗମ କରିହୁଏ; ବିଶ୍ୱନାଥଙ୍କ ଅନ୍ତର୍ଦୀପ୍ତ ଉଦ୍ଦୀପନାର ଛାପ କାହା ପ୍ରାଣରେ ବା ବାଜି ନାହିଁ, କାହା ଲେଖାକୁ ତାଙ୍କ କଲମ ମୁନ କ୍ଷତ କରିନାହିଁ ? କାହାର ଅହମିକା ବା ମାନନେଇ ନାହିଁ ତାଙ୍କର ଉନ୍ନତତର ସଂଶୋଧନ ବା ରୂପାନ୍ତରକରଣକୁ ? ଉତ୍କଳ ସାହିତ୍ୟର ଚନ୍ଦ୍ରାତପ ତଳେ ଅଧିକାଂଶଙ୍କର ଜନ୍ମ, ବିକାଶ; ସ୍ରଷ୍ଟାର ସ୍ରଷ୍ଟା ପଦବୀ ବିଶ୍ୱନାଥଙ୍କର ସ୍ୱତଃ ପ୍ରାପ୍ୟ ।

ଏହି ଲେଖକମାନଙ୍କ ମଧ୍ୟରୁ ଅଧାରୁ ଅଧିକ ପତ୍ରିକାର ଜୀର୍ଣ୍ଣ ପୃଷ୍ଠା ମଧ୍ୟରେ ଏବେ ଆଶ୍ରୟ ଅବଲୋପ ପଥରେ ଦ୍ରୁତ ଗତି କରି ଚାଲିଛନ୍ତି । ଜୀବନକାଳ ମଧ୍ୟରେ ସେମାନଙ୍କ ରଚନାସବୁ ପୁସ୍ତକ ରୂପ ପରିଗ୍ରହ କରି ପାରି ନାହିଁ, ଏବେ ସେମାନେ ବିସ୍ମୃତ; ବିଶେଷ ଖ୍ୟାତି ଅର୍ଜନ କରିଛନ୍ତି ନିମ୍ନ କେତେଜଣ ମାତ୍ର—ରାଧାନାଥ, ଫକୀରମୋହନ, ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋର, ଗୋପାଳ ଚନ୍ଦ୍ର ପ୍ରହରାଜ, ଶଶିଭୂଷଣ ରାୟ, ପଦ୍ମଚରଣ ପଟ୍ଟନାୟକ, ଚନ୍ଦ୍ରମୋହନ ମହାରଣା, ଶ୍ୟାମସୁନ୍ଦର ରାଜଗୁରୁ, କାମପାଳ ମିଶ୍ର, ଜଳନ୍ଧର ଦେବ, ଚିନ୍ତାମଣି ମହାନ୍ତି, ମୃତ୍ୟୁଞ୍ଜୟ ରଥ, କୁଳମଣି ଦାଶ, ଗୋପୀନାଥ ନନ୍ଦ, ବିଦ୍ୟାବିନୋଦ ମଧୁସୂଦନ ଦାଶ, ଗୋବିନ୍ଦ ଚନ୍ଦ୍ର ଶୂର ଦେଓ, ନାରାୟଣ ମୋହନ ଦେ, ପ୍ରାଣକୃଷ୍ଣ ପଡ଼ିଆ, ପରମାନନ୍ଦ ଆଚାର୍ଯ୍ୟ, ବାଳକୃଷ୍ଣ କର, ଗୋପବନ୍ଧୁ ଚୌଧୁରୀ, ଚିନ୍ତାମଣି ଆଚାର୍ଯ୍ୟ, ବ୍ରଜମୋହନ ପଣ୍ଡା, ରାମଶଙ୍କର ରାୟ, ଲକ୍ଷ୍ମୀକାନ୍ତ ମହାପାତ୍ର, ଲକ୍ଷ୍ମୀନାରାୟଣ ସାହୁ, ରାମଚନ୍ଦ୍ର ଆଚାର୍ଯ୍ୟ, ଗିରିଜା ଶଙ୍କର ରାୟ, ବିପିନ ବିହାରୀ ରାୟ,

ରତ୍ନାକର ପତି, ଭିକାରୀ ଚରଣ ପଟ୍ଟନାୟକ, ଜଗବନ୍ଧୁ ସିଂହ, ଦିବ୍ୟସିଂହ ପାଣିଗ୍ରାହୀ, ସୁଧାକର ପଟ୍ଟନାୟକ, ବିନାୟକ ମିଶ୍ର, ଉପେନ୍ଦ୍ର ପ୍ରସାଦ ମହାନ୍ତି, ମହେନ୍ଦ୍ର ପଟ୍ଟନାୟକ, ବିରୂପାକ୍ଷ କର, କୁନ୍ତଳା କୁମାରୀ ସାବତ, ବିଜୟ ଚନ୍ଦ୍ର ମଜୁମ୍‌ଦାର, ଶ୍ରୀବତ୍ସ ପଣ୍ଡା, ଅପର୍ଣ୍ଣା ପଣ୍ଡା, ଗୋବିନ୍ଦ ଚନ୍ଦ୍ର ମହାପାତ୍ର, କମଳକୃଷ୍ଣ ପାଲ, ହରିଶ୍ଚନ୍ଦ୍ର ବଡ଼ାଳ, କାହ୍ନୁ ଚରଣ ମହାନ୍ତି, ରାଧାଚରଣ ପଣ୍ଡା, ରମାରଞ୍ଜନ ମହାନ୍ତି, କୃଷ୍ଣଚନ୍ଦ୍ର କର, ଘନଶ୍ୟାମ ମହାନ୍ତି, ଅନନ୍ତ ପଦ୍ମନାଭ ପଟ୍ଟନାୟକ, କମଳାକାନ୍ତ ଦାସ, ସତ୍ୟନାରାୟଣ ରାଜଗୁରୁ, ବିକ୍ରମ ଦେବ ବର୍ମା, ଜଗନ୍ନାଥ ତ୍ରିପାଠୀ, ଚନ୍ଦ୍ରଶେଖର ମିଶ୍ର, ସତୀଶଚନ୍ଦ୍ର ଦେ, ବୃନ୍ଦାବନ ନାଥ ଶର୍ମା, ବ୍ରଜବିହାରୀ ମହାନ୍ତି, ଅନନ୍ତ ପ୍ରସାଦ ପଣ୍ଡା, ଗୋବିନ୍ଦ ତ୍ରିପାଠୀ, ଗୋପାଳ ଚନ୍ଦ୍ର କାନନ୍‌ଗୋ, ଶ୍ୟାମସୁନ୍ଦର ଧୀର, ବୈଷ୍ଣବ ଚରଣ ପଟ୍ଟନାୟକ, ଚନ୍ଦ୍ରମଣି ଦାସ, କେଦାର ନାଥ ମହାପାତ୍ର, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଅନ୍ନଦା ଶଙ୍କର ରାୟ, କାଳନ୍ଦୀ ଚରଣ ପାଣିଗ୍ରାହୀ, ଭଗବତୀ ଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ହରିହର ମହାପାତ୍ର, ଶରତ ମୁଖାର୍ଜୀ, ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, ସଚ୍ଚିଦାନନ୍ଦ ରାଉତରାୟ ।

ଉକ୍ତ ଦୁଇଶ ପଚିଶ ଜଣଙ୍କ ମଧ୍ୟରେ କଶୋରମଣି ଦେଈ, ଜ୍ୟୋତିର୍ମୟୀ ଗଙ୍ଗୋପାଧ୍ୟାୟ, ସରଳା ଦେଈ, ପ୍ରତିଭା କର, ସୁନେତ୍ରା କର, ପୀତାମ୍ବରୀ ଦେବୀ, ବିହାରୀ ନଳିନୀ ଦେବୀ, କୁନ୍ତଳା କୁମାରୀ ସାବତ, ନର୍ମଦା ଦେବୀ, କୁମୁଦିନୀ ଦେଈ, ବନଲତା ଦେଈ, ଶାନ୍ତି ଦେବୀ, ଦେବହୂତି ଦେଈ, ଚନ୍ଦ୍ରମଣି ଦେଈ, କୋକିଳ ଦେଈ, ନଗେନ୍ଦ୍ରବାଳା ସରସ୍ୱତୀ, ଅବନ୍ତୀ ଦେବୀ, ସୁନ୍ଦଲତା ରାଉତ, ରେବା ରାୟ, ଅପର୍ଣ୍ଣା ଦେବୀ, ଚନ୍ଦ୍ରମା ଦେବୀ ପ୍ରଭୃତି ୨୧ ଜଣ ଲେଖିକା ।

ଅପରନ୍ତୁ ଅଳୀ ଖାଁ, ମୌଲବୀ ସୟଦ୍ ଅବଦୁଲ୍ ହାଲିମ୍, ସେଖ୍ ମନସୁର, ସେଖ୍ ଗୋଲାମ୍ ଗାଉସ୍ ପ୍ରଭୃତି ୩୫ ଜଣ ମୁସଲମାନ ଲେଖକଙ୍କ ନାମ ମିଳେ ।

ବାଇଦାସ, ଶ୍ରୀକେଶରୀ, ଧୂର୍ଜଟୀ, ଦୁର୍ମୁଖ ଶର୍ମା, ଶ୍ରୀ ନା-, ଶ୍ରୀ ଗରୁଡ଼, ଶ୍ରୀ ନାକ୍ୟ ପର୍ଯ୍ୟଟୀ, ଶ୍ରୀ ସହାର ପ୍ରୟାସୀ, ଜଣେ ଅଧାପାଠୁଆ ଓଡ଼ିଆ, ଅବଳରଭର କୁବର ଜଣେ ସଭ୍ୟ, ଶ୍ରୀ ଚ, ଜଣେ ଶିକ୍ଷିତ, ଶ୍ରୀ ରାୟ, ଜଣେ ଓଡ଼ିଆ ଗ୍ରାଜୁଏଟ୍, ଶ୍ରୀ ସୁନ୍ଦରଜାନ, ଶ୍ରୀ ଦେଶସେବକ, ଅ-ରାୟ, ଶ୍ରୀ ସବୁଜ, ବାର୍ତ୍ତାବହ, ଶ୍ରୀ ବାଚସ୍ପତି ଶର୍ମା, କଥକ, ଶ୍ରୀମତୀ ପ୍ରବାସିନୀ, 'କୁମାର' ଭାଇ, ହରିତ, ଲୋହିତ, ଅଯହଯୋଗୀ, ଶ୍ରୀଯୁକ୍ତ ପଞ୍ଚାନନ, ଚନ୍ଦ୍ରକାନ୍ତ ପ୍ରଭୃତି ଅଠେଇଶି ଗୋଟି ଛଦ୍ମନାମରେ ବହୁଲେଖା ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଅଛି ।

ନିମ୍ନଲିଖିତ ଲେଖକମାନଙ୍କର କ୍ୱଚିତ୍ କେବେ ଟଣ୍ଡେ ଅଧେ ପୁସ୍ତକ ପ୍ରକାଶ ପାଇଛି, ଏବେ ଦୁର୍ଲଭ । କୌଣସି ଦେଶପ୍ରେମୀ ଗବେଷକ ସେମାନଙ୍କ ଜୀବନୀ ବା ଲେଖା

ଏ ପର୍ଯ୍ୟନ୍ତ ସଙ୍କଳନ କରନାହାନ୍ତି । ନବ୍ୟଭାରତ ପତ୍ରିକାରେ ସେମାନଙ୍କର ଯେଉଁ କେତେ ଯଶସ୍ୱୀ ନାମ ହୃଦୟଙ୍ଗମ କରିବା ସମ୍ଭବ ନୁହେଁ । ପରବର୍ତ୍ତୀ ପତ୍ରର ତାଲିକା ଲକ୍ଷ୍ୟ କଲେ ପ୍ରାୟ ସମସ୍ତ ନାମ ମିଳିବ ବୋଲି ।

ମଦନମୋହନ ପଟ୍ଟନାୟକ, କୃଷ୍ଣ ପ୍ରସାଦ ଚୌଧୁରୀ, ହୋଲାନାଥ ସାମନ୍ତରାୟ, ଶ୍ୟାମସୁନ୍ଦର ନନ୍ଦ, ଶଚୀନ୍ଦ୍ରନାଥ ଦାସ, ବଳରାମ ଦାସ, ମଣିଚରଣ ମହାପାତ୍ର, ଚନ୍ଦ୍ରଶେଖର ନନ୍ଦ, କୃଷ୍ଣମୋହନ ପଟ୍ଟନାୟକ, କୃଷ୍ଣଚନ୍ଦ୍ର ପ୍ରହରାଜ, ବ୍ରହ୍ମାନନ୍ଦ ଷଡଙ୍ଗୀ, ପାରେଶ୍ୱର ମହାନ୍ତି, ପଦ୍ମଚରଣ ନାୟକ, ଆନନ୍ଦ ଚନ୍ଦ୍ର ପଣ୍ଡା, ଦୈତାରି କର, ବସିନ ବିହାରୀ ସେନ, ଆନନ୍ଦ ଚନ୍ଦ୍ର ଦତ୍ତ, ମହେଶ ଚନ୍ଦ୍ର ରାୟ, ଶଶିଭୂଷଣ ବସୁ, ଅଖିଳ ଚନ୍ଦ୍ର ପାଲିତ, ଅଜୟ ଚନ୍ଦ୍ର ଦାସ, ଧୀରେନ୍ଦ୍ର ନାଥ ଚୌଧୁରୀ, ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ, ଦୟାନିଧି ମିଶ୍ର, ଘନବନ୍ଧୁ ରାଉତ, ଜଳକଣ୍ଠ ରଥ, ପ୍ରଶାନ୍ତ ରାଉ, ମୃତ୍ୟୁଞ୍ଜୟ ତ୍ରିପାଠୀ, ବୈଦ୍ୟେଶ୍ୱର ଦେବ, ଭଗିରଥ ମହାପାତ୍ର, ଗଗନ ଚନ୍ଦ୍ର ଘୋଷ, ମାୟାଧର ରାଜଗୁରୁ, କ୍ଷୀରୋଦ ଚନ୍ଦ୍ର ପାଲ, ବଡ଼ଚରଣ ମହାପାତ୍ର, ଗୋକୁଳ ଚନ୍ଦ୍ର ମିଶ୍ର, କେଶବଚନ୍ଦ୍ର କର, କେଶବ ଚନ୍ଦ୍ର ମିଶ୍ର, ଅଟଳ ବିହାରୀ ରାୟ, ହରିହର ଦାସ, ଭୁବନାନନ୍ଦ ଦାସ, କଣୋରା ମୋହନ ଦାସ, ଯୋନାଥନ ମହାନ୍ତି, ଚନ୍ଦ୍ରମଣି ପଟ୍ଟନାୟକ, ବିଭୂତିଭୂଷଣ ବନ୍ଦୋପାଧ୍ୟାୟ, ବନବିହାରୀ ପଟ୍ଟନାୟକ, ଲକ୍ଷ୍ମୀ ନାରାୟଣ ଦେବ, ଭୁବନେଶ୍ୱର ମିଶ୍ର, ନାରାୟଣ ବହିଦାର, ବ୍ରଜ ମୋହନ ସେନାପତି, କୃପାସିନ୍ଧୁ ବେହେରା, ଯୋଗେଶ୍ୱରୀ ଦେବୀ, କାମାକ୍ଷା ପ୍ରସାଦ ବସୁ, ଲକ୍ଷ୍ମୀକାନ୍ତ କେଶରୀ, ଲକ୍ଷ୍ମୀନାରାୟଣ ଦେବ କାବ୍ୟ ବିନୋଦ, ଅଗଣି ଦାଶ, ଲାଲମୋହନ ଚଟ୍ଟୋପାଧ୍ୟାୟ, ସୂର୍ଯ୍ୟମଣି ମହାନ୍ତି, ବାଞ୍ଛାନିଧି କର, ରାଧା ଚରଣ ଦାସ, ବାଲୁକେଶ୍ୱର ମିଶ୍ର, ଲକ୍ଷ୍ମଣ ପଟ୍ଟନାୟକ, ଗଦାଧର ରଥ, ସଦାଶିବ ବନ୍ଦ୍ୟୋପାଧ୍ୟାୟ, ଈଶ୍ୱରାନ ଭଞ୍ଜ, କେଶବାନନ୍ଦ ପଣ୍ଡା, ଅନନ୍ତ ନାରାୟଣ ସେନ, ଦାମୋଦର କର, ବାସୁଦେବ ରଥଶର୍ମା, ରାଜନାରାୟଣ ଦାସ, ରେବତୀକାନ୍ତ ମହାନ୍ତି, କନ୍ହେୟାଲାଲ ବସୁ, ଜଗବନ୍ଧୁ ବନ୍ଦ୍ୟୋପାଧ୍ୟାୟ, ରାମଚନ୍ଦ୍ର ନନ୍ଦ, ସାରଦା ପ୍ରସାଦ ଦାସଗୁପ୍ତ କବିରଞ୍ଜନ, ଜଗମୋହନ ସିଂହ, ରମାନାଥ ଦାସ, ରୁଦ୍ରନାରାୟଣ ଦେବଶର୍ମା, ଲାଲ ନୃପରାଜ ସିଂହଦେବ, ଜ୍ଞାନବାସ ସିଂହ, ଯୋଗେନ୍ଦ୍ର ମିଶ୍ର କାବ୍ୟ ବିଶାରଦ, ସଦାଶିବ କାବ୍ୟକଣ୍ଠ, ବଳଭଦ୍ର ମିଶ୍ର, ପଞ୍ଚାନନ୍ଦ ଧୀରେନ୍ଦ୍ର ମହାନ୍ତି, ସାଧୁଚରଣ ରାୟ, ଚନ୍ଦ୍ରମଣି ସିଂହ, ପାର୍ବତୀ ଚରଣ ଦାସ, ଅନନ୍ତଭୁଜ ଦାସ, ପ୍ରହରାଜ କୃଷ୍ଣଚନ୍ଦ୍ର ଦାଶଶର୍ମା, ପଦ୍ମଚରଣ କବିଚନ୍ଦ୍ର, ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ, କ୍ଷୀରୋଦଚନ୍ଦ୍ର ରାୟ ଚୌଧୁରୀ, ଉପେନ୍ଦ୍ର ଚନ୍ଦ୍ର ମିଶ୍ର, ହରିହର ମିଶ୍ର, ଲକ୍ଷ୍ମୀ ନାରାୟଣ ହରିଚନ୍ଦନ ଜଗଦେବ, ଦୈତାରି ମହାନ୍ତି, ପ୍ରତାପଚନ୍ଦ୍ର ଭଞ୍ଜଦେବ, ଗୋପାଳ ଚନ୍ଦ୍ର ଦାସ, ଆନନ୍ଦ ଦାସ, ପୂର୍ଣ୍ଣଚନ୍ଦ୍ର ଦାସ, ନୃସିଂହଚରଣ ମହାନ୍ତି,

ବର୍ଦ୍ଦେନ୍ଦ୍ରକୃଷ୍ଣ ଅଧିକାରୀ, ଦୀନବନ୍ଧୁ ଦାସ, ବଦ୍ୟାଧର ସିଂହଦେଓ, ମାଧବ ଚୌଧୁରୀ, ଗଦାଧର ସିଂହ, କୃଷ୍ଣପ୍ରସାଦ ମହାନ୍ତି, ବୈଦ୍ୟନାଥ ସାହୁ, କୃଷ୍ଣଚନ୍ଦ୍ର ଆଗ୍ରୱାଲ, ପ୍ରତାପ ସେନ, ଗୋପୀନାଥ ହରିଚନ୍ଦନ ଜଗଦେବ, ନାରାୟଣ ପ୍ରସାଦ ଶତପଥୀ, ଗଙ୍ଗାଧର ମିଶ୍ର, ଅନ୍ନଦା ଚରଣ କର, ରଘୁନାଥ ମହାନ୍ତି, ଚନ୍ଦ୍ରଶେଖର ଦାସ, ପଣ୍ଡିତ ବିଶ୍ୱନାଥ ରଥଶର୍ମା, ବାସୁଦେବ ଦାସ, ଅନାଥ ଚରଣ କର, ଜଗତ୍ ମୋହନ ସେନ, ପୀତାମ୍ବର ଦାସ, ହରମୋହନ ପାଣ୍ଡ, ଅଜିତକୁମାର ଦାସ, ବ୍ରଜବନ୍ଧୁ ଦାସ, ବିଷ୍ଣୁ ଗୁପ୍ତ, ମଧୁସୂଦନ ମହାନ୍ତି, ଦାଶରଥି ପାଣିଗ୍ରାହୀ, ଲୋକନାଥ ମହାପାତ୍ର, ସୁକାନ୍ତ ରାଓ, ଶରତଚନ୍ଦ୍ର ଘୋଷ, ନବୀନକୁମାର ଶର୍ମା, ଗୋପବନ୍ଧୁ ବିଦ୍ୟାଭୂଷଣ, ସିଂହାଦ୍ରି ଦୋଷୀ, ସୋମନାଥ ମିଶ୍ର ହିକେଲ୍ ରେ, ବୈଦ୍ୟନାଥ ମିଶ୍ର, ନାରାୟଣ ଶିରୋମଣି, ଯଜ୍ଞେଶ୍ୱର ଜମ୍ମାଳି, ଦେବାନ ବାହାଦୂର ଶ୍ରୀକୃଷ୍ଣ ମହାପାତ୍ର, ରେ ଲୋକନାଥ ମହାନ୍ତି, ନୃସିଂହ ଚରଣ ଶର୍ମା, ଜୀବନରାମ ପଣ୍ଡା, ମୂରଲୀଧର ମହାନ୍ତି, ଚକ୍ରଧର ଅମାତ୍ୟ, ଜଗଦାନନ୍ଦ ମହାନ୍ତି, ସଚ୍ଚିଦାନନ୍ଦ ମହାନ୍ତି, ରମେଶଚନ୍ଦ୍ର ମହାନ୍ତି, ରାଜା ନବକିଶୋର ଚନ୍ଦ୍ର ସିଂହଦେବ, ଚକ୍ରଧର ପଟ୍ଟନାୟକ, ଗୌରାଙ୍ଗ ଦାସ, ଦାମୋଦର ଦାଶ କାବ୍ୟ ବ୍ୟାକରଣ ପୁରାଣତୀର୍ଥ, ସର୍ ପ୍ରଫୁଲ୍ଲଚନ୍ଦ୍ର ରାୟ, ପଣ୍ଡିତ ଚଣ୍ଡୀଆଲ, ଗୋପୀନାଥ ହୋତା, ରାମକୃଷ୍ଣ ତ୍ରିପାଠୀ, ଭୂପତିଭୂଷଣ ମୁଖୋପାଧ୍ୟାୟ ଲକ୍ଷ୍ମୀକାନ୍ତ କେଶରୀ, ଗୁରୁଚରଣ ମହାନ୍ତି, ଶରତ୍‌ଚନ୍ଦ୍ର ଭଞ୍ଜଦେବ, ସିଦ୍ଧାନନ୍ଦ ପତି, ଗଣପତି ପତି, ବିନୋଦଚନ୍ଦ୍ର ଦାସ, ବସନ୍ତକୁମାର କର, ଫକୀର ଚରଣ ସାହାଣୀ, ପୁରୁଷୋତ୍ତମ ତର୍କାଳଙ୍କାର, ଦାମୋଦର ପଟ୍ଟନାୟକ, ବିଜୟାନନ୍ଦ ପଟ୍ଟନାୟକ, ବଂଶୀଧର ସାମନ୍ତରାୟ ।

୧୮୭୪ ଡିସେମ୍ବର ୨୪ ତାରିଖ ଗୋଟିଏ ଏକାନ୍ତ ସ୍ମରଣୀୟ ଦିବସ । ଏହି ତାରିଖରେ ବିଶ୍ୱନାଥ କର କଟକ ଜିଲ୍ଲାର ବରୁଆ ଉତ୍ତରବର୍ତ୍ତୀ ମୂଳବସନ୍ତ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କୌଣସି କାରଣରୁ ତାଙ୍କ ପିତୃପୁରୁଷ ପୁରୀ ଜିଲ୍ଲାର ପ୍ରତାପରୁଦ୍ରପୁର ଶାସନରୁ ଉଠିଯାଇ ଏହି ଗ୍ରାମରେ ବସବାସ କରିଥିଲେ ।

ତାଙ୍କ ପିତାଙ୍କ ନାମ ନାରାୟଣ କର । ନୈଷ୍ଠିକ, ତେଜସ୍ୱୀ ବ୍ରାହ୍ମଣ ଭାବରେ ତାଙ୍କର ପ୍ରତିଷ୍ଠା ଥିଲା । ଦୀନ ଦୁଃଖୀଙ୍କ ପ୍ରତି ଦୟାଭାବ, ଭାଇ ପଡ଼ଶାଙ୍କ ପ୍ରତି ସ୍ନେହ ସହାନୁଭୂତି ତାଙ୍କ ମାତାଙ୍କ ହୃଦୟରେ ପୂର୍ଣ୍ଣ ରହିଥିଲା । ବିଶ୍ୱନାଥଙ୍କ ଚରିତ୍ରରେ ପିତାଙ୍କ ପୌରୁଷ ଓ ତେଜସ୍ୱିତା, ମାତାଙ୍କ ପରଦୁଃଖକାତରତା, ସ୍ନେହଶୀଳତା ଓ କୋମଳତା ଏକାଧାରରେ ଫୁଟି ଉଠିଥିଲା ।

ଗୋବିନ୍ଦ ଅବଧାନଙ୍କ ଚାଟଶାଳୀରେ ଖଡ଼ିପାଠ ଶେଷ କଲାପରେ ସେ ବ୍ରଜବନ୍ଧୁ କରଙ୍କ ଠାରୁ ସଂସ୍କୃତ ଶିକ୍ଷା କରିଥିଲେ । ଉକ୍ତ ଗ୍ରାମର ଚତୁଷ୍ପାଠୀ ସେକାଳରେ

ସଂସ୍କୃତ ଶିକ୍ଷାର ଏକ କେନ୍ଦ୍ରପୀଠ ଥିଲା । ପଣ୍ଡିତ ବ୍ରଜବନ୍ଧୁ କର ପାଣ୍ଡିତ୍ୟ ଲାଗି ଖ୍ୟାତି ଅର୍ଜିଥିଲେ । ବିଶ୍ୱନାଥ ସେହି ପଣ୍ଡିତଙ୍କ ନିକଟରେ ଅଧ୍ୟୟନ କରି ସଂସ୍କୃତ ବ୍ୟାକରଣ, ସାହିତ୍ୟ ଓ ଅଳଙ୍କାରରେ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ । ନିୟମିତ ସଂସ୍କୃତ ଶିକ୍ଷାଯୋଗୁଁ ତାଙ୍କ ବୁଦ୍ଧିବୃତ୍ତିର ମୂଳପିଣ୍ଡ ଦୃଢ଼ଭାବେ ସଂଗଠିତ ହୋଇଥିଲା । ପାରମ୍ପରିକ ଭାରତୀୟ ସଂସ୍କୃତିରେ ସେ ପ୍ରବୀଣତା ଅର୍ଜନ କରିଥିଲେ ।

ତାପରେ କୁଆଁପାଳ ଗ୍ରାମରେ ନବପ୍ରତିଷ୍ଠିତ ମାଇନର ସ୍କୁଲରେ ସେ ଅଧ୍ୟୟନ କଲେ । ସଂସ୍କୃତରେ ମୂଳଦୁଆ ଶକ୍ତ ଥିବାରୁ ସେ କୃତୀ ଛାତ୍ର ଭାବେ ସୁପରିଚିତ ହେଲେ । କୋଠପଦା ମଠର ମହାନ୍ତ ରାମନାଥ ଦାସ ସେତେବେଳେ ସେ ସ୍କୁଲର ଶିକ୍ଷକ । ସେ ଚରିତ୍ରରେ ଯେପରି ଆଦର୍ଶ, ସେ ଅଞ୍ଚଳର ଜ୍ଞାନୀଗଣଙ୍କ ମଧ୍ୟରେ ସେହିପରି ଅଗ୍ରଗଣ୍ୟ ଥିଲେ । ବିଶ୍ୱନାଥ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ହେଉ ହେଉ ପରେ ହିନ୍ଦୁ ଧର୍ମରେ ନାନା କୁସଂସ୍କାର, ଅନ୍ଧବିଶ୍ୱାସ ପ୍ରବେଶ କରିଥିବାର ଦେଖି, ବିଶ୍ୱନାଥ ସମସ୍ତ ସମାଜନେତାମାନଙ୍କ ଆଗରେ ମୁହେଁ ମୁହେଁ ସମାଲୋଚନା କରି ଦେଉଥିଲେ । ତାଙ୍କର ଏ ଅସହିଷ୍ଣୁତା ଓ କଟୁତା ଦେଖି କାଳେ ବିଶ୍ୱନାଥ ଧର୍ମାନ୍ତର ଗ୍ରହଣ କରିବେ, ପିତା ନାରାୟଣଙ୍କ ମନରେ ଶଙ୍କା ଜାତ ହେଲା । ସେ ଦର୍ପଣି ଇନ୍ସପେକ୍ଟରଙ୍କ କୃତ୍ତିବାସ କରଙ୍କ ଆଠ ବର୍ଷର କନ୍ୟା ଜାନକୀ ସହିତ ବାରବର୍ଷ ବୟସ୍କ ବିଶ୍ୱନାଥଙ୍କୁ ପରିଣୟ ସୂତ୍ରରେ ଆବଦ୍ଧ କଲେ ।

୧୮୮୧ ଖ୍ରୀଷ୍ଟାବ୍ଦରେ ସେ କଟକରେ ନବ ପ୍ରତିଷ୍ଠିତ ପ୍ୟାରୀମୋହନ ଏକାଡେମୀରେ ଶିକ୍ଷାଲାଭ କଲେ । ଅଳ୍ପକାଳ ଆଗରୁ ପ୍ୟାରୀମୋହନଙ୍କ ଅକାଳ ବିୟୋଗ ଘଟିଥାଏ । ଶୋକାକୁଳତାର ସଙ୍କେତ ସର୍ବତ୍ର । ସେଠି ବିଶ୍ୱନାଥ ପ୍ରସିଦ୍ଧ ପଣ୍ଡିତ ଓ ସୁସାହିତ୍ୟିକ ଶିକ୍ଷକ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ସଂସର୍ଗ ଲାଭ କଲେ । ଏହି ସଙ୍ଗ ତାଙ୍କ ମନରେ ସାହିତ୍ୟିକ ହେବାର ଉଚ୍ଚାକାଂକ୍ଷା ଜାଗ୍ରତ କଲା । ଭକ୍ତକବି ମଧୁସୂଦନଙ୍କ ସଂସର୍ଗରେ ଆସିବା ପରେ ତାଙ୍କ ମନୋଭାବ ସାହିତ୍ୟ ରୂପରେ ଧାରାନ୍ୱିତ ହେବାକୁ ଲାଗିଲା । ସେତେବେଳେ ବ୍ରାହ୍ମଧର୍ମ ସମିତିର ଧର୍ମାଲୋଚନା ଓ ଉପାସନା ସମିତିରେ ସେ ଯୋଗ ଦେଉଥିଲେ । ବ୍ରାହ୍ମଧର୍ମର ପୌତ୍ତଳିକତା ବିବର୍ଜିତ ସରଳ ଧର୍ମଭାବ ଓ ଏକେଶ୍ୱରବାଦ ତାଙ୍କୁ ଆକୃଷ୍ଟ କରିବାକୁ ଲାଗିଲା । କିନ୍ତୁ ସେ ଦିଗରେ ସେ ଦୃଢ଼ ଭାବରେ ଅଗ୍ରସର ନୋହୁଣୁ ଏକ ବିପଦ ଘଟିଲା । ଜଣେ ଶିକ୍ଷକଙ୍କ ଦୁର୍ବ୍ୟବହାର ଯୋଗୁଁ ଏକାଡେମୀ ଛାଡ଼ି ମିସନ୍ ସ୍କୁଲରେ ନାମ ଲେଖାଇବା ଲାଗି ସ୍ଥିର କଲେ । ତାଙ୍କ ମାନସିକ ବିକାଶ ଓ ହିନ୍ଦୁଧର୍ମପ୍ରତି ଆନୁଗତ୍ୟର ଅଭାବ ଲକ୍ଷ୍ୟକରି ମିସନ ସ୍କୁଲର ପ୍ରଧାନ ଶିକ୍ଷକ ସ୍ମିଥ

ସାହେବ ତାଙ୍କୁ ବାଇବଲ ପ୍ରଭୃତି ଖ୍ରୀଷ୍ଟିୟାନ ଧର୍ମର ମୌଳିକ ଗ୍ରନ୍ଥ ସବୁ ଅଧ୍ୟୟନ କରିବା ଲାଗି ଦେଇଥିଲେ ।

କିନ୍ତୁ ଭାଗ୍ୟର ବିଡ଼ମ୍ବନା ବିଚିତ୍ର । ଅର୍ଥାଭାବ ଯୋଗୁଁ ତାଙ୍କ ପାଠ ଥିରେ ଡୋରି ବନ୍ଧା ହେଲା । ଏ ପର୍ଯ୍ୟନ୍ତ ଜୀବନ ଗତି ଅଧିକେ ସୁରୁଖୁରୁରେ ଗତି କରୁଥିଲା । ଏହିଠାରୁ ଆରମ୍ଭ ହେଲା ସମାଜ ସହିତ ତାଙ୍କର ପ୍ରତ୍ୟକ୍ଷ ସଂଘର୍ଷ ଓ କଠୋର ଜୀବନ-ସଂଗ୍ରାମ । ହିଁର ସ୍ୱାଧୀନ ଚିନ୍ତା ଓ ସାହସ ମନୋଭାବର ଅଭାବରୁ ସେ ନିଜେହିଁ ନିଜର ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିଥିଲେ ଓ ବୀର ବିକ୍ରମରେ ତାର ସମ୍ମୁଖୀନ ହୋଇଥିଲେ ।

ଶିକ୍ଷାର ପଥ ଅବରୁଦ୍ଧ ହେଲା ପରେ ସେ କର୍ମକ୍ଷେତ୍ରରେ ପୂରି ବୁଲିଲେ । ୧୮୮୭ ଖ୍ରୀଷ୍ଟାବ୍ଦରେ ବିରୋଳ ଗ୍ରାମ ସ୍କୁଲରେ ଶିକ୍ଷକତା ଗ୍ରହଣ କଲେ । ବେତନ ସ୍ୱଳ୍ପ ହେଲେ ହେଁ ସେଥିରେ ନିଜେ କଷ୍ଟେ ମଷ୍ଟେ ଚଳି ଦୁଇଭାଇ ଭୋଳାନାଥ ଓ ଲୋକନାଥଙ୍କୁ ପଢ଼ାଇବାକୁ ସମର୍ଥ ହୋଇଥିଲେ । ଏ ମଧ୍ୟରେ କଟକ ଯାଇ ସେ ବ୍ରାହ୍ମ ମାଘୋତ୍ସବରେ ଯୋଗ ଦେଲେ ଓ ଭକ୍ତକବି ମଧୁସୂଦନଙ୍କ ଓଜସ୍ୱିନୀ ବକ୍ତୃତା ଶୁଣି ବିଶେଷ ପ୍ରଭାବିତ ହୋଇଥିଲେ ଓ ଜାତିଭେଦ ଆଉ ମାନିବେ ନାହିଁ ବୋଲି ସ୍ଥିର କଲେ । ମନୋଭାବକୁ ସଦ୍ୟ କାର୍ଯ୍ୟରେ ପରିଣତ କରିବାକୁ ଯାଇ ସେ ବିରୋଳ ଗ୍ରାମରେ ଜଣେ କରଣ ହାତରୁ ଅନ୍ନ ଗ୍ରହଣ କଲେ । ରକ୍ଷଣଶୀଳ ବ୍ରାହ୍ମଣ ସମାଜ ମଧ୍ୟରେ କଠୋର ଜାତିଭେଦ ଉପରେ ଏହା ଏକ ତୀବ୍ର ପଦାଘାତ । ତା ଫଳରେ ତାଙ୍କୁ ଏହି ଗୃହକର୍ମ ହରାଇବାକୁ ପଡ଼ିଥିଲା ।

ତା'ପରେ ବିଶ୍ୱନାଥ ଉପବୀତ ତ୍ୟାଗ କଲେ ଓ ବ୍ରାହ୍ମ ଧର୍ମରେ ଦୀକ୍ଷିତ ହେଲେ । ବ୍ରାହ୍ମ ସମାଜ ଛାତ୍ରାବାସରେ ଭ୍ରାତାଦ୍ୱୟଙ୍କର ରହିବା ଓ ଖାଇବା ବ୍ୟବସ୍ଥା କରାଗଲା । ଭାଇମାନେ ବିଶ୍ୱନାଥଙ୍କ ପ୍ରରୋଚନାରେ ବ୍ରାହ୍ମଧର୍ମ ଗ୍ରହଣ କରିବେ, ସେଥିଲାଗି ବନ୍ଧୁ, କୁଟୁମ୍ବର ଅଭିଭାବକମାନେ ପିଲାମାନଙ୍କୁ ସ୍କୁଲରୁ ଉଠାଇ ଆଣିଥିଲେ; କିନ୍ତୁ ଏକାନ୍ତ ଅନୁଗତ ଦୁଇଭାଇ ତାଙ୍କ ପିଛୁ ଧରି ରହିଲେ । ଜ୍ୟେଷ୍ଠପୁତ୍ର ମାୟାଧରଙ୍କର ଜନ୍ମ ପରେ ପଞ୍ଚୁଆଁତି, ଷଠୀ, ଏକୋଇଶା ଆଦି ବ୍ରାହ୍ମଣକୁଳର କୌଣସି ପାରମ୍ପରିକ ସଂସ୍କାର କରାଗଲା ନାହିଁ । ବିଶ୍ୱନାଥ ସେ ସବୁ ଉଡ଼ାଇ ଦେଇ କହିଥିଲେ—

ଅନ୍ତର୍ଗତୋ ଯଦି ହରିଃ
ତପସା ତତଃ କିମ୍ ?
ନାନ୍ତର୍ଗତୋ ଯଦି ହରିଃ
ତପସା ତତଃ କିମ୍ ?

ଏ ମଧ୍ୟରେ ନାନା ଦୁର୍ଘଟଣା ଘଟି ବିଶ୍ୱନାଥଙ୍କ ମନକୁ ଭାଙ୍ଗି ଦେଲା । କେହି ଦୁର୍ବଳହୃଦୟ ହୋଇଥିଲେ ବିଶ୍ୱାସ କରିଥାନ୍ତା ଯେ ଧର୍ମାନ୍ତର ଗ୍ରହଣ କରିବାରୁ ଏସବୁ ଘଟୁଛି । କିନ୍ତୁ ବିଶ୍ୱନାଥ ନିଜ ହୃଦୟକୁ ବଜ୍ରରେ ଦୃଢ଼ ଶାଣିତ କରିଥିଲେ । ସବୁ ବିପଦ ସହ୍ୟ କରିବାଲାଗି ଭଗବାନ୍ ତାଙ୍କ ଅନ୍ତରରେ ଅସୀମ ଧୈର୍ଯ୍ୟ ଦେଇଥିଲେ ।

ଅନୁଗତ ଭ୍ରାତାଭଗ୍ନୀଙ୍କୁ ମଣିଷ କରିବାଲାଗି ତାଙ୍କୁ ବହୁ ଦୁଃଖକଷ୍ଟ ସହିବାକୁ ପଡ଼ିଥିଲା । କିନ୍ତୁ ନିଷ୍ଠୁର କାଳର ବିବେଚନାରେ ସେ ସବୁ ଗୌଣ । ଏହିଭଳି ଘଟଣାକୁ ଦୁର୍ଭାଗ୍ୟର ବିଡମ୍ବନା ବୋଲି କୁହାଯାଇ ପାରେ । ଏଣ୍ଟ୍ରାନ୍ସ ପରୀକ୍ଷାରେ ଭୋଳାନାଥର ବୃତ୍ତିଲାଭ ଓ ଉଦରାମୟରେ ମୃତ୍ୟୁ ସମ୍ବାଦ ଏକାଦିନକେ ମିଳିଥିଲା । ଲୋକନାଥ ଏଲ୍. ଏମ୍. ପି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କେନ୍ଦ୍ରାପଡ଼ା ଡାକ୍ତରଖାନାରେ ଡାକ୍ତରଭାବେ ଅବସ୍ଥାପିତ ହୋଇଥିଲା । ଅବସ୍ଥାନର ମାତ୍ର ୩ ଦିନ ପରେ ଯାଜପୁରକୁ ତାର ବଦଳି ହେଲା । ସେଠାରେ ମାତ୍ର ୨ ଦିନ କାର୍ଯ୍ୟ କଲାପରେ ସେ ବିସୂଚିକା ରୋଗରେ ପ୍ରାଣତ୍ୟାଗ କଲା । ଏଥିରେ ବିଶ୍ୱନାଥ ଦୁଇବାହୁ ଛିଣ୍ଡି ପଡ଼ିବାର ବ୍ୟଥା ଅନୁଭବ କରିଥିଲେ । ଘୋର ଦୁଶ୍ଚିନ୍ତା ଫଳରେ ସେ ଦୀର୍ଘକାଳ ଶଯ୍ୟାଗତ ହୋଇଥିଲେ । ତାଙ୍କର ଜୀବନସଂଶୟ ଉପସ୍ଥିତ ହୋଇଥିଲା । ଅସୀମ ଧୈର୍ଯ୍ୟ ଓ ଭଗବଦ୍‌ବିଶ୍ୱାସ ଯୋଗୁଁ ସେ ଅଚିରେ ଆରୋଗ୍ୟ ଲାଭ କଲେ ।

ପ୍ରିୟଜନବିୟୋଗ, ବନ୍ଧୁ କୁଟୁମ୍ବଙ୍କ ସ୍ନେହସହାନୁଭୂତିର ଅଭାବ, ସ୍ୱଜାତିର ଘୃଣା, ପଡ଼ୋଶୀଙ୍କ ବିଦ୍ୱେଷ ଓ ଘୋର ଅର୍ଥାଭାବ ମଧ୍ୟରେ ଭକ୍ତକବି ମଧୁସୂଦନ ହିଁ ଥିଲେ ତାଙ୍କର ଏକମାତ୍ର ଭରସା । ସେ ସ୍ୱ ପ୍ରତିଷ୍ଠିତ କଟକ ଟାଉନ ଭିକ୍ଟୋରିଆ ସ୍କୁଲ (ଏବେ ଭକ୍ତମଧୁ ବିଦ୍ୟାପୀଠ)ରେ ତାଙ୍କ ନିଯୁକ୍ତିବ୍ୟବସ୍ଥା କରିଦେଇଥିଲେ । ବିଶ୍ୱନାଥ ଅକୂଳ ସମୁଦ୍ରରେ ଭାସୁଥିବାବେଳେ ଥଳ ପାଇଗଲେ ଯେପରିକି ।

ଆର୍ଥିକ ଦୁରବସ୍ଥାରୁ ରକ୍ଷା ପାଇଗଲେ; କିନ୍ତୁ ତାଙ୍କୁ ତୀବ୍ର ପ୍ରତିକୂଳ ସାମାଜିକ ଦୁରବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଆପଣା ଜାତି ଧର୍ମ, ଆପେ ଛଡ଼ାଇଥିବା ଦୁଃଖ, ବିଶ୍ୱନାଥ ବିଚଳିତ ହେଉ ନଥିଲେ । ବରଂ ମତାନ୍ଧତା, କୁସଂସ୍କାର ବିରୁଦ୍ଧରେ ଯୁଦ୍ଧ କରୁଛନ୍ତି ବୋଲି ତାଙ୍କ ମନରେ ଗୌରବ ବୋଧ ଜାଗ୍ରତ ହେଉଥିଲା ।

ସତ୍ୟପ୍ରତିଷ୍ଠା ଲାଗି ସେ ସମସ୍ତ ଲାଞ୍ଛନା, ଅପମାନ ମଥା ପାତି ସହି ନେଉଥିଲେ । ଧର୍ମାନ୍ତର ଗ୍ରହଣ ପରେ ସେ ଘରକୁ ଗଲେ; ତାଙ୍କୁ ଅଜାତିଆଙ୍କ ପରି ବାହାର ଘରେ ( ଗୁହାଳ ଘରେ ) ରହିବାକୁ ଦିଆ ହେଉଥିଲା । କାଳେ ବାସନକୁସନ ମାରା ହୋଇଯିବ, ଏଥିଲାଗି ତାଙ୍କୁ କଦଳୀପତ୍ରରେ ଖାଇବାକୁ ଦିଆହେଉଥିଲା । ପାଣି ପିଉଥିଲେ ଛେଲୁଆ ବା ଖଡ଼େଇରେ, ବସୁଥିଲେ ବା ଶୋଉଥିଲେ ଖଜୁରି ପଟିରେ ।

ଅକାଡ଼ଆ ବା ଏକଘରକିଆ ହେବା ଭୟରେ ବନ୍ଧୁବର୍ଗ ବା଼ ଆଡ଼େଇ ଯାଉଥିଲେ, କେହି କଥାଭାଷା କରୁ ନଥିଲେ ।

ପତ୍ନୀଙ୍କୁ ସଙ୍ଗରେ ନେବା ପ୍ରଶ୍ନ ଉଠାଇବାରୁ ପିତା କହିଲେ—ପତିର ଧର୍ମ ପତ୍ନୀ ଗ୍ରହଣ କରିବା ଉଚିତ । ଜାନକୀ ଦେବୀ ପତିଙ୍କ ଅନୁଗତା ହେଲେ । କୁଳଚନ୍ଦ୍ରମା ୫ ବର୍ଷର ପୁଅ ମାୟାଧର ଜନ୍ମିତ ଥିବା ସମୟରେ ପିତାମାତାଙ୍କୁ କଟକ ଯିବାକୁ ହେଲା । ସ୍ନେହମୟୀ ଜନନୀ ପକ୍ଷରେ ଏହା ଏକ ଅଗାଧ ସାଧନା । କିନ୍ତୁ ସ୍ୱାମୀର ପ୍ରେମ ହିଁ ବଳୀୟାନ୍ ହୋଇଥିଲା । ପିତା ମାତା ବ୍ରାହ୍ମ; କିନ୍ତୁ ପୁଅ ବ୍ରାହ୍ମଣଭାବେ ଗ୍ରାମରେ ବଢ଼ି ବଡ଼ବାପ ଓ ବୁଢ଼ୀମାଆଙ୍କର ଆନନ୍ଦ ବର୍ଦ୍ଧନ କରିଥିଲା । ଏହିପ୍ରକାରେ ପରିବାର ବିଚ୍ଛିନ୍ନ ହୋଇଗଲା ।

ପତ୍ନୀଙ୍କୁ କଟକ ଆଣିବା ପରେ ଆର୍ଥିକ ଅବସ୍ଥା ଶୋଚନୀୟତର ହୋଇଥିଲା । ଟାଉନ୍ ଭିକ୍ଟୋରିଆ ମାଇନର ସ୍କୁଲର ପ୍ରଧାନ ଶିକ୍ଷକଭାବେ ସେ ମାସକୁ ମାତ୍ର ୨୫ ଟଙ୍କା ଦରମା ପାଉଥିଲେ । ଟିଉସନରୁ ଯତ୍ସାମାନ୍ୟ ଆୟ ହେଉଥିଲା, କୌଣସିମତେ ସେଥିରେ ସେ ସଂସାର ଚଳାଉଥିଲେ । ଅଭାବ ଅନାଟନ ମଧ୍ୟରେ ହିଁ ପିଲାମାନଙ୍କୁ ଉଚ୍ଚଶିକ୍ଷା ଦେଇ ମଣିଷ କରିଥିଲେ । ସେ ସର୍ବତୋଭାବେ ନାରୀଶିକ୍ଷାର ପୋଷକ ଥିଲେ; ଜ୍ୟେଷ୍ଠା କନ୍ୟା ନର୍ମଦା ଓ କନିଷ୍ଠା କନ୍ୟାଙ୍କୁ କଲିକତାର ବେଥୁନ କଲେଜରେ ପଢ଼ାଇ ବି. ଏ. ପାସ କରାଇଥିଲେ । ଜ୍ୟେଷ୍ଠପୁତ୍ର ମାୟାଧରେ ପୁତ୍ରମାନଙ୍କୁ କଟକ ଆଣି ଉଚ୍ଚଶିକ୍ଷା ଦେଇଥିଲେ । ଦ୍ୱିତୀୟ ପୁତ୍ର ମହାନନ୍ଦ ତାଙ୍କ ଅନ୍ତେ କିଛିକାଳ 'ଉତ୍କଳ ସାହିତ୍ୟ' ଚଳାଇଥିଲେ । ନାତି ପୂର୍ଣ୍ଣାନନ୍ଦଙ୍କ ଅମଳରେ ହିଁ ଉତ୍କଳ ସାହିତ୍ୟ ପ୍ରେସ୍ ବିକ୍ରୀ ହୋଇଗଲା । ଏହି ମହାନ୍ ସାହିତ୍ୟପ୍ରେମୀଙ୍କ ସ୍ମୃତି ରକ୍ଷାଲାଗି ସରକାର ବା ଜନସାଧାରଣ ଏପର୍ଯ୍ୟନ୍ତ କିଛି କରିନାହାନ୍ତି ।

ବିଶ୍ୱନାଥ ଜଣେ ସ୍ୱାଧୀନତାସଂଗ୍ରାମୀ । ଜାତୀୟ କଂଗ୍ରେସରେ ଯୋଗ ଦେଲାପରେ ସେ ପାଞ୍ଚ ବର୍ଷପାଇଁ ବିହାର ଓଡ଼ିଶା ବ୍ୟବସ୍ଥାପକସଭାର ସଭ୍ୟଭାବେ ନିର୍ବାଚିତ ହୋଇଥିଲେ । ପ୍ରକୃତିଦେବୀ ବାକ୍‌ଶକ୍ତିକୁ ସେ ଏହି କାର୍ଯ୍ୟରେ ଲଗାଇଥିଲେ ଓ ସମଗ୍ର ଓଡ଼ିଶାରେ ଜାଗରଣର ଏକ ତରଙ୍ଗ ଖେଳାଇ ଦେବାକୁ ସମର୍ଥ ହୋଇଥିଲେ । ଇଂରାଜ ସରକାର ତାଙ୍କ ଉପରେ କଡ଼ା ନଜର ରଖିଥିଲେ ।

'ପୁରୁଷ ସିଂହ ଗାନ୍ଧୀ' ବୋଲି ସେ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ସେ ଓଡ଼ିଆରେ ଭାଷଣ ଦେଇଥିଲେ । ସେକାଳରେ ଏହା ଏକ ଅସମ୍ଭବ ଘଟଣା ଥିଲା । ପାଟି ଶୁଣି ହେଲା—"ମାନ୍ୟବର ସଭ୍ୟ ଓଡ଼ିଆରେ କହି ପାରିବେ ନାହିଁ !" ତେଜସ୍ୱୀ ବିଶ୍ୱନାଥ ଏଥିରେ ଦବି ନ ଯାଇ କହିଲେ—"ଓଡ଼ିଆ ଏକ ସ୍ୱୀକୃତ

ପ୍ରଚୀନ ଭାଷା । ଏହାଙ୍କୁ ଅସମ୍ମାନ କରିବାର ଅଧିକାର କାହାରି ନାହିଁ ।" ବାଚସ୍ପତି ସ୍ୱୟଂ ଲାଟସାହେବ ଶୁଣି ଦେଲେ ଯେ ମାନ୍ୟବର ସଭ୍ୟ ମାତୃଭାଷାରେ ଭାଷଣ ଦେବାରେ କୌଣସି ବୈଧାନିକ ବାଧା ନାହିଁ ।

ବିଶ୍ୱନାଥ ଓଡ଼ିଆପ୍ରାଣ । ଓଡ଼ିଆ ସାହିତ୍ୟର ମର୍ଯ୍ୟାଦା ରକ୍ଷା ଓ ଗୌରବ ବୃଦ୍ଧି ଲାଗି ସେ ଯଥାସମ୍ଭବୋନାସ୍ତି ଚେଷ୍ଟା କରିଥିଲେ । ଏଫ୍. ଏ. ଓ ବି. ଏ. ପରୀକ୍ଷାରେ ଓଡ଼ିଆ ରଚନା ବିଷୟରେ ପ୍ରଶ୍ନ କରିବା ଲାଗି କଟକ କଲେଜର ଓଡ଼ିଆ ଛାତ୍ରଗଣ କଲିକତା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ନିକଟରେ ପ୍ରାର୍ଥନା କରି ସଫଳମନୋରଥ ହୋଇଥିଲେ । ଗ୍ରେଟ ଲାଟ୍‌ଙ୍କ କାଲେଜର ଆଗମନ କାଳରେ ଛାତ୍ରମାନେ ଏକ ଆବେଦନରେ ଏ ବିଷୟ ପ୍ରତି ମହାଶୟଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ବିଶ୍ୱନାଥଙ୍କ ପ୍ରେରଣା ଏହା ପଛରେ ଥିଲା । ଆବେଦନ ସଫଳ ହେବାରେ ବିଶ୍ୱନାଥ 'ଉତ୍କଳ ସାହିତ୍ୟ'ରେ ଲେଖିଥିଲେ—

"ଆମ୍ଭେମାନେ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ଯେ ବିଶ୍ୱବିଦ୍ୟାଳୟର ଏଫ୍. ଏ., ବି. ଏ. ପରୀକ୍ଷାରେ ଓଡ଼ିଆ ଭାଷାର ନ୍ୟାଯ୍ୟ ଦାବୀ ଗୃହୀତ ହୋଇଅଛି । ଅନେକ ସମୟରେ ଓଡ଼ିଆ ଭାଷାର ଦୁର୍ଦ୍ଦଶା କଥା ଭାବି ଆମ୍ଭେମାନେ ମର୍ମବ୍ୟଥା ଅନୁଭବ କରିଅଛୁଁ । ପରେ ତାହାରେ ଯେଉଁ ଓଡ଼ିଆ ଭାଷାର ଲାଞ୍ଛନା, ଅନେକେ 'ଘରଭିଙ୍ଗି କୁମ୍ଭୀର' ହୋଇ ଯେଉଁ ଓଡ଼ିଆ ଭାଷା ମସ୍ତକରେ ପଦାଘାତ କରିବାକୁ କୁଣ୍ଠିତ ନୁହନ୍ତି, ଆଜି ବିଶ୍ୱବିଦ୍ୟାଳୟରେ ତାହାର ଅଧିକାରବୃଦ୍ଧି ଦେଖି ପ୍ରାଣରେ ଅଭୂତପୂର୍ବ ଆନନ୍ଦ ଜାତ ହୋଇଅଛି ।"

ଓଡ଼ିଆ ଛାତ୍ରମାନଙ୍କୁ ସାଧୁବାଦ ଦେବାପରେ ସେ ପ୍ରଶ୍ନ ଉଠାଇଛନ୍ତି—ଓଡ଼ିଆ ଛାତ୍ରମାନେ କି ଯଥାର୍ଥ ଓଡ଼ିଆ ଭାଷାର ସମୁଚିତ ଚର୍ଚ୍ଚା କରନ୍ତି ବା କରିବାପାଇଁ ପ୍ରସ୍ତୁତ ?

ରାଜଭାଷା ଇଂରାଜୀ ତୁଳନାରେ 'ଦେଶଭାଷା' ନ୍ୟୂନ ଓ ନଗଣ୍ୟ । ଦେଶୀୟ ସାହିତ୍ୟ ଉଚ୍ଚ ଶ୍ରେଣୀର ପାଠ୍ୟ ହେବାଲାଗି ଅନୁପଯୋଗୀ—ଇଂରାଜୀ ଶିକ୍ଷାଦୃପ୍ତ ବ୍ୟକ୍ତିମାନଙ୍କର ମନେ ଏହାହିଁ ଥିଲା ବିବେଚନା । 'ଦେଶଭାଷା'ର ମାନ ବଢ଼ାଇ ଅମୁକ ଭାଷାମାନଙ୍କର ସମକକ୍ଷ କରିବା ଥିଲା ବିଶ୍ୱନାଥଙ୍କର ଅନ୍ତରଗତ କାମନା । ଏହା ଚରିତାର୍ଥ କରିବା ଲାଗି ଯେପରି କି ତାଙ୍କର ଜୀବନକାଳ ମଧ୍ୟରେ ଦେଶଭାଷା ବିଶ୍ୱବିଦ୍ୟାଳୟ ସ୍ତରରେ ସମୁଚିତ ଉଚ୍ଚ ମର୍ଯ୍ୟାଦା ଲାଭ କଲା । ଆନନ୍ଦରେ ଉଦ୍‌ବେଳିତ ହୋଇ ସେ 'ଉତ୍କଳ ସାହିତ୍ୟ' ( ତ୍ରୟୋବିଂଶ ବର୍ଷ ) ରେ ଲେଖିଛନ୍ତି—

"କଲିକତା ବିଶ୍ୱବିଦ୍ୟାଳୟ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଆସନ ଲାଭ କରିଅଛି । ଏହାର ଜୀବନୀ ଶକ୍ତି ଅସାଧାରଣ । ସହସ୍ର କଠୋର ବିଘ୍ନ ଓ ବିଧାନ ଭିତରେ ଆପଣା ବାଟ କାଟି କ୍ରମଶଃ ଅନ୍ୟ ଦିଗରେ କ୍ଷେତ୍ର ପ୍ରସାରିତ

କରିଅଛି । ଏହି ବିଶ୍ୱବିଦ୍ୟାଳୟ ଅନାଦୃତ ଅବଜ୍ଞାତ ଦେଶଭାଷାକୁ ଗୌରବ ଦାନ କରିଅଛି । ଆଜି ପୁଣି ତାକୁ ନୂତନ ଗୌରବ-ମୁକୁଟ ପିନ୍ଧାଇବାର ବ୍ୟବସ୍ଥା କରିଅଛି । ଦେଶଭାଷାରେ ଏମ୍. ଏ. ପରୀକ୍ଷା କେତେକାଳ ପୂର୍ବେ କେତେକ ହାସ୍ୟକର ପ୍ରସ୍ତାବ ବୋଲି ଅନେକ ବିଜ୍ଞ ବ୍ୟକ୍ତିମାନଙ୍କ ନିକଟରେ ପ୍ରତୀୟମାନ ହେଉଥିଲା । ଆଜି କଲିକତା ବିଶ୍ୱବିଦ୍ୟାଳୟ ତାହାକୁ ବାସ୍ତବ ଘଟଣାରେ ପରିଣତ କରିଅଛି । ୧୩ଟି ଦେଶ ଭାଷା ଏହି ପରୀକ୍ଷାର ଅନ୍ତର୍ଭୁକ୍ତ ହୋଇଅଛି । ଆନନ୍ଦର କଥା, ଓଡ଼ିଆଭାଷା ତନ୍ମଧ୍ୟରେ ଗୋଟିଏ ।"

ଦୂରଦୃଷ୍ଟିସମ୍ପନ୍ନ ମହୋଦାର କୁଳପତି ସାର୍ ଆଶୁତୋଷ ମୁଖାର୍ଜିଙ୍କ କଥା ବିଶ୍ୱନାଥ ଉଲ୍ଲେଖ କରିନାହାନ୍ତି । କିନ୍ତୁ ସେ ପ୍ରକୃତ ପ୍ରବର୍ତ୍ତକ, 'ଦେଶ ଭାଷାର' ବିପୁଳ ବିକାଶ ଓ ଭବିଷ୍ୟ ମହତ୍ତ୍ୱର ଭୂମିକାର ସ୍ୱପ୍ନ ଦେଖିଥିଲେ । କଲିକତା ବିଶ୍ୱବିଦ୍ୟାଳୟର ପ୍ରାଦେଶିକ ଭାଷା ଓ ସାହିତ୍ୟ ଅଧ୍ୟାପନ ଯୋଜନାରେ ଓଡ଼ିଆ ଅନ୍ତର୍ଭୁକ୍ତ ହୋଇଥିଲା । କେନ୍ ବିମ୍ସ୍ ଅନ୍ୟାନ୍ୟ ଭାଷା ମଧ୍ୟରେ ଓଡ଼ିଆର ବ୍ୟାକରଣ ଲେଖି ଏଥିପ୍ରତି ଭାରତୀୟ ବିଦ୍ୱାନ୍‌ଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସାର୍ ଆଶୁତୋଷଙ୍କ ନିବେଦନ ଫଳରେ ସାହିତ୍ୟପ୍ରେମୀ ସାର୍ ବୀର ମିତ୍ରୋଦୟ ସିଂହଦେବ ଉକ୍ତ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷାର ସମ୍ମାନ ଓ ବିକାଶ ଲାଗି ମୁକ୍ତହସ୍ତ ହୋଇଥିଲେ । ବିଶ୍ୱନାଥ ମହାରାଜାଙ୍କ ମହତ୍ ଦାନ ଉପରେ 'ଉତ୍କଳ ସାହିତ୍ୟ' (ତ୍ରୟୋବିଂଶ ବର୍ଷ) ରେ ନିମ୍ନ ମନ୍ତବ୍ୟ ପ୍ରକାଶ କରିଛନ୍ତି—

"ଉତ୍କଳ ଖଣ୍ଡରେ ଜାତୀୟ କଲ୍ୟାଣାର୍ଥେ ସୁମହତ୍ ଦାନର ସଂଖ୍ୟା ଅଧିକ ନୁହେଁ ଏବଂ ଜାତୀୟ ଗୌରବ ବଢ଼ାଇବା ପକ୍ଷରେ ଧନିକମାନଙ୍କର ଉଦାର ଓ ସୁବିବେଚନାପୂର୍ଣ୍ଣ ଦାନ ଏକାନ୍ତ ଆବଶ୍ୟକ । ସାଧାରଣ ଭାବରେ ଏହା କୀର୍ତ୍ତି ସ୍ଥାପନର ମଧ୍ୟ ଗୋଟିଏ ବଡ଼ ଉପାୟ—ଏଭଳି ଦାତାମାନେ ଜାତିର ହୃଦୟରେ ଚିରକାଳ ପାଇଁ ସମ୍ମାନର ଆସନ ଅଧିକାର କରନ୍ତି । ଆଜି ଆମ୍ଭେମାନେ ସ୍ୱର୍ଣ୍ଣପୁରାଧୀଶ୍ୱର ସାର୍ ବୀରମିତ୍ରୋଦୟ ସିଂହଦେବ ଧର୍ମନିଧି ମହୋଦୟ ଓ ତଦୀୟ ରାଣୀ ମହୋଦୟାଙ୍କ ମହତ୍ ଦାନ କଥା ସ୍ମରଣ କରି ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁଁ । ମହାରାଜା ବାହାଦୁର କେତେକ ବର୍ଷ ପୂର୍ବେ ଉତ୍କଳ ସାହିତ୍ୟ ସମାଜର ସ୍ଥାୟୀ ପାଣ୍ଠି ସ୍ଥାପନ ଉଦ୍ଦେଶ୍ୟରେ ଦାନ କରିଥିବା ଇତିକଥା ସମସ୍ତଙ୍କୁ ଜଣାଅଛି । ଇତି ମଧ୍ୟରେ କଲିକତା ବିଶ୍ୱବିଦ୍ୟାଳୟରେ ଏମ୍. ଏ. ଶ୍ରେଣୀ ପାଇଁ ଜଣେ ଅଧ୍ୟାପକର ବେତନ ସ୍ୱରୂପ ବାର୍ଷିକ ୫୧୮୦୦ ଟଙ୍କା ଦାନର ବ୍ୟବସ୍ଥା କରିଅଛନ୍ତି, ଏହି ଉଦ୍ଦେଶ୍ୟରେ ଉକ୍ତ ବିଶ୍ୱବିଦ୍ୟାଳୟ ହସ୍ତରେ ୫୫୨,୦୦୦ ଟଙ୍କାର କମ୍ପାନୀ କାଗଜ ଗଚ୍ଛିତ ହୋଇଅଛି । ପୁଣି ଉକ୍ତ ଶ୍ରେଣୀରେ ପାଠ୍ୟ ହେବା ପାଇଁ ମହାରାଜା ବାହାଦୁର "ଓଡ଼ିଆ ସାହିତ୍ୟ ପରିଚୟ" ନାମରେ

ଖଣ୍ଡିଏ ପୁସ୍ତକ ସଙ୍କଳନ କରୁଛନ୍ତି । ଏତଦ ମହାରାଣୀ ମହୋଦୟା କଟକର ରେଭେନ୍ସା କଲେଜରେ ଏମ୍. ଏ. ଶ୍ରେଣୀ ଫିଟାଇବା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କ ହସ୍ତରେ ଏକକାଳୀନ ଟ ୫୦,୦୦୦ ଙ୍କା ଅର୍ପଣ କରିଅଛନ୍ତି । ଏହି ବିପୁଳ ଦାନ ଚିରସ୍ମରଣ ନିମନ୍ତେ ମହାରାଣୀଙ୍କ ନାମକୁ ନିଶ୍ଚୟ ଓଡ଼ିଆମାନେ ହୃଦୟରେ ସ୍ୱର୍ଣ୍ଣାକ୍ଷରରେ ମୁଦ୍ରିତ କରିବେ ।"

ପଣ୍ଡିତ ନୀଳକଣ୍ଠ କଲିକତାର ଓଡ଼ିଆ ଅଧ୍ୟାପନା ଦାୟିତ୍ୱ ତୁଲାଇବା ପରେ ବିଜୟଚନ୍ଦ୍ର ମଜୁମ୍‌ଦାର ଓଡ଼ିଆ ଅଧ୍ୟାପକ ହୋଇଥିଲେ । ବିଶ୍ୱନାଥଙ୍କ ଘନିଷ୍ଠ ବନ୍ଧୁ ସୁକବିଙ୍କ ସାହାଯ୍ୟରେ ସେ 'ଓଡ଼ିଆ ସାହିତ୍ୟ ସନ୍ଦେଶ' ଗ୍ରନ୍ଥ ଦୁଇଟି ଭାଗରେ ସଙ୍କଳିତ ଓ ମୁଦ୍ରିତ କରାଇଥିଲେ । ଏହାର କେତେକାଂଶ ଓଡ଼ିଆ ଏମ୍. ଏ. ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥିଲା । ଓଡ଼ିଶାର କୌଣସି ବରିଷ୍ଠ ସାହିତ୍ୟିକଙ୍କୁ ନ ପଚାରି ଏହି କାମ ପ୍ରସ୍ତୁତ ହୋଇଥିବାରୁ କ୍ଷୁବ୍ଧ ହୋଇ ବିଶ୍ୱନାଥ ଲେଖିଥିଲେ—

"ପାଠ୍ୟ ବିଷୟ ନିର୍ଣ୍ଣୟ ସମ୍ବନ୍ଧରେ ଆମ୍ଭେମାନେ ଜାଣି ପାରୁନାହୁଁ । ମାତ୍ର ଆଗାମୀ ଜୁଲାଇ ମାସରୁ ଏହି ପରୀକ୍ଷାପାଇଁ ଛାତ୍ରାର୍ଥୀ ଗୃହୀତ ହେବେ ଏବଂ ନିୟମିତ ଅଧ୍ୟାପନାଦି ଆରମ୍ଭ ହେବ, ଏହା ସ୍ଥିର ହୋଇଅଛି । ଯେତେଦୂର ଆଭାସ ମିଳିଅଛି ପରୀକ୍ଷାର୍ଥୀମାନଙ୍କୁ ନିର୍ବାଚିତ ୧୩ ଭାଷା ମଧ୍ୟରୁ ଦୁଇଟିରେ ସମ୍ୟକ୍ ବ୍ୟୁତ୍ପତ୍ତି ଲାଭ କରିବାକୁ ହେବ । ତଦ୍ୱାରା ଭାରତୀୟ ବିଭିନ୍ନ ପ୍ରଦେଶର ଭାଷାମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଓ ଆଦାନପ୍ରଦାନର ପଥ କ୍ରମଶଃ ପ୍ରଶସ୍ତ ହେବ ।

ଓଡ଼ିଆ ଭାଷାର ପାଠ୍ୟ ପୁସ୍ତକ କାହାର ପରାମର୍ଶରେ କିପରି ସ୍ଥିରୀକୃତ ହୋଇଅଛି, କହିପାରୁ ନାହୁଁ । ଶୁଣିଥିଲୁଁ, ଆମ୍ଭମାନଙ୍କର ଶ୍ରଦ୍ଧେୟ ବନ୍ଧୁ ବିଜୟଚନ୍ଦ୍ର ମଜୁମ୍‌ଦାରଙ୍କ ଉପରେ ଏହି ଭାର ଅର୍ପିତ ହୋଇଥିଲା । ବିଜୟବାବୁ ସୁପଣ୍ଡିତ, ଭାଷାତତ୍ତ୍ୱବିତ୍ । କିନ୍ତୁ ଓଡ଼ିଆ ଭାଷା କ୍ଷେତ୍ରରେ ତାଙ୍କର ଜ୍ଞାନ ଓ ବିଚାର ଏକ୍ଷେତ୍ରରେ ଯଥେଷ୍ଟ ହୋଇ ନପାରେ । ଅନ୍ତତଃ ଉପଯୁକ୍ତ ପରାମର୍ଶ ଦେବାଲାଗି କଣ ସାରା ଉତ୍କଳଖଣ୍ଡରେ କେହି ଜଣେ ଅଧେ ଲୋକ ମିଳିଲେ ନାହିଁ ? ଆମ୍ଭମାନଙ୍କର ବିଶ୍ୱାସ, ତାଙ୍କ ପ୍ରାର୍ଥିଅଂଶରେ ଭାଗ ନ ବସାଇ ପରାମର୍ଶ ଦେବାଭଳି ଲୋକର ଏକାନ୍ତ ଅଭାବ ହୋଇ ନଥାନ୍ତା ।"

ବିଶ୍ୱନାଥ ଜଣେ ଓଡ଼ିଆ ଲୋକସାହିତ୍ୟର ମୁଖ୍ୟ ପୃଷ୍ଠପୋଷକ ଥିଲେ; 'ଉତ୍କଳ ସାହିତ୍ୟ'ରେ ଗୋପାଳଚନ୍ଦ୍ର ପ୍ରହରାଜ ଓ ତାରିଣୀଚରଣ ରଥଙ୍କ ସଂଗୃହୀତ ଲୋକଗଳ୍ପ ସବୁ ପ୍ରକାଶିତ ହେଉଥିଲା । କୌଣସି ବନ୍ଧୁ 'ଚକୁଳିଆ ପଣ୍ଡା' ଗଳ୍ପ ଭଳି ସାମାନ୍ୟ ବିଷୟ ପ୍ରକାଶ ନକରି ଗୁରୁତର ଐତିହାସିକ ବିଷୟ ପ୍ରକାଶ କରିବାକୁ କହିବାରୁ ବିଶ୍ୱନାଥ ଉତ୍କଳସାହିତ୍ୟରେ ନିମ୍ନ ମନ୍ତବ୍ୟ ଦେଇଥିଲେ—

"ଚକୁଳିଆ ପଣ୍ଡା ପରି ବିଷୟଗୁଡ଼ିକୁ ଆମେ ସାମାନ୍ୟ ବୋଲି ଉପେକ୍ଷା କରି ନ ପାରୁଁ । ଓଡ଼ିଶାରେ ଲୁପ୍ତପ୍ରାୟ କାହାଣୀଗୁଡ଼ିକୁ ସଂଗ୍ରହ କରି ପ୍ରକାଶ କରିବା କୌଣସି ପ୍ରକାରେ ଅଳ୍ପ ପ୍ରୟୋଜନୀୟ ହୋଇ ନପାରେ । ସୂକ୍ଷ୍ମରୂପେ ଆଲୋଚନା କଲେ, ଏହି ସମସ୍ତ କାହାଣୀ ମଧ୍ୟରେ ପ୍ରାଚୀନ ସମାଜର ଭାବ ଓ ରୀତିନୀତିର ଅନେକ ପରିଚୟ ମିଳିପାରିବ ଏବଂ ତନ୍ମଧ୍ୟରେ କଳ୍ପନାର ବିକାଶ ଯଥେଷ୍ଟ ପରିମାଣରେ ଲକ୍ଷିତ ହୁଏ । ତାହା ଛଡ଼ା ଏହା ଶିଶୁସାହିତ୍ୟର ଗୋଟିଏ ଉପାଦେୟ ଅଙ୍ଗ । ସୁତରାଂ ଏହା କୌଣସି ପ୍ରକାରେ ଉପେକ୍ଷଣୀୟ ହୋଇ ନପାରେ ।"

ସେ ଉତ୍କଳସମ୍ମିଳନୀର ଜଣେ ମୁଖ୍ୟ କର୍ମୀ ଓ ପ୍ରବକ୍ତା ଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଲାଗି ଯଥାସମ୍ଭବ ଚେଷ୍ଟିତ ହୋଇଥିଲେ; କିନ୍ତୁ ପୂର୍ଣ୍ଣାଙ୍ଗ ଉତ୍କଳ ଦେଖିବିବାର ସୌଭାଗ୍ୟ ତାଙ୍କର ହୋଇ ନଥିଲା ।

ସେ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ଥିଲେ, ଉତ୍କଳସାହିତ୍ୟ ପତ୍ରିକାରୁ ସମ୍ମିଳନୀ ଓ 'ଉତ୍କଳସାହିତ୍ୟସମାଜ'ର ମୁଖପତ୍ର ସଦୃଶ କରିଥିଲେ । ସମ୍ମିଳନୀ ଓ ସମାଜର ବାର୍ଷିକ ବିବରଣୀ ବିଶ୍ୱନାଥଙ୍କ କଠୋର ମନ୍ତବ୍ୟ ଓ ଘୋଷଣାସହ ଏଥିରେ ପ୍ରକାଶିତ ହେଉଥିଲା । ଏହି ଉଭୟ ଅନୁଷ୍ଠାନ ହିଁ ଉତ୍କଳୀୟ ଜାତୀୟ ଜାଗରଣର ମୁଖ୍ୟ ନିମିତ୍ତ ଥିଲା । ସଂଗଠକ ଓ ବକ୍ତା ଭାବରେ ସେ ଏହି ଉଭୟ ଅନୁଷ୍ଠାନରେ ନେତୃତ୍ୟ ଆସନ ଅଧିକାର କରୁଥିଲେ । କିନ୍ତୁ ସ୍ୱାଧୀନତାସଂଗ୍ରାମରେ ବିଶ୍ୱନାଥ ପଛରେ ପଡ଼ିଗଲେ, ନରମପନ୍ଥୀ ବୋଲି ସେ ସମାଲୋଚିତ ହୋଇଥିଲେ । ସେ 'ସତ୍ୟ ସମାଚାର' ପତ୍ରିକା ପ୍ରକାଶ କରି କଂଗ୍ରେସକୁ ସମାଲୋଚନା କଲେ । ତାର ସହଯୋଗୀ ବନ୍ଧୁ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସାରା ଜୀବନର କୃତି 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପ୍ରକାଶ ଲାଗି ସେ ସରକାରଙ୍କ ଦ୍ୱାରସ୍ଥ ହୋଇଥିଲେ । ତାପରେ ସ୍ୱାଧୀନତା ସଂଗ୍ରାମ ଇତିହାସରୁ ତାଙ୍କ ନାମ ପୋଛି ହୋଇଗଲା ଓ ସାହିତ୍ୟ ଲାଗି ପ୍ରାଣପାତ କରିଥିଲେ ହେଁ ତାଙ୍କ ସ୍ମୃତିରକ୍ଷା ଲାଗି କିଛି କରାଗଲା ନାହିଁ; ଏହା ଦୁର୍ଭାଗ୍ୟର ବିଷୟ ।

ନାନା ସଂଘର୍ଷ ମଧ୍ୟରେ ପଡ଼ି ସ୍ୱାଧୀନ ମନୋଭାବ କିଞ୍ଚିତ୍ ମଳିନ ହେଲେ ହେଁ ଏହା ଅକ୍ଷୁଣ୍ଣ ଥିଲା; ସେ ସରକାର ପ୍ରଦତ୍ତ 'ରାୟ ସାହେବ' ଉପାଧି ନମ୍ରଭାବେ ପ୍ରତ୍ୟାଖ୍ୟାନ କରିଥିଲେ ।

'ଉତ୍କଳ ସାହିତ୍ୟ' ପତ୍ରିକା ତାଙ୍କର ସର୍ବଶ୍ରେଷ୍ଠ ସୃଷ୍ଟି । ତା ପୂର୍ବରୁ ସେ ଜଣେ ପ୍ରବନ୍ଧ ଲେଖକଭାବେ ସାଧାରଣରେ ପରିଚିତ ଥିଲେ । 'ସମ୍ବଲପୁର ହିତୈଷିଣୀ'ରେ ତାଙ୍କର କେତେକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । 'ଉତ୍କଳ ସାହିତ୍ୟ' ପ୍ରକାଶ ବେଳେ ତାଙ୍କର ପ୍ରଥମ ସହାୟକ ଥିଲେ ଚନ୍ଦ୍ରମୋହନ ମହାରଣା, ବିଦ୍ୟାବିନୋଦ ମଧୁସୂଦନ ଦାଶ,

ନନ୍ଦକିଶୋର ବଳ, ସାଧୁଚରଣ ରାୟ, କୃଷ୍ଣପ୍ରସାଦ ଚୌଧୁରୀ, ଶ୍ୟାମସୁନ୍ଦର ନନ୍ଦ । ପତ୍ରିକାଟି ଦୁଇବର୍ଷ ଚଳିବା ପରେ ପ୍ରକାଶନ ଅସୁବିଧାରୁ ବନ୍ଦ ହୋଇଗଲା । ତେଣୁ ପତ୍ରିକା ଲାଗି ଏକ ସ୍ୱତନ୍ତ୍ର ପ୍ରେସ୍ ସ୍ଥାପନରେ ସେ ଉଦ୍ୟମୀ ହେଲେ । କିନ୍ତୁ କପର୍ଦ୍ଦକଶୂନ୍ୟ; ସମ୍ବଳ ଶିକ୍ଷକତାରୁ ଲବ୍ଧ ସାମାନ୍ୟ ଦରମା ମାତ୍ର । ବିଶ୍ୱନାଥ ଗୋପାଳଚନ୍ଦ୍ର ପ୍ରହରାଜ, ଗଣେଶ୍ୱର ପୃଷ୍ଟି, ସୁଦର୍ଶନ ନନ୍ଦ ପ୍ରଭୃତିଙ୍କ ସାହାଯ୍ୟରେ ଭିଙ୍ଗାରପୁର ଚୌଧୁରୀଙ୍କଠାରୁ ୩୦୦ ଟଙ୍କା ହାଉଲାତ୍ ଆଣିଲେ । ଗଡ଼ଜାତ ରାଜା ଓ ଜମିଦାରମାନେ ମଧ୍ୟ ସେଥିରେ କିଛି କିଛି ଅର୍ଥ ସାହାଯ୍ୟ କରିଥିଲେ । ମୟୂରଭଞ୍ଜ ମହାରାଜା ଟ ୫୦, ଜୟପୁର ମହାରାଜା ଟ ୭୦ ସାହାଯ୍ୟ ଦେଇଥିଲେ । ୧୯୦୦ ଖ୍ରୀଷ୍ଟାବ୍ଦରେ 'ଉତ୍କଳ ସାହିତ୍ୟ' ପ୍ରେସ୍ ସ୍ଥାପିତ ହେଲା, 'ଉତ୍କଳ ସାହିତ୍ୟ' ପତ୍ରିକା ନିୟମିତଭାବେ ପ୍ରକାଶିତ ହେବାକୁ ଲାଗିଲା । ବିଶ୍ୱନାଥଙ୍କ ବିଦ୍ୱତ୍ତା, ଅଧ୍ୟବସାୟ, ଐକାନ୍ତିକ ନିଷ୍ଠା ଓ ଉତ୍କୃଷ୍ଟ ସମ୍ପାଦନା ଏହି ପତ୍ରିକାକୁ ଏକ ବିଶେଷ ମର୍ଯ୍ୟାଦା ପ୍ରଦାନ କରିଥିଲା । ଏଥିରେ ଲେଖା ପ୍ରକାଶକୁ ଲେଖକ ଗୌରବଜନକ ମନେ କରୁଥିଲେ ।

ବିଶ୍ୱନାଥଙ୍କ ପ୍ରତି ସବୁ ଲେଖକଙ୍କର ଆଦର ଥିଲା । ସେ ଲେଖାଉଥିଲେ, ଲେଖା ଉପରେ କଲମ ଚଳାଉଥିଲେ, ନିଜେ ପ୍ରୁଫ୍ ଦେଖି ପତ୍ରିକାକୁ ନିର୍ଭୁଲ କରିବା ଲାଗି ଚେଷ୍ଟିତ ଥିଲେ । ତାଙ୍କର ଖଣ୍ଡେ ଖଣ୍ଡେ ପତ୍ର ଲେଖକ ମନରେ ଉତ୍ସାହର ଉଜ୍ଜ୍ୱଳ ଦୀପଶିଖା ଜାଳି ଦେଉଥିଲା । ତାଙ୍କ ଲାଗି ବହୁ ଅନାମଧେୟ ଲେଖକ ପଦବାଚ୍ୟ ହୋଇଥିଲେ; ତାଙ୍କର ଜ୍ୱଳନ୍ତ ସିଦ୍ଧି କିନ୍ତୁ ବହୁ ଅସହିଷ୍ଣୁତା ସୃଷ୍ଟି କରିଥିଲା । ଶତ୍ରୁମାନେ ତାଙ୍କ କୁତ୍ସା ରଟନା କରୁଥିଲେ, ପତ୍ରିକା ଯେପରି ପ୍ରକାଶିତ ନ ହୋଇ ପାରିବ, ସେଥିଲାଗି ପରୋକ୍ଷ ଓ ପ୍ରତ୍ୟକ୍ଷ ବ୍ୟବସ୍ଥା କରୁଥିଲେ । ବିଶ୍ୱନାଥ ଲାଞ୍ଛନା, ଅପମାନ ମଧ୍ୟରେ ଦବି ଯିବାର ପାତ୍ର ନୁହନ୍ତି । ପତ୍ରିକାର ସମସ୍ୟା ତାଙ୍କ ପକ୍ଷରେ ଜୀବନ ମରଣ ସମସ୍ୟା । ପତ୍ରିକା ବଞ୍ଚିଲେ ସେ ବଞ୍ଚିବେ । ପ୍ରାଣରେ ଦୃଢ଼ ସଂକଳ୍ପ ଘେନି ସେ ଆଗେଇ ଚାଲିଥାନ୍ତି । କିନ୍ତୁ ନିର୍ଦ୍ଧାରିତ ଏକ ନୁ ପ୍ରତିକୂଳ ।

'ଉତ୍କଳ ସାହିତ୍ୟ'ର ମାସିକ ପ୍ରତ୍ୟେକ ସଂଖ୍ୟାର ମୂଲ୍ୟ ତିନିଅଣା, ଡାକ ମାସୁଲ ସହ ବାର୍ଷିକ ଦେୟ ମାତ୍ର ଦୁଇଟଙ୍କା । କେହି ପାଞ୍ଚଖଣ୍ଡ ବିକିଦେଲେ ବିନା ମୂଲ୍ୟରେ ଖଣ୍ଡିଏ ପତ୍ରିକା ପାଉଥିଲା । ଗରିବ ଗ୍ରାହକ ପ୍ରମାଣ ସହ ଆବେଦନ କଲେ ଅଧା ମୂଲ୍ୟରେ ପତ୍ରିକା ପାଇ ପାରୁଥିଲା । ବିଜ୍ଞାପନ ଛପାଇବାର ମୂଲ୍ୟ ଧାଡ଼ିକୁ ତିନିଅଣା ଥିଲା । ଦେଶର ଅନଗ୍ରସରତା ହେତୁ ବିଜ୍ଞାପନ ବିରଳ ଥିଲା ।

ପାଞ୍ଚବର୍ଷ ମଧ୍ୟରେ ବିଶ୍ୱନାଥଙ୍କୁ ତେର ଶହ ଟଙ୍କା କ୍ଷତି ସହିବାକୁ ପଡ଼ିଥିଲା । ବୁଡ଼ିଯିବା ବେଳକୁ ସେ ବୌଦ୍ଧ, ଅଠମଲ୍ଲିକ, ସମ୍ବଲପୁର, ବରଗଡ଼, ବରପାଲି,

ନରସିଂହପୁର, ବଡ଼ମ୍ବା, ମୟୂରଭଞ୍ଜ ପ୍ରଭୃତି ଗଡ଼ଜାତ ରାଜା, ଜମିଦାର ଓ ଶିକ୍ଷିତ ବ୍ୟକ୍ତିମାନଙ୍କ ଅଗ୍ରେ ପ୍ରାଣରେ କ୍ଷୋଭ ଜଣାଇଥିଲେ, କିନ୍ତୁ ସବୁ ବୃଥା ।

"ଏଣେ ଗ୍ରାମ ଶତ ଅବସ୍ଥାପନ୍ନ ଶିକ୍ଷିତ ଓଡ଼ିଆ ପୁଅଙ୍କ ସହିତ ସାକ୍ଷାତ କରି ଦେଖିଲୁଁ; କେବଳ ନିରାଶା, ବିଷାଦ ବର୍ଦ୍ଧିତ ହେଲା ।"

"୫୦୦ ଖଣ୍ଡ ଛପା, ତହିଁରୁ ୧୦୦ ଖଣ୍ଡ ଉପହାର ! ଅବଶିଷ୍ଟ ୪୦୦ ଖଣ୍ଡ ବିକ୍ରୟ ପାଇଁ ଆଠବର୍ଷ ! ଧନ୍ୟ ଓଡ଼ିଆପୁଅ ! ଧନ୍ୟ ତୁମର ଶିକ୍ଷାଦୀକ୍ଷା, ଆକାଂକ୍ଷା, ଆଦର୍ଶ !!! ସ୍ୱଜାତି, ସ୍ୱଦେଶ, ମାତୃଭାଷା, ଜାତୀୟ ସାହିତ୍ୟ କଥାଗୁଡ଼ାକ ଏକା ତୁମର ମୁଖରେ ଶୋଭାପାଏ !"

"ପ୍ରଥମ ବର୍ଷର ଆରମ୍ଭରେ ଆମ୍ଭେମାନେ ବଙ୍ଗର ହୃଦୟରେ ୫୦୦ ସୁଶିକ୍ଷିତ ଓଡ଼ିଆପୁଅଙ୍କ ନାମ ଗ୍ରାହକ ଶ୍ରେଣୀରୁ କର୍ତ୍ତନ କରିଥିଲୁଁ । ଏ ସ୍ୱଗଣ ବ୍ୟକ୍ତିଙ୍କ ମଧ୍ୟରେ ରାଜା, ଜମିଦାର, ଦେବାନ୍, ମ୍ୟାନେଜର, ହାକିମ, ଓକିଲ, କେରାଣୀ, ଶିକ୍ଷକ ସବୁ ଅଛନ୍ତି—କେତେ ପୁଣି ଦେଶହିତୈଷୀ ସାହିତ୍ୟସେବକ ବୋଲି ପରିଚିତ ।"

ପତ୍ରିକା କିଣିବାର ଅଭ୍ୟାସ ନଥିଲା । ଅନେକ ଏକୁ ଏକ ସମୟବିନଷ୍ଟି ବୋଲି ତଥାକଥିତ ଶିକ୍ଷିତଗୋଷ୍ଠୀ ମନେ କରୁଥିଲେ । ଯେଉଁ ଅବସ୍ଥାପନ୍ନ ବ୍ୟକ୍ତିମାନେ ମଧ୍ୟ ଏଇ ଯତ୍ସାମାନ୍ୟ ଦେୟ ଦେବାକୁ କୁଣ୍ଠିତ ଥିଲେ; ବିଶ୍ୱନାଥଙ୍କ କ୍ଷୋଭ ଉପରେ କ୍ଷୋଭ କେତ ମନରେ କିଛି ହେଲେ ପ୍ରତିକ୍ରିୟା ସୃଷ୍ଟି କରିପାରୁ ନଥିଲା ।

କେଉଁ କେଉଁ ଗ୍ରାହକମାନେ ଦେୟ ଦେଇଛନ୍ତି ତାର ଏକ ତାଲିକା ଉତ୍କଳ ସାହିତ୍ୟରେ ପ୍ରକାଶ କରି ସ୍ଥାନ ନଷ୍ଟ କରିବାକୁ ହୋଇଥିଲା । ଟଙ୍କା ଆଦାୟ ଲାଗି ଏହାକୁ ଏକ ପ୍ରତିକାର ବିବେଚନା କରାଯାଇଥିଲା । କାର୍ଯ୍ୟାଧ୍ୟକ୍ଷ ସାହିତ୍ୟିକ କୃଷ୍ଣପ୍ରସାଦ ଚୌଧୁରୀ ଏକ ନିବେଦନରେ ଲେଖିଥିଲେ—"ପତ୍ରିକାର ଜୀବନ, ମରଣ ଗ୍ରାହକମାନଙ୍କ ହାତରେ । ଅଧିକାଂଶ ଗ୍ରାହକ ମୂଲ୍ୟ ପ୍ରେରଣରୁ ବିରତ ହେଲେ କାର୍ଯ୍ୟ ଚଳାଇବା ଆମ୍ଭମାନଙ୍କ ପକ୍ଷେ ଅସମ୍ଭବ ବ୍ୟାପାର ।"

ସ୍ୱୟଂ ସମ୍ପାଦକ ମଧ୍ୟ ପତ୍ରିକାରେ 'ବିଶେଷ ଦ୍ରଷ୍ଟବ୍ୟ'ରେ ପ୍ରକାଶ କରିଥିଲେ—"ଜାଣିନା କେଉଁ ଭାଗ୍ୟ ଦୋଷରୁ ଆମ୍ଭେମାନେ ଉପେକ୍ଷିତ ହେଉଅଛୁ । ଗ୍ରାହକମାନେ ଜାଣନ୍ତି, ଆମ୍ଭେମାନେ କି ପ୍ରକାର ଗୋଟିଏ ଦୁର୍ବତ୍ସରରେ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଅଛୁଁ । ସେମାନଙ୍କ ଅର୍ଥାନୁକୂଲ୍ୟ ବ୍ୟତୀତ ଆମ୍ଭେମାନେ କଦାପି ଯେ ତିଷ୍ଠି ପାରିବୁ ନାହିଁ, ଆଶାକରୁଁ, ତାହା ସେମାନେ ବୁଝିପାରିଛନ୍ତି, ଆଉ ସେମାନଙ୍କର ଶୈଥିଲ୍ୟ ଯେ ଆମ୍ଭମାନଙ୍କର ନିଶ୍ଚିତ ମୃତ୍ୟୁର କାରଣ, ତାହା ବୁଝାଇବା ନିଷ୍ପ୍ରୟୋଜନ ।"

ସୌଖୀନ ସାହିତ୍ୟ ଚର୍ଚ୍ଚା ଶୀର୍ଷକରେ ୧୯୦୧-୧୯୦୨ ରେ ସେତେବେଳର ଉତ୍କଳ ପାଠକଙ୍କୁ ସେ ବ୍ୟଙ୍ଗ କରିଛନ୍ତି—

"ପଇସା ଦେଇ ଓଡ଼ିଆ ପୁସ୍ତକ କିଣିବାକୁ ହେବ ? ଛି, ସେ ତ ନିର୍ବୋଧର କାର୍ଯ୍ୟ । ଯେ ଯେତେ ଆପଣାକୁ ବଡ଼ ମନେକରେ, ସେ ସେତେ ଓଡ଼ିଆ ପୁସ୍ତକ ବା ପତ୍ରିକାଠାରୁ ଦୂରରେ ରହିବାକୁ ଇଚ୍ଛା କରେ ! ନିତାନ୍ତ ପଢ଼ ଇଚ୍ଛା ହେଲେ, ନିର୍ବୋଧ ଚନ୍ଦାକାରଙ୍କ ଅନୁଗ୍ରହ ପ୍ରକାଶକ ଭାଷାରେ ପଦେଅଧେ କହିଲେ ଖଣ୍ଡେ ପୁସ୍ତକ ଉପହାର ମିଳିଯିବ ।"

ଆଳସ୍ୟ ଓ ଜଡ଼ତା ଯୋଗୁଁ ଓଡ଼ିଆ ଲେଖକ ମଧ୍ୟ ବ୍ୟଙ୍ଗର ପାତ୍ର ହୋଇଛନ୍ତି—

"ପୁରୁଣା ଡାଳ୍ହା ବା ଖାତା ପାଣ୍ଡି ଏଣ୍ଡେତେଣ୍ଡେ ଯାହା ମିଳିଲା ସେଥିରେ ଚନ୍ଦ୍ରଶାନ୍ତ କରିଦେଲେ ! ଅଧିକ କିଛୁ କହିବାକୁ ଡର ମାଡ଼ୁଅଛି—ବର୍ତ୍ତମାନ ଯେଉଁ ଅନୁଗ୍ରହ ଟିକିକ ମିଳୁଅଛି, କେଜାଣି ବା ସେଥିରୁ ସେତିକରୁ ବଞ୍ଚିତ ହେବାକୁ ନପଡ଼େ !" "ନୂତନ ଗଢ଼ିବାର ଆକାଂକ୍ଷା ବା ଯତ୍ନ ନାହିଁ, ସାଧନ ନାହିଁ । ଆମ୍ଭେମାନେ ବିଗତ ୫ ବର୍ଷ ଭିତରେ 'ଉତ୍କଳ ସାହିତ୍ୟ' ପାଇଁ ଏହିପରି କବିତା ନ୍ୟୁନକଳ୍ପେ ଦୁଇଡନ ଶତ ପାଇଅଛୁଁ ।"

"ସାହିତ୍ୟ ନାମରେ କେବଳ କେତେଗୁଡ଼ିଏ ଅସାର ପଦ୍ୟ ଅର୍ଦ୍ଧଶିକ୍ଷିତ ବା ସ୍ୱଳ୍ପବୁଦ୍ଧି ସ୍କୁଲ ବାଳକମାନଙ୍କ ଲେଖନୀରୁ ନିର୍ଗତ ହେଉଅଛି । ସେଗୁଡ଼ିକ ସାହିତ୍ୟର ଆବର୍ଜନା ମାତ୍ର ।"

"ଦୁଇପତ୍ରିଆ ପୁସ୍ତକ ଛପାଇ ଚନ୍ଦାକାର, ଅଢ଼େଇପତ୍ରିଆ ପତ୍ରିକା ଚଳାଇ ସମ୍ପାଦକ ହେବାର ଦୁରାଶା ମଧ୍ୟ ଅନେକଙ୍କ ମଧ୍ୟରେ ।"

"ଜାତୀୟ ଶ୍ରୀବୃଦ୍ଧି ଲାଗି ତୁମ୍ଭେ ବିନ୍ଦୁମାତ୍ର ସ୍ୱାର୍ଥ ବିସର୍ଜନ କରିବ ନାହିଁ, ଦେହ ମନ ଅର୍ଥ ସବୁ ସଙ୍କୁଚିତ ରଖିବ, ଅଥଚ କାଉଁଶା ଶୂନ୍ୟେ ଶୂନ୍ୟେ ଗୌରବ ମଞ୍ଚର ଉଚ୍ଚତମ ସୋପାନରେ ବସିଯିବ । ଏହାଠାରୁ ବଳି ଅସାର କଳ୍ପନା ଆଉ କଣ ହୋଇପାରେ ?"

"ଏଥିରେ ଗୋଟାଏ ସଜୀବ ସାହିତ୍ୟ ଗଠିତ ହେବ କିପରି ? ସାହିତ୍ୟାନୁରାଗୀ ଉତ୍କଳ ସନ୍ତାନଗଣ ଥରେ ସ୍ଥିରଚିତ୍ତରେ ଚିନ୍ତା କରିବେ କି ? ନିଜ ନିଜ କାର୍ଯ୍ୟ ଓ ପ୍ରବୃତ୍ତି ସୂକ୍ଷ୍ମରୂପେ ଆଲୋଚନା କରିବେ କି ?"

"ଲେଖକର ଅଭାବରେ ଆମ୍ଭମାନଙ୍କ ଦେଶରେ କୌଣସି ପତ୍ରିକା ଉଠିଯାଇନାହିଁ ଏବଂ ଏହା ହେବା ଅସମ୍ଭବ, କାରଣ ସମସ୍ତ ତାହାର ଉପଯୋଗୀ ଲେଖକଦଳ ପ୍ରସ୍ତୁତ କରିନିଏ ।"

"ପରନ୍ତୁ ନିଃସ୍ୱାର୍ଥ ସାହିତ୍ୟ ସେବାର ଭାବ କେତେଜଣଙ୍କ ମନରେ ପ୍ରବଳ ହୋଇଅଛି ? ଉତ୍କଳ ଭୂମି, ଉତ୍କଳ ଭାଷା ପାଇଁ କେତେଜଣଙ୍କର ପ୍ରାଣ କାନ୍ଦିବାକୁ ଶିଖିଛି କରିଅଛି ? ପ୍ରକୃତ ଅବସ୍ଥା ସଙ୍ଗେ ସଂଗ୍ରାମକରି ବ୍ୟକ୍ତିଗତ ସ୍ୱାର୍ଥ ଓ ସୁବିଧା ଅଗ୍ରାହ୍ୟକରି କେତେଜଣ ଉତ୍କଳ ସନ୍ତାନ ମାତୃଭାଷାର ଶୋଭା ଓ ସମ୍ପଦ ବୃଦ୍ଧି କରିବାପାଇଁ ବ୍ୟାକୁଳ ? ନିର୍ଜନ ଚିନ୍ତା ଓ ସାଧନାର ଫଳ ସ୍ୱଦେଶୀୟ ଭ୍ରାତୃମଣ୍ଡଳୀ ମଧ୍ୟରେ ପ୍ରଚାର କରିବାର ପ୍ରବଳ ଆକାଂକ୍ଷା କେତେଜଣଙ୍କ ମନରେ ଜାଗ୍ରତ ହୋଇଅଛି ?"

"ଆମ୍ଭେମାନେ କଣ କରୁଅଛୁଁ ? ମାତୃଭାଷା ପାଇଁ କି ପର୍ଯ୍ୟନ୍ତ ସ୍ୱାର୍ଥ ତ୍ୟାଗ କରିଅଛୁଁ ? ସେପରି ଦୃଷ୍ଟାନ୍ତ ଆମ୍ଭମାନଙ୍କ ମଧ୍ୟରେ କାହିଁ ? କିଏ ଅସୁବିଧା, କିଏ ରୋଗ ଓ ଶୋକର ତାଡ଼ନା, ଆମ୍ଭମାନଙ୍କର ସମସ୍ତ ଉତ୍ସାହ ଓ ଉଦ୍ୟମକୁ ମୁହୂର୍ତ୍ତିକେ କେଉଁଆଡ଼େ ଅଦୃଶ୍ୟ କରିଦେଉଅଛି ? ଉତ୍କଳରେ ଯେଉଁମାନେ ମାନ୍ୟଗଣ୍ୟ ସୁଯୋଗ୍ୟ ସାହିତ୍ୟସେବକ ବୋଲି ପରିଚିତ, ସେମାନଙ୍କ ପାଖକୁ ଯାଅ, ସାହିତ୍ୟସେବାର କଥା ଉତ୍ଥାପନ କର। କେବଳ ନିରାଶାର ଅନୁଜ୍ଜ ବାଣୀ ଛଡ଼ା କିଛି ଶୁଣିପାରିବ ନାହିଁ ?"

ଅତୀତର ଉତ୍କଳୀୟ ପତ୍ରପତ୍ରିକାମାନଙ୍କ ଦୁର୍ଦ୍ଦଶା ବିଶ୍ୱନାଥ ଉତ୍ତମରୂପେ ହୃଦୟଙ୍ଗମ କରିଥିଲେ। ତଥାପି 'ଉତ୍କଳ ସାହିତ୍ୟ' ପ୍ରକାଶ ଦିଗରେ ତତ୍ପର ହେଲେ କାହିଁକି ? ୧୮୯୭ ରେ ପ୍ରଥମ ସଂଖ୍ୟାର ସୂଚନା ଶୀର୍ଷକରେ ସେ ତାହା ବ୍ୟକ୍ତ କରିଛନ୍ତି—"ଯାହାର ଶୋଣିତରେ ଏ ଦେହ ପରିପୁଷ୍ଟ, ତାହାର କାତର ଧ୍ୱନି ପ୍ରାଣରେ ପ୍ରବେଶ କରି ଅନ୍ତଃସ୍ଥଳକୁ ଆଲୋଡ଼ିତ କରୁଅଛି। ଯାହାର ରକ୍ତ ତାହାର ସେବାରେ ଏହା ବ୍ୟୟ କରିପାରିଲେ ଜୀବନ ସାର୍ଥକ ହେବ। ତାହା କରି ନପାରିଲେ ବଞ୍ଚିବାର ପ୍ରୟୋଜନ କଣ ? ସ୍ୱାର୍ଥର ସେବା ତ ଯଥେଷ୍ଟ ହେଉଅଛି—କିନ୍ତୁ ପ୍ରାଣର ତୃପ୍ତି ସାଧନ ତ ହେଉନାହିଁ ? ତେବେ ଦିବାନିଶି ମାତୃଶୋଣିତ ଶୋଷଣ କରି ରାକ୍ଷସ ଜୀବନ ଧାରଣ କରିବାର ଫଳ କଣ ? କିୟତ୍ ପରିମାଣରେ ପରମ ପବିତ୍ର ସେବାଧର୍ମ ପାଳନକରି ପ୍ରାଣମନ କୃତାର୍ଥ କରିବା କି ଉଚିତ ନୁହେ ? ଆମ୍ଭମାନଙ୍କର ଚେଷ୍ଟା ବ୍ୟର୍ଥ ହେବ, ହେଉ, ସେଥିପାଇଁ ଅନୁଶୋଚନା ନାହିଁ। ଅକାଳରେ ମରିବାକୁ ହେବ, କ୍ଷତି ନାହିଁ। ତାଦୃଶ ମୃତ୍ୟୁ ମଧ୍ୟରେ ନବଜୀବନ ଆଶା ଜାଗ୍ରତ ରହିଅଛି। ଚେଷ୍ଟା ବ୍ୟର୍ଥହେବ ବୋଲି କି ଅନ୍ଧକାରରେ ମୁହଁ ଲୁଚାଇ ବସିବାକୁ ହେବ ? ଏହା କି ମନୁଷ୍ୟତ୍ୱର ଚିହ୍ନ ?"

ସମ୍ପାଦକର ଗୌରବମୟ ଆସନ ଉପଭୋଗ ତାଙ୍କର ଉଦ୍ଦେଶ୍ୟ ନଥିଲା। ପତ୍ରିକା ମାଧ୍ୟମରେ ସାହିତ୍ୟସେବା ତାଙ୍କର କାମ୍ୟ। ରକ୍ଷଣଶୀଳତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ସେ ସାହିତ୍ୟର ସ୍ୱରୂପ ଓ ସମ୍ପାଦକର କର୍ତ୍ତବ୍ୟ ନିର୍ଣ୍ଣୟ କରିଛନ୍ତି—

"ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରେ ଏ ଦେଶରେ ସକଳ ବିଷୟରେ ଯେପରି ପରିବର୍ତ୍ତନ ଉପସ୍ଥିତ ହୋଇଅଛି, ସାହିତ୍ୟ ସମ୍ବନ୍ଧରେ ମଧ୍ୟ ସେହିପରି ଘଟିଅଛି । ଏ ପରିବର୍ତ୍ତନ ଏକାନ୍ତ ବାଞ୍ଛନୀୟ । ମନୁଷ୍ୟ ସମାଜ ଏକ ଭାବ, ଏକ ଅବସ୍ଥାରେ ଚିରଦିନ ରହି ନ ପାରେ । ଜୀବନ୍ତ ସମାଜ ପକ୍ଷରେ ଏହା ଅସମ୍ଭବ । ପ୍ରାଚୀନତାର ଅନୁରୋଧରେ ଉନ୍ନତିର ପଥରୋଧ କରିବା ସୁବୁଦ୍ଧିର କାର୍ଯ୍ୟ ନୁହେଁ । ପକ୍ଷାନ୍ତରେ ନୂତନର ଅନୁରୋଧରେ ପ୍ରାଚୀନ ପ୍ରତି ଅବଜ୍ଞା ବା ଅଶ୍ରଦ୍ଧା ନିତାନ୍ତ ନିନ୍ଦନୀୟ । ଯେଉଁମାନେ ଉଭୟକୂଳ ରକ୍ଷାକରି ଚଳି ପାରନ୍ତି, ସେହିମାନେ ବୁଦ୍ଧିମାନ୍ । ସମସ୍ତ ଉନ୍ନତ ଯୁଗର ଓ ଉନ୍ନତ ଦେଶର ସାଧୁ ମହାଜନଗଣ ଏହି ଆଦର୍ଶ ଦେଖାଇ ଯାଇଅଛନ୍ତି । ଆମ୍ଭେମାନେ ଯେତେଦିନ ଜୀବିତ ଥିବୁଁ, ନିଜର କ୍ଷୁଦ୍ର ସୀମା ମଧ୍ୟରେ ଏହି ନୀତି ଅନୁସରଣ କରି କାର୍ଯ୍ୟ କରିବୁଁ । ଉତ୍କଳର ପ୍ରାଚୀନ ସାହିତ୍ୟ ଭଣ୍ଡାରରେ ଗୌରବର ବିଷୟ ଯଥେଷ୍ଟ ନ ଥିଲେ ହେଁ ତାହାର ନିତାନ୍ତ ଅଭାବ ନାହିଁ ଅନ୍ୟଆଡ଼େ ନବ ପ୍ରଣାଳୀ ସାହିତ୍ୟ ଗଠନର ଚେଷ୍ଟା ମଧ୍ୟ କିଞ୍ଚିତ୍ ପରିମାଣରେ ଲକ୍ଷିତ ହେଉଅଛି । ଉତ୍କଳ ସାହିତ୍ୟ ଏହି ଉଭୟର ହିଁ ପ୍ରତିନିଧି ସ୍ୱରୂପ କାର୍ଯ୍ୟ କରିବାର ଆଶାରେ ଉପସ୍ଥିତ ହୋଇଅଛି । ଏକଆଡ଼େ ପ୍ରାଚୀନ ମଧ୍ୟରୁ ଉଦ୍ଧରଣୀୟ ବସ୍ତୁ ଆହରଣ କରିବା, ଅନ୍ୟଆଡ଼େ ଉନ୍ନତ ଯୁଗର ଭାବ ଓ ଚିନ୍ତା ପାଠକ-ସାଧାରଣଙ୍କ ନିକଟରେ ଉପସ୍ଥାପିତ କରିବା ଏକାନ୍ତ କର୍ତ୍ତବ୍ୟ ।"

ଓଡ଼ିଆ ସାହିତ୍ୟ ପ୍ରତି ଓଡ଼ିଆଙ୍କ ଅଯତ୍ନ, ଅବହେଳା ଓ ଅନାଦରରେ ସେ ବ୍ୟଥିତ । ଏହା ହିଁ ଉତ୍କଳ ସାହିତ୍ୟ ପ୍ରକାଶର ଅନ୍ୟତମ କାରଣ—

"ଉତ୍କଳ ସାହିତ୍ୟ ଅନୁନ୍ନତ କାହିଁକି ? ଏହାର କାରଣ ଉତ୍କଳ-ପୁତ୍ରମାନଙ୍କର ଔଦାସୀନ୍ୟ ଓ ମାନସିକ ଜଡ଼ତା । ଏହି ଔଦାସୀନ୍ୟ ବା ଜଡ଼ତା ସର୍ବପ୍ରକାର ଉନ୍ନତିର ପ୍ରତିରୋଧକ ଓ ସକଳ ଦୁର୍ଗତିର ନିଦାନ । ଏହା ହିଁ ଉତ୍କଳ-ସନ୍ତାନମାନଙ୍କର ହସ୍ତପଦ ବନ୍ଧନ କରି ରଖିଅଛି । ଏହାର ପ୍ରଭାବରୁ ଦୁଃଖ ଦାରିଦ୍ର୍ୟର ହସ୍ତ ଏଡ଼ାଇବାକୁ ଏମାନେ ଅସମର୍ଥ ହୋଇ ପରାଧୀନ ଭାବରେ କାଳ ଅତିବାହିତ କରୁଅଛନ୍ତି । ସୌଭାଗ୍ୟଲକ୍ଷ୍ମୀ କେବଳ ଉଦ୍‌ଯୋଗୀର ସହଚର । ଜଡ଼ତା ରୂପ ପରମଶତ୍ରୁର ହସ୍ତରୁ ଉଦ୍ଧାର ନ ପାଇଲେ ଆମ୍ଭେମାନେ ମନୁଷ୍ୟର ଆକାଂକ୍ଷଣୀୟ ବସ୍ତୁ ଉପାଦେୟ ବିଷୟରୁ ବଞ୍ଚିତ ରହିଥିବୁଁ ।"

ଉତ୍କଳର ସର୍ବାଙ୍ଗୀନ ଉନ୍ନତି କାମନା ହିଁ ଉତ୍କଳ ସାହିତ୍ୟ ପ୍ରକାଶର ଅନ୍ୟ ଏକ କାରଣ । କୁସଂସ୍କାର ଦୂରୀକରଣ, ସଦ୍ ଧର୍ମ ସ୍ଥାପନ ମଧ୍ୟ ତାଙ୍କର ଲକ୍ଷ୍ୟ । ସେଥିପାଇଁ ସାହିତ୍ୟର ବିପୁଳ ପରିସର କଥା ସେ ସୂଚାଇଛନ୍ତି—

"ବିସ୍ତୃତ ଅର୍ଥରେ ମାନବଜୀବନର ଓ ସମାଜର ସମସ୍ତ ବିଷୟ ସାହିତ୍ୟର ଅନ୍ତର୍ଗତ । କାବ୍ୟ, ନାଟକ, ବିଜ୍ଞାନ, ଦର୍ଶନ, ଶିକ୍ଷା, ଶିଳ୍ପ, କୃଷି, ବାଣିଜ୍ୟ, ଧର୍ମ, ଜାତି ସମସ୍ତ ସାହିତ୍ୟର ବହୁଦୂର ବିସ୍ତୃତ ସୀମା ମଧ୍ୟରେ ଅବସ୍ଥାନ କରିପାରନ୍ତି । ଏହି ଭାବରେ ଆମେ କୌଣସିଟି ଉପେକ୍ଷା କରି ନ ପାରୁ । ଉନ୍ନତି ଯେତେବେଳେ ମାନବଜୀବନର ଲକ୍ଷ୍ୟ, ସେତେବେଳେ ଯଦ୍ଦ୍ୱାରା ସର୍ବାଙ୍ଗୀନ ଉନ୍ନତି ସାଧିତ ହେବ, ତତ୍ପ୍ରତି ସମୁଚିତ ଦୃଷ୍ଟି ରଖିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । ଦେଶ ପ୍ରଚଳିତ ଦୁର୍ନୀତି, ଦୁରାଚାର ଓ ଉପଧର୍ମ ବିରୁଦ୍ଧରେ ସଂଗ୍ରାମ ଓ ସଦ୍ଧର୍ମ ପ୍ରତିଷ୍ଠା ଉତ୍କଳ ସାହିତ୍ୟର ଅନ୍ୟତମ ଉଦ୍ଦେଶ୍ୟ ।"

ସମ୍ପାଦକ ବିଶ୍ୱନାଥ ଏକାଧାରରେ ସାମ୍ବାଦିକ ଓ ସାହିତ୍ୟିକ, ସମାଲୋଚକ, ଶିକ୍ଷାବିତ୍, ସଂସ୍କାରକ ଓ ଆଧୁନିକତାର ପ୍ରତିଷ୍ଠାତା । ଉତ୍କଳ ସାହିତ୍ୟ ତତ୍କାଳୀନ କେଉଁ ବିଷୟରେ ବା ମତ ପ୍ରକାଶ କରିନାହିଁ ?—ଅଶାନ୍ତି, ଦୁର୍ଭିକ୍ଷ, ଶିକ୍ଷାବ୍ୟୟ, ପରୀକ୍ଷାପ୍ରସଙ୍ଗ, ଓଡ଼ିଆ ସମ୍ବାଦପତ୍ର, ସାଧୁସନ୍ଥ, ବିଶ୍ୱବିଦ୍ୟାଳୟର ପ୍ରତିନିଧି ନିର୍ବାଚନ, ଅସ୍ପୃଶ୍ୟତା, ଚନ୍ଦାର ମୂଲ୍ୟ, ଶିଷ୍ଟାଚାର, ବନ୍ଦୋବସ୍ତ, ଅଭିନୟ, ବେଶ୍ୟାନୃତ୍ୟର ବିରୋଧ, ବାକ୍ୟ ଓ ଅର୍ଥ, ହିନ୍ଦୁ ବିଧବା ଗଣନା, କଲେଜ ନାଟ୍ୟ ସମିତି, ଭାରତର ଶିକ୍ଷା ସମସ୍ୟା, ଉତ୍କଳରେ ଶିକ୍ଷା ବିସ୍ତାର, ଫ୍ୟାସନମୋହନ ସ୍ମୃତିସଭାରେ ଅଶ୍ଳୀଳ ଗୀତ, ହିନ୍ଦୀଭାଷାରେ ଲଛମା ଆଦି ନାନାଜାତୀୟ ବିଷୟରେ ଆଲୋଚନା କରି ସେ ସ୍ୱାଧୀନ ମତ ବ୍ୟକ୍ତ କରିଥିଲେ । ଶଶିଭୂଷଣ ରାୟଙ୍କ ଭାଷାରେ ଯେପରି ଭାଷାର ବିଶୁଦ୍ଧତା, ଲାଳିତ୍ୟ ସେହିପରି ମତର ଉଦାରତା ଓ ସ୍ପଷ୍ଟ ସ୍ପଷ୍ଟତା, ସେହିପରି ଜାତିର ଉତ୍କର୍ଷ ସମପରିମାଣରେ ସେଥିରେ ବିଦ୍ୟମାନ ଥିଲା ।

"ରାଧାନାଥ, ମଧୁସୂଦନଙ୍କଠାରୁ ଶିଷ୍ୟତ୍ୱ ଗ୍ରହଣ କରି ମଧ୍ୟ ସେମାନଙ୍କର ଲେଖା, କାର୍ଯ୍ୟ ବା ମତାମତ ପ୍ରତି ତିଳେମାତ୍ର ପକ୍ଷପାତୀ ନ ହୋଇ ଯାହା ନ୍ୟାୟସଙ୍ଗତ ମନେ କରୁଥିଲେ ଉ: ସା: ସମ୍ପାଦକ ନିର୍ଭୀକଭାବରେ ଲେଖିବାକୁ କେବେହେଲେ କୁଣ୍ଠିତ ହେଉ ନଥିଲେ । ଏହି ତେଜସ୍ୱିତା, ଏହି ନିର୍ଭୀକତା, ଏହି ପକ୍ଷପାତଶୂନ୍ୟତା ଉ: ସା: ର ମୂଳମନ୍ତ୍ର ।"

ପତିତପାବନ ପଟ୍ଟନାୟକ

ପ୍ରେରିତ ପୁସ୍ତକର ଅଭିମତ ପ୍ରକାଶ ସମ୍ବନ୍ଧରେ ସେ ଲେଖିଛନ୍ତି—"କ୍ୱଚିତ୍ ତୁଳସୀ ବୋହି ନାଟଠାରୁ ମହାଭାରତ ପର୍ଯ୍ୟନ୍ତ ଯେକୌଣସି ପୁସ୍ତକ ଆମର ହସ୍ତଗତ ହେବ, ସେ ସକଳ ପୁସ୍ତକର ସମାଲୋଚନା କରିବାକୁ ଯେ ଆମ୍ଭେମାନେ ବାଧ୍ୟ ହେବୁଁ, ମନେ କରିବା ଭୁଲ୍ । ସମାଜ, ଜାତି, ଧର୍ମ, ଶିକ୍ଷା ପ୍ରଭୃତିର ଉନ୍ନତିକଳ୍ପେ ଆମ୍ଭେମାନେ କୌଣସି ୨ ପୁସ୍ତକର ବିସ୍ତୃତ ସମାଲୋଚନା ମଧ୍ୟ କରିବୁଁ । ଏଥିନିମିତ୍ତ କୌଣସି ପୁସ୍ତକ ବିଶେଷ ସମାଲୋଚନାର୍ଥେ ଆମ୍ଭମାନଙ୍କ ନିକଟକୁ ପ୍ରେରିତ ନହେଲେ ମଧ୍ୟ ଆମ୍ଭେମାନେ ତହିଁର

ସମାଲୋଚନାରେ ପ୍ରବୃତ୍ତ ହେବୁଁ । ଉତ୍କଳ ସାହିତ୍ୟର ପୁଷ୍ଟି ଓ ଉନ୍ନତି ନିମିତ୍ତ ଆମ୍ଭେମାନେ ଉତ୍କୃଷ୍ଟ ବଙ୍ଗଳା ଓ ଇଂରାଜୀ ପୁସ୍ତକମାନଙ୍କର ସମାଲୋଚନାରେ ମଧ୍ୟ ହସ୍ତକ୍ଷେପ କରିବାକୁ ପଶ୍ଚାତ୍‌ପଦ ହେବୁନାହିଁ ।"

## ବିବିଧ ପ୍ରବନ୍ଧ

"ବିଶ୍ୱନାଥଙ୍କର ଅଳ୍ପ କେତୋଟି ପ୍ରବନ୍ଧ 'ବିବିଧ ପ୍ରବନ୍ଧ' ନାମରେ ଊନବିଂଶ ଶତାବ୍ଦୀର ଶେଷଭାଗରେ ପ୍ରକାଶିତ ହୋଇଥିଲା । ତାହାପରେ କବିବର ରାଧାନାଥ ରାୟ ନିମ୍ନ ଅଭିମତ ପ୍ରକାଶ କରିଥିଲେ—"ବିବିଧ ପ୍ରବନ୍ଧ"ରେ ସୁଚିନ୍ତା ଓ ସ୍ୱଜ୍ଞାନବୋଧୀପକ ଅନେକଗୁଡ଼ିଏ ପ୍ରବନ୍ଧ ଅଛି । ଏ ଶ୍ରେଣୀର ପୁସ୍ତକ ପଠନଦ୍ୱାରା ଉତ୍କଳୀୟ ପାଠକମାନଙ୍କର ଦୃଷ୍ଟି ପ୍ରସାରିତ, ରୁଚି ସଂସ୍କୃତ ଓ ଜ୍ଞାନ ଉନ୍ନୀତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା ।"

୧୦ । ୧୨ । ୯୭, କଟକ

ପଣ୍ଡିତ କୁଳମଣି ଲେଖିଛନ୍ତି—ସେ ସବୁ ପ୍ରବନ୍ଧ ପଢ଼ି ପଢ଼ି ମନେହୁଏ—ସତେ ଯେପରି ଗୋଟିଏ ଅନାବିଳ ସ୍ୱଚ୍ଛ ପୟଃସ୍ରୋତ ଉତ୍ତୁଂଗ ଶୈଳଶୃଙ୍ଗରୁ କଳ କଳ ନାଦରେ ବହି ଆସୁଅଛି । ବିଶ୍ୱନାଥ ନବଯୁଗର ସ୍ରଷ୍ଟା ଓ ସାହିତ୍ୟର ସଂସ୍କାରକ ଓ ଆଦର୍ଶ ଗଦ୍ୟସାହିତ୍ୟର ସ୍ରଷ୍ଟା ।

ବିଶ୍ୱନାଥଙ୍କର ସମସ୍ତ ରଚନା ଏପର୍ଯ୍ୟନ୍ତ ସଂକଳିତ ହୋଇନାହିଁ । ନାମ ନ ଥିବା ବହୁ ପ୍ରବନ୍ଧ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଅଛି । ରଚନା ଶୈଳୀରୁ ଅନୁମିତ ହୁଏ ଯେ ସେଥିରୁ ଅଧିକାଂଶ ବିଶ୍ୱନାଥଙ୍କ ରଚନା । ଏହା ବ୍ୟତୀତ ୩୮ ବର୍ଷର ସୂଚନା, ସାମୟିକ ପ୍ରସଙ୍ଗ, ପୁସ୍ତକ ସମାଲୋଚନା ପ୍ରଭୃତି ରହିଅଛି । ଏ ସବୁ ମିଶାଇଲେ ବୃହଦାକାର ଗ୍ରନ୍ଥାବଳୀଟିଏ ହେବ । ବିଶ୍ୱନାଥଙ୍କ ମୃତ୍ୟୁପରେ ପ୍ରାୟ ଅର୍ଦ୍ଧଶତାବ୍ଦୀ ଅତୀତ ହେଲଣି । ଏପର୍ଯ୍ୟନ୍ତ ତାଙ୍କର ଜୀବନୀସମେତ ଗ୍ରନ୍ଥାବଳୀଟିଏ ପ୍ରକାଶ ନ ପାଇଥିବାରୁ ଅନୁମିତ ହୁଏ ଯେ ତାଙ୍କ ବହୁଜନହିତ ଜଡ଼ତା ଓ ଔଦାସୀନ୍ୟରୁ ଆମେ ମୁକ୍ତ ପାଇନାହୁଁ ।

'ବିବିଧ ପ୍ରବନ୍ଧ'ରେ ତିନୋଟି ଶ୍ରେଣୀର ପ୍ରବନ୍ଧ ସଂକଳିତ—(କ) ସାହିତ୍ୟ ବିଷୟକ (ଖ) ଦାର୍ଶନିକ ଚିନ୍ତା ସମ୍ବଳିତ (ଗ) ସମାଜ ବିଷୟକ ।

(କ) ସାହିତ୍ୟଚର୍ଚ୍ଚା, ସାହିତ୍ୟ ଓ ସମାଲୋଚନା, କବି ଉପେନ୍ଦ୍ର ଭଞ୍ଜ, ଗୋଟିଏ ଉତ୍ତର, ସାହିତ୍ୟ ଓ ଜୀବନ, ରଘୁବଂଶର ବିଳାପ, ଜାତୀୟ ଜୀବନରେ ସାହିତ୍ୟର ସ୍ଥାନ, ଭାଷାଚର୍ଚ୍ଚା ପ୍ରଥମ ଭାଗର ଅନ୍ତର୍ଗତ ।

ତାଙ୍କ ମତରେ ସାହିତ୍ୟ ସେବା, ସ୍ୱଦେଶସେବା ଓ ମାନବସେବାର ଗୋଟିଏ ସହଜ ଓ ପ୍ରକୃଷ୍ଟ ଉପାୟ । ତାଙ୍କର ଉକ୍ତ ପ୍ରବନ୍ଧସବୁ ଦିଗ୍‌ଦର୍ଶନ ସ୍ୱରୂପ ଯନ୍ତ୍ର ପରି ସାହିତ୍ୟିକମାନଙ୍କ ପ୍ରତି ଉଦ୍ଦିଷ୍ଟ । ସେ ସାହିତ୍ୟିକ ମୁକୁର ପରି ପଥ ନିର୍ଦ୍ଦେଶ କରୁଛନ୍ତି, ପ୍ରେରଣା ଦେଉଛନ୍ତି, ଭ୍ରାନ୍ତି ଦୂର କରୁଛନ୍ତି, ଜ୍ଞାନର ନବ ନବ ଦ୍ୱାର ଉଦ୍‌ଘାଟନ କରୁଛନ୍ତି । 'ସାହିତ୍ୟ ଓ ଜୀବନ' ପ୍ରବନ୍ଧରେ ଜୀବନରୁ କିପରି ସାହିତ୍ୟର ଉତ୍ପତ୍ତି, ଜୀବନ ହିଁ ସାହିତ୍ୟୋନ୍ନତିର ମୂଳ, ଯେଉଁଠାରେ ଜୀବନ, ସେହିଠାରେ ଜୀବନ୍ତ ସାହିତ୍ୟ କିମ୍ବା ଯାହା ଜୀବନ, ତାହା ହିଁ ସାହିତ୍ୟ ସେ ଉଲ୍ଲେଖ କରିଛନ୍ତି । ଯେଉଁ ସାହିତ୍ୟରେ ଯେଉଁ ପରିମାଣରେ ଜୀବନ ସଙ୍ଗେ ସମ୍ବନ୍ଧ, ସେ ସାହିତ୍ୟ ସେହି ପରିମାଣରେ ଜୀବନ୍ତ, ଉନ୍ନତ । ସାହିତ୍ୟ ଜୀବନର ପ୍ରବର୍ତ୍ତକ । ମନୁଷ୍ୟର ଜୀବନୀଶକ୍ତିର ଅଭାବ ବୋଧ ହେଲେ ଜୀବନ୍ତ ସାହିତ୍ୟ ପାଠ କର୍ତ୍ତବ୍ୟ । ଜୀବନରୁ ଅପସାରିତ କଳ୍ପନା ବିଳାସରେ ମାତିଥିବା ସମସାମୟିକ ସାହିତ୍ୟିକମାନଙ୍କ ପ୍ରତି ଏହା ନିର୍ଦ୍ଦେଶ ।

'ସ୍ରଷ୍ଟା ସମସ୍ତେ ହୋଇ ପାରିବେ ନାହିଁ, ଏଥିପାଇଁ ବିଶିଷ୍ଟ ଶକ୍ତିର ପ୍ରୟୋଜନ ।'

'କବିର ପ୍ରଧାନ ଅସ୍ତ୍ର ଦର୍ଶନ; ଯେ ଯେତେ ପରିମାଣରେ ଦେଖିପାରେ ସେ ସେତେ ପରିମାଣରେ କବି ।'

'ପୃଥିବୀରେ ମନୁଷ୍ୟ ଯେତେ ପ୍ରକାର କାର୍ଯ୍ୟ କରେ, ତନ୍ମଧ୍ୟରେ, ଲେଖକର କାର୍ଯ୍ୟ ସର୍ବାପେକ୍ଷା ଗୁରୁତର । ସର୍ବାପେକ୍ଷା ଏହାର କାର୍ଯ୍ୟ ଅଧିକ ଦୂରପ୍ରସାରିତ ।'

'ସାହିତ୍ୟର ପ୍ରଥମ ପ୍ରୟୋଜନୀୟ ବିଷୟ ପୁସ୍ତକ ପାଠ । ଜ୍ଞାନପିପାସା ଜୀବନବ୍ୟାପୀ ହେବା ଉଚିତ । ଉଚ୍ଚ ଶ୍ରେଣୀର ପୁସ୍ତକ ପାଠ ନ କଲେ ଜୀବନ ଉଚ୍ଚ ହେବ କିପରି ? ଏହା ଏକପ୍ରକାର ସାଧୁସଙ୍ଗ ।'

'ସାହିତ୍ୟ ସେବାର ଦ୍ୱିତୀୟ ଉପାଦାନ ଆଲୋଚନା । ସଂଘବଦ୍ଧ ହୋଇ ସାହିତ୍ୟ ଆଲୋଚନା କଲେ ଭଲହୁଏ ।'

'ଚିନ୍ତା ହିଁ ସାହିତ୍ୟର ସର୍ବସ୍ୱ । ପ୍ରାଣରେ ଭାଷା ପ୍ରାଣକୁ ସ୍ପର୍ଶ କରେ ।'

'ପ୍ରତିଭାର ଆଲୋକପାତ ନ ହେଲେ ସାହିତ୍ୟର ଯଥାର୍ଥ ଅଭିବୃଦ୍ଧି ଘଟେ ନାହିଁ ।'

ସାହିତ୍ୟର ଭାଷା ସମ୍ପର୍କରେ ସେ କହିଛନ୍ତି—ପ୍ରଥମ ବ୍ୟାକରଣ ଶୁଦ୍ଧି, ଦ୍ୱିତୀୟ ଶବ୍ଦ ପ୍ରୟୋଗ, ତୃତୀୟ ରୀତିରକ୍ଷା ।

ରଚନାରେ ଶୃଙ୍ଖଳା, ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ରଖିବାକୁ ହେବ । ଉନ୍ନତିଶୀଳ, ବର୍ଦ୍ଧନଶୀଳ ଭାଷା ପକ୍ଷରେ ଅନ୍ୟଠାରୁ ଭାବ, ରୀତି ବା ଶବ୍ଦ ଗ୍ରହଣ କରିବା ଅନିଷ୍ଟକର ନୁହେଁ । ବରଂ ତା ନ ହେଲେ ଉନ୍ନତିର ପଥ ସୁଗମ ହୁଏ ନାହିଁ ।

'ସ୍ୱାଧୀନ ଚିନ୍ତା', 'ସ୍ୱାଧୀନତା', 'ମନ୍ତ୍ରାସ୍ରୋତ', 'ଅନନ୍ତ ପ୍ରେମ', 'ସାଧନା ଓ ସିଦ୍ଧି', 'ଇତିହାସ', 'ଭୂତବାଦଖଣ୍ଡନ ସୂତ୍ର' ପ୍ରବନ୍ଧ ଦାର୍ଶନିକ ଚିନ୍ତାସମ୍ବଳିତ ଏମାନ ସତର୍କୀୟ ଓ ସମ୍ପାଗମୂଳକ । ବିଶ୍ୱନାଥ ସ୍ତ୍ରୀ-ଶିକ୍ଷାର ପକ୍ଷପାତୀ । ତାଙ୍କ ମତରେ ବାଳିକାମାନଙ୍କୁ ଗଣିତ, ସାହିତ୍ୟ, ଇତିହାସ ସଙ୍ଗେ ଗାର୍ହସ୍ଥ୍ୟ ଧର୍ମ, ପଦାର୍ଥବିଦ୍ୟା, ଚିତ୍ରବିଦ୍ୟା, ସଙ୍ଗୀତ ବିଦ୍ୟା ଶିକ୍ଷା ଦେବା ଉଚିତ । ସକଳ ଉନ୍ନତିରେ ସ୍ତ୍ରୀ ଉନ୍ନତି ଦେଶର ଉନ୍ନତି ।

'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା ।'

'ବିବିଧ ପ୍ରବନ୍ଧ' ବିଶ୍ୱନାଥଙ୍କ ସ୍ମୃତିମୂଳକ କୀର୍ତ୍ତି । ସମାଜ, ଶିକ୍ଷା, ଦର୍ଶନ, ସାହିତ୍ୟ, ଭାଷା ଆଦି ସକଳ ବିଷୟରେ ତାଙ୍କର ବୈପ୍ଳବିକ ଚିନ୍ତାଧାରା ସେ ବ୍ୟକ୍ତ କରିଛନ୍ତି ।

ଭାବସମ୍ପଦର ଦୃଷ୍ଟିରୁ 'ବିବିଧ ପ୍ରବନ୍ଧ' ସେ କାଳର ଅନୁପମ ଗ୍ରନ୍ଥ । ସେ ମଧୁବାବୁଙ୍କ ପରି ସଂସ୍କୃତିଆ କିମ୍ବା ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରି ଗ୍ରାମୀଣ ହୋଇ ନାହାନ୍ତି । ସେ ମଧ୍ୟମ ସରଣୀ ଅନୁସରଣ କରିଛନ୍ତି । ତାଙ୍କର ଭାଷା ହିଁ ଚିନ୍ତା ଉପଯୋଗୀ ହୋଇଅଛି—ଯେପରି ସରସ, ସେହିପରି ଶୃଙ୍ଖଳିତ, ସଙ୍ଗତ ଓ ସୁନ୍ଦର । ଆଦର୍ଶ ଗଦ୍ୟର ନମୁନା ରୂପେ ଏହା ଯେପରି କି ଉପସ୍ଥାପିତ, ବିଦଗ୍ଧ ମହଲରେ ଗୃହୀତ । ପ୍ରାୟ ଅର୍ଦ୍ଧ ଶତାବ୍ଦୀ କାଳ ଏହି ପୁସ୍ତକ ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ହୋଇଥିଲା ।

'ଉତ୍କଳ ଭ୍ରମଣଂ'ରେ ବିଶ୍ୱନାଥଙ୍କର ଆଜୀବନ ସହଯୋଗୀ, ଫକୀରମୋହନଙ୍କ ସହୃଦ ବନ୍ଧୁ, ବିଶ୍ୱନାଥଙ୍କର ସଂକ୍ଷିପ୍ତ ଜୀବନୀ ଯେପରିକି ପଦ୍ୟାୟିତ କରିଛନ୍ତି—ଅନ୍ୟମାନଙ୍କ ତୁଳନାରେ ସେ ତାଙ୍କୁ ଅଧିକ ପ୍ରଶଂସିତ ଓ ଉଚ୍ଚତର ଆସନ ପ୍ରଦାନ କରିଛନ୍ତି । ପ୍ରାଣର ଭାଷାରେ ସେ ଲେଖିଛନ୍ତି—

"ଭେଟର୍ ଦନ ଭାବ ଭାବ ବୁଝିଛୁ ମନରେ
ଲୋକ ପରି ଲୋକଟାଏ ବିଶ୍ୱନାଥ କରେ ।
ସଭାସମିତରେ ଯେବେ ଦେବ ତାଙ୍କୁ ଗ୍ରନ୍ଥି
ବକ୍ତୃତା ବର୍ଷିଂ ପାଣି ପରି ଯିବ ମାଡ଼ି
ବାତୁଳ ବାଳକ ନାହିଁ କଥା ଗଲେ କହି
ଉତ୍କଳ ମାଟିଆ ପରି ପାଣି ପଡ଼ ବହି ।
ମାସିକ ପତ୍ରିକା ହେଲା ଦେଶର ଗୌରବ
ଉତ୍କଳ ଦେଶରେ ଥିଲା ତା ନାମ ଜାରବ ।
ମାସିକ ପତ୍ରିକା ଭେଟର ସ୍ୱରୂପ ଦେଖାଇ
ପାଣିର ଫୋଟକା ଗଲେ ପାଣିରେ ଉଭାଇ ।

କେଉଁଏ ବରଷ କାଳ ପାଇ ଲଭି ଗତି
ସାହିତ୍ୟ ପ୍ରଚାର ପାଇଁ ପଢ଼ୁଥିଲୁ ନିତି ।
ଧନ ନାହିଁ, ସ୍ୱାସ୍ଥ୍ୟ ନାହିଁ, ବୃଦ୍ଧା ମାନସରେ
ତନ ମନ ନେଇ ପଡ଼ିଥିଲୁ ସାହିତ୍ୟରେ ।
ଦେଶେ ଲୁଚି ରହିଥିଲେ କେତେ କବି, ଜ୍ଞାନୀ
ସାହିତ୍ୟେ ଆଣିଲୁ ତାଙ୍କୁ ବାହାରକୁ ଟାଣି ।
ଉତ୍କଳ ପୈତୃକ ଏବ ଧର୍ମ ରକ୍ଷା ପାଇଁ
ଉଚ୍ଚ କଥା ଧର୍ମ କର୍ମ ମୁଁ ତ ବୁଝେ ନାହିଁ ।
ଦେଶ ଜନନୀର ଅର୍ଥେ ସର୍ବାଂ ହିଁ ଜୀବନ
ବିଶ୍ୱନାଥ ଦେଇଗଲେ ସଭା ନିବେଦନ ।

ମୃତ୍ୟୁର ଦୁଇ ବର୍ଷ ପରେ ସତ୍ୟବାଦୀରେ ପରବାଗ ଠାରୁ ବିଶ୍ୱନାଥଙ୍କ ସ୍ମୃତିସ୍ତମ୍ଭ ନିର୍ମିତ ହୋଇଥିଲା । ସମ୍ମୁଖ ଫଳକରେ ଖୋଦିତ—

ସାହିତ୍ୟପ୍ରବୋଧା ବ୍ରହ୍ମଜ୍ଞ ୰ ବିଶ୍ୱନାଥ କର
ଜନ୍ମ—ଡିସେମ୍ବର ୨୪, ୧୮୬୪
ମୃତ୍ୟୁ—୧୧ ଅକ୍ଟୋବର, ୧୯୩୪

"ଅଜ୍ଞାନ ଅନନ୍ତ କ୍ଷୁତ୍ପିପାସାର ନିବୃତ୍ତି ଅନନ୍ତ ବ୍ରହ୍ମଙ୍କର କୃପାସତାରେ"

"ସମସ୍ତ ଅଜ୍ଞାନ, ବିରୋଧ, ଅଶାନ୍ତି, ହିଂସା, ଦ୍ୱେଷ ଆଘାତ ପଶ୍ଚାତରେ ମଙ୍ଗଳମୟଙ୍କ ସତ୍ତାର ଅନୁଭୂତି ଓ ତାହା ଦର୍ଶନ କରିବା ପାଇଁ ଦିବ୍ୟଦୃଷ୍ଟି ଧର୍ମଜୀବନର ସୁଦୃଢ଼ ଭିତ୍ତି ।"

"ବର୍ତ୍ତମାନ ଏ ଦେଶରେ ସମ୍ମୁଖ ଦୃଷ୍ଟିର ଅଭାବ, କେବଳ ପଶ୍ଚାତ୍ ଦୃଷ୍ଟି, କେବଳ ମୃତ୍ୟୁ ।"

ସ୍ତମ୍ଭର ଦକ୍ଷିଣପାର୍ଶ୍ୱ ଫଳକରେ—

"ମରଣେ ଯେ ମହାସ୍ଥାନ ମାନବ ସୁଜନ
କରିଥିଲେ ସତ୍ୟଧର୍ମେ ଜୀବନର ପଣ
ଦେଖାଇଲେ ଦେଶେ ଯେତୁ ଜନମ ଧରିବ
ସାଙ୍ଗ କଲେ ଆଜ ଏଥି ଜୀବନର ରଣ ।
ଉତ୍କଳର ପୁତ୍ର କନ୍ୟା ଯେତେକ ନରନାଥ
ପୂତ ଅର୍ଥେ ଦେଇଯାଅ ଜୀବନର ଦାନ ।

ତାଳ ଏଥି ଶଯ୍ୟା ତଳେ ମୁକ୍ତା ଅର୍ଘ୍ୟଭାର
ଦେଉଥାଅ ତାଙ୍କ ପଦେ ଉଚ୍ଚାର ସମ୍ମାନ ।'

ବାମପାର୍ଶ୍ୱ ଫଳକରେ —

'ମୁଦିଛ ନୟନ ହସି ଶାନ୍ତ ପ୍ରାଣାରାମେ
ଲଭିଛ ପରମ ଗତି ଦେବ ଦିବ୍ୟ ଧାମେ ।
ଲଗିନାହିଁ ଏ ମର୍ତ୍ତ୍ୟର କାଳିମା କର୍ଦ୍ଦମ
ଭେଦିଛ ଦୁର୍ଗମ ବ୍ୟୂହ ସାଧିଛ ଧରମ ।'
'ଜୀବନ ମନ୍ତ୍ର ଫୁଟି ତ୍ରିଦିବ ଆଲୋକେ
ମିଶିଛ ସେ ଜ୍ୟୋତିରେ ସେ ବ୍ରହ୍ମ ଲୋକେ
ଦେଖାଅ ସେ ଆଲୋକ ଏ ପରିବାରେ
ସତ୍ୟ ଶୁଭର ପଥ ନିତ୍ୟ ସଂସାରେ ।'

### ସ୍ନେହପାଳିତ ପରିବାରବର୍ଗ

ବିଶ୍ୱନାଥଙ୍କ ଶେଷ ଜୀବନରେ ଉତ୍କଳ ସାହିତ୍ୟ ପ୍ରେସ୍ ଏକ ସମୃଦ୍ଧ ଅନୁଷ୍ଠାନରେ ପରିଣତ ହୋଇଥିଲା । ପୂର୍ଣ୍ଣଚନ୍ଦ୍ର ଭାଷାକୋଷ, ଗୋପୀନାଥ ନନ୍ଦଙ୍କ ଓଡ଼ିଆ ଭାଷାତତ୍ତ୍ୱ ଓ ଯାବତୀୟ ଶ୍ରେଷ୍ଠ ଗ୍ରନ୍ଥ ଏଥିରୁ ପ୍ରକାଶିତ ହେଉଥିଲା । ଏହି ପ୍ରେସ୍‌ର ନିର୍ଭୁଲ ଛପା ଉପରେ ଅଖଣ୍ଡ ବିଶ୍ୱାସ ଜନ୍ମି ଥିଲା ।

**ପ୍ରେସ୍‌ର ସମୃଦ୍ଧି, ପତ୍ରିକାର କାଟ୍‌ତି, ଓଡ଼ିଆ ସାହିତ୍ୟ ପ୍ରତି ଜାଗ୍ରତ ପ୍ରୀତି;** ଶେଷ ଜୀବନରେ ବିଶ୍ୱନାଥଙ୍କ କ୍ଷୋଭର କିଛି ହେଲେ କାରଣ ନ ଥିଲା । ବିପୁଳ ସୌଧରେ ମହାନ୍ ସମ୍ମାନଜନକ ବାତାବରଣ ମଧ୍ୟରେ ବିଶ୍ୱନାଥ ଶେଷ ନିଃଶ୍ୱାସ ତ୍ୟାଗ କଲେ । କିନ୍ତୁ ତାଙ୍କ ତିରୋଧାନ ପରେ ପୁଅ ମହାନନ୍ଦ କର, ପୁତ୍ରବଧୂ କମଳା କର, ଚିନ୍ତାମଣି ଆଚାର୍ଯ୍ୟ ଓ ନାତି ସୁନନ୍ଦ କର କିଛି କାଳ ଉତ୍କଳ ସାହିତ୍ୟ ଚଳାଇଲେ ବି ଏହାର କ୍ରମ ଅବନତି ଓ ଶେଷରେ ବିଲୁପ୍ତି ଘଟିଲା । ଏବେ ବହୁ ଖେଦ ଓ କ୍ଷୋଭ ମଧ୍ୟରେ ନିର୍ମିତ ଉତ୍କଳ ସାହିତ୍ୟ ପ୍ରେସ୍ ହସ୍ତାନ୍ତରିତ; ବହୁ ବର୍ଷ ପରେ ପୁଣି ଉତ୍କଳ ସାହିତ୍ୟ ନବ କଳେବର ଧରି ପ୍ରକାଶିତ ହେଉଅଛି । ବିଶ୍ୱନାଥଙ୍କ ସାଧନାକ୍ଷେତ୍ର ଏକ ସ୍ମୃତିତୀର୍ଥରେ ପରିଣତ କରି ହୋଇନାହିଁ । ତାଙ୍କ କାଳର ବହୁ ହତଭାଗ୍ୟ ସାଧକ ସାହିତ୍ୟିକଙ୍କ ପରି ବିଶ୍ୱନାଥ ବିସ୍ମୃତପ୍ରାୟ । ତଥାପି ବିଷଣ୍ଣ ବା ହତୋତ୍ସାହ ହେଲେ ବିଶ୍ୱନାଥଙ୍କ ସ୍ମୃତି ପ୍ରତି ଅବମାନନା କରାଯିବ । ଯେଉଁ ଯୁଗ ଯୁଗ ବ୍ୟାପୀ ଆଳସ୍ୟ ଓ ଜାଡ୍ୟକୁ ସେ ଘୃଣା

କରୁଥିଲେ, ତାହା ଆଦୌ ଅବଲମ୍ବନୀୟ ନୁହେ ଯେ କୌଣସି ପରିସ୍ଥିତିରେ; ଏହା ହିଁ ବିଶ୍ୱନାଥଙ୍କୁ ଆମ ଅନ୍ତରାତ୍ମା'ରେ ଜୀବନ୍ତ ରଖିବାର ଏକ ବାଟ ।

ଦୃଢ଼ ଭାବେ ବିଶ୍ୱାସ କରିବା ଉଚିତ ଯେ କେହି ଅମୃତ ସନ୍ତାନ ଜନ୍ମ ହୋଇ ସାଂସ୍କୃତିକ ଅଗ୍ରଗତି ପଥ ନିର୍ଗଳ କରିବେ; କବି, ସାହିତ୍ୟିକ, ମହାନ୍ ଉଦ୍ଭାବକ ଓ ମହାତ୍ମାମାନଙ୍କ ଜନ୍ମଭୂମିକୁ ଜାତୀୟ ତୀର୍ଥକ୍ଷେତ୍ରରେ ପରିଣତ କରିବେ । କବି ରାଧାମୋହନ ଗଡ଼ନାୟକଙ୍କ ଭାଷାରେ—

ସେ ସବୁ ଜଳୁଛି ଆଜି କାନ୍ତ ଦୀପ୍ତ ଆଖି,
ରହିଅଛି ରହିଥିବ ସ୍ଥିର
ତୁମର ସେ ପ୍ରତିଭାର ସାକ୍ଷୀ ।



# 'ଉତ୍କଳ-ପୁତ୍ର' ପ୍ୟାରୀମୋହନ ଆଚାର୍ଯ୍ୟ

ଜନ୍ମ—୧୮୫୧

ମୃତ୍ୟୁ—୧୮୮୧, ଡିସେମ୍ବର ୨୮ ତାରିଖ

'ହୃଦେ ହୃଦେ ତୁମ ଚିର କୀରତିର ଲେଖ
ପ୍ରୀତିର ଅଶ୍ରୁରେ ତାର ନିତ୍ୟ ଅଭିଷେକ ।'

—କୁଞ୍ଜବିହାରୀ

କର୍ତ୍ତବ୍ୟନିଷ୍ଠ ପୁତ୍ର ପିତାମାତାର ସେବା କରେ । ବୃହତ୍ତର ପରିପ୍ରେକ୍ଷୀରେ ସେ ହୁଏ ଦେଶସେବୀ—ପୁଣି ଦେଶମାତାର ଯୋଗ୍ୟତମ ସୁତ । ତାଙ୍କ ଲାଗି ପରିଚିତ ଓ ଧନ୍ୟ ହୁଅନ୍ତି ଦେଶବାସୀ । ରବୀନ୍ଦ୍ରନାଥ ଯଥାର୍ଥରେ କହିଛନ୍ତି—'ଦେଶରେ ବହୁ କୋଟି ବଙ୍ଗାଳୀ ଅଛନ୍ତି, ପ୍ରକୃତ ମନୁଷ୍ୟ ଦୁର୍ଲଭ ।' ସେହିପରି ଭକ୍ତକବି ମଧୁସୂଦନଙ୍କ ଭାଷାରେ—"କୋଟିଏ ସନ୍ତାନ ମାଗୋ ଧରିଅଛୁ କୋଳେ, ଗୋଟିଏ ମନୁଷ୍ୟ ମାତ୍ର ନ ଦେଖଇ ତୋଳେ ।" ପ୍ୟାରୀମୋହନଙ୍କ ପରି କୋଟିକେ ଗୋଟିଏ ମନୁଷ୍ୟ ମିଳିବା ଦୁଷ୍କର । ସେ ସୁଯୋଗ୍ୟ ଉତ୍କଳ-ପୁତ୍ର, ଯାହାକୁ ଘେନ ଉତ୍କଳଜନନୀ ଗୌରବାନ୍ୱିତା । ଊନବିଂଶ ଶତାବ୍ଦୀରେ ଉତ୍କଳର ଅଳ୍ପ କେତେକ ମହାପୁରୁଷଙ୍କ ମଧ୍ୟରେ ସେ ଜଣେ—ଜ୍ଞାନୀ, କର୍ମୀ, ନେତା, ସର୍ବୋପରି ଉଚ୍ଚକୋଟୀର ମାନବ ।

କବି ସହିତ କବିତାର ଗ୍ରାହକ, ଭାବୁକ ସହିତ ଭାବଗ୍ରାହୀ, ଗୁଣୀ ସହିତ ଗୁଣଜ୍ଞ ଥିଲେ ବିକାଶ ପୂର୍ଣ୍ଣାଙ୍ଗ ହୁଏ । ପ୍ରତିଭା ବଣମଲ୍ଲୀ ପରି ବନରେ ଫୁଟି ଝରିଯାଏ ନାହିଁ । ପ୍ୟାରୀମୋହନଙ୍କ ପଛରେ ମୁଖ୍ୟତଃ ତିନିଜଣ ପ୍ରେରଣାଦାତା ଥିଲେ—ସଦା-କର୍ମତତ୍ପର, ସାହସୀ, ସାହିତ୍ୟିକ ଗୋବିନ୍ଦ ରଥ, ଭକ୍ତକବି ମଧୁସୂଦନ, ଫକୀରମୋହନ ସେନାପତି । ମଧୁସୂଦନ ଥିଲେ ତାଙ୍କର ଅନ୍ତରଙ୍ଗ ଜୀବନଦୋସର । ଉଭୟେ ଆଦର୍ଶରେ ସମପନ୍ଥୀ,

ମର୍ମେ ମର୍ମେ କଲ୍ୟାଣବ୍ରତୀ, ଚରିତ୍ରବନ୍ତ । * ମଧୁସୂଦନଙ୍କ ଦୃଷ୍ଟିରେ ପ୍ୟାରୀ ଥିଲେ ଉତ୍ସାହର ଦୀପ୍ତିମନ୍ତ ମୂର୍ତ୍ତି, ପୌରୁଷସମ୍ପନ୍ନ, ସ୍ନେହ ଦୟାର ଏକ ଅବତାର, କଠୋରତା ଓ କୋମଳତାର ଏକ ମଧୁର ସମନ୍ୱୟ ।

ଚରିତ୍ରବତ୍ତା, ମନୀଷା, କଠୋର କର୍ମନିଷ୍ଠା, ସ୍ୱାଧୀନ ଚିନ୍ତା, ନିର୍ଭୀକତା ଯୋଗୁଁ ସେ ଫକୀରମୋହନଙ୍କ ଅନ୍ତରରେ ଗଭୀର ପ୍ରଭାବ ବିସ୍ତାର କରିଥିଲେ; ତେଣୁ ତାଙ୍କ ଅକାଳ ବିୟୋଗରେ ଉତ୍କଳର ଅପୂରଣୀୟ କ୍ଷତି ଘଟିଲା ଭାବି ବ୍ୟାସକବି ମର୍ମେ ମର୍ମେ ବ୍ୟଥା ଅନୁଭବ କରିଥିଲେ । ସେ 'ଉତ୍କଳଭ୍ରମଣଂ'ରେ ଲେଖିଛନ୍ତି—

'ହେ ପ୍ୟାରୀ ଆଚାର୍ଯ୍ୟ, ଭାଇ ଫାଟିଯାଏ ଛାତି
ଗୋଟି ଗୋଟି ମନେ କରି ତୁମ ଗୁଣ ଖ୍ୟାତି ।'

ପ୍ୟାରୀମୋହନ ପରାର୍ଥକୁ କରିଥିଲେ ନିଜର ସ୍ୱାର୍ଥ, ଓଡ଼ିଶାର ହିତକୁ ଜୀବନବ୍ରତ । ଅନ୍ୟାୟୀ, ପ୍ରବଳ ସମକ୍ଷରେ ସେ ଥିଲେ ଅନବନତ, ସଂଗ୍ରାମତତ୍ପର; ଗୁଣୀ, ଜ୍ଞାନୀଙ୍କ ସମକ୍ଷରେ ନମ୍ର, ଶାନ୍ତ । ସ୍ପଷ୍ଟବାଦିତା, ସତ୍ୟନିଷ୍ଠା, ସ୍ୱାଧୀନ ମନୋଭାବ ଏକ ଏକ ସାମୟିକ ଗୁଣଭାବେ ତାଙ୍କଠାରେ ପ୍ରତିଭାତ ହେଉ ନଥିଲା । ଏସବୁ ଥିଲା ତାଙ୍କର ଆତ୍ମୀଭୂତ । ସେ କାଳ ତମିସ୍ରମୟ ଓଡ଼ିଶାର ଏକ ଉଜ୍ଜ୍ୱଳ ଦୀପଶିଖା, ସେ ଥିଲେ ଏକ ଦୃଢ଼ ମାଇଲ ଖୁଣ୍ଟ, ଯାହା ଉପରେ ଭରା ଦେଇ, ଭରସା ରଖି ଦୃଢ଼ ପଦକ୍ଷେପରେ ଜାତି ଅଗ୍ରଗତି କରେ । ଧନଶୂନ୍ୟ ଅବସ୍ଥାରେ ଦୃଢ଼ସଂକଳ୍ପ ଓ କର୍ତ୍ତବ୍ୟନିଷ୍ଠ ବ୍ୟକ୍ତି କି ଅସାଧ୍ୟ ସାଧନ କରିପାରେ, ସେ ଥିଲେ ଏକ ଦୃଷ୍ଟାନ୍ତ ସ୍ଥଳ । ପ୍ୟାରୀମୋହନ ଏବେ ଓଡ଼ିଶାର ଏକ ନାମ, ପ୍ରାତଃସ୍ମରଣୀୟ ।

ତାଙ୍କର ଜନ୍ମ ୧୮୫୧ ଖ୍ରୀଷ୍ଟାବ୍ଦରେ କଟକ ଜିଲାର 'ପଶ୍ଚିଲୁଣ୍ଡା' ଗ୍ରାମରେ । ପିତା ଭୁବନମୋହନ କଟକ ଅଦାଲତର ଜଣେ ମୋକ୍ତାର ଥିଲେ । କୁଆଁପାଳ ଗ୍ରାମର

---

* ସେ ସିଂହ ବିକ୍ରାନ୍ତ ତବ ପୁରୁଷ ହୃଦୟ
ହବା କି ଦୀପ୍ତ ପୁଣ୍ୟ ଉତ୍ସାହ ଅନଳେ
ଦୟା ସ୍ନେହେ ବିଗଳିତ ସେ ତବ ଅନ୍ତରୀୟ
ସୁନ୍ଦର ମିଳନ ଆହା କଠୋର କୋମଳେ ।

ଦେବାତ୍ମା ପ୍ୟାରୀମୋହନ—ବସନ୍ତ ଗାଥା—

ଭକ୍ତକବି ମଧୁସୂଦନ

ପାଠଶାଳାରେ ପାଠ ଶେଷ ହେବାପରେ ସେ ଇଂରାଜୀ ପଢ଼ିବାଲାଗି କଟକ ଜିଲା ସ୍କୁଲରେ ନାମ ଲେଖାଇଲେ ।

ତାଙ୍କ ବାଲ୍ୟଭ ବ୍ୟବହାର କିନ୍ତୁ ଅସ୍ୱାଭାବିକ ଥିଲା । ବୋଧ ହେଉଥିଲା, ସତେ ଯେପରି ଜଣେ ବହୁ ଅନୁଭବୀ ପ୍ରୌଢ଼ ! କଳାବନ୍ତ ପରି ଷିଥିଲା, ଦାର୍ଶନିକ ପରି ଚିନ୍ତନାକ୍ଷ୍ମ, ମୁନିପରି ମୌନ ଭାବାପନ୍ନ, ଏକାନ୍ତ ନିସ୍ପୃହ, ଉଦାସୀନ । ଖେଳମେଳରୁ ସେ ଦୂରେଇ ରହୁଥିଲେ । ସତେ ବା ଗୋଟା ପୃଥିବୀ କଥା ଭାବୁଛନ୍ତି ; କିଛି ଥଳକୂଳ ପାଉନାହାନ୍ତି ।

୧୮୬୯ ରେ ଏଣ୍ଟ୍ରେନସ୍ ପାସ୍ କରି ସେ ଏଫ୍. ଏ. ଶ୍ରେଣୀରେ ନାମ ଲେଖାଇଲେ । ସେତେବେଳର କଟକ ଏକ ଆବର୍ଜନାମୟ ସହର । ଆଜି ଶହେ ବର୍ଷ ପରେ ବି ସେହିପରି । କଟକର ଦୁରବସ୍ଥା ଦର୍ଶାଇ 'ଦରଖାସ୍ତ ଜୋତ୍ସ୍ନାନ୍'—ଅର୍ଥାତ୍ ଜୋତାମାନଙ୍କର ଆବେଦନ—ପ୍ରବନ୍ଧ ଲେଖି ସେ ପ୍ରକାଶ କରିଥିଲେ । ସମ ଲୋଚନା ଅହେତୁକ ଗୋଷ୍ଠ କଲେଜର ଇରଭିଙ୍ଗ୍ ସାହେବ ଏଥିରେ ଉତ୍କ୍ଷିପ୍ତ ହୋଇ ତାଙ୍କୁ ଶିକ୍ଷାନୁଷ୍ଠାନରୁ ବିତାଡ଼ିତ କରିଥିଲେ । ଅଧକ୍ଷଙ୍କ ବାରମ୍ବାର ପ୍ରବର୍ତ୍ତନା ସତ୍ତ୍ୱେ ସେ କ୍ଷମାପ୍ରାର୍ଥନା କଲେ ନାହିଁ । କିଶୋର ବୟସର ସେହି ଔଦ୍ଧତ୍ୟକୁ ସ୍ପର୍ଦ୍ଧାସିଂହୋଚିତ ସ୍ୱାଧୀନ ମନୋଭାବ ଓ ତେଜସ୍ୱିତା ବୋଲି ବିଚାରଶୀଳ ବ୍ୟକ୍ତିମାନେ ବିବେଚନା କରିଥିଲେ ।

ବ୍ୟାହତ ଆତ୍ମମର୍ଯ୍ୟାଦା ଉତ୍‌ଫଣ ଫଣୀ ପରି ଗର୍ଜନ କରି ଉଠିଲା; ପ୍ରତିକୂଳ ପରିସ୍ଥିତିରୁ ହିଁ ତାଙ୍କର ସୃଷ୍ଟିକଳ୍ପସ୍ପୃହା ଜାଗ୍ରତ ହୋଇ ଉଠିଲା । ପ୍ରାକୃତିକ ପ୍ରେରଣା ତାଙ୍କ ଅନ୍ତରେ; ପ୍ରବଳ ଇଚ୍ଛାଶକ୍ତି ଓ ଉତ୍ସାହ; ଆତ୍ମଶକ୍ତି ଓ ଈଶ୍ୱରବିଶ୍ୱାସ । ସେତେ-ବେଳେ କାଶୀ ଆଗିର କଙ୍କଲପାଡ଼ ପରି କଟକରେ ଗୋଟିଏ ମାତ୍ର ସରକାରୀ ସ୍କୁଲ; ବିଦେଶୀ ଶାସକର ଅନୁଶାସନରେ ପରିଚାଳିତ । ସେ ଶୃଙ୍ଖଳା ନାମରେ ଶୃଙ୍ଖଳ ପିନ୍ଧାଏ, ଦେଶପ୍ରେମ ଏଠି ଦେଶଦ୍ରୋହ ନାମରେ ଅଖ୍ୟାତ । ଦାସତ୍ୱର ଏଇ ପେଡ଼ା ମଧ୍ୟରେ ସ୍ୱାଧୀନ ବ୍ୟକ୍ତିତ୍ୱର ବିକାଶ ହୋଇ ପାରିବ କିପରି ? ପ୍ୟାରୀମୋହନ ଗୋଟିଏ ବେସରକାରୀ ସ୍କୁଲ ପ୍ରତିଷ୍ଠା ଲାଗି ତତ୍ପର ହୋଇ ଉଠିଲେ । କିନ୍ତୁ ପକେଟ ଶୂନ୍ୟ; ଚତୁର୍ଦ୍ଦିଗରେ ନୈରାଶ୍ୟ, ଔଦାସୀନ୍ୟ, ଅଶିକ୍ଷା ଓ କୁସଂସ୍କାରର ରାଜତ୍ୱ । ସେ ବାଧା ବିଘ୍ନ ସମକ୍ଷରେ ଭାଙ୍ଗି ପଡ଼ିବାର ଏକ ବ୍ୟକ୍ତି ନୁହନ୍ତି; ସଂକଳ୍ପରେ ବଜ୍ରଦୃଢ଼, ଉତ୍ତମଗୁଣୀ ଲୋକ—"ପ୍ରାରଭ୍ୟ ଉତ୍ତମଗୁଣାଃ ନ ପରିତ୍ୟଜନ୍ତି ।"

ହାଇସ୍କୁଲ ସ୍ଥାପନ ଏ ଯୁଗରେ ଏକ ସାଧାରଣ କୀର୍ତ୍ତିଭାବେ ବିବେଚିତ ହୋଇପାରେ । କିନ୍ତୁ ସେତେବେଳେ ଏହା ଏକ ଅସାଧ୍ୟ ସାଧନ । ସ୍କୁଲକୁ ଅର୍ଥ ଯୋଗାଇବା

ଲାଗି କମିଶନର ଅଫିସରେ ପ୍ୟାରୀମୋହନଙ୍କୁ କିରାଣି କାମ କରିବାକୁ ପଡ଼ିଥିଲା । ମାସକୁ ଦରମା ମାତ୍ର ୨୫ ଟଙ୍କା । ତାପରେ ସେ ଡମପଡ଼ା ରାଜାଙ୍କ ମ୍ୟାନେଜର ଭାବେ ନିଯୁକ୍ତି ଲାଭ କଲେ । ଦରମା ମାସକୁ ଟ ୫୦ ଙ୍କା । ପରିବାର ଓ ନିଜ ଚଳାଚଳ ଲାଗି ଯାହା ସାମାନ୍ୟ ରଖି ସ୍କୁଲକୁ ଅକୁଣ୍ଠଭାବେ ସମସ୍ତ ଟଙ୍କା ଦେଇ ଦେଉଥିଲେ ।

ତାଙ୍କ ପ୍ରତିଷ୍ଠିତ ଏହି ବିଦ୍ୟାଳୟ ୧୮୭୫ରେ ମଧ୍ୟଇଂରାଜୀ ସ୍କୁଲ ଓ ୧୮୭୮ରେ ହାଇ ସ୍କୁଲରେ ପରିଣତ ହେଲା । ଏହି ଶିକ୍ଷାନୁଷ୍ଠାନଟି ଲାଗି ସେ ନିଜ ଜୀବନକୁ ପାଣି ଛଡ଼ାଇ ଦେଇଥିଲେ । ତାଙ୍କ ତ୍ୟାଗ ଉପରେ ପ୍ରତିଷ୍ଠିତ ଏହି ସ୍କୁଲ ତାଙ୍କ ଅନ୍ତେ 'ପ୍ୟାରୀମୋହନ ଏକାଡେମୀ' ନାମରେ ନାମିତ ହେଲା । ଫକୀରମୋହନ 'ଉତ୍କଳ ଭ୍ରମଣଂ'ରେ ଲେଖିଛନ୍ତି—

"ମରନ୍ତି ତ ଧନେ, ନୋହେ ମରିଛ ଅକାଳେ
ପ୍ୟାରୀ ଏକାଡେମୀ ନାମ ଥିବ କାଳେ କାଳେ ।"

ପ୍ୟାରୀମୋହନଙ୍କ ସାହସ ଓ ସେବାଭାବର ବହୁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ରହିଛି—ନଅଙ୍କ ଦୁର୍ଭିକ୍ଷରେ ସାହାଯ୍ୟ ଓ ପୁରୀ ବିସୂଚିକାରେ ଚିକିତ୍ସା ବିଶେଷ ଉଲ୍ଲେଖଯୋଗ୍ୟ । ମହତ୍ କାର୍ଯ୍ୟରେ ଏଭଳି ଆତ୍ମୋତ୍ସର୍ଗ ସେ କାଳେ ବିରଳ ଥିଲା ।

୧୮୮୧ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୮ ତାରିଖରେ ମାତ୍ର ୩୦ ବର୍ଷ ବୟସରେ ତାଙ୍କୁ ଇହଧାମ ତ୍ୟାଗ କରିବାକୁ ହୋଇଥିଲା । ୩୧।୧୨।୮୧ ତାରିଖ 'ଉତ୍କଳ ଦୀପିକା' ୫୨ ସଂଖ୍ୟାରେ "ମୃତ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ" ଶୀର୍ଷକରେ ସମ୍ପାଦକ ଗୌରୀଶଙ୍କର ରାୟ ନିମ୍ନୋଦ୍ଧୃତ ବିବରଣୀ ପ୍ରକାଶ କରିଥିଲେ—

* "ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ଡୋମପଡ଼ା ମୁକାମରେ ଅଠ ଦଶ ଦିନ ଜ୍ୱର ଭୋଗକରି ଆରୋଗ୍ୟ ଲାଭ ନିମିତ୍ତ ଗତ ଶନିବାର ଏ ନଗରସ୍ଥ ଆପଣା ଘରଠାକୁ ଆସିଥିଲେ ଏବଂ ତାହାଙ୍କର ପୀଡ଼ା ପ୍ରକାଶ୍ୟରେ କଠିନ ବୋଧ ହେଉ ନଥିବାରୁ ତଦ୍ଧିର ସମ୍ବାଦ ଅତ୍ୟଳ୍ପ ଲୋକ ପାଇଥିଲେ ଓ ତାହାଙ୍କ ଚିକିତ୍ସା ଘରେ ଘରେ ହେଉଥିଲା । ଗତ ଗୁରୁବାର ପ୍ରାତଃକାଳରେ ତାହାଙ୍କର ମୃତ୍ୟୁ ସମ୍ବାଦ ଏମନ୍ତ ଆଶ୍ଚର୍ଯ୍ୟ ରୂପରେ ରଟନା ହେଲା କି ଯେଉଁମାନେ ପୂର୍ବ ରାତ୍ରିରେ ତାହାଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ ସେମାନେ ଭୂଙ୍ଗା ତଟସ୍ଥ ହେଲେ । ତାହାଙ୍କୁ ସେରେବ୍ରୋ ସର୍ନ୍ନ୍ୟାସ ଧରିବା ଏବଂ ଚିକିତ୍ସକମାନେ ତାହା ଠଉରାଇ ନ ପାରିବାର ଆମ୍ଭେମାନେ ଅନୁମାନ କରୁ । ଯାହାହେଉ, ତଦ୍ଧିର ବିସ୍ତର

* ସମ୍ବାଦପତ୍ରରେ ସେ କାଳର ଓଡ଼ିଶା । —ସୁଧାକର ପଟ୍ଟନାୟକ

ବର୍ତ୍ତମାନ ଅନାବଶ୍ୟକ । ଓଡ଼ିଶା ଏମନ୍ତ ହତଭାଗିନୀ ଯେ ପ୍ୟାରୀବାବୁଙ୍କ ପରି ପୁତ୍ରକୁ ହରାଇଲା । ଏହାଙ୍କର ବୟସ କେବଳ ୩୦ ବର୍ଷ ଥିଲା ଏବଂ ଏହି ଅଳ୍ପକାଳ ମଧ୍ୟରେ ସେ ଯେମନ୍ତ କାର୍ଯ୍ୟକଳାପ ଦ୍ୱାରା ଆପଣାକୁ ଓଡ଼ିଶାରେ ଏବଂ ଦକ୍ଷିଣରେ ପରିଚିତ କରିଅଛନ୍ତି ସେ ସମସ୍ତ ଏହି ପତ୍ରିକାର ପାଠକମାନେ ବିଲକ୍ଷଣ ସ୍ମରଣ ରଖିଥିବେ ବାହୁଲ୍ୟ ବର୍ଣ୍ଣନାର ପ୍ରୟୋଜନ ନାହିଁ । ସେ କେବଳ ବକ୍ତୃତା ଦ୍ୱାରା ନୁହେ ମାତ୍ର କାର୍ଯ୍ୟଦ୍ୱାରା ଓଡ଼ିଶାର ଜଣେ ପରମ ବନ୍ଧୁ ବୋଲି ଜଣା ଯାଇଅଛନ୍ତି ଏବଂ ଏତେବେଳ ପର୍ଯ୍ୟନ୍ତ ତାହାଙ୍କ ସ୍ଥାପିତ ବିଦ୍ୟାଳୟଟି ବିଦ୍ୟମାନ ରହି ତାହାଙ୍କର ମହତ୍ତ୍ୱ, ସ୍ୱଦେଶାନୁରାଗ, ଉଦାରତା ଓ ମନୁଷ୍ୟତାର ସାକ୍ଷ୍ୟ ଦେଉଅଛି । କେତେ ଦୁଃଖୀ ବାଳକ ଏଥିରେ ବିଦ୍ୟାଲାଭ କରୁଥିଲେ ସେମାନଙ୍କ ଦଶା ଭାବିବା ବେଳକୁ ହୃଦୟ ବିଦୀର୍ଣ୍ଣ ହେଉଅଛି । ଓଡ଼ିଶାର ଜଣେ ସାମାନ୍ୟ ବେତନଭୋଗୀ ଲୋକ ଏଡ଼େ ମହତ୍ ଅନୁଷ୍ଠାନର ଦ୍ରଷ୍ଟା ହୋଇଥିଲେ କି ତାହା ବଡ଼ ବଡ଼ ରାଜା ଜମିଦାରଙ୍କଠାରେ ଦେଖା ଯାଇନାହିଁ । ପ୍ୟାରୀବାବୁ ଯେମନ୍ତ ସୁଶିକ୍ଷିତ ହୋଇ ସ୍ୱାଧୀନତା ଓ ଧର୍ମକୁ ଅବଲମ୍ବନ କରି ଚାଲୁଥିଲେ ତହିଁରେ ଆମ୍ଭମାନଙ୍କର ବିଶ୍ୱାସ ଥିଲା ଯେ ଭବିଷ୍ୟତରେ ତାହାଙ୍କ ଦ୍ୱାରା ଓଡ଼ିଶାର ଅନେକ କାର୍ଯ୍ୟ ହୁଅନ୍ତା । ବର୍ତ୍ତମାନ ସେ ଆଶା ବିଫଳ ହେଲା ।"

ମଣିଷ ଜୀବନର ମାପକାଠି ତାର ମହତ୍‌କର୍ମ । ସେ ଭାବରେ ପ୍ୟାରୀମୋହନ ଦୀର୍ଘାୟୁ ଓ ଅମୃତପୁତ୍ର ପରି ମର୍ମେ ମର୍ମେ ସଞ୍ଜୀବିତ ।

'ଉତ୍କଳ ପୁତ୍ର' ତାଙ୍କର ପୁତ୍ର—ଏକ ପାକ୍ଷିକ ପତ୍ର । ସେ ନିଜେ ଯେପରି ସ୍ୱଳ୍ପାୟୁ, ତାଙ୍କ ପୁତ୍ର ସେହିପରି କ୍ଷୀଣଜନ୍ମା । ସେ ଯେପରି ଏକ ମହତ୍ ଆତ୍ମା, ତାଙ୍କ ପତ୍ରିକା ସେହିପରି ମହାପ୍ରାଣ୍ ସୃଷ୍ଟି । ୧୮୭୩ ଖ୍ରୀଷ୍ଟାବ୍ଦରେ ଏହାର ଜନ୍ମ, ୧୮୭୪ ରେ ମୃତ୍ୟୁ ବା ଅପମୃତ୍ୟୁ । ଦୁଇ ବର୍ଷର ଶିଶୁ, କିନ୍ତୁ ଶକ୍ତିଶାଳୀ, ଅସାଧ୍ୟ ସାଧକ ।

ଛାତ୍ର ଜୀବନରେ ଏପରି ଏକ ପତ୍ରିକା ପ୍ରକାଶ କେବଳ ସେ କାଳରେ ନୁହେଁ, ଏକାଳରେ ମଧ୍ୟ ଏକ ଅତ୍ୟାଶ୍ଚର୍ଯ୍ୟ ଦୁଃସାହସ । ଏଥିରୁ ପ୍ୟାରୀମୋହନଙ୍କ ପୋଖତ ବୁଦ୍ଧି, ବିଚାରଶୀଳତା, ନିର୍ଭୀକତା, ସୌମ୍ୟ ସାମ୍ବାଦିକତା ଓ ସାହିତ୍ୟିକତାର ସୁପରିଚୟ ମିଳେ ।

ମାନସିକତାର ଦୁର୍ଭିକ୍ଷରେ ବହୁ ଶିଶୁପ୍ରତିଭା ପରି 'ଉତ୍କଳ ପୁତ୍ର' ଅକାଳରେ ପ୍ରାଣ ହରାଇଥିଲା । ଶୁଖିଲା ନଈରେ ନାଆକୁ କେତେଦୂର ବା ଠେଲିନେଇ ହୁଅନ୍ତା ? ଏହାର ସେକାଳେ ଯେଉଁ ଅଳ୍ପ କେତେକ ଗ୍ରାହକ ଥିଲେ, ସେମାନେ ଯଥାମତେ ନିଜର ଦେୟ ଦେଉ ନ ଥିଲେ । ସମ୍ପାଦକଙ୍କ ବିକଳ ଡକରା କାଲ କାନରେ ହିଁ ପଡ଼ୁଥିଲା । କ୍ଷୋଭ

ପ୍ରକାଶ ନିରର୍ଥକ ହେଲେ ହେଁ ରୁଗ୍ଣ ଶିଶୁପୁତ୍ରର ଭବିଷ୍ୟତ ଆଶଙ୍କାରେ ଅଧୀର ହୋଇ ସେ ଗ୍ରାହକଙ୍କୁ ଚେତାଇ ଦେଉଥିଲେ—

"ଗ୍ରାହକେ ! ଦେଖୁ ଦେଖୁ ଆଠମାସ ଗତ ହେଲା । ଅଦ୍ୟାବଧି ଆପଣମାନେ ସମସ୍ତେ 'ପୁତ୍ର' କଥା ମନେ ନ ପକାଇଲେ । ଏଥର ଅବେ ଦୟା କରିବେ ? ଅଧିକ ତ ନୁହେଁ—ଅଗ୍ରୀମ ଏକ ଟଙ୍କା, ପଶ୍ଚାତ୍ ଦେୟ ଏକଟଙ୍କା ଦୁଇଅଣା, ଡାକମାସୁଲ ଚାରିଅଣା ।"

ପୁନଶ୍ଚ "ଆମ୍ଭେମାନେ ମହାଜନ ଘରକର ସୁଧ ଖଣ୍ଡ ଦେଇ ହାତରୁ ଟିକଲ ଚଢ଼ାଇ କି ଆପଣମାନଙ୍କୁ କେବଳ କାଗଜ ପଢ଼ିବାକୁ ଦେଉଥିବୁଁ ? ଟିକିଏ ଭାବନ୍ତୁନାହିଁ ଯେ ସମ୍ବାଦପତ୍ର ଚଳନ ସମ୍ପୂର୍ଣ୍ଣ ରୂପେ ଗ୍ରାହକଙ୍କ ଉପରେ ନିର୍ଭର କରେ । ହା ଆମ୍ଭମାନଙ୍କର କପାଳ ! ଅପବାଦସୂଚକ ହୋଇ ପଡ଼ିଲେ ଫୌଜଦାରୀ ଟଙ୍କା ନ ଘଟିଲେ ଅଦାଲତ ଦେଖିବା ! ସମ୍ପାଦନ ତ ଗାଳି ଖାଉଛୁଁ !! ଏବେ ଭଲକରି ହେଲେ ପୁଣି ବାକ୍ସ ଫିଟାଅ । ଯେ ହାର ଯାହା ଦେୟ ଅଛି ପିଛିଲା ଆଗାମୀ କରି ଭଲ ପଠାଇଦିଅ ।"

ଏ କାଳ ପରି ତତ୍କାଳୀନ ଓଡ଼ିଶାରେ ମେକି ଦେଶସେବୀର ସଂଖ୍ୟା ଅଧିକ ଥିଲା । ବାହାରେ ପରମାର୍ଥୀ, ଭିତରେ ସ୍ୱାର୍ଥୀ । ଚିତା ଚନ୍ଦନରେ ଆପାଦମସ୍ତକ ଚର୍ଚ୍ଚିତ, ଅଥଚ ଚୋରାକଣ୍ଟା ।

ବୟସରେ କନିଷ୍ଠ ହେଲେ ହେଁ ବ୍ୟଙ୍ଗ ପ୍ରକାଶରେ ପ୍ୟାରୀମୋହନ ଫକୀରମୋହନଙ୍କ ଅଗ୍ରଜ । ବ୍ୟଙ୍ଗ 'ପୁତ୍ର' ହାତର ଏକ ଶାଣିତ ଅସ୍ତ୍ର; ସେ ସାହେବପ୍ରଭୁଙ୍କ ଦୃଷ୍ଟି ଆକର୍ଷଣ ଲାଗି ଲୋକଦେଖାଣିଆ ଭାବରେ କାର୍ଯ୍ୟ କରୁଥିବା ହିଂସ୍ର, ଅସହିଷ୍ଣୁ, ପଲ୍ଲବଗ୍ରାହୀ ତଥାକଥିତ ଦେଶସେବୀଙ୍କୁ ନିଃଶେଷ କରି ଦେଇଛନ୍ତି ।

"ଏକ ଶ୍ରେଣୀସ୍ଥ ଲୋକଙ୍କୁ ଆପଣମାନେ ଚିହ୍ନନ୍ତି କି ? ସେମାନେ ପୁଣି ଦେଶହିତୈଷୀ ! କୌଣସି କଥା ଉପସ୍ଥିତ ହେଲେ ଏମାନେ କହନ୍ତି, ଏ ଦେଶରେ କିଏ ଅଛି ଯେ ଏ କାର୍ଯ୍ୟ କରିପାରିବ ? ଏହି କଥାଟି ଏମନ୍ତ ଭାବରେ କହୁଥାନ୍ତି ଯେମନ୍ତ କି ସେ ନିଜେ ଉକ୍ତ କାର୍ଯ୍ୟଟି କରିବାକୁ ସମ୍ପୂର୍ଣ୍ଣ ଭାବେ ସକ୍ଷମ ବୋଲି ପ୍ରକାଶ ପାଇବ ଏବଂ ରାଜପୁରୁଷମାନଙ୍କ ନିକଟରେ ପୁଣି ଆପଣାର ଦେଶହିତ ଇଚ୍ଛାଟିର ପରିଚୟ ଦେବାକୁ ଟିକିଏ ବିଳମ୍ବ ନଥାଏ, ମାତ୍ର ଅନ୍ତରରେ ଆଉ ସେ ଭାବ ନାହିଁ ।

କୌଣସି ଗରିବ ଲୋକ ଯଦି ଭଲ ଲୁଗା ଖଣ୍ଡେ କି ଭଲ ଜୋତା ଯୋଡ଼ିଏ ପିନ୍ଧିଲା ତାଙ୍କର ଚକ୍ଷୁରେ ତାହା ସହେ ନାହିଁ, ଯେବେ କେହି ତାଙ୍କୁ ଦେଖିଲେ ଦଣ୍ଡବତ

ନ କରେ, ତେବେ ତତ୍‌କ୍ଷଣାତ୍ ସେମାନଙ୍କ ମନରେ ହିଂସା ଭାବର ଉଦୟ ହୁଏ । ଏମନ୍ତ କି କେତେ କେତେ ସେହି ହିଂସାଭାବକୁ କେତେ ଲୋକଙ୍କ ନିକଟରେ ପ୍ରକାଶ କରି ପକାନ୍ତି ଯେ ଅମୁକ ବ୍ୟକ୍ତି ଆସି ଆଗରେ ଏମନ୍ତ ଲୁଗା ଓ ଏପରି କୋଟା ପିନ୍ଧି ଚାଲିଗଲା । ଆମ୍ଭଙ୍କୁ ଥରେ ମୁଣ୍ଡ ପୁଚ୍ଛା ନୁଆଁଇଲା ନାହିଁ । ସେ କଥାର ଆମ୍ଭବିଚାର ନାହିଁ । କେବଳ ଶୁଣିଲି ଦଣ୍ଡବତ ଚାହାନ୍ତି । ଯେବେ ସେମାନଙ୍କର ସେହିପରି ଭଲ ଗୁଣ ଥାଆନ୍ତା, ସେମାନଙ୍କ ପ୍ରତି ସମସ୍ତଙ୍କର ଭକ୍ତି ସ୍ୱତଃ ଉଦୟ ହୁଅନ୍ତା । କିନ୍ତୁ ଭଲଗୁଣ ସଙ୍ଗେ ଦେଖା ନାହିଁ, ମାନ୍ୟ ଖୋଜିବାକୁ ଅଗ । ଧିକ୍ ଧିକ୍ ଏପରି ଯାଚି କଲ୍ୟାଣ ମାଗି ଓଲଗିବାକୁ, ଧିକ୍ ସେମାନଙ୍କ ଦେଶହିତୈଷୀ ପଣ ! ଦେଶର ହିତ ସଙ୍ଗେ ଏମାନେ କିଛି ସମ୍ବନ୍ଧ ରଖନ୍ତି ନାହିଁ । ଏମାନେ କୌଣସି ସ୍କୁଲରେ ଦୁଇ ଚାରି ଦିନ ଇଂରାଜୀ ପଢ଼ିଅଛନ୍ତି ବା ପଢୁଅଛନ୍ତି । ତେତିକି ଗର୍ବ ତ କହିଲେ ସରିବ ନାହିଁ । କାହା ସଙ୍ଗେ ଦେଖାହେଲେ ଦୁଇ ଚାରିପଦ ଇଂରାଜୀ ଭଡ଼ ଭଡ଼ ହୋଇ କହି ପକାନ୍ତି । କିନ୍ତୁ ବିଦ୍ୟା ଟିକିକ ସରିଗଲାରୁ ତେଣିକି ଉଁ ଉଁ ହୋଇ ଅଟକାଇ ହୋଇଯାଆନ୍ତି ।

ସେ କାଳର କେତେକ ଗଡ଼ଜାତର ରାଜା ଓ ଜମିଦାର ଅତ୍ୟାଚାରର ଏକ ଏକ ନମୁନା ସ୍ୱରୂପ ହୋଇଥିଲେ; ଫକୀର ଲେଖନୀ ମୁନରେ ଯେ ସେମାନଙ୍କୁ ନିର୍ମମଭାବେ ବିଦ୍ଧ କରିଛନ୍ତି । 'ପୁଅ' ଯେତେ ନିଃସ୍ୱ, ନିଃସହାୟ ହେଲେ ବି ରାଜାର ଦ୍ୱାରସ୍ଥ ହୋଇନାହିଁ । ଚାଟୁ ବା କାକୁତି ସେ ଜାଣି ନ ଥିଲା । ସତ୍ୟ ଯେତେ କଟୁ ହେଲେ ବି ସେ କହୁଥିଲା । ପ୍ୟାରୀମୋହନଙ୍କ ଲେଖନୀ ଉନ୍ମୁକ୍ତ, ଅବାରିତ ଥିଲା । ଶାସନ ପ୍ରତି ଉଦାସୀନ, ଭୋଗବିଳାସରେ ମାତ୍ର ସକ୍ରିୟ, ଶିକ୍ଷା ପ୍ରତି ବୀତସ୍ପୃହ, ଖିଆଲି, ଜିଦ୍‌ଖୋର, ଅବିମୃଷ୍ୟକାରୀ ରାଜା ସମକ୍ଷରେ ତାଙ୍କ ଲେଖନୀ ବର୍ଚ୍ଛା ହୋଇ ଯାଉଥିଲା ।

"ଗଡ଼ଜାତର ରାଜାମାନେ ଦୋଳ, ଗୁଣ୍ଡିଚାଯାତ୍ରା, ଚନ୍ଦନ ଓ ରାମନବମୀରେ, ଶୀତଳଷଷ୍ଠୀ ଓ ଚମ୍ପକଦ୍ୱାଦଶୀ ବାଣରେ ଆଟଡ଼ା ଟିଲା ଓ ଅନ୍ୟାନ୍ୟ ବାଜେ ବିଷୟରେ ଯେତେ ଟଙ୍କା ଝୁଣ ଝୁଣ କରି ଗଣୁଅଛନ୍ତି, ତହିଁର ଅଷ୍ଟମାଂଶର ଏକ ଅଂଶ ଯେବେ ପାଠଶାଳାଦି ସଂସ୍ଥାପନରେ ଦେଶର ଉନ୍ନତିରେ ବ୍ୟୟ କରନ୍ତି, ତେବେ କି ସୁଖର କଥା ହୁଅନ୍ତା ।"

"ଗୋଟିଏ ଆଶ୍ଚର୍ଯ୍ୟ କଥା ଦେଖିଲୁ । ବଡ଼ମ୍ବା ରାଜାଙ୍କର ଶଗଡ଼ ଚଢ଼ି ସ୍ୱୟଂ ତା ତା କରି ବଳଦ ଅଡ଼ାଇବାରେ ବଡ଼ ଆମୋଦ, ବଡ଼ ପ୍ରେମ; ବୋଧହୁଏ, ଚଷାମାନଙ୍କର ସନ୍ତୋଷ ଜନ୍ମାଇବା ସକାଶେ ସର୍ବ ରାଜା ଏପରି କରିଅଛନ୍ତି । ଆଉ କିଛି ଦିନ ଉତ୍ତାରୁ ହୁଏତ କେଳାଙ୍କ ସୁଖ ଜନ୍ମାଇବା ସକାଶେ ଗଧ ଉପରେ ଚଢ଼ି ବୁଲି ପାରନ୍ତି ।"

"ରଣପୁର ରାଜା, ତାଙ୍କର ରାତ ଦିନ, ଦିନ ରାତ । ରାଜକାର୍ଯ୍ୟ ବୁଝିବା ବିଷୟରେ ତୁନି ହୋଇ ବସିବା ମାତ୍ର ସାର । ବର୍ଷକ ମଧ୍ୟରେ ଦୁଇତିନ ଥର ଦର୍ଶନ ମିଳିବା କଷ୍ଟ । କେବଳ ଗମ୍ଭିରା ଦର୍ପଣ ଘରେ ବସିଅଛନ୍ତି ।"

"ଦେଶୀୟ ଜମିଦାର, ବଣିକ୍, ହିତୈଷୀ ମହୋଦୟଗଣ, ଗଡ଼ଜାତ ରାଜାବୃନ୍ଦ, ଥରେ ହେଲେ ନିଦ୍ରାଭଙ୍ଗ କର । ନିଶ୍ଚିନ୍ତ ହୋଇ ଆଳସ୍ୟ ଅନ୍ଧକାର ଗୃହରେ ରହି ଏ ପର୍ଯ୍ୟନ୍ତ ହୀନତାକୁ ଲଙ୍ଘିଲଣି । ତୁମ୍ଭେମାନେ ଅସଭ୍ୟ ଓ ଦେଶ ପୃଥିବୀର ଘୃଣ୍ୟ ହୀନ ଇତ୍ୟାଦି ଆଖ୍ୟାମାନ ବିଦେଶୀଙ୍କ କର୍ତ୍ତୃକ ପ୍ରଦତ୍ତ ହେଲଣି । ତଥାପି ଚୈତନ୍ୟ ନାହିଁ ।"

କେଉଁ ରାଜା ରାମଲୀଳାରେ ସାତ ହଜାର ଟଙ୍କା ଖର୍ଚ୍ଚ କରିଥିଲେ । ସେତିକ ଟଙ୍କାରେ ସେ ଅଞ୍ଚଳରେ ଶିକ୍ଷାର ଯଥେଷ୍ଟ ଉନ୍ନତି ଘଟିଥାନ୍ତା । ରାଜାଙ୍କ ଦୃଷ୍ଟି ବିଦ୍ୟାଳୟ ଉପରେ ନଥିବ୍ ଧ୍ରୁବ ନାହିଁ । ଏଠାରେ ଇଂରାଜୀ ଶବ୍ଦମାନଙ୍କର ଅର୍ଥ ଆଗେ ତେଲୁଗୁରେ ଶିକ୍ଷା ଦିଆଯାଏ । ତଦୁତ୍ତରେ ଓଡ଼ିଆରେ କଏ ବା ବୁଝାଇବ ! ରାଜପୁତ୍ରମାନଙ୍କର ଶିକ୍ଷାର ଦୁର୍ଗତି ଦେଖି ବନ୍ଧୁବର ମନରେ ବ୍ୟଙ୍ଗାତ୍ମକଭାବେ ଆଶ୍ଚର୍ଯ୍ୟ ଲେଖିଛନ୍ତି—"ଯେଉଁମାନଙ୍କର ମନ ଅରଣ୍ୟ ମୃଗମାନଙ୍କ ସଙ୍ଗେ ପଡ଼ିଆରେ ଡେଇଁବାକୁ ତତ୍ପର, ଯେଉଁମାନଙ୍କର ହୃଦପଟରେ ବନ୍ଧୁକର ପ୍ରତିମୂର୍ତ୍ତି ଅଙ୍କିତ, ବନ୍ଧୁକର ସ୍ୱନରେ ଯେଉଁମାନଙ୍କ କର୍ଣ୍ଣ ରୋମାଞ୍ଚିତ, ପୁସ୍ତକ ଯେଉଁମାନଙ୍କର ବିଷତୁଲ୍ୟ, ସ୍କୁଲଗୃହ କାରାଗାର, ଶିକ୍ଷକ ଯାହାଙ୍କର ପରମଶତ୍ରୁ, ସେମାନଙ୍କୁ ଏକାବେଳକେ ତେଲୁଗୁ, ଓଡ଼ିଆ, ଇଂରାଜୀ, ସଂସ୍କୃତ ଶିକ୍ଷା ଦିଆଯିବ ? ସେମାନେ କଲେକ୍ଟରର ଗୁମାସ୍ତା ହେବେ ନାହିଁ ଯେ ତେଲୁଗୁ ତାହାଙ୍କର ଏକାନ୍ତ ଆବଶ୍ୟକ ହେବ । ସେମାନେ ପୁରାଣ କହିବାକୁ ଯିବେ ନାହିଁ ଯେ ସଂସ୍କୃତ ଆବଶ୍ୟକ ହେବ ।"

କଳା ଚମଡ଼ା ଓ ଧଳା ଚମଡ଼ା ପ୍ରତି ନ୍ୟାୟର ସମଦୃଷ୍ଟି ନ ଥିଲା । ଶାସକ ସାହେବଙ୍କ ମଧ୍ୟରେ ଦୁର୍ନୀତି ବ୍ୟାପି ରହିଥିଲା । ପ୍ୟାରୀମୋହନ ବିଦେଶୀ ଶାସକଙ୍କ ତଥାକଥିତ ବିଚାରବୋଧ ଓ ନ୍ୟାୟ ଝଙ୍କାର—ବୁଦ୍‌ବୁଦକୁ ଫଟାଇ ତାର ଶୂନ୍ୟଗର୍ଭ ଦେଖାଇ ଦେଇଛନ୍ତି । ଯେ ସାଧାରଣ ଅର୍ଥ ତୋଷରପାତ କରେ, ଜନତା ଅଦାଲତରେ ତାର ବିଚାର ଆବଶ୍ୟକ ବୋଲି ଉଦ୍‌ଘୋଷଣା କରିଦେଇଛନ୍ତି—

"ବଡ଼ ଦୁଃଖର ସହିତ ପାଠକଙ୍କୁ ଜଣାଉଅଛୁ ଯେ ଦୁଃଖୀ ପ୍ରଜାଙ୍କ ଶୋଣିତ ଶୋଷକ ରୋଡ଼ସେସ୍ ଧନରୁ କିଛି ଭକ୍ଷଣ କରି ମେଡ଼ର ନାମକ ଫିରିଙ୍ଗି ଯେ କି ଫୌଜଦାରୀ ଅଦାଲତରେ ଦଣ୍ଡିତ ହୋଇଥିଲା, ଆଇନର ଅର୍ଥବିଭ୍ରାଟ ଓ ଓକାଲତିର ଦୁଷ୍ଟ ବୁଦ୍ଧିରେ ଦଣ୍ଡରୁ ମୁକ୍ତିଲାଭ କରିଅଛି । ଶୁଣିଥିଲୁ ସେ ପରା ପ୍ରକାରାନ୍ତରେ ଟଙ୍କା

ଗର୍ଭସ୍ଥ କରିବାର ପ୍ରକାଶ କରିଥିଲ । ତେବେ ପୁଣି କିରୂପେ ମୁକ୍ତ ହେଲ ? କିଛି ବନ୍ଦସ୍ତକର ବ୍ୟାପାର ପ୍ରାୟ ବୋଧ ହେଉଅଛି । ଯେ ସାଧାରଣ ପ୍ରଜାଙ୍କ କାଉଡ଼ି ଉଦରସ୍ଥ କରେ, ସେ ସାଧାରଣ ଶତ୍ରୁ । ତାହା ପାଇଁ କି କୌଣସି ସାଧାରଣ ଉପାୟ ପ୍ରତିବିଧାନ କରିଯାଇ ନ ପାରେ ?"

ସାହେବଙ୍କ ବ୍ୟାପକ ଦୁର୍ନୀତି, ଔଦ୍ଧତ୍ୟ ଓ ଇଂରେଜୀ ଶାସନର ଦୁର୍ବଳତାକୁ ସେ ପଦାରେ ପକାଇ ଦେଇଛନ୍ତି ।

"ସାହେବ ମହଲକୁ ଗଲ । ଯାଇ ଦେଖିଲି—କେହି କେହି ଏପରି ଉଦ୍ଧତ ଯେ କେହି ସମ୍ଭ୍ରାନ୍ତ ବ୍ୟକ୍ତି ଦେଖାକରିବାକୁ ଗଲେ ତାହାଙ୍କୁ ତଣ୍ଟିଆ ଦିଅନ୍ତି । କେହି କେହି ପୁଣି ଏମନ୍ତ ଯେ ରାଜକର୍ମଚ୍ୟୁତ ହୋଇ ସୁନା, ରୁପା, ଟଙ୍କା, ଜେଣ୍ଟରତ୍ନ, ମହଣ ମହଣ ଘିଅ, ଘରକଲା ପର୍ଯ୍ୟନ୍ତ ଘୁଷ୍ ଲୁହ, ଯାହା ଲୁହ, ଅକାତରରେ ନିଅନ୍ତି ।"

ବଙ୍ଗ ଦୁର୍ଭିକ୍ଷରେ ଦେଶୀୟ ଲୋକେ ବହୁ ସାହାଯ୍ୟ କଲେ ବି ଅବସ୍ଥାପନ୍ନ ନିଷ୍ଠୁର ସାହେବଙ୍କ ହୃଦୟ ଆଦୌ ତରଳିଲା ନାହିଁ । 'ଉତ୍କଳ ପୁତ୍ର' ଲେଖିଛି—

"କେହି କହିଲେ କମିସନର, କେହି କହିଲେ ମେଜିଷ୍ଟର ଦେଇନାହାନ୍ତି । ଏଣୁ ଆମ୍ଭେମାନେ ଦେଇ ନପାରୁ । କେହି କହିଲେ ତାଙ୍କ ଦରମାହା ଦୈନିକ ବ୍ୟୟକୁ ଅଣ୍ଟଇ ନାହିଁ । ଖ୍ରୀଷ୍ଟିୟ ମିସନାରୀମାନେ ମଧ୍ୟ ଏହିପରି ଦୁଇ ଏକ କଥା କହିଦେଇ ମନାକଲେ । ବୋଧହୁଏ, ସାହେବମାନେ ଦୁର୍ଭିକ୍ଷ କି ପଦାର୍ଥ ଅନୁଭବ କରିନାହାନ୍ତି । ଥରେ ଭୋଗିଥିଲେ କଦାପି ତାଚ୍ଛଲ୍ୟ ଭାବ ଦେଖାଇ ନ ଥାନ୍ତେ । କିନ୍ତୁ ସାହେବ ପ୍ରାୟ ଅନେକ ବିଷୟରେ ଦେଶୀୟଙ୍କର ଅନୁକରଣୀୟ । ଏହି ଅମନୁଷ୍ୟତା ସୂଚକ ବ୍ୟବହାର ଯେମନ୍ତ ବର୍ତ୍ତମାନ ଦେଶୀୟ ଲୋକଙ୍କର ଅନୁକରଣୀୟ ନ ହୁଏ, ଏହିତା ପ୍ରାର୍ଥନା ।"

ରାସ୍ତା ନିର୍ମାଣ ନ କରେଇବାରୁ 'ପୁତ୍ର' କଲେକ୍ଟର ନର୍ମାନ୍ ସାହେବଙ୍କୁ କଟୁଭାବେ ସମାଲୋଚନା କରିଛି—"ନର୍ମାନ୍ ସାହେବଙ୍କ କର୍ଣ୍ଣ ଅତି ଗଭୀର । ପ୍ରଜାମାନଙ୍କ ଆର୍ତ୍ତନାଦ କର୍ଣ୍ଣକୁହରରେ ପ୍ରବେଶ କରିବା କଠିନ । ମହାତ୍ମାଙ୍କ ବେତନରୁ କିଛି ବାୟିତ ହୁଅନ୍ତା କି ? ଆମ୍ଭମାନଙ୍କ ଦେବା ଧନ ଆମ୍ଭମାନଙ୍କ ଉପକାରରେ ବ୍ୟୟିତ କରନ୍ତେ । ଏଥିପାଇଁ ଏତେ କୁଣ୍ଠିତ କାହିଁକି ?

ତୋହର ଧନ ତୋତେ ଦେଇ
ମଧରେ ମଧ୍ୟସ୍ଥି ବୋଲାଇ ।"

## ବାରକ ମାଷ୍ଟରୀ ବିଭାଗ

ଏ କାଳ ପରି ସେ କାଳରେ ମଧ୍ୟ ବାରକ ମିସ୍ତ୍ରି ବିଭାଗରେ ଅଯୋଗ୍ୟତା, ତୋଷରପାତ ଓ ଦୁର୍ନୀତି ପୂରି ରହିଥିଲା। ପ୍ୟାରୀମୋହନଙ୍କ ଦୃଷ୍ଟିରେ ଏହା ଏକ ଅପବ୍ୟୟ ବିଭାଗ। ସେ ସାମ୍ବାଦିକ, କିନ୍ତୁ ତାଙ୍କ ଭାଷା ଅନୁପମ ପ୍ରକାଶ ଗୁଣ ଯୋଗୁଁ ସାହିତ୍ୟସ୍ତରକୁ ଉନ୍ନୀତ ହୋଇଅଛି। ଶାଣିତ ବ୍ୟଙ୍ଗ ଯୋଗୁଁ ଏହା ସୁଖପାଠ୍ୟ, ଏ ବିଭାଗର କାର୍ଯ୍ୟ ଅଦ୍ୟାପି ମୂଳରୁ ଚୂଳପର୍ଯ୍ୟନ୍ତ ଅନୁଧ୍ୟେୟ, ଅନୁସନ୍ଧେୟ ହୋଇ ରହିଛି।

"ସଂସାର ମଧ୍ୟରେ ପ୍ରଥମ ଶ୍ରେଣୀୟ ଦସ୍ୟୁ, ପ୍ରସିଦ୍ଧ ଖଣ୍ଡ, ଅଦ୍ୱିତୀୟ ଲୁଣ୍ଠନକାରୀ, ଅସାମାନ୍ୟ ବେଶକଣ୍ଟକ କେଉଁଠାରେ ଅଛନ୍ତି ବୋଲି ଯଦି କେହି ଆମ୍ଭମାନଙ୍କୁ ପଚାରନ୍ତି, ତାଙ୍କ ଉତ୍ତରରେ ଆମ୍ଭେମାନେ ତାଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଇ ପାରୁ ଯେ ଏପରି ଲୋକେ ଏକ୍କ ବଳି କରି ଅପକାରତକ ମାଳ ମାଳ ହୋଇ ଭାରତ-ବର୍ଷୀୟ ବାରକମାଷ୍ଟରୀ ବିଭାଗରେ ବିରାଜମାନ କରୁଅଛନ୍ତି। ଆମ୍ଭମାନଙ୍କୁ ଅବିଶ୍ୱାସ କଲେ ବାରକମାଷ୍ଟରୀ କର୍ମଚାରୀମାନଙ୍କ ବିଶ୍ୱକର୍ମୀନିନ୍ଦିତ ଅଦ୍‌ଭୁତ ନୈପୁଣ୍ୟ ଓ କାର୍ଯ୍ୟାବଳୀ ପ୍ରତି ହେ ବିଜ୍ଞ ପାଠକେ! ଦୃଷ୍ଟି ନିକ୍ଷେପ କରି, ବୁଝିବାକୁ ପାରିବ, ଆମ୍ଭେମାନେ ଯାହା କହୁଅଛୁଁ, କେତେ ଦୂର ସତ୍ୟ।

ସାଧାରଣ ଲୋକେ ଯେଉଁ ବ୍ୟୟରେ ପ୍ରସ୍ତାବ୍ୟ ଗୃହ ନିର୍ମାଣ କରି ପାରିବେ, ଅନ୍ଦାଜ ତାଲିକାପ୍ରାପ୍ତେ ସେଥିର ଦେଢ଼ ଗୁଣ କି ଦୁଇଗୁଣ ହୋଇଅଛି; ହେଉ ପଛକେ ବ୍ୟୟ ବେଶୀ ହେଉ, କାର୍ଯ୍ୟଟାରେ ଆସୁ। ସେ ପଦରେ ମଧ୍ୟ ଶୂନ୍ୟ! ସାଧାରଣତଃ ଯେଉଁ ବ୍ୟୟ କରି ଠକାଠକ କୋଠା ନିର୍ମାଣ କରନ୍ତି, ତଦପେକ୍ଷା ମଧ୍ୟ ବାରକମାଷ୍ଟରୀ କାର୍ଯ୍ୟ କଞ୍ଚା। ଆଜି ହଜାର ହଜାର ଟଙ୍କା ବ୍ୟୟ ଓ ଶତ ଶତ ଦାରୋଗା, ଓଭରସିଅର୍, ଇଞ୍ଜିନିଅର, କଣ୍ଟ୍ରାକ୍ଟର ଅନୁସନ୍ଧାନ କରି କାର୍ଯ୍ୟ ସମାପ୍ତ କଲେ, କାଲି ଇନ୍ଦ୍ରଦେବ ଅନୁଗ୍ରହ କରନ୍ତେ, ଘର ବୁଡ଼ି ଆଣ୍ଠୁଏ ପାଣି; ନଈ ଘର ମଧ୍ୟରେ ବହିବାକୁ ଲାଗିଲା। କି ଆଶ୍ଚର୍ଯ୍ୟ! ଏପରି ଏକ ଏକ ସ୍ଥାନରେ ଘଟିଲି, ଏମନ୍ତ ନୁହେ, ସର୍ବତ୍ର।

ଦେଖ ଆମ୍ଭମାନଙ୍କର ଏହି ଭାରତବର୍ଷୀୟ ପୂର୍ବତନ ଗୃହମନ୍ଦିରାଦି କି ରୂପେ ସେ ସବୁ ଶତ ଶତ ସହସ୍ର ସହସ୍ର ବର୍ଷ ଅତିକ୍ରମ କରି ଉଷ୍ଣକଟିବନ୍ଧର ଗ୍ରୀଷ୍ମକାଳୀୟ ପ୍ରଚଣ୍ଡ ଉତ୍ତାପ ଓ ବର୍ଷାକାଳୀୟ ବେଗଯୁକ୍ତ ଝଡ଼ବର୍ଷା ସହ୍ୟଂକରତଃ ଅଭେଦ୍ୟ, ଅକ୍ଷୁଣ୍ଣ ଓ ଅଟଳ ଭାବରେ ଦଣ୍ଡାୟମାନ ହୋଇ ରହିଅଛି। କେବଳ ଭାରତରେ କାହିଁକି, ମିଶର, ଗ୍ରୀସ୍ ପ୍ରଭୃତି ଦେଶମାନଙ୍କ ପ୍ରତି ମଧ୍ୟ ନେତ୍ରପାତ କରି, ଏହି ଅବସ୍ଥା ଦେଖିବାକୁ ପାଇବ। ଆହୁରି ମଧ୍ୟ ଅଧିକ ଦୂରକୁ ଯିବା ଦୂରେ ଥାଉ, ଆଜି ଶହେ

ବର୍ଷ ତଳେ ନିର୍ମିତ ଅଟ୍ଟାଳିକାମାନଙ୍କ ଅବସ୍ଥା ଏହି ସାମାନ୍ୟ ପ୍ରଦେଶରେ ଦେଖ ଯେ ସେ ସବୁ ପର୍ବତ ପ୍ରାୟେ କଠିନ ରୂପେ ଛିଡ଼ା ହୋଇଅଛି ।"

## କାହିଁକି ଏ ଅତି ମାରତ ?

"ଗାଢ଼ ଅନୁସନ୍ଧାନ କଲେ ଜଣାଯାଏ ଯେ ଆଦ୍ୟ ସେମାନଙ୍କର ଲୋଭ, ଦ୍ୱିତୀୟତଃ କାର୍ଯ୍ୟ ସନ୍ଦର୍ଶନ ଓ ପରୀକ୍ଷାରେ ହେଳା, ତୃତୀୟତଃ ସାଧାରଣ ବ୍ୟବହୃତ ପୁଣି ପୁସ୍ତକ ଲିଖିତ ମାଲମସଲା ଯୋଗାଇବା ବିଷୟରେ କୃପଣତା, ଚତୁର୍ଥତଃ ମଜୁରି ସଂଖ୍ୟାରେ କଟୋଟପଣିଆ, ପଞ୍ଚମତଃ କଣ୍ଟ୍ରାକ୍ଟରଙ୍କ ସ୍କନ୍ଧରେ ସମସ୍ତ ଭାର ଦେବା । ସ୍ଥଳରେ ବାଞ୍ଛିତ ଅର୍ଥ ପ୍ରତି କର୍ମଚାରୀଙ୍କ ମମତାଶୂନ୍ୟତା ଓ ବିଭାଗ ମଧ୍ୟରେ ସତ୍ୱ ସ୍ୱଭାବାକ୍ରାନ୍ତ ଲୋକର ବିରଳତା ଯୋଗୁଁ ଏତାଦୃଶ ଦୁର୍ଗତି କି ଲଭି ସାଧାରଣ କାର୍ଯ୍ୟ ପରବର୍ତ୍ତିରେ ସାଧାରଣ ଅପବ୍ୟୟ ବିଭାଗ ହୋଇ ଉଠିଅଛି ।

ଅର୍ଥଲୋଭ ଭଣ୍ଡ ଲୋଭ । ଏହା ସମ୍ବରଣ କରିବା ସାଧାରଣ ଧାତୁବିଶିଷ୍ଟ ଲୋକର କାର୍ଯ୍ୟ ନୁହେ । ବାକେମାତ୍ରଣ ବିଭାଗର ଆଦାଦମସ୍ତକ ଅର୍ଥଗୃଧ୍ନୁ । ମଧ୍ୟ ଏ ବିଭାଗରେ କର୍ମଚାରୀ ଲେଖିଦେଇ ସହଜରେ ସରକାରଙ୍କ ସୂକ୍ଷ୍ମ ଚକ୍ଷୁରେ ଧୂଳି ପ୍ରଦାନ କରି ଟଙ୍କା ଉଠାଇନଅନ୍ତି ଓ ଏହି ରୂପେ ଏ ବିଭାଗରେ କାର୍ଯ୍ୟ କରି ଅନେକ ଦୁଃଖୀଏ ଭାଗ୍ୟବନ୍ତ ହେଲେଣି ।"

ଦାରିଦ୍ର୍ୟ ଯୋଗୁଁ ଓଡ଼ିଶାର ଯାବତୀୟ ଅଧୋଗତି । ପ୍ୟାରୀମୋହନ ଦାରିଦ୍ର୍ୟର କାରଣ ଅନୁଧ୍ୟାନ କରି ଏହି ଉପସଂହାରରେ ଉପନୀତ ହୋଇଛନ୍ତି ଯେ ଉତ୍କଳବାସୀ ବାଣିଜ୍ୟ ବ୍ୟବସାୟ କରିବା ଆବଶ୍ୟକ । ନିରଳସ ଉଦ୍ୟମ ଓ କଠୋର ପରିଶ୍ରମ ବିନା ଏହା ସମ୍ଭବ ନୁହେ । ଏ ଦିଗରେ ଉତ୍ସାହ ସୃଷ୍ଟି ଲାଗି ସେ ଚେଷ୍ଟିତ ହୋଇଛନ୍ତି ।

## ବାଣିଜ୍ୟ କୁମ୍ପାନୀ ସ୍ଥାପନ

"ଓଡ଼ିଶାବାସୀଙ୍କର ଆଉ ଆଉ ଅନ୍ୟାନ୍ୟ ବିଷୟ ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଦ୍ୱାରା ଦେଶର ଉପକାର ସାଧନ ଓ ଆପଣାର ଆପଣାର ଲଭ କରିବା ବିଷୟମାନଙ୍କ ପ୍ରତି ସ୍ପୃହାହୀନତା ଓ ଶୈଥିଲ୍ୟ ଅତି ଶୋଚନୀୟ । ଏହା ଏକ ଜାତୀୟ ରୋଗ ପ୍ରାୟ ରହିଅଛି ।

ଏ ସ୍ଥଳେ କେହି ଅବା ପ୍ରଶ୍ନ କରନ୍ତି ଓଡ଼ିଶାବାସୀଏ କି ଏକାବେଳକେ ବାଣିଜ୍ୟ ବ୍ୟବସାୟାଦି ବିଷୟମାନଙ୍କରେ ସମ୍ପୂର୍ଣ୍ଣ ନିର୍ଲିପ୍ତ; ଅବଶ୍ୟ କେହି ଜଣେ ଅଧେ ପ୍ରକୃତ ବାଣିଜ୍ୟ ବିଷୟରେ ମନୋଯୋଗୀ ଅଛନ୍ତି; ଅବଶ୍ୟ ଦଶ ପନ୍ଦର ଜଣ

୫।୭ ଶ ବା ୫।୭ ହଜାର ଯେନ କ୍ଷୁଦ୍ର ପରିମାଣରେ ବେପାର ଚଳାଉଅଛନ୍ତି । ଅବଶ୍ୟ ହଜାର ବା ଦୁଇ ହଜାର ବ୍ୟକ୍ତିଏ ଦଶ ପଚିଶ ବା ଶଏ ଟଙ୍କା ଯେନ ଦୋକାନଦାରୀ କାରବାର କରିଅଛନ୍ତି, ମାତ୍ର ଏତକରେ ଯେ ପ୍ରକୃତ ବାଣିଜ୍ୟ କାର୍ଯ୍ୟ ସମାଧା ହେଉ ତାହା କିଏ କପରି ବୋଲିବ ? ଅଦ୍ୟାବଧି ଗୋଟିଏ ସାଧାରଣ ବଣିକ୍‌ଶ୍ରେଣୀର ସୃଷ୍ଟି ହେବାର ଓଡ଼ିଶାରେ ଦେଖାଯାଉ ନାହିଁ । ପ୍ରକୃତ ବାଣିଜ୍ୟରେ ଲକ୍ଷ୍ମୀ ଙ୍କ ରୂପେ ବରଦାୟିନୀ ହୁଅନ୍ତି, ବାଣିଜ୍ୟ ଦ୍ୱାରା କପରି ଦେଶର ଶ୍ରୀବୃଦ୍ଧି ସାଧିତ, ମୁଖ ଉଜ୍ଜ୍ୱଳୀକୃତ ହୁଏଇ, ଏହା ଦେଶୀୟ ଲୋକେ ଅଳ୍ପ ବୁଝିବାର ଦେଖାଯାଏ ।

ବଙ୍ଗ ଦୁର୍ଭିକ୍ଷ ବେଳେ ସରକାର ୩ ଲକ୍ଷ ଟଙ୍କାର ଚାଉଳ ଓଡ଼ିଶାର କଣ୍ଟ୍ରାକ୍ଟର ଦ୍ୱାରା କ୍ରୟ କରିବା, ଓଡ଼ିଆ ରୁ କଣ୍ଟ୍ରାକ୍ଟ ନେଇ ଚାଉଳ ନ ଯୋଗାଇବା କ୍ଷୋଭର ବିଷୟ । ଲାଭ ସଙ୍ଗେ ସଙ୍ଗେ ଜାତୀୟ ଗୌରବ ବୃଦ୍ଧି ହୋଇଥାନ୍ତା । ଓଡ଼ିଶା ଚାଉଳ-ପ୍ରଧାନ ଦେଶ । ଏଠାରୁ ଚାଉଳ କିଣି ବହୁ ବନ୍ଦରର ବ୍ୟବସାୟୀ ବହୁତ ଲାଭ କରୁଅଛନ୍ତି । ଏ ଦେଶର ଶାଳକାଠ, ଲାଖ, ଘୀ ପ୍ରଭୃତି ବ୍ୟବସାୟ କଲେ ପ୍ରଭୂତ ଲାଭର ସମ୍ଭାବନା ।

ବାଣିଜ୍ୟ ବ୍ୟବସାୟ କରିବା ପାଇଁ ଇଚ୍ଛାର ଉଦ୍ରେକ ଓ ସେଥି ସଙ୍ଗେ ସଙ୍ଗେ ଉଦ୍ୟମ, ସାହସ ଓ ଅଧ୍ୟବସାୟର ସହିତ ଯଦି ଏହି ଇଚ୍ଛାକୁ ପରିଣତ କରିବାର ହୁଏ, ତାହାହେଲେ ବ୍ୟବସାୟରେ ସୁଫଳ କାହିଁକି ନ ଫଳିବ ? ଅତି ଅଳ୍ପ ଟଙ୍କା ଏମନ୍ତ କି ପାଞ୍ଚ ହଜାର ଟଙ୍କାର ମୂଳଧନରେ ପ୍ରିଣ୍ଟିଂ କମ୍ପାନୀ ସ୍ଥାପିତ ହୋଇଥିଲା । ଅଦ୍ୟାବଧି ଏଠା ଲୋକେ ଛାପାଖାନା ମର୍ଯ୍ୟାଦା ବୁଝିନାହାନ୍ତି । ତଥାପି ଏଥି ମଧ୍ୟରେ ମୂଳଟଙ୍କା ଦ୍ୱିଗୁଣିତ ହୋଇଅଛି । ଅତଏବ କମ୍ପାନୀ ସ୍ଥାପନ କରିବାକୁ ଦେଶୀୟ ଧନବନ୍ତ ଲୋକେ ବିଶେଷତଃ ବାଣିଜ୍ୟପ୍ରିୟ ବ୍ୟକ୍ତିଏ ଯତ୍ନବାନ୍ ହେଉନ୍ତୁ । ଥରେ ବାଣିଜ୍ୟ ପାଇଁ ଉତ୍ସାହିତ ଓ ଉତ୍ତେଜିତ ହୋଇ ପଡ଼ିଲେ ସହଜରେ ସେ ଉତ୍ସାହ, ଉତ୍ତେଜନା ଭାଙ୍ଗିବାର ନୁହଇ, ପ୍ରତ୍ୟୁତ୍ ଏଥିରେ ଓଡ଼ିଶାର ଧନହୀନତା ଓ ଦୈନ୍ୟଦଶା ହ୍ରାସକୁ ଲଭି ଗୌରବ ପରିବର୍ଦ୍ଧିତ ହେବାର କୌଣସି ପ୍ରକାରେ ଅସମ୍ଭବ ନୁହେ ।”

ଏ ଭୌତିକ ଉନ୍ନତିର କଥା । ଦେଶର ସର୍ବାଙ୍ଗୀନ ବିକାଶଲାଗି ଭୌତିକ ସଙ୍ଗେ ସଙ୍ଗେ ମାନସିକ ଉନ୍ନତି ଆବଶ୍ୟକ । ପାଠାଗାର ସ୍ଥାପନ, ଶିକ୍ଷା ପ୍ରସାର ମାନସିକ ଉନ୍ନତିର ମୁଖ୍ୟପନ୍ଥା । କଟକରେ ପାଠାଗାରର ଅଭାବ ବିଷୟରେ ସେ ଯେଉଁ କ୍ଷୋଭ ପ୍ରକାଶ କରିଥିଲେ ଆଜ ଶହେ ବର୍ଷ ପରେ ଶିକ୍ଷାର ବିପୁଳ ବିସ୍ତାର ଘଟିଥିଲେ ବି ପୂରଣ ହୋଇ ପାରିନାହିଁ ।

"ବିଦ୍ୟାଚର୍ଚ୍ଚା ନ ହେଲେ ହୃଦୟ ସୁମାର୍ଜିତ କି ମନୁଷ୍ୟର ଜ୍ଞାନଚକ୍ଷୁ ଉନ୍ମୀଳିତ ହୁଏ ନାହିଁ । ଅନ୍ୟାନ୍ୟ ଉପାୟ ମଧ୍ୟରେ ପୁସ୍ତକାଲୋଚନା ବିଦ୍ୟାଚର୍ଚ୍ଚାର ଗୋଟିଏ ଅତି ପ୍ରଧାନ ଉପାୟ । କିନ୍ତୁ ପୁସ୍ତକ ନ ପାଇଲେ ତ ପୁସ୍ତକାଲୋଚନା ଚଳିପାରେ ନାହିଁ । ପୁଣି ପୁସ୍ତକାଲୋଚନା ସକାଶେ ପୁସ୍ତକ କିଣିବା ସମସ୍ତ ପାଠାର୍ଥୀଙ୍କ ଦ୍ୱାରା ହୋଇ ନପାରେ, ଯେହେତୁ , ଏହା ଅର୍ଥସାଧ୍ୟ କାର୍ଯ୍ୟ ଓ ଅର୍ଥ ସମସ୍ତଙ୍କ ଭାଗ୍ୟରେ ଘଟଇ ନାହିଁ । ଏଣୁକରି ସ୍ଥାନ ସ୍ଥାନରେ ପୁସ୍ତକାଳୟ ସ୍ଥାପନ କରିବାକୁ ସଭ୍ୟ ସମାଜ ଏକପ୍ରକାର ସ୍ୱତଃ ରୂପରେ ପ୍ରବର୍ତ୍ତିତ କରିଅଛନ୍ତି ।

କଟକରେ ସୁମହତ୍ ପାଠାଗାର ନାହିଁ ।"

ଓଡ଼ିଶାର ଅବନତିର ବିଭିନ୍ନ କାରଣ ମଧ୍ୟରେ ଶିକ୍ଷାଭାବକୁ ମୁଖ୍ୟତମ ବୋଲି ସେ ନିର୍ଦ୍ଧାରଣ କରିଥିଲେ । ଧନାଭାବ ଶିକ୍ଷାପ୍ରସାରର ପ୍ରଧାନ ଅନ୍ତରାୟ । ଓଡ଼ିଆ ବୁଦ୍ଧିମାନ, କିନ୍ତୁ 'ଦାରିଦ୍ର୍ୟ ଦୋଷୋ ଗୁଣରାଶି ନାଶୀ' ।

"ବିଦ୍ୟାଶିକ୍ଷା ସବୁ ଉନ୍ନତିର ଅବ୍ୟବହିତ ପୂର୍ବରେ ଅବସ୍ଥିତ । କିନ୍ତୁ ଲୋକେ ସଙ୍ଗତିସମ୍ପନ୍ନ ନ ହେଲେ ସ୍ୱୀୟ ସ୍ୱୀୟ ସନ୍ତାନ ସନ୍ତତିଙ୍କୁ ପାଠଶାଳାରେ ସେମାନଙ୍କର ବ୍ୟୟ ଚଳାଇ କିପରି ପଢ଼ାଇବେ ? ଓଡ଼ିଶାବାସୀମାନେ ବୁଦ୍ଧିବଳରେ ବଙ୍ଗାଳି କି ପାର୍ସୀଙ୍କଠାରୁ ଊଣା ନୁହନ୍ତି । କିନ୍ତୁ ଏକା ଧନର ଅଭାବ ଏମାନଙ୍କୁ ଉନ୍ନତି ପଥରେ ଜଳଜା କରି ରଖିଅଛି । ଦେଶୀୟ ମୂଳ ଅଭାବ ଓ ଉନ୍ନତିର ପ୍ରଧାନ ପ୍ରତିବନ୍ଧକ ଯେ ଧନଶୂନ୍ୟତା ଏଥିରେ କୌଣସି ସନ୍ଦେହ ନାହିଁ ।"

କୁସଂସ୍କାର ଓ ଅନ୍ଧବିଶ୍ୱାସ ଅବନତିର ଅନ୍ୟ ଏକ କାରଣ । "ଉତ୍ସାହ ନାହିଁ, ଉଦ୍ୟୋଗ ନାହିଁ । ଇଂରାଜୀ ପଢ଼ିଲେ ଜାତି ଯିବ, ଇସ୍କୁଲକୁ ପିଲାଏ ଗଲେ କୁଳ ବୁଡ଼ିବ, ଜୋତା କୁରୁତା ପିନ୍ଧିଲେ ଧରମ ଯିବ, କଟକ ଅଇଲେ ଅଜାକୁ ଦୋଷ ଲାଗିବ, ମୁଣ୍ଡବାଳ କଟାଇଲେ ପତିତ ହେବ । ରୁଚ୍ଛା ଶୃଙ୍ଖଳ ମତଗୁଡ଼ାକ ବାନ୍ଧି ଘେନିକରି ଏମାନେ ବୁଲୁଛନ୍ତି ।" ଜନାର୍ଦ୍ଦନ ମହାପାତ୍ର ମେଡ଼ିକାଲ୍ କଲେଜରେ ପଢ଼ିବାରୁ ଲୋକେ ତାଙ୍କୁ ଘୃଣା କରୁଛନ୍ତି, ମଡ଼ା ଛୁଇଁବାରୁ ଜାତି ଗଲା ବୋଲି କହୁଛନ୍ତି । ଆସ୍ୱମେଧ ବହୁ ଦୃଷ୍ଟାନ୍ତ ଦେଖାଇ କୁସଂସ୍କାରର ମୂଳୋତ୍ପାଟନ ଲାଗି ଚେଷ୍ଟା କରିଛନ୍ତି ।

ସ୍ୱଳ୍ପ ଇଂରାଜୀ ଶିକ୍ଷିତ ହିନ୍ଦୁ ବ୍ରାହ୍ମଣର ଅଧୋଗତି ଚୂଡ଼ାନ୍ତ । ବାହାରେ ଚିତା ପଇତା, ନୈଷ୍ଠିକତା, ହିନ୍ଦୁଧର୍ମ ପ୍ରତି ଗଭୀର ଦରଦ, କିନ୍ତୁ ଭିତରେ ନାନା ଅନାଚାର—ମଦ୍ୟପାନ, ଗୋମାଂସ ଭକ୍ଷଣ । ଫକୀରମୋହନଙ୍କ ମତରେ ସେକାଳର

ବ୍ରାହ୍ମଣ ବେଦ ଶାସ୍ତ୍ରହୀନ, ଯଜମାନ ଶୃଙ୍ଖଳ ଶ୍ରେଷ୍ଠ । ବ୍ୟଙ୍ଗ ଓ ହାସ୍ୟରସ ପ୍ରକାଶରେ ଫକୀରମୋହନ ଫକୀରମୋହନଙ୍କ ସମକକ୍ଷ । ଏ ପ୍ରକାର ରଚନାଶୈଳୀରେ ସେ ଅଗ୍ରଯାତ୍ରୀ ଓ ଅନୁକୃତ ହୋଇଛନ୍ତି । ସାହିତ୍ୟରେ ଏହି ଶୈଳୀ ପ୍ରୟୋଗ କରିବାପାଇଁ ସେ ଅବକାଶ ପାଇନାହାନ୍ତି, ସାମ୍ବାଦିକତା କ୍ଷେତ୍ରରେ ତାଙ୍କ ପ୍ରତିଭା ସୀମିତ ହୋଇ ରହି ଯାଇଅଛି । କିନ୍ତୁ ବ୍ୟଙ୍ଗ ସାହିତ୍ୟ ଇତିହାସରେ ତାଙ୍କର ଯେ ସ୍ଥାନ ନିର୍ଦ୍ଦିଷ୍ଟ ଏହା ନିଶ୍ଚିତ । ତଳେ ଦୁଇଟି ଦୃଷ୍ଟାନ୍ତ ଉଦ୍ଧୃତ ହେଲା—

"ଆଜିକାଲିକା ସଂସ୍କାର କି ଭିନ୍ନ ପ୍ରକାରର !! କେତେଆଡ଼େ କେତେ ଅଦ୍ଭୁତ ! ଦେଖ କେଉଁଠି କେହି ବ୍ରାହ୍ମଣ ପୈତା ବାକ୍ସରେ ରଖିଲେ କି କୁପରର ବଳଶ ଚନ୍ଦପଣାର ଦୋକାନ ଧ୍ୱଂସ କଲେ, କରମୁଣ୍ଡା ଝାଁ ଦୋକାନ ଛେଲି, ଗୋରୁ ଓ କୁକୁଡ଼ା ହାଡ଼ମାଳରେ ପାକସ୍ଥଳୀ ପୂର୍ଣ୍ଣ କଲେ, ସନ୍ଧ୍ୟା ଗାୟତ୍ରୀ ଗାଧୋଇଗଲା । ଗୃହପତି ଇଂରାଜୀ ପଢ଼ିଲେ । ଟମ୍‌ପେନ୍‌ସଙ୍କ ଶିଷ୍ୟତା ସ୍ୱୀକାର କଲେ, ବୋଲାଇଲେ କଣ, ଆମେ ହିନ୍ଦୁ, ପ୍ରକୃତ ଧାର୍ମିକ !"

"ପାଠକେ ! ଅନ୍ୟଆଡ଼କୁ ଚାଲ, ଦେଖିବ ! କେହି ବସିଛନ୍ତି ବାଘାମ୍ବର ଅବତାରରେ ! ଚକ୍ଷୁ ଲାଲ ବର୍ଣ୍ଣ । ମୁହଁରୁ ଅନର୍ଗଳ ବକ୍ତୃତା ଲହରୀ ଚାଲିଅଛି । ହିନ୍ଦୁଧର୍ମ ସନାତନ କେତେ ଚିତ୍କାର, କେତେ ରୋଦନ ! କିନ୍ତୁ ସ୍ୱୟଂ ପିତୃଶ୍ରାଦ୍ଧ କରିବାକୁ ଅକ୍ଷମ, ପୁଣି ବଳଶ ଶଠତା, ବଳଶ ଜୁଆଚୋରିରେ ପୂର୍ଣ୍ଣ, ବଳଶ ବହିଃ ଚାକଚକ୍ୟରେ ମୁଗ୍ଧ ! ହେଉ କି ଅନେକ ପାଉଣ୍ଡ ବଳଶ ବଦ୍ୟା ପେଟରେ ପଡ଼ିଅଛି ।"

ଫକୀରମୋହନ ତଥାକଥିତ ଧାର୍ମିକର ଶାଠ୍ୟ ଦେଖାଇଛନ୍ତି । ଭଗବାନ୍ ଦାଶଙ୍କ ଖ୍ରୀଷ୍ଟିୟାନ ହେଲାପରେ ମିଛ ବୋଲାଇଛନ୍ତି, ସେଥିରେ ହାସ୍ୟ ପ୍ରଦ ହେବାରୁ ସାନ୍ତ୍ୱନା ପକ୍ଷ ଗ୍ରହଣ କରିଛନ୍ତି । ସେତେବେଳେ ଓଡ଼ିଆ ସାହିତ୍ୟର ଦାରିଦ୍ର୍ୟ ବିକଟ । କେତେକ ଅନୁବାଦିତ, ସଂକଳିତ ପାଠ୍ୟପୁସ୍ତକ ଛଡ଼ା ଉପଯୋଗୀ ସାହିତ୍ୟ ପୁସ୍ତକ ନାହିଁ । ବଙ୍ଗଦେଶ ସାହିତ୍ୟର ଦୋଷଗୁଣ ଉଭୟ ସେ ଦେଖିଛନ୍ତି ଓ ଏହାକୁ ଯେପରି କୌଣସି ସାହିତ୍ୟ ଦୃଷ୍ଟି କରିପାରେ ଓ ଯାହାର କିଞ୍ଚିତ୍ ପ୍ରତିଭା ଅଛି ସେ ସାହିତ୍ୟ ରଚନା କ୍ଷେତ୍ରରେ ଅବତୀର୍ଣ୍ଣ ହେବା ଆବଶ୍ୟକ ବୋଲି ମତବ୍ୟକ୍ତ କରିଛନ୍ତି । ଆଜି ଶତବର୍ଷ ପରେ ଓଡ଼ିଆ ସାହିତ୍ୟର ଅସହାୟ ଅବସ୍ଥା ନଥିଲେ ବି ଦାରିଦ୍ର୍ୟ ଲାଗି କ୍ଷୋଭ କରିବାର ଅସଂଖ୍ୟ କାରଣ ରହିଅଛି ।

"ଉତ୍କଳ ସାହିତ୍ୟର ଅବସ୍ଥା ଯେ ଅଦ୍ୟାବଧି ଶୋଚନୀୟ ଏକଥା କିଏ ଅସ୍ୱୀକାର କରିବ ? ଅନୁପ୍ରାସାନ୍ତ ସରସ, ସୁଲଳିତ, ଶୃଙ୍ଗାରରସ ବିବର୍ଜିତ, ମନୋଦୁଃଖହର ଓ

ପ୍ରୀତିପ୍ରଦ ଟଣ୍ଡିଏ ଗଦ୍ୟ କ ପଦ୍ୟ ମୂଳଗ୍ରନ୍ଥ ଓଡ଼ିଆ ଭାଷାରେ ଦେଖିବାକୁ ପାଇବାର ଦୁଷ୍କର । ନାଟକ ଓ ନବନ୍ୟାସ ଶବ୍ଦ ତ ଅଦ୍ୟାବଧି ପ୍ରକୃଷ୍ଟରୂପେ ଭାଷାରେ ପ୍ରବେଶ କର ପ ଶନାହିଁ । ସେନାପତିଙ୍କ ରଚିତ ଭାରତବର୍ଷର ଇତିହାସ ଓ ଅମୁଦ୍ରିତ ବଙ୍ଗଳାରୁ ଅନୁବାଦିତ ଦୁଇ ଏକ ଖଣ୍ଡ ଇଂଲଣ୍ଡ ଇତିହାସ ଛଡ଼ା ପ୍ରକୃତ ଇତିହାସ ଏ ଭାଷାରେ ଅଛି ଥିବାର ତ ଅସ୍ମମାନଙ୍କୁ ଜଣାନାହିଁ ।

ଉପାଖ୍ୟାନ କ ଭ୍ରମଣବୃତ୍ତାନ୍ତ ମୂଳରୁ ଦୁଷ୍ପ୍ରାପ୍ୟ । ଏହିପର ଗୋଟି ଗୋଟି କର କହିଲେ ଅନେକ ହୋଇଯିବ । ଅଙ୍କ ବିଜ୍ଞାନାଦି ପୁସ୍ତକ ଗ୍ରନ୍ଥ, ଯାହାର ମଧ୍ୟ ସଂଖ୍ୟା ୭।୮ଖଣ୍ଡ, ଅନୁବାଦ ଓ ସଙ୍କଳନକୁ ଅତିକ୍ରମ କରିନାହିଁ; ଶୁଦ୍ଧ ସାହିତ୍ୟର ଗତି ସ୍ଥଳରେ ଆଦାଦାସ୍ୱକ ନୁହେଁ । ତେବେ ଏ ବିଭାଗରେ ଯାହା କିଛି ଅଛି, ତାହା କେବଳ ପୂର୍ବକାଳୀୟ- ଦର୍ପ ଶବ୍ଦାଡ଼ମ୍ବରବିଶିଷ୍ଟ, ସାତ୍ତ୍ୱିକ ଭାବପୂର୍ଣ୍ଣ, ଅଶ୍ଳୀଳ ଭାଷାମଣ୍ଡିତ ଓ ସ୍ଥାନ ସ୍ଥାନରେ ଅବଶ୍ୟ ହୃଦୟମୋହନକାରୀ ସରଳ ଭାଷାରେ ଲଖିତ, ସୁଲଳିତ ଓ ସ୍ୱାଭାବିକ ଭାବପୂର୍ଣ୍ଣ । ଭଞ୍ଜ, ବ୍ରହ୍ମା, ଦାସ, ସାମନ୍ତସିଂହାର ପ୍ରଭୃତି କବିକଦମ୍ବଙ୍କ ଲୌହଲେଖନୀ ପ୍ରସୂତ ଟଣ୍ଡି କେତେ କାବ୍ୟ, କିନ୍ତୁ ଏ ଗ୍ରନ୍ଥାବଳୀର ଅବସ୍ଥା ଏରୂପ ନୁହେଁ, ଯେ ସୁକୁମାରମତି ଶିଶୁ କ ଯୌବନୋନ୍ମୁଖୀ ବାଳକ, ସମସ୍ତଙ୍କ ହସ୍ତରେ ଏଗୁଡ଼ିକୁ କରପଦରେ ଅର୍ପଣ କରାଯାଏ । ଓଡ଼ିଆ ସାହିତ୍ୟ ଉନ୍ନତିର ସାଧାରଣ ଚେଷ୍ଟା ଯେପର ଅପ୍ରୀତିପ୍ରଦ, ଏଥିରେ ଶୀଘ୍ର ଏହାର ଭଲାଗତିର ଭରସା ନାହିଁ । ମାତ୍ର ଏଥିସକାଶେ ଯେଉଁମାନଙ୍କର କିଛି ଶକ୍ତି ଅଛି, ସେମାନଙ୍କର ସୁଛା ତୂଷ୍ଣୀ ହୋଇ ରହିବା ବଡ଼ ଉଚିତ ଦୃଶ୍ୟ ନାହିଁ । ସେମାନଙ୍କର ଉଚିତ, ଲେଖନୀ ସଞ୍ଚାଳନ କରିବାର, ଆଜିକାଲି ନ ହେଉ, ଭବିଷ୍ୟତରେ ଲୋକେ ଏଥିର ଉପକାର ଓ ସାରତ୍ୱ ବୁଝିବେ ଓ ଉତ୍ସାହ ଦେବାକୁ କୁଣ୍ଠିତ ହେବେ ନାହିଁ ।''

ନବ ଲେଖକମାନଙ୍କୁ ସେ ରଚନା ସମ୍ପର୍କରେ ଯେଉଁ ଉପଦେଶ ଦେଇଛନ୍ତି, ତାହା ଏଯୁଗରେ ବି ପ୍ରଯୋଜ୍ୟ ।

''କେହି ଲେଖନୀ ଧାରଣ କଲମାତ୍ରକେ ଉନ୍ନତି ସୋପାନର ଶୀର୍ଷଭାଗରେ ଆରୋହଣ କରଇ ନାହିଁ, ଅନ୍ୟାନ୍ୟ ମହତ୍ କାର୍ଯ୍ୟ ପରି ରଚନା ମଧ୍ୟ ସମୟ ଅପେକ୍ଷା କରେ । ଯାହା ମନୁଷ୍ୟ କରିଅଛି, ତାହା ମନୁଷ୍ୟ ଅବଶ୍ୟ କରିପାରିବ, ଦିନକେ ନ ହେବ, ସହସ୍ର ଦିନେ ହେବ ।''

'ଉତ୍କଳପୁଷ୍ପ'ରେ ପ୍ୟାରୀମୋହନଙ୍କ ସମାଲୋଚିତ ପୁସ୍ତକ ମଧ୍ୟରୁ ଗୋଟିକର ଉଦ୍ଧୃତ ଦିଆଗଲା ।

ଗ୍ରନ୍ଥ ସମାଲୋଚନା—କେନାଲ ଓ କୃଷିକାର୍ଯ୍ୟ—ଲେଖକ କାଳି କମାଇନ୍ଦ୍ର— ୧୮୭୩—୨୫ ପୃଷ୍ଠା—୫ ୦ । । ଏ ଟଣ୍ଡିଏ ପଦ୍ୟଗ୍ରନ୍ଥ । ଗ୍ରନ୍ଥକାର ଏହାକୁ ଅତି

ଭ୍ରମରେ ଲେଖି ବାସ୍ତବ ସାଲେ ସମ୍ପୂର୍ଣ୍ଣ କରିଥିବାର ବୋଲନ୍ତି । ପ୍ରକୃତ ତାଙ୍କର ଏଥିରେ ବିଶେଷ ଭ୍ରମ ହୋଇଥିବ । କାରଣ ତାଙ୍କର ବିଦ୍ୟା ନାହିଁ, ଗଦ୍ୟ କାହାକୁ କହନ୍ତି, ଜାଣନ୍ତି ନାହିଁ । କେବଳ ଅବ୍ୟାପାରରେ ବ୍ୟାପାର କରି ଜନସମାଜର ବିରକ୍ତି ଜନ୍ମାଇଛନ୍ତି । କୃଷିକାର୍ଯ୍ୟରେ ଗ୍ରନ୍ଥକର୍ତ୍ତାଙ୍କ ବହୁଦର୍ଶିତାର ଉଦାହରଣ ସ୍ୱରୂପ କୃଷିବିଷୟକ କେତୋଟି ନୂତନ ସତ୍ୟ ଉଦ୍ଧୃତ କଲୁ ।

"କାଉଁରିଆ ଗଛ ଓ ଲଳିତା ଗଛ ଭିନ୍ନ ଭିନ୍ନ; କଳା ମୁଗ କେବଳ ଘୋଡ଼ା ଖାନ୍ତି, ଫ୍ଲୋରିଡ ନାମରେ ଗୋଟିଏ ଫଳ ଅଛି । ସେ ସବୁ ସରୁ ଓ ଦୁର୍ବଳ । ଚଣା ଡାଲି ଅତ୍ୟୁତ୍ତମ, ଫ୍ରିକା ପର୍ବତରୁ ହୁଏ । ସେ ଠୂଆଁ ପଥର । ବୁଟ ସବୁ ନୁହେଁ କି ମୋଟ ନୁହେ । ତରଭୂଜ ଗୋଲ । ହଳଦି ମାଣକୁ ଦଶ ବିଶ ଟଙ୍କା । କପା ମାଣକୁ ତିରିଶ ଟଙ୍କା, ବୋଇତାଳୁ ମାଣକୁ ଟଙ୍କାଏ ।"

ପ୍ୟାରୀମୋହନଙ୍କ ଭାଷା ସଂସ୍କୃତିଆ ନୁହେ କିମ୍ବା ଗାଉଁଲି ନୁହେ । ଏହା ଗ୍ରାମ ଓ ନଗର ଭାଷାର ଏକ ସମ୍ମିଶ୍ରଣ ଓ ସମନ୍ୱୟ—ଏକାନ୍ତ ବଳିଷ୍ଠ, ଲୋକୋପଯୋଗୀ— 'ଉତ୍କଳପୁତ୍ରରେ' ପ୍ରକାଶିତ ଯାବତୀୟ ରଚନା ସ୍ୱତଃସ୍ଫୂର୍ତ୍ତ, ସାବଲୀଳ ଓ ଗ୍ରାମ୍ୟ ସାହିତ୍ୟସ୍ତବକ [illegible]ତ । ରଚନାକୁ ଏକ ସ୍ୱାଭାବିକ ରୂପ ଓ ରଙ୍ଗ ଦେବାଲାଗି ସେ ଲୋକସାହିତ୍ୟ ସହିତ ସମ୍ପର୍କ ସ୍ଥାପନ କରିଛନ୍ତି, ସ୍ୱଚ୍ଛନ୍ଦଭାବେ ଢଗଢମାଳି ପ୍ରୟୋଗ କରିଛନ୍ତି । ଯଥା—

"ସାନ୍ତାଣୀଙ୍କର ମୁଣ୍ଡରେ ଗଞ୍ଜ
ଯେଣିକି କହିବେ ତେଣିକି ଶୋଭା ।"

'ଧୋବାକୁ ମଇପ ମିଳିଲା
କମ୍ବୀର କଥା ଚହଲା ପଇଲା ।'

'କୁକୁର ଲାଙ୍ଗୁଡ଼, କନିଆଁ ବାଙ୍କ
ବାର ବରଷରେ ନୁହେ ସଳଖ ।'

ସମ୍ବାଦ ବା ସମାଚାର ପରିବେଷଣ 'ଉତ୍କଳ ପୁତ୍ର'ର ମୁଖ୍ୟ ଲକ୍ଷ୍ୟ ନ ଥିଲା । ଏହା ଥିଲା ସଂସ୍କାରମୂଳକ ଓ କଲ୍ୟାଣବ୍ରତୀ । କର୍ତ୍ତବ୍ୟନିଷ୍ଠ ପୁତ୍ର ତୁଲ୍ୟ ଉତ୍କଳଜନନୀଙ୍କର ସେବାଶୁଶ୍ରୂଷାରେ ସେ ନିଜକୁ ଉତ୍ସର୍ଗ କରିଥିଲା । ତଥାପି କେତେକ ସମାଚାର ଯେପରି କୌତୁକପ୍ରଦ, ସେହିପରି ଦୃଷ୍ଟି ଆକର୍ଷକ ।

"ଅଧିକ କି ଭାରତବର୍ଷରେ ଦୁରନ୍ତ ନମ୍ବୁଗ୍ରମ୍ପା ପଠାଣ ଦୁଇଜଣ ବଡ଼ଲାଟ ସାହେବ ଓ ହାଇକୋର୍ଟର ଚିଫ୍ ଜଷ୍ଟିସ୍ ନମୀନ୍ ସାହେବ—ଏ ଦୁଇ ପ୍ରସିଦ୍ଧ ବ୍ୟକ୍ତିଙ୍କ

ସ୍ତ୍ରୀର ଦ୍ୱାରା ଆଘାତ କରି ମୁସଲମାନ ଜାତିର କଳଙ୍କ ଅପେ୍ରପ କଲେ, ଅବଶେଷରେ ଇଂରାଜଙ୍କ ସାହାଯ୍ୟ ବଳରୁ ଏ ଘଟଣା ମୁସଲମାନଙ୍କ ପକ୍ଷରେ ଶୁଭ ଘଟଣା ରୂପରେ ପରିବର୍ତ୍ତିତ ହୋଇ ଉଠିଲା; ଦୁଇ ପଠାଣଙ୍କ ଦୁଇ ସ୍ତ୍ରୀର ସଂହସ୍ତ ସହସ୍ର ସ୍ୱେତକାୟଙ୍କୁ କମ୍ପମାନ କରିଦେଲା । ଏହି ଘଟଣା ପରେ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ନିୟମ କଲେ ଯେ କୌଣସି କର୍ମ ଖାଲି ହେଲେ ଅଗ୍ରେ ପଠାଣ ପାଇବେ ।''

''ଗ୍ରେଟଲଟ ସାର ଶସ୍ତ୍ରର୍ଡ ଟେମ୍ପଲଙ୍କ ଓଡ଼ିଶା ଆଗମନ ଓ ଦରବାରରେ ଗଡ଼ଜାତ ରାଜାମାନଙ୍କୁ ଶିକ୍ଷିତ ଓ ସନନ୍ଦ ପ୍ରଦାନ—ଢେଙ୍କାନାଳ ମହାରାଜା ଟ ୫୦୦ ଙ୍କା ନଜରାନା ଦେଇ ୫୦୦ ଟଙ୍କା ମୂଲ୍ୟର, ପାଲଲହଡ଼ା ରଜା ଟ ୩୦୦ ଙ୍କା ଦେଇ ଟ ୩୦୦ଙ୍କା ମୂଲ୍ୟର, ବାକି ସମସ୍ତେ ଟ ୨୦୦ ଙ୍କା ଦେଇ ଟ ୨୦୦ ଙ୍କା ମୂଲ୍ୟର ପରିଚ୍ଛଦାଦି ଶିକ୍ଷିତ ପାଇଲେ । ସନନ୍ଦର ସ୍ଥୂଳମର୍ମ—ପୂର୍ବରୁ ରାଜାମାନେ ଯେଉଁ ରାଜଚିହ୍ନ ଭୋଗ କରି ଆସୁଥିଲେ ଇଂରାଜ ଗଭର୍ଣ୍ଣମେଣ୍ଟ ତାହା ସ୍ୱୀକାର କରି ସ୍ଥିରୀକୃତ କରୁଅଛନ୍ତି । ଉକ୍ତ ସନନ୍ଦରେ ଲର୍ଡ ନର୍ଥବ୍ରୁକ୍ ଗଭର୍ଣ୍ଣର ଜେନେରାଲ ଓ ରାଜପ୍ରତିନିଧିଙ୍କ ଦସ୍ତଖତ ଅଛି ।''

ଗ୍ରେଟଲଟଙ୍କୁ କେତେକ ପ୍ରସ୍ତାବ ଦିଆହୋଇଥିଲା—ସେ ସବୁର ମର୍ମ-ଓଡ଼ିଶାରେ ରେଲ୍‌ୱେ ଦିଆଯାଉ, ସମ୍ବଲପୁର ଓ ଗଞ୍ଜାମକୁ ଓଡ଼ିଶା ସହିତ ମିଶାଯାଉ, ଅଧିକ ସ୍କୁଲ କରାଯାଉ, ବୁଡ଼ାବଳଙ୍ଗରେ ବାଣିଜ୍ୟପୋତ ଯାତାୟାତ କରୁ, ଚିରସ୍ଥାୟୀ ବନ୍ଦୋବସ୍ତ ହେଉ ।

ଗୋଟିଏ ଦରଖାସ୍ତରେ ବେଶ୍ୟାମାନେ କନ୍ୟାକ୍ରୟ କରିବାର ଅନୁମତି ମାଗିଛନ୍ତି ଓ କଟକସ୍ଥ ବଙ୍ଗାଳୀମାନେ ସ୍କୁଲରେ ପୁଣି ବଙ୍ଗଳା ଚଳାଇବା ଲାଗି ପ୍ରାର୍ଥନା କରିଛନ୍ତି । ଏ ଦୁଇଟି ପ୍ରସ୍ତାବ ଉପରେ ଅଭିମତ ଦେଇ ପ୍ୟାରୀମୋହନ ଲେଖିଛନ୍ତି—ପ୍ରଥମଟି ନିତାନ୍ତ ଘୃଣ୍ୟ, ଦ୍ୱିତୀୟଟି ପ୍ରାୟ ଅସମ୍ଭବ ।

''ପ୍ରକାଣ୍ଡ ପୁରୀ ଜଗନ୍ନାଥ ରଥଚକ୍ର ତଳେ ପ୍ରାଣ ବିସର୍ଜନ, ମେରିୟା ନରବଳି ଓ ସହମରଣ ପ୍ରଭୃତି କୁପ୍ରଥା ଦୂରୀଭୂତ ହୋଇଅଛି ।'' କିନ୍ତୁ ଅନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶାରେ ଇଂରାଜୀ ଶାସନର ସୁଫଳ ଫଳ ନଥିବାରୁ ପ୍ୟାରୀମୋହନ କ୍ଷୁବ୍ଧ ହୋଇଛନ୍ତି ।

''୨୦ ହଜାର ଟଙ୍କା ଜମିଦାର ଗୋଲୋକଚନ୍ଦ୍ର ବୋଷଙ୍କ ମାତୃଶ୍ରାଦ୍ଧରେ ବ୍ୟୟ ଏକ ଅପବ୍ୟୟ ।''

''ମହାଶୟ କାମ୍ବେଲ ସାହେବଙ୍କ ଅନ୍ୟାନ୍ୟ କୀର୍ତ୍ତି ମଧ୍ୟରେ ପାଠଶାଳା ସଂସ୍ଥାପନ ପ୍ରସ୍ତାବନାଟି ଗୋଟିଏ ମହତ୍ କୀର୍ତ୍ତି ।

ପୁରାତନ ଗୁରୁଶାଳୀରେ ଅଙ୍କ, କୁଟା, ବଯୁ, ବାଜସୁ, ସାହୃତ୍ୟ, କୋଇଲ, ଭାଗବତ ବୋଲିବା ପର୍ଯ୍ୟନ୍ତ ପାଠ ନିର୍ଦ୍ଦେଶ ଥିଲା । ଆଜକାଲି ଛିଡେ ଛାପା ପୋଥି ଦୁଇଖଣ୍ଡ ଖଣ୍ଡେ ପଢ଼ି ଅଙ୍କ ଭାଗହାର ପର୍ଯ୍ୟନ୍ତ ଶିକ୍ଷା କରିବାର ନିୟମ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ହୋଇଅଛି । ଏହିମାତ୍ର ବିଭିନ୍ନ ଗୋଟିଏ ଲାଭ ଛଡ଼ା ଆଉ ବିଶେଷ ଲାଭ ଦୃଷ୍ଟିଗୋଚର ହେଉନାହିଁ; ସେ ଲାଭଟି ଏହି ଯେ ଛାପାପୋଥି ପଢ଼ିବା ବିଷୟରେ ସହାୟତା ।

"କବି ମାଇକେଲ୍ ମଧୁସୂଦନଙ୍କ ଅନାଥ ବାଳକବୃନ୍ଦଙ୍କ ବିଦ୍ୟାଶିକ୍ଷା ଓ ଭରଣପୋଷଣ ଲାଗି ଓଡ଼ିଶାରୁ ବହୁତ ଚାନ୍ଦା ଉଠିବାରେ ଆଗ୍ରହରେ ଲେଖିଛନ୍ତି— 'ଉତ୍କଳୀୟମାନେ ଏ ଭେଦା-ଦେଇ ଭଲ କରିଅଛନ୍ତି; ଯେହେତୁ ଆମ୍ଭମାନଙ୍କର ମଧ୍ୟ ଦୁଃସମୟ ଅଛି ଓ ବଙ୍ଗୋତ୍କଳୀୟଙ୍କ ସୌହାର୍ଦ୍ଦ୍ୟ ଜନ୍ମାଇବାରେ ସାହାଯ୍ୟ କରିବ ।"

"ଡମପଡ଼ାବାସୀମାନେ ଅତି ହୀନାବସ୍ଥାରେ ଥାଇ ନାନାବିଧ ବନ୍ୟ ଫଳମୂଳ ଆହାର କରି ଜୀବନଯାତ୍ରା ନିର୍ବାହ କରୁଅଛନ୍ତି । ଇଦାନିଂ ବନ୍ୟଫସଲ ମଧ୍ୟରେ ବାଉଁଶ-ଧାନ ଅତି ଉତ୍କୃଷ୍ଟ ହୋଇ ଉଠିଅଛି । ତାହାର ଯେଉଁ ଆମଦାନୀ ଅତି ବିଚିତ୍ର କି ସେହି ବୃକ୍ଷଚତୁଃପାର୍ଶ୍ବକୁ ଜନମାନେ ଅତି ଉତ୍ତମ ପରିଷ୍କାର କରି ନାନାବିଧ ମଙ୍ଗଳୋତ୍ସବ ଅର୍ଥାତ ନିଜନିଜ ପଦ୍ଧତି ଦ୍ୱାରା ସ୍ତ୍ରୀ ପୁରୁଷ ସକୁଳ ହୋଇ ସମାର୍ଜନୀ ଓ ସୁର୍ପ ଯେପରି ତାହାକୁ ଅସ୍ତ୍ର କରନ୍ତି ଏବଂ ଏ ଲୋକମାନଙ୍କର ବିଶ୍ୱାସ ଜନ୍ମିଅଛି ଯେ ଲଗି ପ୍ରକୃତ ଦ୍ୱାରା ତାର ଆମଦାନୀ କଲେ ସେ ବ୍ୟକ୍ତିମାନଙ୍କୁ ବ୍ୟାଘ୍ର ଭକ୍ଷଣ କରିବ ।"

"ଅନୁଗୁଳ ସନ୍ନିକଟ ଗ୍ରାମରେ 'କୋଖି' ଠାକୁରାଣୀ ଯାତ୍ରା କାର୍ତ୍ତିକ ପୂର୍ଣ୍ଣିମାରେ ବଡ଼ଯାତ୍ରା । ଉକ୍ତ ଠାକୁରାଣୀଙ୍କ ଭକ୍ତ ସନ୍ତରିଆ ବୋଦା ଅଇଲା ବୋଲି ଘୋଷଣା କରିବା ମାତ୍ରେ ପୁରୁଷମାନେ ବୋଦାଙ୍କ ପରି ମେଁ ମେଁ ଶବ୍ଦ କରି ସ୍ତ୍ରୀମାନଙ୍କ ପ୍ରତି କୁବ୍ୟବହାର କରନ୍ତି—ଲଜ୍ଜା ଜନକ ।"

"ଗ୍ରେଟକେକେ ଦୁଇ ତନ ଗୋଟା ଉଇ ହୁଙ୍କା ମୁଳେ ଗଞ୍ଜା ଆଦି ଟାଣି ରାତ୍ରିରେ ନାନାବିଧ ଅଶ୍ଳୀଳ ସଙ୍ଗୀତ ଗାୟନ କରନ୍ତି । କେହି ପଚାରିଲେ କହନ୍ତି କି ଏକ ଏକ ସାଧୁ ସେମାନଙ୍କୁ ଏପରି କରିବା ସକାଶେ ଆଜ୍ଞା ଦେଇଅଛନ୍ତି । ଏଠାରେ କଣ ଭଦ୍ରଲୋକ ନାହାନ୍ତି ? ସ୍ୱଳାପ୍ତ ବେଳୁବେଳ ପଥର ହେଲଣି ।"

"ଦଣ୍ଡିଦାରମାନେ ଯେତେ ଟଙ୍କାର ଗୁଡ଼ ଓଜନ କରନ୍ତି, ବେପାରିଙ୍କ-ଠାରୁ ତେତେ ସେର ଗୁଡ଼ ଅଧିକ ନିଅନ୍ତି । ଯେତେବେଳେ ଟଙ୍କାରେ ୩୨ ସେର ଗୁଡ଼, ତେତେବେଳେ ଦଣ୍ଡିଦାର ୮ ମହଣ ଗୁଡ଼ ଓଜନ କଲେ ୧୦ ସେର ଅର୍ଥାତ୍ ୫୦ ।/ ପାଏ । କାରଣ ୮ ମହଣ ଗୁଡ଼ର ମୂଲ୍ୟ ୧୦ ଟଙ୍କା ହେଲା ।"

"ଜଣେ ଶିକ୍ଷକ ଗୋଟିଏ ବାଳେଶ୍ୱରମଙ୍ଗ ଗ୍ରନ୍ଥ ଉଦ୍ଭାବନ କରିଛନ୍ତି । ସେ ବାଳେଶ୍ୱର ଅଞ୍ଚଳଭିତରେ ଭର୍ତ୍ତି କରି ମୁକ୍ତିବାନ୍ଧ ଚଳିତ ମାତ୍ର ଦେଇଛନ୍ତି ।"

"ଉତ୍କଳୀୟ ଗୋଲ ଶ୍ରେଣୀ ଗୋରୁମାନେ ପଘା ଛିଣ୍ଡାଇ ଗୋଡ଼ାଇଲେ, ଘର ଘେରାଉ କଲେ, ଉତ୍କଳସୁତ ସ୍କୁଲସନ୍ଦ୍ୱାରା ଧୃତ ହେଲେ ।"

ଓଡ଼ିଶାର ସ୍କୁଲମାନଙ୍କରୁ ବଙ୍ଗଳା ଭାଷା ଉଠିଯିବା ଲାଗି ପ୍ୟାରୀମୋହନ ଆନନ୍ଦ ପ୍ରକାଶ କରିଛନ୍ତି । ଓଡ଼ିଆ ଭାଷାର ସଂରକ୍ଷଣ ଓ ବିକାଶ ଲାଗି ସେ ସଂଗ୍ରାମ କରିଛନ୍ତି, ଅଶ୍ଳୀଳ ପୁସ୍ତକ ବ୍ୟବହାର ରୋଧ, ଜଣାନବାରଣ, ସ୍କୁଲରୁ ବେତାଘାତ ଉଠାଇଦେବା ଲାଗି ନିବେଦନ କରିଛନ୍ତି । ପଥରେ ଅଶ୍ଳୀଳ ସଙ୍ଗୀତ ଗାନରୋଧ, ଦେଶମିଶ୍ରଣ ପ୍ରସ୍ତାବ ଓ ଓଡ଼ିଶାର ଗୌରବ ଖଣ୍ଡନ କରିଛନ୍ତି ।

## ଗବେଷକ ଐତିହାସିକ

୧୮୭୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସ୍କୁଲସମୂହର ଜଏଣ୍ଟ ଇନ୍‌ସପେକ୍ଟର ଉତ୍କଳ ଭାଷାରେ ଓଡ଼ିଶାର ଖଣ୍ଡେ ଇତିହାସ ରଚିତ ହେଲେ ତିନି ଶତ ଟଙ୍କା ପୁରସ୍କାର ଦେବେ ଦେବେ ବୋଲି ଘୋଷଣା କରିଥିଲେ । ପ୍ୟାରୀମୋହନ ଓଡ଼ିଶାର ଇତିହାସ ରଚନା କରି ପୁରସ୍କୃତ ହୋଇଥିଲେ ଓ ୧୮୭୯ରେ ଏହା ପ୍ରକାଶ ପାଇଲା । ସେଥିରୁ ତାଙ୍କର ଗବେଷଣା ମନୋବୃତ୍ତିର ସୁପରିଚୟ ମିଳେ । ପ୍ୟାରୀମୋହନ କେତେ ପଢ଼ିଥିଲେ ସେଇ ପୁସ୍ତକର ଭୂମିକାରୁ ତାର ସୂଚନା ମିଳେ—"ଏଠାରେ କୃତଜ୍ଞତା ସହିତ ସ୍ୱୀକାର କରିବା ଉଚିତ ଯେ, ଏହି ପୁସ୍ତକଗତ ବିଷୟମାନ ସଂକଳନ କରିବା ବିଷୟରେ ଅନେକ ଗ୍ରନ୍ଥ ଓ କାଗଜପତ୍ରର ସାହାଯ୍ୟ ନେଇଅଛୁଁ । ହଣ୍ଟର, ଷ୍ଟର୍ଲିଂ, ସଟନ୍, ଟଏନବୀ ଓ ମିତ୍ର ଲିଖିତ ଓଡ଼ିଶାର ବିବରଣୀବଳୀ; ଲୋକସଂଖ୍ୟା ବିଜ୍ଞାପନୀ, ଏଲ୍‌ଫିନ୍‌ଷ୍ଟୋନ୍, ମାର୍ଶମାନ ପ୍ରଭୃତି ଲିଖିତ ଭାରତ ଇତିବୃତ୍ତ ଓ ମୁସଲମାନ ବିବରଣୀ, ଏସିୟାଟିକ୍ ସୋସାଇଟିର କେତେକ ବିଜ୍ଞାପନୀ; ମନୁ, ଚୈତନ୍ୟ ଚରିତାମୃତ, ଦାର୍ଢ୍ୟତାଭକ୍ତି ପ୍ରଭୃତି କତିପୟ ସଂସ୍କୃତ, ବଙ୍ଗଳା ଓ ଓଡ଼ିଆ ଗ୍ରନ୍ଥ, କମିସନରୀ କଚେରୀସ୍ଥ କେତେକ ପୁରାତନ ଓ ଆଧୁନିକ କାଗଜପତ୍ର; ସେ ସବୁ ମଧ୍ୟରୁ ପ୍ରଧାନ । ସମସ୍ତ ନାମ ଉଲ୍ଲେଖ କରିବାର ଏଠାରେ ନିଷ୍ପ୍ରୟୋଜନ । ପୁରାତତ୍ତ୍ୱବିତ୍ ବାବୁ ରଙ୍ଗଲାଲ ବାନୁର୍ଯୀଙ୍କ ସାହାଯ୍ୟରେ ତାମ୍ରପତ୍ର ପ୍ରଭୃତିରୁ ଯେତେକ ଐତିହାସିକ 'ସତ୍ୟ ମିଳିପାରେ ଓ ସମଗ୍ର ଓଡ଼ିଶାର ଇତିହାସ ବିଷୟରେ ଯେତେକ ବିବରଣୀ ପ୍ରାପ୍ତବ୍ୟ, ତାହା କୃତଜ୍ଞତା ସହିତ ଗ୍ରହଣ କରିଅଛୁଁ ।"

୧୩-୮-୧୮୭୯, ପ୍ୟାରୀମୋହନ ଆଚାର୍ଯ୍ୟ

ଉପାଦେୟତା ସତ୍ତ୍ୱେ ପାଠ୍ୟପୁସ୍ତକରୂପେ ମଞ୍ଜୁର ନ ହେବାର କାରଣ ଫକୀରମୋହନ 'ଉତ୍କଳଭ୍ରମଣଂ'ରେ ଲିପିବଦ୍ଧ କରିଛନ୍ତି—

'ଓଡ଼ିଶାର ଇତିହାସ ଲେଖିଥିଲା ପ୍ୟାରୀ
ଏମନ୍ତ ସୁନ୍ଦର ଲେଖା ନ ଦେଖେ କାହାରି
କେତେ ଜଣ ଭଲ ଲୋକ ଖଟିକଅଛ କହି
ପଢ଼ିବାକୁ ଦେଲେ ନାହିଁ ଇସ୍କୁଲରେ କହି
ଛି-ଛି ଭଲଲୋକ ଯେବେ ବୋଲିବ ତାହାଙ୍କୁ
କଲିଆ ଟଲୁଆ ଆଉ ବୋଲିବ କାହାକୁ ?'

ମୋର ଧ୍ରୁବ ବିଶ୍ୱାସ, ପୁସ୍ତକ ମଞ୍ଜୁର ନ ହେବାର ଅନ୍ୟ ଏକ କାରଣ 'ଇଂରେଜ ଶାସନର କୁଫଳ' ଉଲ୍ଲେଖ ହୋଇପାରେ—

"ଇଂରେଜ ଗଭର୍ଣ୍ଣମେଣ୍ଟଙ୍କର ଏ ସମସ୍ତ ସାଧାରଣ କାର୍ଯ୍ୟକୁ ଆମ୍ଭେମାନେ ଯେମନ୍ତ ପ୍ରଶଂସା କରୁଁ, ସେହିପରି ସେସବୁ କର୍ମମାନ ଚଳାଇବା ସକାଶେ ଦୁଃଖୀ ଭାରତବାସୀଙ୍କ ଅର୍ଥର ଯଥେଚ୍ଛା ଅପବ୍ୟୟ କରିବା ବିଷୟକୁ ମଧ୍ୟ ଅତ୍ୟନ୍ତ ଦୂଷଣୀୟ ଓ ଗର୍ହିତ ବୋଲି ବିବେଚନା କରୁ । ପୁନଶ୍ଚ ଏହି ସାଧାରଣ କାର୍ଯ୍ୟ ମଧ୍ୟରୁ କେତେକ କାର୍ଯ୍ୟ ସକାଶେ ଏ ଦେଶମାନଙ୍କରୁ ବର୍ତ୍ତମାନ ଯେଉଁ କର ( ପଥକର ଆଇନ, ପ୍ରଦେଶୀୟ କର ଆଇନ ଇତ୍ୟାଦି ) ଗୃହୀତ ହେବାର ବିଧି ହୋଇଅଛି, ସେଥି ଦ୍ୱାରା ଦୁଃଖିଲୋକମାନଙ୍କ ଚକ୍ଷୁରୁ ପ୍ରତିଦିନ ଯେଉଁ ଅଶ୍ରୁବାରି ବହିର୍ଗତ ହେଉଅଛି, ସେମାନଙ୍କ ହୃଦୟରୁ ଯେଉଁ ହାହାଧ୍ୱନି ଉଠୁଅଛି, ସେ ସମସ୍ତ ଚିନ୍ତା କଲେ ଉକ୍ତ ସାଧାରଣ କାର୍ଯ୍ୟଚୟର ମାହାତ୍ମ୍ୟ ଏକାବେଳକେ ଲୋପମାନ ହୁଅଇ ।" (ପୃ ୧୪୫, ଓଡ଼ିଶାର ଇତିହାସ)

ଏହି ପୁସ୍ତକଟି ଗତାନୁଗତିକ ଘଟନାର ଏକ ଇତିହାସ ନୁହେଁ, ସାମାଜିକ ଚଳଣି ଓ ସଂସ୍କୃତିକୁ ଏହା ଅଙ୍ଗୀଭୂତ କରିଛି, ଜାତୀୟତାବୋଧ ଓ ବୋଧିରେ ଏହା ସମୁଜ୍ଜ୍ୱଳ, ଏହା ସେକାଳ ଉତ୍କୃଷ୍ଟ ଗଦ୍ୟର ଏକ ନମୁନା, ଏକ ଚମତ୍କାର ସାହିତ୍ୟ ପୁସ୍ତକ । ତଳେ ଦୁଇଟି ଉଦ୍ଧୃତ ଦେଲି—

"ଉନ୍ନତ ସଂସାରର ନିୟମ, ଯେଉଁ ସ୍ଥାନ ନିର୍ଜନ ଅରଣ୍ୟମୟ ବା ମରୁପ୍ରାୟ ଦୃଷ୍ଟ ହେଉଥିଲା, ସମୟାନ୍ତରରେ ସେହି ସ୍ଥାନ ବସତିପୂର୍ଣ୍ଣ, ନାନାପ୍ରକାର ଅଟ୍ଟାଳିକାରେ ଶୋଭିତ ଓ ଉର୍ବର ଶସ୍ୟକ୍ଷେତ୍ର ସମନ୍ୱିତ ଦୃଷ୍ଟ ହୁଅଇ । ମାନବସମାଜ ମଧ୍ୟ ଏହି ନିୟମର ଅଧୀନ ଅଟଇ । ପୃଥିବୀର ଇତିହାସରୁ ସ୍ପଷ୍ଟ ଜଣାଯାଏ ଯେ ଯେଉଁ ମନୁଷ୍ୟ ଗୂଢ଼

ଈଶ୍ୱର ତତ୍ତ୍ୱ ନିରୂପଣ କରିବାକୁ ସମର୍ଥ, ଘଟିକା ଓ ବାଷ୍ପୀୟ ଯନ୍ତ୍ରମାନ ନିର୍ମାଣ କରିବାକୁ ସକ୍ଷମ, ସେହି ମନୁଷ୍ୟ ଏକ ସମୟରେ ଉଲଙ୍ଗ ଥିଲା ।"

(ପୃ ୧୪୬, ଓଡ଼ିଶାର ଇତିହାସ)

୧୮୬୬-୬୭ ବେଳକୁ ପ୍ୟାରୀମୋହନ ପଞ୍ଚଦଶବର୍ଷ ବୟସ୍କ ବାଳକ ମାତ୍ର । ଜଣେ ସ୍ୱେଚ୍ଛାସେବକଭାବେ ଲୋକଙ୍କୁ ମୃତ୍ୟୁମୁଖରୁ ଉଦ୍ଧାର କରିବାଲାଗି ସେ ଚେଷ୍ଟିତ ହୋଇଥିଲେ । ତାଙ୍କ ନିଅଙ୍କ ଦୁର୍ଭିକ୍ଷର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଏକାନ୍ତ ହୃଦୟସ୍ପର୍ଶୀ ।

"କରାଳ ମୃତ୍ୟୁ ସମନ୍ୱିତ ଦୁର୍ଭିକ୍ଷ ଛବି ଚିତ୍ର କରିବା ମାନବ ଲେଖନୀର ଅସାଧ୍ୟ । ସେ ସମୟରେ ସହସ୍ର ସହସ୍ର କଙ୍କାଳ ପରିଣତ ନରନାରୀମାନଙ୍କର ଆର୍ତ୍ତ ହାହାକାରରେ ନଗରମାନ ପରିପୂର୍ଣ୍ଣ ହୋଇଥିଲା । ନଗର ଓ ଗ୍ରାମମାନଙ୍କରେ ସମୀପସ୍ଥ ଶ୍ମଶାନମାନ ଅସଂଖ୍ୟ ନରଦେହରେ ପରିପୂରିତ ହୋଇଥିଲା ଏବଂ ଶକୁନି ଶୃଗାଳମାନେ ନରମାଂସ ଭକ୍ଷଣ କରି ଅସ୍ୱାଭାବିକ ଭାବେ ପରିତୃପ୍ତ ହୋଇଥିଲେ । କ୍ଷୁଧାର ପ୍ରଚଣ୍ଡ ଶାସନରେ ନରନାରୀମାନେ ସ୍ୱାଭାବିକ ହୃଦୟବୃତ୍ତିମାନଙ୍କୁ ବିସର୍ଜନ କରିଥିଲେ । ଜନକଜନନୀ ଅସହାୟ ଶିଶୁ ସନ୍ତାନମାନଙ୍କୁ ହିଂସ୍ର ଅରଣ୍ୟ ଶ୍ୱାପଦମାନଙ୍କ ନିକଟରେ ନିକ୍ଷେପ କରିଥିଲେ । କେହି କେହି ଲୋକେ କ୍ଷୁଧାକର୍ଷିତ ହୋଇ ନିଜ ନିଜ ସନ୍ତାନ ମାଂସ ସୁଦ୍ଧା ଭକ୍ଷଣ କରିଥିଲେ ।"

(ଓଡ଼ିଶାର ଇତିହାସ)

ପ୍ୟାରୀମୋହନଙ୍କୁ ଗୋପବନ୍ଧୁ ଓ ସତ୍ୟବାଦୀ ଗୋଷ୍ଠୀକୁ ଶିକ୍ଷା, ସମାଜସଂସ୍କାର ଓ ସେବା ଦିଗରେ ପ୍ରରୋଚିତ କରିଥିବେ । ଏକାନ୍ତଭାବେ ମାନବବାଦୀ; ଦରିଦ୍ର, ବିକଳାଙ୍ଗ ଉତ୍କଳର ଚିତ୍ର ହିଁ ତାଙ୍କ ଆଖି ଆଗରେ ଭାସୁଥିଲା, ସତର ଅଠର ବର୍ଷ ତରୁଣର ହୃଦୟ ହିଁ ଏଥିରେ ବିଦୀର୍ଣ୍ଣ ହେଉଥିଲା । ଉତ୍କଳପୁତ୍ରରେ ଲେଖା ହିଁ ତାଙ୍କ ରକ୍ତରଞ୍ଜିତ ଅନ୍ତରର ଲେଖା, ତତ୍କାଳୀନ ଉତ୍କଳୀୟ ଜୀବନଧାରାର ଏହା ଏକ ଇତିହାସ । ଊନବିଂଶ ଶତାବ୍ଦୀ ଭିତରକୁ ଆଲୋକପାତ କଲେ ଯେଉଁ କେତୋଟି ଧୀମନ୍ତ ବ୍ୟକ୍ତିତ୍ୱ ଦେଖାଯାନ୍ତି, ସେଥିମଧ୍ୟରେ ପ୍ୟାରୀମୋହନ ଅନ୍ୟତମ—ଶିକ୍ଷାବିତ୍, ସଂଗଠକ, ସାହିତ୍ୟିକ, ଐତିହାସିକ, ସାମ୍ବାଦିକ ଓ ସର୍ବୋପରି ଏକ ଦୟାର୍ଦ୍ର ଉଦାର ଆତ୍ମା—ଯାହାଠାରୁ ମିଳେ ଆଲୋକ ଦୃଷ୍ଟି ଓ ଆଗାମୀ ସୃଷ୍ଟିର ମହିମାମୟ ପ୍ରେରଣା ।



# ଚନ୍ଦ୍ରମୋହନ ମହାରଣା

ଜନ୍ମ—୭ ତାରିଖ ଅପ୍ରେଲ ୧୮୭୬

ମୃତ୍ୟୁ—୯ ତାରିଖ ଅପ୍ରେଲ **୧୯୧୯**

---

"କେତେ ତ ଶିକ୍ଷକ ଗଲେ
କେହି ତ ନ ଭୂଲେ ତୁମ ନାମ
ନାମ ଧରୁ ନ ଧରୁ ବା
ହାତ ଯୋଡ଼ି ହୁଅଇ ପ୍ରଣାମ ।"

—କୁଞ୍ଜବିହାରୀ

ଫକୀରମୋହନ ସାହିତ୍ୟ ପରିଷଦର ରଜତଜୟନ୍ତୀ ଉତ୍ସବରେ ଯୋଗ ଦେବାକୁ ଯାଇ ମନେ ପଡ଼ିଲା ରେମୁଣାର ଖିରଚୋରା ଗୋପୀନାଥ ଓ ସାହିତ୍ୟିକ ଚନ୍ଦ୍ରମୋହନ ମହାରଣାଙ୍କ କଥା । ପ୍ରକୃତରେ ରେମୁଣା ଯେପରି ଭକ୍ତ, ସେହିପରି କବି ତୀର୍ଥଭୂମି, ଚନ୍ଦ୍ରମୋହନ ସ୍ମୃତିରେ ଭରପୂର ।

ଧୂଳିଭରା ଗ୍ରାମ୍ୟପଥ, ଦୁଇ ଦଗରେ ବଂଶକୁଞ୍ଜ, କୂଜନ-ଗୁଞ୍ଜନ ଭରା ଫଳ ପୁଷ୍ପୋଦ୍ୟାନ ଗୃହସଂଲଗ୍ନ । ଗୋପୀନାଥଦର୍ଶନ ଓ କ୍ଷୀରଆସ୍ୱାଦନ ପରେ ପହଞ୍ଚିଲୁ ଚନ୍ଦ୍ରମୋହନଙ୍କ ଗୃହରେ; ଧୂଳି ଟିକିଏ କପାଳରେ ଲଗାଇଲାମାତ୍ରେ ଶରୀର ରୋମାଞ୍ଚିତ ହୋଇଉଠିଲା । ବୈଠକ ଗୃହରେ ତୈଳଚିତ୍ରଟିଏ, ଧୂଳିଧୂସରିତ; ସମକ୍ଷରେ ସଦ୍ୟ ସାହିତ୍ୟ ଆସରଟିଏ ବସିଗଲା ।

୧୯୧୯ରେ କବିଙ୍କ ତିରୋଧାନ । ପ୍ରାୟ ଅର୍ଦ୍ଧଶତାବ୍ଦୀ ଅତୀତ; ଏ ପର୍ଯ୍ୟନ୍ତ 'ଉତ୍କଳ ସାହିତ୍ୟ ସମାଜ'ରେ ଚନ୍ଦ୍ରମୋହନଙ୍କ ପ୍ରତିକୃତିଟିଏ ରଖାଯାଇପାରି ନ ଥିଲା । ଏ ପୂଜ୍ୟପୂଜା ବ୍ୟତିକ୍ରମ ଏକାନ୍ତ ପୀଡ଼ାଦାୟକ । ଚନ୍ଦ୍ରମୋହନ ନବାଗତଙ୍କ ସମକ୍ଷରେ ବିସ୍ମୃତପ୍ରାୟ ।

କୌଣସି କୌଣସି ବୃଦ୍ଧ ଛାତ୍ର ତାଙ୍କ ନାମୋଚ୍ଚାରଣ ମାତ୍ରେ ଗମ୍ଭୀର ହୋଇ ଯାଉଥିଲେ । ତାଙ୍କ ପରି ଛାତ୍ରପ୍ରାଣ ଶିକ୍ଷକ ଓଡ଼ିଶାରେ ବିରଳ । ଶିକ୍ଷାନୁଷ୍ଠାନରେ ଯେପରି ଶୃଙ୍ଖଳାରକ୍ଷା, ସେହିପରି ଛାତ୍ରମାନଙ୍କ ଚରିତ୍ର ଗଠନ ସେ କରି ପାରୁଥିଲେ । ତାଙ୍କ ନାମରେ ଯେତିକି ଆତଙ୍କ, ସେତିକି ଭକ୍ତିଭାବ ଜାତ ହେଉଥିଲା ।

ଅଧ୍ୟାପକ ଶ୍ରୀଧର ଦାସ ୧୯୧୯ ଖ୍ରୀଷ୍ଟାବ୍ଦରେ ପୁରୀ ଜିଲ୍ଲା ସ୍କୁଲରେ ଚନ୍ଦ୍ରମୋହନଙ୍କ ଛାତ୍ର ଥିଲେ । ସେ ମୋ ନିକଟକୁ ଗୋଟିଏ ପତ୍ରରେ ଲେଖିଛନ୍ତି—"ଦେଖିଲି, ସେ ପ୍ରାୟ ୫୦ ବର୍ଷର ଜଣେ ବୃଦ୍ଧ, ଶୃଙ୍ଖଳା ରକ୍ଷିବାରେ କଠୋରତାର ଜୀବନ୍ତ ପ୍ରତିମୂର୍ତ୍ତି । ବାସ୍ତବରେ ସେ ଗମ୍ଭୀର ସ୍ୱରରେ କାହାକୁ ଡାକିଲେ ହୃତ୍କମ୍ପ ହେବାର କଥା ।"

"ସ୍କୁଲକୁ ଆସିଲାପରେ ତାଙ୍କର ଗେରୁଆ ପରିଧାନ, ଦେହ ସାଧାରଣତଃ ମୁକ୍ତ; ବେଳେ ବେଳେ ସେହି ଗେରୁଆ ଲୁଗାର ଗୋଟିଏ ଅଂଶ ଉପର ଭାଗରେ ପକାଉଥା'ଏ । ବାଟରେ ଗଲାବେଳେ ବରାବର ଗୋଟିଏ ପ୍ରାନ୍ତରେ ଯାଉଥିବେ, ସେ ଗଲାରେ ଗୋଟିଏ ବିଶେଷତ୍ୱ ଥିଲା ।"

"ସେ ଅଧୀନରେ ନ କହି 'ଅଧୀନ୍ୟ'ରେ କହୁଥିଲେ । Prize ପାଇଁ recitation ରେ ସେ 'Murder' ଓ 'I S' ଉଚ୍ଚାରଣ ଠିକ୍ କରାଇବାରେ ଅନ୍ତତଃ ଦଶ ମିନିଟ ସମୟ ନେଇଥିଲେ ।"

"ପଣ୍ଡିତମୋହନଙ୍କ ସମ୍ବନ୍ଧରେ ସେ କହୁଥିଲେ—ତାଙ୍କ ହୃଦୟ ରସଗୋଲା ପରି ଥିଲା । କିନ୍ତୁ ମୋର ମନେ ହୁଏ, ଚନ୍ଦ୍ରମୋହନବାବୁ ଥିଲେ ନାରିକେଳ । ତାଙ୍କର ବାହାର ଯେତିକି ରୁକ୍ଷ, ଅନ୍ତର ସେତିକି ସରସ ଥିଲା ।"

"ସେ ସବୁ ବିଦ୍ୟାରେ ପଣ୍ଡିତ ଥିଲେ । ଇଂରାଜୀ, ଭୂଗୋଳ, ଇତିହାସ ସବୁଥିରେ ତାଙ୍କର ପ୍ରବେଶ ଥିଲା । ଅରେ ରାତି ଅଧରେ ବୋର୍ଡିଂ ପିଲାମାନଙ୍କୁ ଡାକି ତାରାମାନଙ୍କୁ ଚିହ୍ନାଇଲେ । ତାଙ୍କ ପାଣ୍ଡିତ୍ୟ ପିଲାମାନଙ୍କୁ ଗୋଟିଏ ଅସୁବିଧାରେ ପକାଉଥିଲା । ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକ ସେ ଶେଷ କରିପାରୁ ନ ଥିଲେ । ଗୋଟିଏ ପିରିଅଡ୍‌ରେ ଗୋଟିଏ ଇଂରାଜୀ 'Lesson' ରୁ ହୁଏତ ଧାଡ଼ିଏ ଦୁଇ ଧାଡ଼ି ହୋଇପାରେ ନାହିଁ । ଘନେ ଘନେ ଗୋଟିଏ ଗୋଟିଏ ଶବ୍ଦ ଉପରେ ହୁଏତ ପିରିଅଡ୍ ଶେଷ । କିନ୍ତୁ ବର୍ଷ ଭିତରେ ସେ ଯଦି ପୃଷ୍ଠାଏ ଦୁଇ ପୃଷ୍ଠା ପଢ଼ାନ୍ତି, ତେବେ ମଧ୍ୟ କ୍ଷତି ନ ଥାନ୍ତା, କାରଣ ଯେ ତାଙ୍କ ପଢ଼ାକୁ ନିୟମିତ ଶୁଣିଥିବ, ସେ ଅକ୍ଳେଶରେ ଅନ୍ୟ ଅଂଶସବୁ ନିଜେ ନିଜେ ପଢ଼ି ବୁଝିପାରିବ । ସେ ଶକ୍ତି ଦେଉଥିଲେ, ସାହାଯ୍ୟ ଦେଉ ନ ଥିଲେ ।"

"ସେ ଯେଉଁ ଦିନ ସ୍କୁଲରୁ ବିଦାୟ ନେଲେ, ସେଦିନ ସଭାସମିତି କିଛି ହୋଇ ନ ଥିଲା । ରାତିରେ ଆମେ ବୋର୍ଡିଂରେ ଗୋଟିଏ ବିଦାୟ ସଭା କଲୁ । ଚୌକି ଟେବୁଲ ପଡ଼ିଲା । ଚନ୍ଦ୍ରମୋହନ ବାବୁଙ୍କୁ ଡାକିଲୁ । ଗେରୁଆ ଲୁଗା ପିନ୍ଧି ଗୋଟିଏ କାନି ବେକରେ ଗୁଡ଼ାଇ ସେ ଆସି ପହଞ୍ଚିଲେ, ପଚାରିଲେ—କିଏ, କାହିଁକି ଡାକୁଛ ? ଆମେ କହିଲୁ—ଆପଣ ଯାଉଛନ୍ତି, ଆମକୁ କିଛି ଉପଦେଶ ଦିଅନ୍ତୁ ।

ସେ ଚୌକିରେ ନ ବସି ତଳେ ବାଲିରେ ବସିଲେ । ଆମେ ମଧ୍ୟ ତାଙ୍କୁ ବେଢ଼ି ତଳେ ବସିଲୁ । ସେ କହିଲେ—ଆଚ୍ଛା, ମୁଁ ଗୋଟିଏ କଥା କହିଯିବି—ତୁମ୍ଭେ ମାନେ ଚରିତ୍ର ଏପରି ହେବ, ଯେପରି କି ଶତ୍ରୁ ସୁଦ୍ଧା ସେଥିରେ ଦୋଷ ଦେଖି ନପାରୁ ।"

"ତାଙ୍କ ଅନ୍ତରର ସରଳତା, ଗୁଣବତ୍ସଳତା ଅନୁଭବର ବିଷୟ । ବର୍ଷେ ଦୁଇବର୍ଷ ପରେ ସେ ପୁରୀକୁ ଆସିଥିଲେ । ମୋତେ ଡାକିନେଇ ସେ ଦିନଟି ପାଖରେ ରଖିଲେ । ମୌନ ସମୟରେ ମୋଦ୍ୱାରା ଖବର କାଗଜ ପଢ଼ାଇ ଶୁଣିଲେ । ଦକ୍ଷିଣୀ ଆମ୍ବ ଓ ମହାପ୍ରସାଦ ଖୁଆଇ ଛାଡ଼ିଲେ । ବାସ୍ତବରେ ସେ ଆମର ହେଡ଼ମାଷ୍ଟର ଥିବାବେଳେ ଆମେ ତାଙ୍କୁ ଚିହ୍ନି ନଥିଲୁ, ପରେ ଚିହ୍ନିଲୁ ।"

"ତାଙ୍କ 'ବ୍ୟାକରଣ ସୋପାନ' ବହିର ପ୍ରାୟ ଶହେଟି ସଂସ୍କରଣ ହୋଇଥିଲା ।"

"ଋତୁ ବର୍ଣ୍ଣନାରେ ମଧୁସୂଦନ ଓ ଚନ୍ଦ୍ରମୋହନଙ୍କ ପାର୍ଥକ୍ୟ ଉପଲବ୍ଧି କରି ହୁଏ । ଚନ୍ଦ୍ରମୋହନ ଶୀତଋତୁ ବର୍ଣ୍ଣନାରେ ଲେଖିଛନ୍ତି—

'ନିଶାରେ, ଅଜସ୍ର ତୁଷାର ବର୍ଷିଲା
ଧଳା ଉତ୍ତରୀ ବୋଳା ତପସ୍ୱୀ ମହିଳା
ପରିଏ ଯାମିନୀ ଦିଶିଲା ।'

ସନ୍ତାନହରା ଜନନୀର ଲୋତକଧାର ତାଙ୍କ ନୟନରେ ଦେଖାଦେଇଛି—

'ତା ହୃଦ ସଙ୍ଗରେ ସେ ଶିଶୁକୁସୁମରେ
ଯେ କୋମଳ ସୂତେ ଭଲେ
ବାନ୍ଧିଥିଲା ବିଧି ଛିଡ଼ିଯାନ୍ତେ ତାହା
ଲମ୍ବି ଛି ଲୋତକ ଛଳେ ।'

'ବେଶୀ ଲେଖି ନଥାନ୍ତି ପଛକେ ସେ ଥିଲେ ଯଥାର୍ଥ କବି । ଖାଲି ସମୁଦ୍ର ସୁନ୍ଦର ନୁହେଁ, ତୁଷାର ବିନ୍ଦୁ ମଧ୍ୟ ସୁନ୍ଦର ।'

ଆତ୍ମଜୀବନୀରେ ପଣ୍ଡିତ ନୀଳକଣ୍ଠ ଏହି ମହାନ୍ ଶିକ୍ଷକଙ୍କର ଏକ ଜୀବନ୍ତ ଆଲେଖ୍ୟ ଅଙ୍କନ କରିଛନ୍ତି—

"ସ୍କୁଲ ଶିକ୍ଷକମାନଙ୍କ ମଧ୍ୟରେ ବଡ଼ ଯୋଗ୍ୟ ଲୋକ ବୋଲି ତାଙ୍କର ସୁଖ୍ୟାତି ଥିଲା । ମୋ ମନେଅଛି, ଆମ ଗାଁ ସ୍କୁଲ ପରିଦର୍ଶନ କରିବାକୁ ଗଲାବେଳେ ସେ ଗୋଟିଏ କୋଇଲି ବୋବେଇବାର ଶୁଣି ପଚାରି ଦେଇଥିଲେ—ପଣ୍ଡିତ ମହାଶୟ, କହନ୍ତୁ ତ ଏ ମାଈ କି ଅଣ୍ଡିରା କୋଇଲି ?

ପଣ୍ଡିତ ମହାଶୟ କିଛିଏ ଇତସ୍ତତଃ ହୋଇ କହି ପକାଇଲେ --ମାଈ ହୋଇଥିବ । ଅଣ୍ଡିରାର ଏ ସୁନ୍ଦର ସ୍ୱର ହେବ କୁଆଡୁ ?

ଚନ୍ଦ୍ରମୋହନବାବୁ କହିଲେ—ନା-ନା, ମାଈ କୋକିଳର ଏପରି ସ୍ୱର ନାହିଁ । କାଳିଦାସ ଲେଖିଛନ୍ତି—

'ପୁଂସ୍କୋକିଲୋ ଜଯନ୍ ମଧୁରଂ ଚୁକୁ ।'

ଚନ୍ଦ୍ରମୋହନ ବାବୁ ସ୍କୁଲ ପରୀକ୍ଷା କରିବା ଛଡ଼ା କଥା ଛଳରେ ଏହିପରି ବହୁତ ଆଲୋଚନା କରୁଥିଲେ । ଓଡ଼ିଆ ଶିକ୍ଷିତଶ୍ରେଣୀରେ ତାଙ୍କର ଖୁବ୍ ଆଦର ଓ ସୁଖ୍ୟାତି ଥିଲା ।"

"ଯଥାର୍ଥରେ ତାଙ୍କପରି ଉଦାରଚେତା, ଶିଶୁପ୍ରାଣ ଶିକ୍ଷକ ମୁଁ ବଡ଼ କମ୍ ଦେଖିଛି ।"

"ତାଙ୍କ ଦ୍ୱାର ମୋପାଇଁ ସଦା ଅବାରିତ ଥିଲା । ସେ ଶୋଇବାଠାରୁ ଉଠିଆସି ମୋ ଅଙ୍କଟି ମୋତେ ବୁଝାଇ ଦେଇ ପୁଣି ଯାଇ ଶୁଅନ୍ତି ।"

"ସେ ମୋତେ ବୁଝାଇଥିଲେ—ବ୍ୟବହାରରେ ମିତବ୍ୟୟିତା ଅକ୍ଷରରେ ମଧ୍ୟ ସେଇଆ । ଲମ୍ବା ମୁଣ୍ଡ ମୋଟା ଗାରସବୁ ଦରକାର ନାହିଁ । ଅକ୍ଷର ସ୍ପଷ୍ଟ କରିବା ପାଇଁ ଗାରର ଯେତିକି ପ୍ରକାର, ପରିମାଣ ଲୋଡ଼ା ସେତିକି ହେଲେ ହେଲା । ଏହା ହିଁ ଅକ୍ଷର ଭଲ କରିବାର ସୂତ୍ର । ଏକ ସପ୍ତାହ ମଧ୍ୟରେ ମୋ ଅକ୍ଷର ବଦଳିଗଲା । ପରେ ଯନ୍ତ୍ରୀବାଲା ସ୍କୁଲରେ ପିଲାଙ୍କୁ ଅକ୍ଷର ଲେଖା ଶିଖାଇଲାବେଳେ ଚନ୍ଦ୍ରମୋହନ ବାବୁଙ୍କ ଉପ୍ଦେଶ କଥା ଗୁଡ଼ିକ ମଧ୍ୟ ମୋର ବରାବର ମନେ ପଡ଼ୁଥିଲା ।"

"ଚନ୍ଦ୍ରମୋହନ ବାବୁ ପ୍ରାୟ ଆକାଶ ନିର୍ମଳ ଥିବା ବେଳେ ମୋତେ ସଙ୍ଗେ ଘେନି ସ୍କୁଲହତା ଭିତରେ ବୁଲିବୁଲି ବାଲିରେ ଆଳାପ କରୁଥାନ୍ତି । ସେତିକିବେଳେ ଆକାଶକୁ ଚାହିଁ ଗ୍ରହର ଗତି, ମଙ୍ଗଳର ଅବସ୍ଥିତି, ଚନ୍ଦ୍ର ପଥରେ ନିର୍ଦ୍ଦିଷ୍ଟ ଅଶ୍ୱିନୀ, ଆର୍ଦ୍ରା, ପୁନର୍ବସୁ, ଚିତ୍ରା, ସ୍ୱାତୀ, ଜ୍ୟେଷ୍ଠା, ଭାଦ୍ରପଦ ପ୍ରଭୃତିର ଉଜ୍ଜ୍ୱଳ ଯୋଗ ତାରା-ଗୁଡ଼ିକଠାରୁ ଆରମ୍ଭ କରି କ୍ରମେ ଅନ୍ୟାନ୍ୟ ନକ୍ଷତ୍ରସବୁ ମୋତେ ଦେଖାଇ ବୁଝାଇ

ଦେଉଥିଲେ । ପରେ ସତ୍ୟବାଦୀ ସ୍କୁଲରେ ଛୁଟିବେଳେ ମୁଁ ବଡ଼ ବଡ଼ ଆମ୍ବ ତୌକାରେ ସ୍କୁଲ ଅଗଣାରେ ବସି ଚନ୍ଦ୍ରଭାଗା ପଶ୍ଚିମ ତଟ ଲକ୍ଷ୍ୟ କରି ଦିନକୁ ଧରି ବନକୁ ଯାଇ ତାଙ୍କ ତାରା ଦେଖାଇ ବୁଝାଇବାବେଳେ ମୋର ଚନ୍ଦ୍ରମୋହନ ବାବୁ ହିଁ ମନେ ପଡ଼ୁଥିଲେ ।''

ପ୍ରଧାନଶିକ୍ଷକଭାବେ ଚନ୍ଦ୍ରମୋହନ କଠୋରଭାବେ କର୍ତ୍ତବ୍ୟନିଷ୍ଠ ଥିଲେ; ସ୍କୁଲରେ ସଂଯମ ଓ ଶୃଙ୍ଖଳାର ରାଜତ୍ୱ ଚାଲୁଥିଲା, ସର୍ବଦା ବାତାବରଣ ବିରାଜିତ ଥିଲା । ଛାତ୍ରମାନଙ୍କ ମନୋଭାବ ଭଲ ଭଲ କରି ବୁଝିବା ଲାଗି ତାଙ୍କର ଧୈର୍ଯ୍ୟ ଥିଲା । ଛାତ୍ରର ବ୍ୟକ୍ତିତ୍ୱ ଗଢ଼ିବାର ଦାୟିତ୍ୱ ସେ ମର୍ମେ ମର୍ମେ ବହନ କରୁଥିଲେ । ଆଦର୍ଶର ମଶାଲ ଧରି ଆଗେ ଆଗେ ଚାଲୁଥିଲେ ସେ । ତାଙ୍କ ଅନୁସରଣ କରି ଚାଲୁଥିଲେ ଶିକ୍ଷକ, ଛାତ୍ର । ଅପରାଧୀ ଛାତ୍ରକୁ ଶାସ୍ତି ଦେଲାବେଳେ ସେ ଅଭିଭାବକର ଉଚ୍ଚାସନ ବା ପଦମର୍ଯ୍ୟାଦା ଦେଖି ଶଙ୍କି ଯାଉ ନ ଥିଲେ । ନୀଳକଣ୍ଠଙ୍କ କଳନାରେ ସେ ଏକାନ୍ତ ସତ୍ୟନିଷ୍ଠ ଓ ନିର୍ଭୀକ ଥିଲେ ।

ସେ ବଡ଼ ବୈୟାକରଣ ଥିଲେ; ସାହିତ୍ୟିକ କୃଷ୍ଣଚନ୍ଦ୍ର କରଙ୍କ ଭାଷାରେ ସେ ଥିଲେ—''ବ୍ୟାକରଣ ମନ୍ଦାରର ଜ୍ୱଳନ୍ତ ଜୀବନ୍ତ ପ୍ରତୀକ ।'' କିଂବଦନ୍ତୀ ଅଛି ଯେ ଜଣେ ଚୁଲିବିକାଳୀ 'ଚୂଡ଼ାଭଜା', 'ଚୂଡ଼ାଭଜା' ଡାକ ଯାଉଥିଲା । ସେ ତାକୁ ପାଖକୁ ଡାକି ପଚାରିଲେ—ବାବୁ, ଭଜାଚୂଡ଼ା ନ କହି ତୁ କାହିଁକି ଚୂଡ଼ାଭଜା କହୁଚୁ ? ଆଗେ ବିଶେଷଣ, ପରେ ବିଶେଷ୍ୟ ନିଅ, ଏ କଥା କଣ ତୁ ଜାଣିନାହୁଁ ? 'ଦ୍ୱେ କୈବର୍ତ୍ତ ପତ୍ନୀ, ଏ ମନ୍ତ୍ରର ମୂଳ ନିରୂପଣ କର; ମାତ୍ର ମୂଳଇଲାବେଳେ ପଣ୍ଡିତଙ୍କ ସାଧୁ ଭାଷା ପ୍ରୟୋଗର ଅସଙ୍ଗତପର ସାଧାରଣ ଲୋକ ନିକଟରେ ବ୍ୟାକରଣ ସଂପର୍କୀୟ ପ୍ରଶ୍ନ ଅସଙ୍ଗତ ଓ ଆମୋଦଦାୟକ । ବ୍ୟକ୍ତିତ୍ୱରେ ସ୍ୱାତନ୍ତ୍ର୍ୟଥିବା ଲୋକ ସମ୍ବନ୍ଧରେ ନାନା କିଂବଦନ୍ତୀ ଚଳେ; ସେସବୁ ସତ୍ୟ ବୋଲି ଗ୍ରହଣ କରିନେବା ବା ଅମୂଳକ ବୋଲି ଉଡ଼ାଇଦେବା ଯଥାର୍ଥ ନୁହେ । ଚନ୍ଦ୍ରମୋହନ ଅତ୍ୟଧିକ ବ୍ୟାକରଣ ସଚେତନତା ଯୋଗୁଁ ଯଶସ୍ୱୀ ହୋଇ ଉଠିଥିଲେ, ଏ କଥା ସତ୍ୟ । ହୁଏତ ମନରେ ଦୃଢ଼ ଆତ୍ମପ୍ରତ୍ୟୟ ଆସି ନଥିଲା । କେତେକ ପୁସ୍ତକ ରଚନା କଲେ ବା ତ୍ରିକୋଣମିତି ବିଷୟରେ ସେ ବୀତସ୍ପୃହ ହୋଇ ଉଠିଥିଲେ । ଶୁଣାଯାଏ, ୧୯୨୬ ରେ ଗୃହଦାହ ଫଳରେ ତାଙ୍କର ୪୦ ଖଣ୍ଡ ପାଣ୍ଡୁଲିପି ଭସ୍ମୀଭୂତ ହୋଇଥିଲା । ଏସବୁ ସାହିତ୍ୟିକ ରଚନା ନା ପାଠ୍ୟପୁସ୍ତକ ? କୌଣସି ସୂତ୍ରରୁ ତାର ସୂଚନା ମିଳେ ନାହିଁ । ତେବେ ଏସବୁ ପ୍ରଳୟାଗ୍ନିରେ ସର୍ବସ୍ୱର ଆହୁତି ।

୧୮୬୬ ନଅଙ୍କ ଦୁର୍ଭିକ୍ଷ କାଳ; ଚତୁର୍ଦିଗରେ ହା-ଅନ୍ନ ଚିତ୍କାର । ମୃତ୍ୟୁର କରାଳ ଲୀଳା ମଧ୍ୟରେ ବାଲେଶ୍ୱର ଜିଲାର ରେମୁଣା ଗ୍ରାମରେ ଅପ୍ରେଲ ୬ ତାରିଖରେ

ଚନ୍ଦ୍ରମୋହନଙ୍କ ଜନ୍ମ । ଶତ ଶତ ଶବ ସତ୍କାର ନ ହୋଇ ପଡ଼ି ରହିଥିଲା ବେଳେ ତାଙ୍କର ସଞ୍ଚ ଆଉ, ଛଠୀ, ଏକୋଇଶା ନାମକୁ ମାତ୍ର ପାଳିତ ହୋଇଥିଲା ।

ଜନ୍ମର ଅଳ୍ପ କାଳ ପରେ ରେମୁଣାରେ ଗୋଟିଏ ଇଂରାଜୀ ସ୍କୁଲର ଭିତ୍ତି ଦେଇଥିଲେ ବାଲେଶ୍ୱରର ଦସ୍ତୁଟମୀ ରାଜା ବୈକୁଣ୍ଠନାଥ ଦେ । ପ୍ରତିଷ୍ଠା ଉତ୍ସବରେ ଉପସ୍ଥିତ ଥିଲେ କବିବର ରାଧାନାଥ ରାୟ ଓ ବ୍ୟାସକବି ଫକୀରମୋହନ ସେନାପତି ।

ଚନ୍ଦ୍ରମୋହନଙ୍କ ୧୧ ବର୍ଷ ହୋଇଥିବା ସମୟରେ ପିତା ଅନାଦି ଚରଣ ମହାରଣାଙ୍କ ମୃତ୍ୟୁ ହେଲା ଓ ଘରର ଆର୍ଥିକ ଅବସ୍ଥା ଦିନୁଁ ଦିନ ଶୋଚନୀୟତର ହେବାକୁ ଲାଗିଲା । ତେଣୁ ଚନ୍ଦ୍ରମୋହନଙ୍କ ଅଧିକ ଅଧ୍ୟୟନର ବଳବତୀ ଇଚ୍ଛା ସମକ୍ଷରେ ଦାରିଦ୍ର୍ୟ ଅନ୍ତରାୟ ହୋଇ ପାରିଲା ନାହିଁ । ଜଙ୍ଗଲ, ପାହାଡ଼ ଗୋହିରୀ ବାଟ; ରେମୁଣାରୁ ଆଠ ମାଇଲ ଚାଲି ଚାଲି ଯାଇ ଚନ୍ଦ୍ରମୋହନ ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢ଼ୁଥିଲେ । ରାତିରୁ ଗଣ୍ଡିଏ ପଖାଳ ଖାଇ ଯାଇ ଫେରି ରାତିରେ ଆସି ଖାଉଥିଲେ । ଜଙ୍ଗଲ ବାଟରେ ଭାଲୁ, ଗଧିଆ, ଚିତାବାଘ, ସାପମାନେ ତାଙ୍କୁ ପଛଧରି ଅଧା ବାଟରେ ଛାଡ଼ିଦେଇ ରାତି ପାହୁ ଫଟକ୍ ହେଲେ ଫେରୁଥିଲେ । ପ୍ରତିଦିନ ୧୬ ମାଇଲ ଯିବା ଆସିବା ଫଳରେ ଚନ୍ଦ୍ରମୋହନଙ୍କ ବପୁ ସୁଗଠିତ ହୋଇଥିଲା; ସେ କଷ୍ଟସହିଷ୍ଣୁ, ସାହସୀ ଓ ନିର୍ଭୀକ ହୋଇ ଉଠିଥିଲେ ।

ତେଣୁ ଯିବା ଆସିବାରେ ତାଙ୍କର ସମସ୍ତ ସମୟ ଯାଉଥିଲା । ସେ କିଛି ପଢ଼ି ପାରୁ ନ ଥିଲେ । ବାଲେଶ୍ୱରରେ ଜଣେ ଆତ୍ମୀୟଙ୍କ ଘରେ ତାଙ୍କ ରହିବା ବ୍ୟବସ୍ଥା କରାଗଲା । ଆଲୋକ ଅଭାବରୁ ରାସ୍ତାଧାରରେ ବସି ମ୍ୟୁନିସିପାଲିଟି ଆଲୁଅରେ ତାଙ୍କୁ ପଢ଼ିବାକୁ ହୋଇଥିଲା ।

ଗଭୀର ଆନ୍ତରିକତା, ଅଧ୍ୟବସାୟ ସ୍ୱାଭାବିକ ମେଧା ସହିତ ମିଶି ତାଙ୍କୁ ଜୟଯୁକ୍ତ କଲା । ଏଣ୍ଟ୍ରାନ୍ସ ପରୀକ୍ଷାରେ କଲିକତା ବିଶ୍ୱବିଦ୍ୟାଳୟରୁ ସେ ଚତୁର୍ଥ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଥିଲେ । ଏହି ଅପୂର୍ବ ସାଫଲ୍ୟ ତାଙ୍କ ଉଚ୍ଚଶିକ୍ଷାର ଦ୍ୱାର ଉଦ୍‌ଘାଟନ କରିଦେଲା ।

୧୮୮୪-୮୫ ଖ୍ରୀଷ୍ଟାବ୍ଦ, ସେତେବେଳକୁ ଓଡ଼ିଶାରେ ରେଳଗାଡ଼ି ଚାଲି ନାହିଁ, ଯାତାୟାତର କୌଣସି ସୁବିଧାଜନକ ବ୍ୟବସ୍ଥା ହୋଇନାହିଁ । ବାଲେଶ୍ୱରରୁ ଷ୍ଟିମାର୍‌ରେ ଚାନ୍ଦବାଲି ଯାଇ ସେଠୁ ଆଳି, ପଟାମୁଣ୍ଡାଇ ବାଟେ ଚାଲିଚାଲି ଚନ୍ଦ୍ରମୋହନ ଆସି କଟକରେ ପହଞ୍ଚିଲେ, କାନ୍ଧରେ ଗୋଟିଏ ବୋକ୍ସ, ପିନ୍ଧିବା ଲୁଗାଠାରୁ କଞ୍ଚାଚୁଡ଼ା, ଲଗାଇବା ତେଲ, ଦାନ୍ତକାଠି ପର୍ଯ୍ୟନ୍ତ ସବୁ ସେଥିରେ ବନ୍ଧା ।

କଟକ ରେଭେନ୍ସା କଲେଜରେ ସେ ଏଫ୍. ଏ. ଶ୍ରେଣୀରେ ନାମ ଲେଖାଇଲେ । ଘୋର ଦୁଃଖ କଷ୍ଟ ମଧ୍ୟରେ ଉକ୍ତ ବ ପ୍ରଥମ ବର୍ଷ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଥିଲେ । ଏ ଘଟଣା କଟକରେ ଚହଳ ପକାଇ ଦେଇଥିଲା । ସେତେବେଳେ ଓଡ଼ିଆ ଛାତ୍ରଙ୍କ ସଂଖ୍ୟା ନଗଣ୍ୟ । ବଙ୍ଗାଳୀ ଛାତ୍ରମାନେ ଉଚ୍ଚସ୍ଥାନମାନ ମାରନେବାର ଦୀର୍ଘ ପରମ୍ପରା ଚାଲିଆସିଥିଲା । ଚନ୍ଦ୍ରମୋହନ ଗୋଟିଏ ଘାଟି ଦଖଲ କରିନେବାରେ କ୍ରୋଧ ଓ ଅଭିମାନରେ ଜଣେ ବଙ୍ଗାଳୀ ଛାତ୍ର ରେଭେନ୍ସା କଲେଜ ଛାଡ଼ି ଚାଲିଯାଇଥିଲା । ୧୮୮୬ ରେ କୃତିତ୍ୱ ସହିତ ଚନ୍ଦ୍ରମୋହନ ଏଫ୍.ଏ. ପାସ୍ କଲେ ।

କଲିକତାରେ ଇଞ୍ଜିନିଅରିଂ ପଢ଼ିବା ଲାଗି ଚେଷ୍ଟିତ ହୋଇ ବ୍ୟର୍ଥ ହେଲା ପରେ ସେ ରେଭେନ୍ସା କଲେଜରେ ବି. ଏ. ଶ୍ରେଣୀରେ ନାମ ଲେଖାଇଲେ । ସରକାରୀ ବୃତ୍ତି ହିଁ ତାଙ୍କର ମୁଖ୍ୟ ଅବଲମ୍ବନ ଥିଲା । ୧୮୮୮ ଖ୍ରୀଷ୍ଟାବ୍ଦରେ ସେ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । କିଛି ଭୂସମ୍ପତ୍ତି ନଥିଲା, ଘରେ ଅନ୍ୟ କାହାର କିଛି ରୋଜଗାର ବି ନଥିଲା । ତଥାପି କିଛି କିଛି ପଇସା ପ୍ରତି ମାସରେ ତାଙ୍କ ଲାଗି ମାଆ ପଠାଉଥିଲେ । ଫଳରେ ୩୦୦ ଟଙ୍କା କରଜ ହୋଇଗଲା । ଅଦମ୍ୟ ଉଚ୍ଚାକାଂକ୍ଷା ଘୋର ଅନାଟନ ମଧ୍ୟରେ ଚନ୍ଦ୍ରମୋହନ ଆଇ.ସି.ଏସ୍. ପରୀକ୍ଷାଲାଗି ପ୍ରସ୍ତୁତ ହେଉଥିଲେ । ସେ ଘୋଡ଼ାଚଢ଼ା ଆୟତ୍ତ କରିଥିଲେ; ଅମଣିଆ, ଅସାଧ୍ୟ, ଘୋଡ଼ାକୁ ମଣ ବା ସାଧ୍ୟ କରିବା କୌଶଳ ସେ ଶିକ୍ଷା କରିଥିଲେ । ନିୟମିତ କୁସ୍ତି କସରତ ଯୋଗୁଁ ସେ ହୃଷ୍ଟପୁଷ୍ଟ ଓ ବଳିଷ୍ଠ ହୋଇଥିଲେ । ଜଳଖିଆରେ ସେ ବାଲେଶ୍ୱରୀ ସେରେ କଞ୍ଚା ଚୂଡ଼ା, ଦୁଇ ସେର ବସାଦହି ଓ ସେରେ ଗୁଡ଼ ଖାଇ ପାର୍ କରିଦେଇ ପାରୁଥିଲେ । କୋଦାଳ ଧରିଲେ ସେ ଏକାଦିକ୍ରମେ ଘଣ୍ଟେ ଜମି ହାଣି ଦେଇଯାଉଥିଲେ । କ୍ଳାନ୍ତିବୋଧ ହେଉ ନଥିଲା ।

## କର୍ମ ଜୀବନ :

ବି. ଏ. ପାସ୍ ପରେ ତାଳଚେର ଗଡ଼ଜାତର ଯୁବରାଜଙ୍କ ଅଭିଭାବକ ଗୃହଶିକ୍ଷକ ଭାବେ ଚନ୍ଦ୍ରମୋହନ କିଛି କାଳ କାର୍ଯ୍ୟ କରିଥିଲେ । ତାଙ୍କ ରଚନା ପ୍ରତି ଆକୃଷ୍ଟ ହୋଇ ଇନସପେକ୍ଟର ଗୁଣଗ୍ରାହୀ କବିବର ରାଧାନାଥ ତାଙ୍କୁ ବାଲେଶ୍ୱର ଜିଲା ସ୍କୁଲର ସହକାରୀ ଶିକ୍ଷକଭାବେ ନିଯୁକ୍ତ କଲେ । ମାସିକ ବେତନ ପଚିଶ ଟଙ୍କା ମାତ୍ର । ସାତ ଆଠ ବର୍ଷ କାଳ ଶିକ୍ଷା ବିଭାଗରେ କାର୍ଯ୍ୟ କଲାପରେ ପଦୋନ୍ନତି ନ ହେବାରୁ ଚନ୍ଦ୍ରମୋହନ ସରକାରୀ ଚାକିରି ଛାଡ଼ି ଦେବା ଲାଗି କୃତସଂକଳ୍ପ ହୋଇଥିଲେ । ମଧୁବାବୁ ( ପରେ ମହାନ ଜାତୀୟ ନେତା ମଧୁସୂଦନ ଦାସ ) ତାଙ୍କୁ ସେଥିରୁ ନିବୃତ୍ତ କଲେ ।

ତାପରେ କଟକ ଟ୍ରେନିଂ ସ୍କୁଲକୁ ସହକାରୀ ଶିକ୍ଷକଭାବେ ତାଙ୍କର ବଦଳି ହେଲା। ସେତେବେଳେ କବି ମଧୁସୂଦନ ରାଓ ଟ୍ରେନିଂ ସ୍କୁଲର ପ୍ରଧାନଶିକ୍ଷକ । ତାଙ୍କର ସହିତ ମୈତ୍ରୀ ସମ୍ବନ୍ଧ ହେଲା । ଚନ୍ଦ୍ରମୋହନଙ୍କ ସହଯୋଗରେ ସେ ଟ୍ରେନିଂ ସ୍କୁଲରେ 'ଆଲୋଚନା ସଭା' ପ୍ରତିଷ୍ଠା କଲେ। ମଧୁସୂଦନ ସଭାପତି, ଚନ୍ଦ୍ରମୋହନ ଏହା'ର ପ୍ରଥମ ସମ୍ପାଦକ ହେଲେ। ଏହି ସଭା କଟକରେ ଏକ ଚମତ୍କାର ସାହିତ୍ୟିକ ବାତାବରଣ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା। ଏଥିରେ ଯୋଗ ଦେଉଥିବା ବହୁ ଖ୍ୟାତ ସାହିତ୍ୟିକମାନଙ୍କ ମଧ୍ୟରେ ବିଶ୍ୱନାଥ କର, ନନ୍ଦ କିଶୋର ବଳ, କୃଷ୍ଣ ପ୍ରସାଦ ଚୌଧୁରୀ ମୁଖ୍ୟ ଥିଲେ। ଟ୍ରେନିଂ ଛାତ୍ରମାନଙ୍କ ମଧ୍ୟରେ ସାହିତ୍ୟିକ ହେବା ଇଚ୍ଛାକାଂକ୍ଷା ଏହି ସଭା ଜାଗ୍ରତ କରିଥିଲା। ଏହି ଅନୁଷ୍ଠାନରୁ ଆଲୋକପ୍ରାପ୍ତ ପଣ୍ଡିତମାନେ ଉଚ୍ଚ ବିଦ୍ୟାଳୟମାନଙ୍କରେ ସାହିତ୍ୟିକ ବାତାବରଣ ସୃଷ୍ଟି କରିବାକୁ ସମର୍ଥ ହେଉଥିଲେ। ଏବେ ଏହି ସ୍କୁଲରୁ ପଣ୍ଡିତ ବାହାରୁଛନ୍ତି, ସାହିତ୍ୟିକ ବିରଳ।

୧୮୯୭ ଆଲୋଚନାସଭାର ତୃତୀୟ ଅଧିବେଶନରେ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ଏହି ସଭାର ମହତ୍ ଉଦ୍ଦେଶ୍ୟ ଏହିପରି ଭାବେ ପ୍ରକାଶ କରିଥିଲେ—"ଏହି ଆଲୋଚନା ସଭା ଉପଯୁକ୍ତ କ୍ଷେତ୍ରରେ ସଂସ୍ଥାପିତ। ନର୍ମାଲ୍ ସ୍କୁଲ ଓଡ଼ିଆ ଭାଷାର ସର୍ବୋଚ୍ଚ ବିଦ୍ୟାଳୟ। ଏହାର ଛାତ୍ରମାନେ ଉତ୍କଳଭୂମିର ନାନା ସ୍ଥାନରେ କାର୍ଯ୍ୟ କରିବାକୁ ଯିବେ। ସେମାନେ ଯେବେ ସାହିତ୍ୟସେବାର ଉନ୍ନତଭାବ ଓ ଆକାଂକ୍ଷା ପ୍ରାଣରେ ପୋଷଣ କରି କର୍ତ୍ତବ୍ୟ ସାଧନରେ ତତ୍ପର ହୁଅନ୍ତି, ତାହେଲେ ସେମାନଙ୍କ ଦ୍ୱାରା ଦେଶର ଅଶେଷ କଲ୍ୟାଣ ସାଧିତ ହୋଇପାରିବ। ସେମାନେ ନିଜେ ସାହିତ୍ୟସେବା କରି ଜୀବନ କୃତାର୍ଥ କରିପାରିବେ ଏବଂ ଶତ ଶତ ପ୍ରାଣରେ ସାହିତ୍ୟ ସେବା ଭାବ ଜାଗ୍ରତ କରିବାକୁ ସମର୍ଥ ହେବେ।"

ମଧୁସୂଦନଙ୍କ ପରେ ଚନ୍ଦ୍ରମୋହନ ପଣ୍ଡିତମାନଙ୍କ ମନରେ ସାହିତ୍ୟନିଶା ଲଗାଇ ରଖିଥିଲେ। ସେମାନେ 'ଉତ୍କଳ ସାହିତ୍ୟ ସମାଜ'ର ସାହିତ୍ୟ ସଭାମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ। ଏବେ ଟ୍ରେନିଂ ସ୍କୁଲ୍ ସେହି ଉଜ୍ଜ୍ୱଳ ପରମ୍ପରାଚ୍ୟୁତ।

୧୯୦୩ ରେ 'ଉତ୍କଳ ସମ୍ମିଳନୀ' ସହିତ ଏକ ବୃହତ୍ତର ପରିବେଶରେ 'ଉତ୍କଳ ସାହିତ୍ୟ ସମାଜ' ଜନ୍ମଲାଭ କଲା। 'ଆଲୋଚନା ସଭା' ହିଁ ଏହି ମହାନ୍ ସାହିତ୍ୟିକ ଅନୁଷ୍ଠାନର ଆଦିମାତା। ଚନ୍ଦ୍ରମୋହନ ୧୯୦୭ରୁ ୧୯୧୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଟ୍ରେନିଂ ସ୍କୁଲର ପ୍ରଧାନଶିକ୍ଷକଭାବେ କାର୍ଯ୍ୟ କରିଥିଲେ ଓ ଏହି ସ୍କୁଲରେ ବିଦଗ୍ଧ ବାତାବରଣ ସଜାଡ଼ି କରି ରଖିଥିଲେ।

ସେ କପରି ଉଚ୍ଚକୋଟୀର ଶିକ୍ଷାବତ୍ ଥିଲେ ଶିକ୍ଷକମାନଙ୍କ ପ୍ରତି ତାଙ୍କ ଉପଦେଶରୁ ସୁସ୍ପଷ୍ଟ ହୁଏ।

(କ) ଶିକ୍ଷକ କର୍ତ୍ତବ୍ୟପରାୟଣ ହୋଇ ପ୍ରତ୍ୟେକ ଛାତ୍ରମାନଙ୍କର ଉନ୍ନତି ଚିନ୍ତା କରିବେ।

(ଖ) ଛାତ୍ରମାନଙ୍କ ରୋଗବ୍ୟାଧି, ଅଭାବ ଅସୁବିଧା ବିଷୟରେ ଯଥେଷ୍ଟ ପ୍ରତିକାର କରିବେ।

(ଗ) ଛାତ୍ରଙ୍କୁ କୌଣସି ଶାରୀରିକ ବା ଆର୍ଥିକ ଦଣ୍ଡ ନ ଦେଇ ମାନସିକ ପ୍ରବୃତ୍ତି ବଳରେ ସଂଶୋଧନ କରିବେ।

(ଘ) ପରୀକ୍ଷା ଖାତା ଦେଖିଲାବେଳେ ଶିକ୍ଷକ ନାମ ବା ରୋଲ ନମ୍ବରରେ ଭୁଲ ନ ଯାଇ ଜଜ ଯେପରି ଆସାମୀଙ୍କୁ ଉଦ୍ଧାର କରିବାକୁ ଚେଷ୍ଟା କରନ୍ତି, ପରୀକ୍ଷାର୍ଥୀ ଉଦ୍ଧାର ପାଇଁ ପରୀକ୍ଷକ ସେହିପରି ଚେଷ୍ଟା କରିବେ।

ଛାତ୍ରମାନଙ୍କ କଲ୍ୟାଣକାମନା ଚନ୍ଦ୍ରମୋହନଙ୍କର ଏକ ସ୍ୱାଭାବିକ ପ୍ରବୃତ୍ତି ପରି ହୋଇଥିଲା। ପ୍ରତି ଛାତ୍ର ପଛେ ପଛେ ତାଙ୍କ ମନ ସତେ ଯେପରି ଘୂରି ବୁଲୁଥିଲା। କପରି ତା ମନରେ ଅଧ୍ୟୟନ ସ୍ପୃହା ଜାଗ୍ରତ କରିବେ, କପରି ଅବାଟରେ ଯାଉଥିବା ଛାତ୍ରକୁ ବାଟକୁ ଆଣିବେ, ଏହା ତାଙ୍କର ଅହରହର ଧ୍ୟାନ ଥିଲା। ସ୍କୁଲରେ ପ୍ରବେଶ ମାତ୍ରେ ଛାତ୍ର ଯେପରି କି ତାଙ୍କ ପରିବାରଭୁକ୍ତ ହୋଇ ଯାଉଥିଲା। ପୁତ୍ର ଓ ଛାତ୍ର ମଧ୍ୟରେ ସେ କୌଣସି ତାରତମ୍ୟ ଦେଖୁ ନ ଥିଲେ।

ହେଡ୍‌ମାଷ୍ଟର ଭାବରେ ସେ ହୋଇ ଉଠିଥିଲେ ଏକାନ୍ତ ଅନନ୍ୟକରଣୀୟ, ଅପରିହାର୍ଯ୍ୟ। ବ୍ୟକ୍ତି ପରିଣତ ହୋଇଥିଲା ଏକ ମହାନ୍ ଅନୁଷ୍ଠାନରେ। ତେଣୁ ତାଙ୍କ ଅବସରପ୍ରାପ୍ତି ଦୁଃଖର ଏକ ବାତାବରଣ ଖେଳାଇ ଦେଇଥିଲା।

ମଣିଷ ଭଲ ମନ୍ଦର ଏକ ସମ୍ମିଶ୍ରଣ; ସେ ନିପାତନ ନ ହେବା ଲାଗି ଚେଷ୍ଟାର ବିରାମ ନଥିଲା। ସେ ଅଦ୍ଭୁତମତେ ପ୍ରାଣାୟାମ କରୁଥିଲେ। ଶୀତ ଦିନେ ଘୋଡ଼ି ନ ହୋଇ ଶୋଉଥିଲେ, ଜ୍ୟେଷ୍ଠ ମାସ ଖରାରେ ଛତା ଧରୁ ନଥିଲେ। ଉକ୍ତ ପ୍ରାଣାୟାମ ଶେଷରେ ତାଙ୍କର କାଳ ହୋଇଥିଲା। ବାୟୁବୃଦ୍ଧି ଓ ଅର୍ଶରୋଗ ଫଳରେ ତାଙ୍କର ସ୍ୱାସ୍ଥ୍ୟହାନି ଘଟିଥିଲା।

କର୍ମ ଜୀବନରେ ଉଦ୍ୟାନ ନିର୍ମାଣ ତାଙ୍କର ମୁଖ୍ୟ ବିନୋଦନ ଥିଲା। କିଛି ହାଣିମାରି ଜମି କାମାସତ୍ତ୍ୱ କରି ସେ ନାନା ଜାତିର ଫୁଲ ଫଳ ଗଛ ଲଗାଉଥିଲେ। ତାଙ୍କ ବଗିଚାରେ ନାନାବିଧ ଗୋଲାପ ଛଡ଼ା ଅଳାଇଚ, ଲବଙ୍ଗ, ଗୁଜୁରାଟ, ଡାଲଚିନି,

ଥିବା ବହୁ ମୂଲ୍ୟବାନ ଗଛ ଥିଲା । ତାଙ୍କ ଗ୍ରାମର ଜଣେ ଶତ୍ରୁ ରାତିରେ ଏହିସବୁ ଗଛ ମୂଳରେ ଗରମ ପାଣି ଢାଳୁଥିଲା । ଗଛସବୁ ସବୁ ଶୁଖିଯିବାର ଦେଖି ଚନ୍ଦ୍ରମୋହନଙ୍କ ଛାତି ଫାଟିଗଲା ପରି ଲାଗୁଥିଲା ।

ସେ ସ୍ୱଭାବତଃ କ୍ରୋଧୀ ଥିଲେ । ନୀତିବିବର୍ଜିତ ସମ୍ପାଳାପକୁ ସେ ଘୃଣା କରୁଥିଲେ । ମିଥ୍ୟାଚାର ଓ ଶାଠ୍ୟ ସହିତ ତାଙ୍କର ସମ୍ପର୍କ ହୋଇପାରୁ ନ ଥିଲା । ନିଜେ ଉତ୍କଳର ମଧୁସୂଦନଙ୍କ ପରି ନୀତିବାଦୀ, ଦେହପରି କଠୋର ଭାବେ ସଂଯତ ଓ ଶୃଙ୍ଖଳିତ, କିନ୍ତୁ ଠିକ୍ ତାଙ୍କ ପରି କ୍ରୋଧୀ । ନିକଟରେ ଥିବେ ଅଗ୍ନି ପ୍ରଜ୍ୱଳିତ ହେଲେ ସହଜରେ ପ୍ରଶମିତ ହେଉ ନ ଥିଲା । ତାଙ୍କୁ ଉତ୍ତେଜିତ ନ କରିବା ବିଷୟରେ ସହକର୍ମୀ, ଶିକ୍ଷକ ଓ ଛାତ୍ରମାନେ ସର୍ବଦା ସଚେତନ ଥିଲେ । ଶୃଙ୍ଖଳାରକ୍ଷାରେ ପରୋକ୍ଷରେ ହୁଏତ ଏହା ସହାୟକ ହୋଇଥିଲା । ମୌନ ଅଗ୍ନେୟଗିରି ପରି ଏହା ଖାଲି ଉତ୍ତାପ ଉତ୍ପାଦନ କରୁଥିଲା ।

କିନ୍ତୁ ସେ ଅଗ୍ନି ନଗରରେ ତାଙ୍କ କର୍ମକ୍ଷେତ୍ରରେ ଜଳିବାର ସୁଯୋଗ ନ ପାଇ ନିଜ ଗ୍ରାମରେ ଦିନେ ଜଳି ଉଠିଥିଲା । ଜଣେ ବ୍ୟକ୍ତି ସହିତ ଜମିଜମା ସମ୍ପର୍କରେ ବାରବର୍ଷକାଳ ତାଙ୍କର ମକଦ୍ଦମା ଲାଗିଥିଲା । ସେ ଜୟଲାଭ କରିଥିଲେ; କିନ୍ତୁ ଜେତା ଜିତ ଉଭୟ ସେହି ଅଗ୍ନିର ଚିତାରେ ହୋଇଥିଲେ । ଅବଶ୍ୟ ପରେ ଶତ୍ରୁ ଧ୍ୱଂସ ପାଇଥିଲା, କିନ୍ତୁ ଚନ୍ଦ୍ରମୋହନଙ୍କୁ ଧ୍ୱଂସ ନ କରି ଛାଡ଼ି ନ ଥିଲା । ଅର୍ଥନାଶ, ମନସ୍ତାପ ଫଳରେ ଚନ୍ଦ୍ରମୋହନଙ୍କ ଅବସ୍ଥା ମଧ୍ୟ ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଥିଲା । ଏହି ସମୟରେ ପ୍ରତିହିଂସାପରାୟଣ ଶତ୍ରୁ ତାଙ୍କର ଗୃହ ଦଗ୍ଧ କରିଥିଲା । ସାରାଜୀବନର ସାରସ୍ୱତ କୀର୍ତ୍ତି ତା ମଧ୍ୟରେ ଧ୍ୱସ୍ତ ହୋଇଗଲା । ବିପଦକୁ ସର୍ବଗ୍ରାସୀ ରୂପ ଦେବାଲାଗି ଏହି ସମୟରେ (୧୯୧୬) ପ୍ରାଣପ୍ରିୟା ପତ୍ନୀଙ୍କର ମାତ୍ର ୩୮ ବର୍ଷ ବୟସରେ ହଠାତ୍ ହଇଜା ରୋଗରେ ବିୟୋଗ ଘଟିଲା । ଧନମାନ ସବୁ ହରାଇ ଚନ୍ଦ୍ରମୋହନ କ୍ଳାନ୍ତକଳାନ୍ତ ହୋଇଗଲେ ।

ଆଜୀବନ ତପସ୍ୟା ଏହି ଛୁଆଁ ପୋଡ଼ାରେ ଜାଣ ନିଃଶେଷ ହୋଇଗଲା । ତାଙ୍କ ଧନ ମାନରେ ଈର୍ଷୀ ବହୁ ବହିଃଶତ୍ରୁ ଥିଲେ ହେଁ ତାଙ୍କ ଅନ୍ତର ଭିତରେ ଅସଲ ଶତ୍ରୁ ଲୁଚି ରହିଥିଲା, ବେଳକାଳ ଦେଖି ତାଙ୍କର ସର୍ବନାଶ ଘଟାଇଲା; ପ୍ରଜ୍ୱଳିତ ହୁତାଶନରେ ଅନ୍ୟକୁ ଆହୁତି ଦେବାକୁ ଯାଇ ସେ ଆତ୍ମାହୁତି ହିଁ ଦେଇଥିଲେ । ଶିକ୍ଷକଭାବରେ ବହୁ ଛାତ୍ରଙ୍କୁ ଶିଖେଇଛନ୍ତି, ଭଲ ମଣିଷ କରି ଗଢ଼ିଛନ୍ତି । କିନ୍ତୁ ନିଜ ବେଳକୁ ସେସବୁ ପୋଥି ବାଇଗଣରେ ପରିଣତ ହୋଇଗଲା । ଘୂର୍ଣ୍ଣାବର୍ତ୍ତି ଭିତରୁ ନିଜକୁ ସେ ଖସାଇ ଆଣିପାରିଲେ ନାହିଁ । ଗୋଟିଏ ମାତ୍ର ଦୋଷ ସଦ୍‌ଗୁଣମାନଙ୍କୁ

କବିକୀର୍ତ୍ତି ଦେଲା, ଜୀବନକୁ ବିପର୍ଯ୍ୟସ୍ତ କରିଦେଲା । ନାନା ଅଶାନ୍ତିରେ ଉତ୍ପୀଡ଼ିତ ହୋଇ ସେ ସୃଷ୍ଟି ଶକ୍ତି ହରାଇ ବସିଲେ ।

ରାତି ଚାରିଟାରୁ ଉଠି ନିତ୍ୟକର୍ମ ପରେ ସେ ପ୍ରାର୍ଥନା କରୁଥିଲେ, ଋଷି ସନ୍ନ୍ୟାସୀପରି ଥିଲେ । ପରେ ଗେରୁଆ ପିନ୍ଧୁଥିଲେ, ନିରାମିଷ ଆହାର କରୁଥିଲେ; ବାହାର ରୁକ୍ଷ, କର୍କଶ ଦିଶିଲେ ବି ତାଙ୍କ ପ୍ରାଣ ସ୍ନେହ ଓ କରୁଣାର୍ଦ୍ର ଥିଲା । ସେ ପ୍ରକୃତିପୂଜାରୀ, ସୌନ୍ଦର୍ଯ୍ୟପ୍ରେମୀ ଓ ଦୃଢ଼ ଭଗବତ୍‌ବିଶ୍ୱାସୀ ଥିଲେ, କିନ୍ତୁ କ୍ରୋଧ ଉପୁଜିଲେ ଦୁର୍ବାସା ବା ଶଙ୍କରଙ୍କର ସେ ଋଷିରୂପ କୁଆଡ଼େ ଉଭାଇ ଯାଉଥିଲା ।

ଅତ୍ୟଧିକ ଶୌଚ ତାଙ୍କ ପକ୍ଷରେ ଏକ ବ୍ୟାଧିରେ ପରିଣତ ହୋଇଥିଲା । ଅନ୍ତଃଶୌଚ ଫଳରେ ବହୁ ମଳିନତା ଧୋଇଧାଇ ହୋଇଗଲା । କିନ୍ତୁ କ୍ରୋଧ ତାଙ୍କ ଆତ୍ମା ମୂଳକୁ ହିଁ ଆବୋରି ରହିଥିଲା ।

ଶୌଚ ଶେଷରେ ଏକ ଶୁଚିବାୟୁ ରୋଗରେ ପରିଣତ ହେଲା । ତାଙ୍କ କଲମରେ ଦୈବାତ୍ କେହି ଟିକିଏ ଲେଖି ପକାଇଲେ ସେ ରାଗି ନିଆଁ ହୋଇଯାନ୍ତି । ପ୍ରତିଦିନ ତାଙ୍କ ଚଟି, ଜୋତା ଧୂଆ ହେଉଥିଲା, ସେସବୁ ନରମ ରଖିବା ଲାଗି ଘୋଳଦହି ଢଳା ହେଉଥିଲା । ପରେ ସନ୍ନ୍ୟାସୀ, କିନ୍ତୁ ସୁଟ୍ ପିନ୍ଧି ବାହାରକୁ ସେ ସାହେବ ହୋଇ ବାହାରୁଥିଲେ ।

ରାଜପଥ ଉପରେ ସେ ଚାଲୁ ନଥିଲେ, କେତେ ସାଧୁସନ୍ଥଙ୍କର ପଦଧୂଳି ତା ଉପରେ ପଡ଼ିଛି । ତାକୁ ମାଡ଼ି ଚକଟି ଚାଲିବେ କିପରି ? ତେଣୁ ସେ ରାସ୍ତା ଧାରେ ଧାରେ ବା ବେରାସ୍ତାରେ ଚାଲୁଥିଲେ ।

## ସାହିତ୍ୟିକ କୃତି

ଚନ୍ଦ୍ରମୋହନଙ୍କ ବିବିଧ ସାହିତ୍ୟିକ ପ୍ରଚେଷ୍ଟାର ପୂର୍ଣ୍ଣାଙ୍ଗ ରୂପ ଦର୍ଶାଇବା ବର୍ତ୍ତମାନ ଅସମ୍ଭବ । 'ଉତ୍କଳ ସାହିତ୍ୟ' ପତ୍ରିକାରେ ଭୂଗୋଳ ବିଦ୍ୟା (୧୮୯୭, ସେପ୍‌ଟେମ୍ବର), ଶ୍ରୀଧର ସ୍ୱାମୀ (୧୯୦୨, ଷଷ୍ଠ ଭାଗ, ୪ର୍ଥ ସଂଖ୍ୟା), ଇତିହାସ (୧୯୦୭, ୧୦ମ ଭାଗ, ଦଶମ ସଂଖ୍ୟା), ସ୍ୱପ୍ନ (୧୧ ଭାଗ, ଦ୍ୱାଦଶ ସଂଖ୍ୟା) ପ୍ରବନ୍ଧ ପ୍ରକାଶିତ ହୋଇଥିଲା । 'ପରଲୋକଗତ ରାଧାନାଥ ରାୟ' ଶୀର୍ଷକ ପ୍ରବନ୍ଧରେ (ଉତ୍କଳ ସାହିତ୍ୟ, ୧୧ ଭାଗ, ଦ୍ୱାଦଶ ସଂଖ୍ୟା) ଚନ୍ଦ୍ରମୋହନ ଲେଖିଥିଲେ—'ଆଧୁନିକ ଉତ୍କଳ କବିମାନଙ୍କ ମଧ୍ୟରେ ସେ ସମ୍ରାଟ ଥିଲେ । ବିଦ୍ୟମାନ କବି ଓ କବିକଳ୍ପମାନଙ୍କ

ମଧ୍ୟରୁ ଅନେକ ତାଙ୍କର ଶିଷ୍ୟ ବା ଅନୁଶିଷ୍ୟ ଥିଲେ । ତାଙ୍କ କଥାରେ ଯେଉଁ ଭଙ୍ଗୀ, ପେଞ୍ଚ ବା ପ୍ରଭ ଥିଲା, ତାହା ଅନନ୍ୟସାଧାରଣ ଓ କବିବରଙ୍କ ଯୋଗ୍ୟ ।'

ରାଧାନାଥ ଓ ଚନ୍ଦ୍ରମୋହନଙ୍କ ସମ୍ପର୍କ ନିବିଡ଼ ଥିଲା । ସପ୍ତାହକେ ଦୁଇ ଦିନଥର ଉଭୟଙ୍କ ମଧ୍ୟରେ ଦେଖା ସାକ୍ଷାତ୍ ହେଉଥିଲା । ରାଧାନାଥଙ୍କ ପୁତ୍ର ଶଶିଭୂଷଣ ଓ ଚନ୍ଦ୍ରମୋହନଙ୍କ ପୁତ୍ର ଶରତ୍ ମହାରଣା ଦୁହେଁ ଅନ୍ତରଙ୍ଗ ବନ୍ଧୁ ଥିଲେ । ରାଧାନାଥଙ୍କ ସହିତ ଚନ୍ଦ୍ରମୋହନଙ୍କର କେବେ ମନୋମାଳିନ୍ୟ ହୋଇନାହିଁ । 'ମହାଯାତ୍ରା' ମହାକାବ୍ୟ ସମ୍ପର୍କରେ ଇଂରେଜ ସରକାରଙ୍କୁ ଚନ୍ଦ୍ରମୋହନ ଏକ ଗୁପ୍ତ ରିପୋର୍ଟ ଦେଇଥିବା କଥା ଯାହା ଶୁଣାଯାଏ, ତାହା ଅମୂଳକ, ଶରତ୍ ମହାରଣା କହୁଥାନ୍ତି ।

ଚନ୍ଦ୍ରମୋହନଙ୍କ ଗଦ୍ୟରଚନାଶୈଳୀ ସ୍ୱଚ୍ଛ, ସ୍ୱଚ୍ଛନ୍ଦ, ସରଳ ଓ ଚିତ୍ତାକର୍ଷକ । ଅନାୟାସରେ ସ୍ୱାଭାବିକ ଭାବରେ ସେ ଭାବ ପ୍ରକାଶ କରିଛନ୍ତି । ତଳେ ତାଙ୍କ 'ଇତିହାସ' ପ୍ରବନ୍ଧରୁ ଦୁଇଟି ପଂକ୍ତି ଉଦ୍ଧାର କରାଗଲା ।

"ସ୍ୱଦେଶ, ସ୍ୱଜାତି ଓ ସ୍ୱୀୟ ବଂଶୀୟ ଇତିହାସରେ ଅଭିଜ୍ଞ ହେଲେ ମାନବ ଆପଣାର ଦାୟିତ୍ୱ, ସ୍ୱତ୍ୱ ଓ ଦାବୀ ଉତ୍ତମ ରୂପେ ହୃଦୟଙ୍ଗମ କରିପାରେ । ଏହି ଅଭିଜ୍ଞତା ବ୍ୟକ୍ତିବିଶେଷଙ୍କୁ ସମସ୍ତ ସମୟରେ ବିପଥ ଗମନରୁ ନିବର୍ତ୍ତାଇଅଛି । ଏହି ଅଭିଜ୍ଞତା ଇଂଲଣ୍ଡର ଶାସନତନ୍ତ୍ରକୁ ସୁଦୃଢ଼ ଭିତ୍ତି ପ୍ରଦାନ କରିଅଛି । ଏହି ଅଭିଜ୍ଞତା ଅନେକ ମହାତ୍ମାଙ୍କୁ ଆତ୍ମୋତ୍ସର୍ଗ ବ୍ରତରେ ଦୀକ୍ଷିତ କରିଅଛି । ସୁକୌଶଳରେ ଲିଖିତ ଇତିହାସକୁ ଭୂଚିତ୍ର ଅଥବା ନାଟ୍ୟାଭିନୟ ସହିତ ତୁଳନା କରାଯାଇପାରେ ।

ଭୂଚିତ୍ର ଓ ନାଟ୍ୟାଭିନୟ ଦର୍ଶନ କଲେ ତଦ୍‌ବିଷୟ ସମ୍ବନ୍ଧରେ ଯେପରି ଜ୍ଞାନ ଓ ଆନନ୍ଦ ଜନ୍ମେ, ଇତିହାସ ପାଠରେ ସେହିପରି ଜ୍ଞାନ ଓ ଆନନ୍ଦ ଜନ୍ମେ ।"

"ଯେଉଁ ଜାତି ସ୍ୱାଧୀନଚିତ୍ତ, ଉନ୍ନତ ଜାତିର ଇତିହାସ ସେ ଜାତି ମନରେ ନବୀନ ଉତ୍ସାହ ସଞ୍ଚାର କରେ ଓ ତାହାର ପଥପ୍ରଦର୍ଶକ ହୁଏ । ପୁଣି ଯେଉଁ ବର୍ତ୍ତମାନ ଅଧଃପତିତ ଜାତିର ପୂର୍ବ ପୁରୁଷମାନେ ପ୍ରାଚୀନ କାଳରେ ଗରିଷ୍ଠ ଥିଲେ, ସେ ଜାତି ଭୂତ ଓ ବର୍ତ୍ତମାନ ତୁଳନା କରି ଭବିଷ୍ୟତରେ ଲୁପ୍ତ ଗୌରବର ଉଦ୍ଧାର ନିମନ୍ତେ ପ୍ରୋତ୍ସାହିତ ହୋଇଥାଏ ।"

ଉଚ୍ଚକୋଟୀର ପାଣ୍ଡିତ୍ୟ ଓ ସାହିତ୍ୟିକ ପ୍ରତିଷ୍ଠା ଯୋଗୁଁ ଚନ୍ଦ୍ରମୋହନ ବିଦଗ୍ଧ ମହଲରେ ଏକ ମହନୀୟ ସ୍ଥାନର ଅଧିକାରୀ ହୋଇଥିଲେ । ସେ ଉତ୍କଳ ସାହିତ୍ୟ ସମାଜର ଏକବିଂଶ ବାର୍ଷିକ ଅଧିବେଶନରେ ( ୬।୧୦।୧୯୨୬ )

ସମ୍ପାଦତ ଆସନ ଅଧିକାର କରିବାର ଗୌରବ ଅର୍ଜନ କରିଥିଲେ ଓ ସ୍ପଷ୍ଟରେ ଉଲ୍ଲେଖ କରିଥିଲେ ଯେ ଓଡ଼ିଶାରେ ପ୍ରଥମ ଶ୍ରେଣୀର ଶକ୍ତିଶାଳୀ ଲେଖକର ଆବିର୍ଭାବ ହୋଇନାହିଁ । ଶକ୍ତିଶାଳୀ ଲେଖକ ବ୍ୟକ୍ତିବିଶେଷର ରୁଚିରେ ଯେପରି ପରିବର୍ତ୍ତନ ସମ୍ପାଦନ କରନ୍ତି, ଜାତିବିଶେଷର ରୁଚିରେ ସେହିପରି ନବଯୁଗର ପ୍ରବର୍ତ୍ତନ କରନ୍ତି । ଉତ୍କଳସାହିତ୍ୟରେ ଅଦ୍ୟାପି ଏତାଦୃଶ ବିଷୟର ପ୍ରକୃତ ଦୃଷ୍ଟିପଥାରୂଢ଼ ହୋଇନାହିଁ ।

"ଯେଉଁ ଯେଉଁ ବସ୍ତୁର ଉତ୍ପତ୍ତି, ସ୍ଥିତି, ବିଲୟ ଅଛି, ତତ୍ସମସ୍ତ ଇତିହାସର ବିଷୟୀଭୂତ । ରାଜା, ରାଜବଂଶ, ରାଜ୍ୟ, ମାନବଜାତି ତାହାର ଏକ ଅଙ୍ଗ । ସମରମାନଙ୍କର ଯେପରି ଇତିହାସ ଲେଖାଯାଏ, ସେହିପରି ମାନବୀୟ ବିଭିନ୍ନ ଧର୍ମ ସମ୍ପ୍ରଦାୟର ଇତିହାସ ଲେଖାଯାଏ । ସେହିପରି ବାଷ୍ପୀୟ ଯନ୍ତ୍ର, ତଡ଼ିତ୍ ବାର୍ତ୍ତାବହ, ଚିତ୍ରବିଦ୍ୟା, ସଙ୍ଗୀତଶାସ୍ତ୍ରର ଇତିହାସ ଲେଖାଯାଏ । ସେହିପରି ସୂକ୍ଷ୍ମ ବୀଜ, ଧୂଳିକଣାର ଏବଂ ସୃଷ୍ଟିତତ୍ତ୍ୱର ଇତିହାସ ମଧ୍ୟ ଲେଖାଯାଇପାରେ । ବିଧାତାଙ୍କ କୃପାରେ ଏହି ସାହିତ୍ୟସମାଜ ଶତାୟୁ ହେଲେ ତେତେବେଳେ କେହି ଯଦି ଏହାର ଇତିହାସ ଲିପିବଦ୍ଧ କରନ୍ତି, ତେବେ ତାହା ଉତ୍କଳ ସାହିତ୍ୟ ସେବକମାନଙ୍କର କେଡ଼େ କୌତୁକମୟ ଓ ଶିକ୍ଷାପ୍ରଦ ନ ହେବ ।"

ଚନ୍ଦ୍ରମୋହନଙ୍କ ପାଣ୍ଡିତ୍ୟ ବହୁମୁଖୀ; ଏକ ବିଦ୍ୟାର ବିଶେଷଜ୍ଞ ସେ ନ ଥିଲେ, ନାନା ବିଷୟରେ ତାଙ୍କର ଅଭିନିବେଶ ଥିଲା; ତାଙ୍କ ଲିଖିତ ପ୍ରବନ୍ଧ ତାଲିକାରୁ ଏହା ସ୍ପଷ୍ଟ ହୁଏ । ଭୂଗୋଳ, ଇତିହାସ, ବାଣିଜ୍ୟ, ସାହିତ୍ୟ ଆଦି ବିବିଧ ବିଷୟରେ ପରିଚ୍ଛନ୍ନତାର ପ୍ରମାଣ ସେ ଦେଇଛନ୍ତି । ତାଙ୍କ ମତରେ 'ମନୁଷ୍ୟ ଯେତିକି ପରିମାଣରେ ଉଦ୍‌ଯୋଗୀ, ଅଧ୍ୟବସାୟୀ, ସହିଷ୍ଣୁ, ଚରିତ୍ରବାନ୍ ହୁଏ, ତାହା ହସ୍ତରେ ବାଣିଜ୍ୟ ସେହି ପରିମାଣରେ ଶ୍ରୀବୃଦ୍ଧିସମ୍ପନ୍ନ ହୁଏ । ପକ୍ଷାନ୍ତରେ ମନୁଷ୍ୟ ଯେତିକି ପରିମାଣରେ ବିକୃତଚିତ୍ତ, ଅଳସ ଓ ଚରିତ୍ରହୀନ ହୁଏ, ତାହା ହସ୍ତରେ ବାଣିଜ୍ୟ ସେହି ପରିମାଣରେ ଶ୍ରୀହୀନ ହୋଇ ଅବଶେଷରେ ଅତି ହୀନଦଶା ପ୍ରାପ୍ତହୁଏ । ପୃଥିବୀର ପ୍ରାଚୀନ ଓ ଆଧୁନିକ ବାଣିଜ୍ୟେତିବୃତ୍ତ ଆଲୋଚନା କଲେ ଏହା ସ୍ପଷ୍ଟଭାବେ ପ୍ରତୀୟମାନ ହେବ ।' (ଉତ୍କଳ ସାହିତ୍ୟ, ଦ୍ୱିତୀୟ ଭାଗ)

'ଉତ୍କଳସାହିତ୍ୟ' ପତ୍ରିକା ପ୍ରକାଶରେ ସେ ବିଶ୍ୱନାଥ କରଙ୍କର ଜଣେ ମୁଖ୍ୟ ସହଯୋଗୀ ଥିଲେ । ଏହାର ପ୍ରଥମ ସଂଖ୍ୟା (୧୮୯୭) ରେ ତାଙ୍କର ଗୋଟିଏ ପଦ୍ୟ ଓ ଗୋଟିଏ ଗଦ୍ୟ ପ୍ରକାଶିତ ହୋଇଥିଲା । ତାଙ୍କ ପ୍ରବନ୍ଧର ଶୀର୍ଷକ ଥିଲା— 'ସାହିତ୍ୟ ପତ୍ରିକାର ଉପଯୋଗିତା' । ସେ ଲେଖିଥିଲେ—"ଖଣ୍ଡିଏ ପତ୍ରିକା ପାଠରୁ

ନାନା ପୁସ୍ତକ ପାଠର ଫଳ ନ୍ୟୂନାଧିକ ମିଳିଥାଏ । ପୁଣି ପାଞ୍ଚଖଣ୍ଡ ପୁସ୍ତକ କିଣିବା ଅସମ୍ପନ୍ନ ଲୋକ ପକ୍ଷରେ କଠିଣ ହୋଇପାରେ । ଅଥଚ ପତ୍ରିକା ଖଣ୍ଡିଏ କିଣିବା ସେତେଦୂର କଠିଣ ନ ହୋଇପାରେ । ପତ୍ରିକା ଖଣ୍ଡିକରେ ନାନା ବିଷୟକ ପ୍ରବନ୍ଧର ସମାବେଶ ଥିବାରୁ ବିଷୟ ପରିବର୍ତ୍ତନ କଥଞ୍ଚିତ୍ ପରିମାଣରେ ମାନସିକ କ୍ଳାନ୍ତି ନିବାରଣ ଓ ଆହ୍ଲାଦ ସଞ୍ଚାର କରେ । ଭୋଜନ, ଦର୍ଶନ, ଶ୍ରବଣ ପ୍ରଭୃତି ବିଷୟରେ ନବୀନତା ଓ ପରିବର୍ତ୍ତନର ଫଳ କିପରି ରୁଚିକର ଅନେକେ ଅନୁଭବ କରିଥିବେ । ପ୍ରବନ୍ଧ ପାଠ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଏକାଧିକ ବ୍ୟକ୍ତି ମିଳିତ ହୋଇ ଖଣ୍ଡିଏ ପତ୍ରିକାର ଗ୍ରାହକ ହେବା ଅନେକ ସ୍ଥଳରେ ଦେଖାଯାଏ । କିନ୍ତୁ ଏକାଧିକ ବ୍ୟକ୍ତିଙ୍କର ମିଳିତ ହୋଇ ଖଣ୍ଡିଏ ପୁସ୍ତକ କ୍ରୟ କରି ପଢ଼ିବାର ଉଦାହରଣ ବିରଳ । ପୁସ୍ତକପାଠରେ କୌଣସି ପାଠକ ଯେଉଁ ଆସ୍ୱାଦ ଅନୁଭବ କରନ୍ତି, ପତ୍ରିକାପାଠରେ ତାହା ସେ ପରିମାଣରେ ଅନୁଭୂତ ହୁଏ ନାହିଁ ।

"ପାଠକମାନଙ୍କ ମଧ୍ୟରୁ ଯାହାର ମନରେ ରଚନା ଶକ୍ତିର ବୀଜ ପ୍ରୋଥିତ ଥିଲେ ପତ୍ରିକାପାଠରେ ତାହା ଯେତେ ସହଜରେ ଅଙ୍କୁରିତ ହୁଏ, ପୁସ୍ତକ ପାଠରେ ତାହା ସେପରି ହେବାର ଦେଖାଯାଏ ନାହିଁ । ଏପରି ପାଠକ, ବିଶେଷତଃ ତରୁଣବୟସ୍କ ପାଠକ ପ୍ରବନ୍ଧ ସହିତ ଲେଖକର ନାମ ଛପିବାର ଦେଖି ଆପଣାର ନାମ ସେହିପରି ଛପିବାର ଦେଖିବାକୁ ଅଭିଳାଷୀ ହୋଇ ରଚନାର 'ସିଦ୍ଧିରସ୍ତୁ' ଆରମ୍ଭ କରିଥାନ୍ତି । ଏପରି ଅଭିଳାଷ ସାହିତ୍ୟବିକାଶର ଅନୁକୂଳ, ଏଣୁ ସମ୍ବର୍ଦ୍ଧନୀୟ ।"

"ମାସିକ ପତ୍ରିକା ବିଜ୍ଞାନ, ଇତିହାସ ଓ ସାହିତ୍ୟର ଅନ୍ତର୍ଗତ ଅନ୍ୟାନ୍ୟ ବିଷୟରେ ଲୋକମାନଙ୍କୁ ଅଳ୍ପଶଃ ଶିକ୍ଷା ଦିଏ ଓ ଶିକ୍ଷିତମଣ୍ଡଳୀର ସାହିତ୍ୟାନୁରାଗ କଥଞ୍ଚିତ୍ ପରିମାଣରେ ତୃପ୍ତ କରେ । ମାସିକ ପତ୍ର ସାହିତ୍ୟବିକାଶର ନାୟକ ଓ ଏହାର ସମାଦର ସାହିତ୍ୟ ସମୃଦ୍ଧିର ପରିଚାୟକ ।"

'ଉତ୍କଳସାହିତ୍ୟ'ର ପ୍ରଥମ ସଂଖ୍ୟାରେ ପ୍ରକାଶିତ 'ମାଧୁରୀ' କବିତାରେ ଚନ୍ଦ୍ରମୋହନ ମାଧୁରୀକୁ ଏକ ରମଣୀ ରୂପେ କଳ୍ପନା କରିଛନ୍ତି । ଏହି ରମଣୀକୁ ସେ କେଉଁଠି ରଖିବେ ? ପାଷାଣ ସୌଧରେ ? କାଳୁ ବର୍ଗି ଡକାଇତ ହରଣ କରିନେବାର ଶଙ୍କା । ମଲ୍ଲୀ ମାଳତୀ ଗହଳରେ ଉଦ୍ୟାନରେ ରଖିବେ ? କୌଣସି ଉପବନସେବୀ ହରଣ୍ଡେଲ କରିବାର ଶଙ୍କା । ବସନ ଭୂଷଣ ପରି ଦେହେ ଦେହେ ରଖିବେ ! ତାହା ମଧ୍ୟ ନିରାପଦ ନୁହେଁ । ଶେଷରେ ସେ ସ୍ଥିର କଲେ ସେ ମାଧୁରୀକୁ ଅନ୍ତରର ଅନ୍ତରତମ ମନ୍ଦିରରେ ସ୍ଥାନଦେବେ ।

"ଚନ୍ଦ୍ରିକା ସୁନ୍ଦର ହେର
ବସ୍ତ୍ର ରଙ୍ଗେ ମାଧୁରୀ ତା ନାମ
ଦେହେ ଶାନ୍ତ ଶାଢ଼ୀ ଶିରେ ଉତ୍ତରୀୟ
ଗଳେ ପ୍ରୀତି ପୁଷ୍ପ ଦାମ ।"

ଚନ୍ଦ୍ରମୋହନ 'ନବୀପିତା ସୀତାର ସ୍ୱଗତ' ଶୀର୍ଷକ ସଙ୍ଗୀତ ମଧ୍ୟ ରଚନା କରିଥିଲେ । ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କ ଲେଖାସବୁ ବିକ୍ଷିପ୍ତଭାବେ ପଡ଼ି ରହିଅଛି ।

## ନବୋଦ୍ୟମ

'ନବୋଦ୍ୟମ' ନାମ ସାର୍ଥକ । ପ୍ରକୃତପକ୍ଷେ ଏହା ଏକ ନବ ଉଦ୍ୟମ । ଏହା ଚନ୍ଦ୍ରମୋହନଙ୍କର ଆଦ୍ୟ ଯୌବନରେ ରଚିତ ପ୍ରଥମ କବିତା ପୁସ୍ତକ । ଏହାର ପ୍ରଚ୍ଛଦପଟ୍ଟ ଏହିପରି ଭାବରେ ପ୍ରକାଶିତ ହୋଇଅଛି—

କଟକ କଲେଜଛାତ୍ର ଚନ୍ଦ୍ରମୋହନ ମହାରଣା କର୍ତ୍ତୃକ ପ୍ରଣୀତ ।

Cuttack, Printed at Cuttack Victoria Press, Orissa Printing Corporation, 1888, ମୂଲ୍ୟ ୫° ।/ ।

ଉତ୍ସର୍ଗ ପତ୍ର

ଅଧୁନା କେବଳ ସ୍ମରଣପଥବର୍ତ୍ତୀ ମାତା, ପିତା ଓ ପିତାମହୀଙ୍କର ମଧୁମୟ ନାମରେ ମୋର ଏହି 'ନବୋଦ୍ୟମ'ର ଉତ୍ସର୍ଗ କଲି ।

ପ୍ରଣେତା

ଏ ପୁସ୍ତକ ସମ୍ପର୍କରେ ଡକ୍ଟର ନଟବର ସାମନ୍ତରାୟ ଲେଖିଛନ୍ତି—"ଏଫ୍. ଏ. କ୍ଲାସ୍‌ରେ ପଢ଼ିଲାବେଳେ ସେ ଯେଉଁ କେତୋଟି କବିତା 'ସମ୍ବାଦିକା' ପତ୍ରିକାରେ ଲୋକଲୋଚନକୁ ଆଣିଥିଲେ ତାହାର ଏକତ୍ର ସଙ୍କଳନ ହେଉଛି ୧୮୮୮ ସାଲର 'ନବୋଦ୍ୟମ' ପୁସ୍ତକ । ବସନ୍ତଋତୁର ଫୁଲ, ଫଳ, ମଧୁପର ଗୁଞ୍ଜନ, ଗନ୍ଧବହ ଇତ୍ୟାଦି ଗତାନୁଗତିକ ଉପକରଣ, ପ୍ରାଚୀନ ଉପକରଣ ଓ ଅଳଙ୍କାର ଅବଲମ୍ବନରେ ବସନ୍ତ (୨୩।୩।୮୭) କବିତା ରଚିତ, ମଲ୍ଲିକା (୨୩।୬।୮୭), ଶରତ (୧୩।୧।୮୭) ମଳୟାନିଳ ପ୍ରତି (୬।୨।୮୮) କବିତାରେ ପୂର୍ବୋକ୍ତ କାବ୍ୟସ୍ୱାଦ ପରିଦୃଷ୍ଟ ହୁଏ । 'ଅପୂର୍ବ କାରାରୁଦ୍ଧ ପୁରୁଷର ପତ୍ର' (୭।୭।୮୭), ଶଯ୍ୟାସ୍ଥ ଆଶାମୁଗ୍ଧ ବ୍ୟକ୍ତି

(୧୬।୧।୮୭), ମାତୃହୀନ ବାଳକର ଜନନୀପ୍ରତି, କରୁଣ ବ୍ୟକ୍ତିର ଜନ୍ମିତ ଚିନ୍ତା, ବିଦେଶରୁ ସ୍ୱଗୃହାଭିମୁଖରେ ବାଲେଶ୍ୱର ପ୍ରତ୍ୟାଗମନ କାଳରେ କୌଣସି ସମୁଦ୍ର ପୋତରେ ଦୁଇ ସହୋଦରର ବିନାଶ, ମାତୃବିୟୋଗ ପ୍ରଭୃତି କବିତା ଅତ୍ୟନ୍ତ କରୁଣ ରସାତ୍ମକ ଓ ଏଥିରେ କବି ପ୍ରତିଭାର ସମ୍ୟକ୍ ପରିଚୟ ସୁସ୍ପଷ୍ଟ । ଏହାର ସମୁଦାୟ ୧୬ଟି କବିତା ମଧ୍ୟରୁ ଅଧିକାଂଶ ଚଉଦ ଅକ୍ଷର ଧାଡ଼ିର କବିତା ଓ ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ପାଦ ମଧ୍ୟରେ ମଧ୍ୟ ବିରାମ ଅଛି । ବର୍ଣ୍ଣନାର ସ୍ୱାଭାବିକତା ଓ ବିଷୟବସ୍ତୁର ବୈଚିତ୍ର୍ୟ ହିଁ ଏ କବିତାମାନଙ୍କର ବିଶେଷତ୍ୱ । ପରବର୍ତ୍ତୀ ସମୟରେ କେତେକ କବିତା ଓ ପ୍ରବନ୍ଧ ସହିତ ଓଡ଼ିଆ ବ୍ୟାକରଣ (୧୯୧୦), କଥାବଳୀ (୧୯୧୭) ସେ ରଚନା କରିଥିଲେ ।''

'ନବୋଦ୍ୟମ' ନବୀନ ବୟସର ଉଦ୍ୟମ ହେଲେ ହେଁ ଏକ ଉଚ୍ଚକୋଟୀର କାବ୍ୟଚେଷ୍ଟା । ଭାବପ୍ରକାଶ ସଯତ୍ନ, ସୌନ୍ଦର୍ଯ୍ୟବୋଧ ନିବିଡ଼ । ବ୍ୟଥିତ ପ୍ରତି ସମବେଦନା ଗଭୀର, ଭାଷା ସାଧୁ ଓ ଶାଳୀନ । ଦୃଷ୍ଟିକୋଣ ନୂତନ, 'ଆସ, ଆସ' ସ୍ଥାନରେ ଫକୀରମୋହନଙ୍କ ପରି ବାଲେଶ୍ୱରୀ ଲୌକିକ ଭାଷା ପ୍ରଭାବରେ ସେ 'ଆସୁ, ଆସୁ' ପ୍ରୟୋଗ କରିଛନ୍ତି । ରଚନା ବ୍ୟାକରଣଦୋଷ ବିବର୍ଜିତ । କୌଣସି କୌଣସି କବିତାର ଶୀର୍ଷକ ଅତି ଦୀର୍ଘ ଓ ଅକବିଜନୋଚିତ, ଯଥା— ବିଦେଶରୁ ସ୍ୱଗୃହାଭିମୁଖରେ ବାଲେଶ୍ୱର ପ୍ରତ୍ୟାଗମନ କାଳରେ କୌଣସି ସମୁଦ୍ର ପୋତରେ ଦୁଇ ସହୋଦରର ବିନାଶ । ଶରଦୁଷା (ଶରତ୍ ଉଷା) ସନ୍ଧି ଓଡ଼ିଆ ଭାଷାର ସ୍ୱଭାବବିରୋଧୀ ।

କବିତାରେ ବୈଜ୍ଞାନିକ ଉପମା ପ୍ରୟୋଗରେ ଚନ୍ଦ୍ରମୋହନ ଅଗ୍ରଣୀ—

''ଜନ୍ମମୁଖ ସନ୍ନିଧିରୁ ଗୃହ ସନ୍ନିହିତ
ହୋଇଲା, ବଢ଼ିଲା ତାଙ୍କ ମନରେ ଆବେଗ
ଧରାକେନ୍ଦ୍ର ସନ୍ନିହିତ ହେଲେ ଯଥା ବେଗ
ବଢ଼ଇ ବସ୍ତୁର କ୍ରମେ ପତନ କାଳରେ ।'

ନବୋଦ୍ୟମର ଅଧିକ କବିତା ପ୍ରକୃତିକବିତା—ବସନ୍ତ, ଝଟିକା, ପର୍ବତ, ଶରତ, ମଳୟାଚଳ ପ୍ରତି, ସମୁଦ୍ର ପ୍ରତି, ଶରଦୁଷା ପ୍ରାତଃକାଳ ଇତ୍ୟାଦି । ଏସବୁ ସମସାମୟିକ କବିମାନଙ୍କର ଅନୁସରଣ ବା ଅନୁକରଣ ନୁହେଁ । ବର୍ଣ୍ଣନା ଗତାନୁଗତିକ ପାରମ୍ପରିକ ନୁହେଁ । ଭଙ୍ଗୀରେ ସ୍ୱାତନ୍ତ୍ର୍ୟ ସ୍ପଷ୍ଟ । ଚନ୍ଦ୍ରମୋହନଙ୍କ କବିତା ରୋମାଣ୍ଟିକ୍ ଯୁଗର ସଙ୍କେତ ବହନ କରେ । ପୁଷ୍ପରାଜ ମଧ୍ୟରେ ଶେଫାଳୀ ଓ

ମଲ୍ଲିକା ପ୍ରତି କବିଙ୍କ ଆକର୍ଷଣ ଅଧିକ । ସୌନ୍ଦର୍ଯ୍ୟର ଚିତ୍ତାକର୍ଷକତା ଓ କ୍ଷଣିକତା ତାଙ୍କୁ ବିମୁଗ୍ଧ କରିଛି—

'ସୁମନ ଶ୍ରେଣିରେ ଅତୁଳ ରତନ
ଶୃଙ୍ଗାର ହାରର ମାଧୁରୀ ମୋହନ
ପ୍ରବାଳଖଚିତ ସ୍ଫଟିକ ଯେସନ
ଶୋଭା ପରକାଶେ ତାହା କି ଚିତ୍ର,
ପ୍ରବାଳ ସ୍ଫଟିକ କାଠିନ୍ୟ ଦୂଷିତ
କୋମଳତା ଗୁଣେ କୁସୁମ ଭୂଷିତ
ତେଣୁ ପରା ଦେବେ ରୁଚି ପ୍ରଶଂସିତ
ଆଦରେ ପିନ୍ଧନ୍ତି ଶୃଙ୍ଗାର ହାର,
ପ୍ରବାଳ, ସ୍ଫଟିକ ପୁଣି ଚିରସ୍ଥାୟୀ
ଫୁଲ ଏହି ଅଛି, ପୁଣି ଏହି ନାହିଁ
ବଳି ମନୋଲୋଭା ଶୋଭା କ୍ଷଣସ୍ଥାୟୀ
ସତେ ଦୃଷ୍ଟାନ୍ତ ଦେଖ ଏହାର
ଦରଫୁଟ କଥା ଶିଶୁର ମୁଖରେ
ଲାବଣ୍ୟ ମାଧୁରୀ ଯୌବନ କାଳରେ
ସୌଦାମିନୀ ଛଟା ଜଳଦ ପଟରେ
ନ କରେ ମୋହିତ ମନ କାହାର ?'

ଶରତ୍ ବର୍ଣ୍ଣନାରେ ଶେଫାଳୀର ବ୍ୟାଖ୍ୟାମୂଳକ ଦୀର୍ଘ ବର୍ଣ୍ଣନା କବିତାର ଆନୁପାତିକ ସୌଷ୍ଠବ ହାନି ଘଟାଇଛି । କବି ଏହି ଭାବକୁ ପରବର୍ତ୍ତୀ କାଳରେ ସଂକ୍ଷିପ୍ତ ଓ ଅଧିକ କଳାତ୍ମକ ଭାବରେ ପ୍ରକାଶ କରିଛନ୍ତି—

'ପ୍ରବାଳ ବୃନ୍ତରେ ଖଚିତ ସଜ୍ଜ ସ୍ଫଟିକ ଦଳ
ଲଭନ୍ତା ତୁଳନା ହୋଇଲେ ସୁବାସିତ, କୋମଳ ।'

ପରବର୍ତ୍ତୀ କାଳରେ କୁନ୍ତଳାକୁମାରୀଙ୍କ 'ଶେଫାଳୀ ପ୍ରତି' କବିତା ତଦ୍‌ଜାତୀୟ ଓଡ଼ିଆ କବିତାରାଜ୍ୟରେ ଉଚ୍ଚ ଦାର୍ଶନିକତା ଓ କୋମଳ କଳ୍ପନା ଯୋଗୁଁ ସର୍ବୋଚ୍ଚ ସ୍ଥାନ ଅଧିକାର କରିଛି । ଚନ୍ଦ୍ରମୋହନଙ୍କ 'ମଲ୍ଲିକା' କବିତା ରୋମାଣ୍ଟିକ୍ ଦୁଃଖବାଦର ଏକ ଚମତ୍କାର ଦୃଷ୍ଟାନ୍ତ । ରୋମାଣ୍ଟିକ୍ କବିର ଏହି ଏକ ବିଶେଷତ୍ୱ ଯେ ସେ ଦୁଃଖର ହେତୁ ବିଦ୍ୟମାନ ନ ଥିଲେ ବି ଟାଣି ଓଟାରି କବିତାକୁ ଦୁଃଖାତ୍ମକ କରେ—

"ଜନ୍ତୁ ନ ବୁଝନ୍ତି ତନୁ, କୋମଳାଙ୍ଗି, ତୋର
ବିଷାଦ ଗମ୍ଭୀର ଭାବ ହୃଦଇ ମନର
ମନେ ପଡ଼େ ମନୁ ଉକ୍ତି "ତରୁଲତାମାନ
ଅନ୍ତରଜ୍ଞ; ଅନୁଭବ କରନ୍ତି ଏମାନ
ସୁଖ ଦୁଃଖ" ବୋଲେ ମନ ଅଟେ ଯଥାଯଥ ।

× × ×

ମ ଭ୍ରୂଲଗନ

ହସୁତ୍ ଗରବେ ବୃକ୍ଷ, ହେଲେ ଶାଖାଛଡ଼ା
ମଉଳିବ ତୋ ବଦନ, ଥିବ ନାହିଁ ପରା
ସେ ଖରୁ ନବୀନ ସ୍ମିତ ତଥା, ଯଥା ଶିଶୁ
ସୁହାସିନୀ ବାଳକାନ୍ତି କୋମଳ ଶିଶୁଷ୍ଟି
ମାତୃକୋଳୁଁ ଛଡ଼ାଇଲେ ମଳିନବଦନା
ବାଳା ପରି ଅନୁଭବୁ ତୁ ମନୋବେଦନା ।"

ତପସ୍ୟାରତା ଶରତ୍ ଉଷା; ପୃଥିବୀ ଆଶ୍ରମ ପରି ନିର୍ଜନ ଓ ପବିତ୍ର । ସେ ନବାମ୍ବରରେ ଆଶ୍ରମ ଶାନ୍ତିର ପରିପୂରକ ହେବାକୁ ଚାହାନ୍ତି । ପଦକ୍ଷେପର ସାମାନ୍ୟତମ କୋଳାହଳରେ ସେହି ଶୃଙ୍ଖଳା ଓ ଶାନ୍ତିରେ ବ୍ୟାଘାତ ଆଣିବାକୁ ଚାହାନ୍ତି ନାହିଁ ।

ଶରତ୍ ରାତର ତାରା ରଜନୀରାଣୀର ହୀରା ଅଳଙ୍କାର । ରଜନୀକୁ ଏକ ଅଳଙ୍କାରପ୍ରିୟା କୋଳଂସକ୍ତା ସୁନ୍ଦରୀ ରମଣୀ ସହିତ କବି ତୁଳନା କରିଛନ୍ତି । ସୂର୍ଯ୍ୟ କର ବଢ଼ାଇବା ଦେଖି କାଳେ ଅଳଙ୍କାର ହରଣ କରିନେବ, ସେଥିଲାଗି ରଜନୀ ତନୁରେ ଯେପରିକି ଉତ୍ତରୀୟ ଢାଙ୍କି ଦେଉଛି !

ପର୍ବତ ନଦୀର ଜନନୀ । ପର୍ବତର ଉଦ୍ଧତ୍ୟ ଏବଂ ଔଦ୍ଧତ୍ୟ ଓ ମହତ୍ତ୍ୱ ଯେପରିକି କନ୍ୟା ନିର୍ଝରଣୀ ଚରିତ୍ରରେ ପ୍ରତିଫଳିତ ।

'ମାତୃକଳା

ରାଜଇ ବିଶେଷ ଭାବେ ପ୍ରଥମ ସନ୍ତତି
ନିର୍ଝରଣୀ ଅବୟବେ । ମହତ ଜନର
ବୈଭବର ମହତ୍ତ୍ୱ ସହ; ତେଣୁ ନିର୍ଝରଣୀ
ମହତ ସିନ୍ଧୁର ଜାୟା, ଦୌହିତ୍ରୀ ଘନ

ଚପଳା ସୁନ୍ଦରୀ ପରି ଯେଥା ମୂର୍ତ୍ତି ଧର
ନବଘଇ ନଭଃପୁରେ ଇନ୍ଦ୍ରାୟୁଧ କର ।'

ସଂସାର ସୁଖଦୁଃଖମୟ । ଏଠି ମଳୟ ଯେପରି ଶିହରଣ ଆଣେ, ଝଟିକା ସେହିପରି ସର୍ବନାଶ ଘଟାଇଥାଏ । ସମାଜକୁ କବିଙ୍କ ଶିକ୍ଷାଦେବା ପ୍ରବୃତ୍ତି ଏହି କବିତାରେ ସ୍ପଷ୍ଟ । କବିତାରେ ଧାବମାନ ଛନ୍ଦ ପ୍ରୟୋଗରେ ଚନ୍ଦ୍ରମୋହନ ଅଗ୍ରଣୀ—

ଯେ ଇଚ୍ଛେ ସମ୍ପଦ ଭୋଗ, ସହିବ ଆପଦ
ତେବେ ହେ ଧରଣୀବାସୀ, ଭଜ ତାଙ୍କ ପଦ ।

ଅସ୍ଥିର ନିୟତ ଚକ୍ର ଯାହା ଆଦେଶରେ
ଅବିରତ ଘୂରୁଅଛୁ, ବଞ୍ଚିତ ସୁଖରେ

ଯଦି ଥାଏ ଅଭିଳାଷ, ଅଚିରାଂଶୁପ୍ରଭ
ଜନମନୋମୋହକର ବିପୁଳ ବିଭବ

ଅଚିରାଂଶୁ ଅନୁଗାମୀ ଯାନ୍ତୁ ତମେ ନଭ
ସୁଖଅଭିଳାଷୀ ଦୁଃଖ ।

କରୁଣ ରସ ପ୍ରୟୋଗରେ ଚନ୍ଦ୍ରମୋହନ ତରୁଣ ବୟସରୁ ହିଁ ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି । ୧୮୦୬ ଶକାବ୍ଦରେ ବାଲେଶ୍ୱର ନଗରର କୌଣସି ରମଣୀର ପ୍ରଥମପ୍ରସୂତ ଶିଶୁ ଷୋଡ଼ଶ ଦିବସରେ ପ୍ରାଣତ୍ୟାଗ କଲା । ଏହା ହିଁ କବିତାର ବିଷୟବସ୍ତୁ । ଉଦ୍ଧୃତିର ଲୋଭ ସମ୍ବରଣ କରିପାରିଲି ନାହିଁ—

'ନାହିଁ ତାର ତୁଳା    ଲବଣୀ ପିତୁଳା
ବାଳା କଷ୍ଟେ ଲଭିଥିଲା
ଯୋହିଲା ଧନକୁ    ପାଇ କୁମରକୁ
କୋମଳାଙ୍ଗୀ ହରାଇଲା ।

ଏହା କି ଅବିଧି    ନିଧି ଦେଇ ବିଧି
କ୍ଷଣକରେ ନେଲା ହରି
ପ୍ରଭୁ ବିଶ୍ୱକର୍ତ୍ତା    ଦାତା ହୋଇ ହର୍ତ୍ତା
କେଉଁ ପାପ ଏହା ସରି ?

ତରୁଣୀ ରତନ ଜର ଅନ ଅନ
ମୁଖ ସରୋରୁହ କାନ୍ଦେ
ହରଣୀ ଯେମନ ଭୟେ ଛନ ଛନ
ଶିଶୁ ଦେଖି ବ୍ୟାଧ ଫାନ୍ଦେ ।

କମ୍ପେ ଥର ଥର ନନ୍ଦନା ଅଧର
ଅଶୋକ ପ୍ରବାଳ ତୁଲ
ଜ୍ୟୋତିର୍ମୟ ନ ତଥା କିସଲୟ ଯଥା
ହେଲେ ତରୁ ଛିନ୍ନମୂଳ ।

× × ×

ଶୁଣ ସୁକୁମାରୀ ବନ୍ଧୁ ତ ଉଗାର
କା ଆଗେ କହିବ ଆଉ ?
ନ ହୁଅ କାତର ଧଇଶ୍ୟ ଧର
ଗଲା କଥା ଏବେ ଯାଉ ।'

'ଅନ୍ଧ୍ର କାରାରୁଦ୍ଧ ପୁରୁଷର ପତ୍ର'ର ବିଷୟବସ୍ତୁ ଅଭିନବ, ପରିବେଷଣ ରୀତି ଅପୂର୍ବ । ଏହି ପୁରୁଷ ଜଣେ ଦାଦନ ଶ୍ରମିକ । ଦାଦନ ଶ୍ରମିକ ଉପରେ ରକ୍ତ-ଶୋଷୀ କାନ୍‌ଟ୍ରାକ୍ଟରର ଅତ୍ୟାଚାର ଯୁଗଯୁଗବ୍ୟାପୀ; ଅଭାବଗ୍ରସ୍ତ, ସରଳବିଶ୍ୱାସୀ ପଲ୍ଲୀବାସୀଙ୍କୁ ଅଗ୍ରୀମ ଅର୍ଥ ଦେଇ ମଧୁର ବାକ୍ୟରେ କାନ୍‌ଟ୍ରାକ୍ଟରର ଦଲାଲ୍ ଭୁଲାଇନିଏ, ତାକୁ ନିର୍ମମ ପହରାବାଲାଙ୍କ ମଧ୍ୟରେ କାରାଗାରରେ ରଖିଲା ପରି ରଖି ତାଠାରୁ ଶ୍ରମ ଦୋହନ କରେ । ପ୍ରହାର ଭୟରେ, ମୁମୂର୍ଷୁ ଅବସ୍ଥାରେ ଶ୍ରମିକକୁ ଖଟିବାକୁ ହୁଏ । ତା ଯନ୍ତ୍ରା ମଧ୍ୟରୁ ଖସିଯିବାର କୌଣସି ଉପାୟ ନ ଥାଏ । ପୃଥିବୀସାରା ଅନୁନ୍ନତ ଦେଶମାନଙ୍କରେ ଏହି ଅତ୍ୟାଚାର ଚାଲିଛି, ଭାରତ ସ୍ୱାଧୀନ ହେବାର ପଚିଶ ବର୍ଷ ପରେ ବି ଏହା ବନ୍ଦ ହୋଇନାହିଁ । ଚନ୍ଦ୍ରମୋହନ ଏପରି ଏକ କବିତା ଲେଖି ଶ୍ରମିକର ଦୁଃଖବେଦନା ପ୍ରତି ଜନସାଧାରଣଙ୍କୁ ସଚେତନ କରିଛନ୍ତି ଓ ମାନବବାଦୀ କବି ଭାବରେ ପ୍ରତିଷ୍ଠିତ ହୋଇଛନ୍ତି ।

ଚନ୍ଦ୍ରମୋହନଙ୍କ ଭାଷାରେ "ବାଲେଶ୍ୱର ଅନ୍ତର୍ଗତ ରେମୁଣାନିବାସୀ କୌଣସି ବ୍ୟକ୍ତି କାରଣ ବିଶେଷବଶତଃ ଗୃହ ତ୍ୟାଗ କରି ଭ୍ରମଣ କରୁ କରୁ କୁଲି ପ୍ରେରକ ହସ୍ତରେ ପଡ଼ି ଅସାମକୁ ନୀତ ହୋଇ କୁଲି କର୍ମ କରୁଥିଲା । ସେ ତାହାର କନିଷ୍ଠ ସହୋଦରକୁ ଯେଉଁ ହୃଦୟବିଦାରକ ପତ୍ର ଲେଖିଥିଲା, ତାହା ଅବଲମ୍ବନ କରି ନିମ୍ନଲିଖିତ ପଦ୍ୟ ରଚିତ ହୋଇଅଛି ।"

ସେହି ନିପୀଡ଼ିତ ଶ୍ରମିକ ସେହି ଭୟଙ୍କର କାରାଗାରରୁ ଉଦ୍ଧାର କରିବା ପାଇଁ ଈଶ୍ୱରଙ୍କୁ କେତୋଟି ପଦରେ ପ୍ରାର୍ଥନା କରିଛି । ତାପରେ ସେ କହିଛି—

"ଆଶୁର୍ଯ୍ୟ ପ୍ରଜାପତି ମୁହିଁ ଏପରି କି ପାଇଁ ?
ଧାନ ପାଇଁ ଧନୀ କେବେ ହେବଛନ୍ତି କାହିଁ ?"

ତାପରେ ଦୁଃଖିନୀ ଜନନୀ କଥା, ବିରହିଣୀ ସ୍ତ୍ରୀ ସୁଲୋଚନା କଥା ଭାବି ସେ ମ୍ରିୟମାଣ ହୋଇଅଛି । ସାନୁଦୈନିକ ବିକଳଭାବେ କହିଛି—'ହାଇରେ, ଆମେ ଦୁହେଁ ଏକା ବୃକ୍ଷର ଫଳ, ତୁ ପରିବାରର ସୁଖମୟ ବାତାବରଣରେ, ମୁଁ ଯନ୍ତ୍ରଣା-ଦାନ ଗୃହରେ, ଘୋର ନରକରେ ଅଶ୍ରୁସଜଳ ଜୀବନ ଯାପନ କରୁଅଛି । ମୁଁ ଏକ ପିଞ୍ଜରାବଦ୍ଧ ପକ୍ଷୀ । କିନ୍ତୁ ପକ୍ଷୀର ସ୍ଥାନ ମୋ ଅପେକ୍ଷା ମହତ୍ତର । ପକ୍ଷୀ ଦାସ, କିନ୍ତୁ ପ୍ରଭୁ ତା'ର ସେବା କରେ । ମୋ ହାହାକାରରେ ଆସ୍ଥା କରିବାକୁ କେହି ନାହିଁ ।'

"ହେ ହତ ସେପରି
ରଖିଲେ ପଞ୍ଜରେ, ତହିଁ କି କରନ୍ତି ମନ;
ଦେଲେ ମଧ ପଞ୍ଜୁଗଛି ମଣିମୁକ୍ତା ମୟ
ନରେନ୍ଦ୍ର ଆକାଙ୍କ୍ଷିତ ମଣିମୁକ୍ତାଚୟ
ତହିଁରେ ପକ୍ଷୀର କିସ ? ଚଞ୍ଚୁଗ୍ରାହ୍ୟ ବନ
ହତ ମନେ ଶ୍ରେଷ୍ଠ ବନ ଫଳାବଳୀ ।

× × ×

ପ୍ରେଗତ ଅପଦାର୍ଥ, ବଟ ଫଳ ବର;
ବଟଫଳ ମନେକରି ବନ ଶ୍ରୀନକର ।"

'ନବୋଦ୍ୟମ' ଉଚ୍ଚତର କବିତ୍ୱର ବହୁ ସମ୍ଭାବନା ମନରେ ଜାଗ୍ରତ କରିଥିଲା । କବିତାରଚନାରେ ପ୍ରଥମ ଉଦ୍ୟମ ଏ ଜଗତରେ କ୍ୱଚିତ୍ କବିଙ୍କର ସଫଳ ବା ସାର୍ଥକ ହୋଇଥାଏ । ଚନ୍ଦ୍ରମୋହନ ସେହି କ୍ୱଚିତ୍ କେତେ ଜଣଙ୍କ ମଧ୍ୟରେ ଅନ୍ତର୍ଭୁକ୍ତର ଗୌରବ ଲାଭ କରିଥିଲେ । ତେଣୁ ଗ୍ରନ୍ଥକୃତ ହୋଇଥିଲେ ବି ଫକୀରମୋହନ 'ଉତ୍କଳ ଭ୍ରମଣ'ରେ 'ନବୋଦ୍ୟମ'କୁ ସ୍ୱୀକୃତ ଦେଇଥିଲେ—

"ଆଡ଼େ ଚନ୍ଦ୍ରମହାରଣେ ହେଉ ହେଉ ହେଉ
ମେଳାଦଅ ଆଉ ଥରେ କବିତାର କେଉ
ଲୁଚାଇବେ ରାମଚନ୍ଦ୍ର ଜବା ଡଗ୍ଧା ଆଉ ?
ନେବ ମାର ଟଙ୍କା ମୁଠେ ଠକି ଦେବ ବାହୁ ।"

**ପାଠ୍ୟ ପୁସ୍ତକ ରଚନା :**

ସେ କାଳର କୃତୀ ପାଠ୍ୟପୁସ୍ତକ ଲେଖକମାନଙ୍କ ମଧ୍ୟରେ ଚନ୍ଦ୍ରମୋହନ ଅନ୍ୟତମ । ୧୯୧୧ ଖ୍ରୀଷ୍ଟାବ୍ଦରେ କଟକ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ଥିବା ବେଳେ ସେ 'ଓଡ଼ିଆ ବ୍ୟାକରଣ' ପୁସ୍ତକ ରଚନା କରିଥିଲେ । ମୂଲ୍ୟ ପାଞ୍ଚ ପଇସା ।

୧୯୧୬-୧୭ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ମାକ୍‌ମିଲନ୍ କମ୍ପାନୀ କର୍ତ୍ତୃକ ଅନୁରୁଦ୍ଧ ହୋଇ ସେ ସ୍ୱତନ୍ତ୍ର ଭାବରେ 'କଥାବଳୀ' ପୁସ୍ତକ ରଚନା କରିଥିଲେ । ପରେ ଏହା ପାଠ୍ୟକ୍ରମ ଅନୁସାରେ ଦୁଇଟି ଭାଗରେ ସଙ୍କଳିତ ହୋଇଥିଲା । ଏହାର ପ୍ରଚ୍ଛଦପଟରେ ଏହି ପ୍ରକାରେ ଲିପିବଦ୍ଧ ହୋଇଥିଲା—

କଥାବଳୀ—ତୃତୀୟ ଓ ଚତୁର୍ଥ ମାନ ନିମନ୍ତେ
ଇ: ମାର୍ସିମାନ୍ ଓ ଚନ୍ଦ୍ରମୋହନ ମହାରଣାଙ୍କ କୃତ
ମାକ୍‌ମିଲନ୍ ଅଣ୍ଡ୍ କୋ ଲିମିଟେଡ୍
କଲିକତା, ବମ୍ବାଇ, ମାନ୍ଦ୍ରାଜ, ଲଣ୍ଡନ, ୧୯୧୭

ଗଦ୍ୟ ପଦ୍ୟ ମିଶି ମୋଟରେ ଏଥିରେ ୬୧ ଟି ବିଷୟ ଥିଲା ।

ଗଦ୍ୟ—ଗୋଟିଏ ମୁକ୍ତା କଥା, ପକ୍ଷୀ ଓ କୃଷ୍ଣସର୍ପ କଥା, ରାଜକୁମାରୀ କଥା, କାରାଗାରରେ ସତ୍ୟବାଦିତାର ଫଳ, ବଧିର ବନ୍ଧୁର ଉପାଖ୍ୟାନ, ଯୋଗ୍ୟତାର ନିଦର୍ଶନ, ସତ୍ୟ ଲଙ୍ଘନ ୧, ସତ୍ୟ ଲଙ୍ଘନ ୨, ଆଜ୍ଞାନୁବର୍ତ୍ତୀ ବାଳକର ଉପାଖ୍ୟାନ, ବିବେକୀ ଛାଗଙ୍କ କଥା, ଦୁଇ ମୂଢ଼ ଛାଗଳ କଥା, ଇତର ପ୍ରାଣୀମାନଙ୍କ ମଧ୍ୟରେ ମିତ୍ରତା, ସିଂହ ଶଶକ କଥା, ରାଜା ଓ ସନ୍ନ୍ୟାସୀର କଥା, ଶୃଗାଳର ଭେଦ ବୁଦ୍ଧି, ମୃଗ କାକ, ଶୃଗାଳର କଥା, ଲୋଭୀ ଶୃଗାଳର ଉପାଖ୍ୟାନ, ସିଂହ ଓ ମୂଷିକ କଥା, କୁକୁରର ପ୍ରାଣରକ୍ଷା, ବାଦୁଲୀ ଏବଂ ପଶୁ ଓ ପକ୍ଷୀମାନଙ୍କ କଥା, ବ୍ୟାଘ୍ର ଓ କଙ୍କଣଲୋଭୀ ପଥିକର କଥା, ଗୃଧ୍ର, ମାର୍ଜାର ଓ ପକ୍ଷୀମାନଙ୍କ ଉପାଖ୍ୟାନ, ଠକ କୃଷକର

ଉଦାରତା, ମର୍କଟର ଅନଧିକାର ଚର୍ଚ୍ଚାର ପରିଣାମ, ସଂହତିର ଶକ୍ତି, ମିତ୍ରଲାଭ, ଯେଉଁ ବ୍ୟକ୍ତି ସମସ୍ତଙ୍କୁ ପ୍ରୀତ କରିବାକୁ ପ୍ରୟାସୀ ହୁଏ ସେ କାହାରି ପ୍ରୀତି ସମ୍ପାଦନ କରିପାରେ ନାହିଁ, ଜନ୍ତୁଗୃହ ଦାହ, ଧର୍ମରାଜ ଯୁଧିଷ୍ଠିରଙ୍କ ମହାନୁଭବତା, ହଂସ କୂର୍ମ ଉପାଖ୍ୟାନ; ବକ କୁଳୀରକ ଉପାଖ୍ୟାନ, ସମ୍ରାଟ ହୁମାୟୁନ୍ ଓ ଭିସ୍ତିର କଥା, ନୀଳବର୍ଣ୍ଣରଞ୍ଜିତ ଶୃଗାଳର ଉପାଖ୍ୟାନ, ଗଜ ଶଶକର ଉପାଖ୍ୟାନ, ରାଜା ଆଲଫ୍ରେଡଙ୍କ ଉପାଖ୍ୟାନ, କ୍ଷୁଦ୍ର ବାଳକର ଅସୀମ ସାହସ ଓ ସାଧୁକାର୍ଯ୍ୟ, ଉଷ୍ଟ୍ର ଓ ସିଂହର ଉପାଖ୍ୟାନ, ଜର୍ଜ ୱାସିଂଟନ୍ ୧, ଜର୍ଜ ୱାସିଂଟନ୍ ୨, ବାୟାଚଢ଼େଇ ଓ ମାଙ୍କଡ଼ମାନଙ୍କ କଥା, ଶୃଗାଳ ଓ ହସ୍ତୀର କଥା, ରାଣୀ ଜୟମତୀ, ରାଜା କେନ୍ୟୁଟ୍ ଓ ଚାଟୁକାର ପାରିଷଦ୍‌ମାନଙ୍କ କଥା, ସବକ୍ତଗୀନ୍ ଓ ମୃଗ ଶାବକର କଥା ।

ଉକ୍ତ ବିଷୟଗୁଡ଼ିକ ମିତ୍ରଲାଭ, ପଞ୍ଚତନ୍ତ୍ର, ଏସପ୍‌ସ୍ ଫେବଲ ଓ ଅନ୍ୟାନ୍ୟ ସୂତ୍ରରୁ ସଂଗୃହୀତ । ନିଜସ୍ୱତା ସ୍ୱଳ୍ପ । ରଚନାଶୈଳୀରେ ଯାହା କିଛି ମୌଳିକତା ପରିଲକ୍ଷିତ ହୋଇଥାଏ ମାତ୍ର । ମହାନୁଭବ ତ୍ୟାଗ, ସହିଷ୍ଣୁତା, ସତ୍ୟବାଦିତା, ନିର୍ଭୀକତା, ପରାର୍ଥପରତା ପ୍ରଭୃତି ଶିକ୍ଷଣୀୟ ଆଦର୍ଶକୁ ଆଖି ଆଗରେ ରଖି ଏସବୁ ସରଳ ଓ ଚିତ୍ତାକର୍ଷକ ଭାଷାରେ ପରିବେଷିତ ହୋଇଥିଲା ଓ ବାଳୁତ ପାଠକମାନଙ୍କ ମନରେ ସ୍ଥାୟୀ ପ୍ରଭାବ ବିସ୍ତାର କରିବାକୁ ସମର୍ଥ ହୋଇଥିଲା । ପାଠ୍ୟପୁସ୍ତକ ଜରିଆରେ ଚନ୍ଦ୍ରମୋହନଙ୍କ ମୋହାଚ୍ଛନ୍ନ ପ୍ରଭାବ ବିସ୍ମୃତ ହେବାର ନୁହେ । ତାଙ୍କ ଗଦ୍ୟଶୈଳୀ କବିଶେଖର ମହଲରେ ସମାଦର ଲାଭ କରିଥିଲା । କିନ୍ତୁ ଗଦ୍ୟ ଅପେକ୍ଷା ପଦ୍ୟ ରଚନାରେ ଚନ୍ଦ୍ରମୋହନ ଅଧିକ ମୌଳିକ ।

'କଥାବଳି'ର ଦୁଇଟି ଭାଗରେ ମୋଟରେ ଚଉଦଗୋଟି କବିତା ଥିଲା । ସେଥିମଧ୍ୟରୁ ଛ'ଟି ଗ୍ରୀଷ୍ମ, ବର୍ଷାଦି ଛ'ଋତୁକୁ ଅବଲମ୍ବନ କରି ରଚିତ । ସେସବୁ ବ୍ୟତୀତ ଚନ୍ଦ୍ର, ପୁଷ୍ପ, ବକୁଳ, ଝିଣ୍ଟିକାରି ପ୍ରଭୃତି କବିତା ମଧ୍ୟ ପ୍ରକୃତିକୁ ଅବଲମ୍ବନ କରି ରଚିତ । ପ୍ରତିଧ୍ୱନି ଚିନ୍ତୋଦ୍ଦୀପକ । ଶିଶୁବିୟୋଗ ଦୁଃଖାତ୍ମକ । 'ହନୁମାନର ସୀତାକୁ ଠାବ' 'ବିଚିତ୍ର ରାମାୟଣ'ରୁ ସଂକଳିତ । ଚନ୍ଦ୍ରମୋହନଙ୍କ କବିତା ଉପରେ ରାଧାନାଥ ବା ମଧୁସୂଦନଙ୍କ ପ୍ରଭାବ ବିରଳ ନୁହେଁ ।

ଝିଣ୍ଟିକାରି—'ମନରେ ପ୍ରବଳ ହେଲା ଏହି ଅଭିଳାଷ
କରିବି କୋଳରେ ତୋର ମୁହିଁ ସଦା ବାସ ।
ପାବନ ମୋହନ କୋଳ ଥିଲେ ନ ତେଜିବି
ଜଗତର କୋଳାହଳେ ଆଉ ନ ପଶିବି ।'

ଚିଲିକା— ''କରିଥିଲି ଆଶା କରିବି ଯାପନ
ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ
କୁଟୀର ବିରଚି କରିଅ ତଭଣେ
ଭାବିଥିଲି ଧନ ନେବି ନିକାଞ୍ଚନେ ।''

ଚନ୍ଦ୍ର— 'ମଧୁର ଗୋଧୂଳି ସମୟେ
( ଚନ୍ଦ୍ରମୋହନ ) ଅସ୍ତ ରବି କିରଣେ
ବାରୁଣୀ ଗଗନ ହୁଲଇ
ତପ୍ତ ସ୍ୱର୍ଣ୍ଣ ବରଣେ ।'

ଚନ୍ଦ୍ରଭାଗା—'ମଧୁର ଗୋଧୂଳି ସମୟ
(ରାଧାନାଥ) ସ୍ୱର୍ଣ୍ଣ କିରଣ ବୋଳା
କାଦମ୍ବିନୀ ଖେଳେ ଗଗନେ
ଧୀର ସମୀର ଲୋଳା ।'

ରାତିକୁ ବ୍ୟାଧ ସହିତ ଓ ଦିବାକୁ ବ୍ୟାଘ୍ରୀ ସହିତ ତୁଳନା ମୌଳିକ, କିନ୍ତୁ ଦୂରବର୍ତ୍ତୀ ଓ ବିଚିତ୍ର ବୋଧହୁଏ ।

'ନିରାଶ୍ରୟ ବ୍ୟାଘ୍ର ଶିଶୁ ଅପହାରୀ ବ୍ୟାଧ
ଦୂରୁଁ ଶୁଣି ଶିଶୁପ୍ରାଣା ବ୍ୟାଘ୍ରୀର ନିନାଦ
ତେଜି ବ୍ୟାଘ୍ର ଶିଶୁ ଯଥା ପଳାଏ ସତ୍ୱର
ପଳାଇଲା ନିଶା ତଥା ହୋଇ ଖରତର ।'

ଏହି କବିତାର 'ଅବଳା' ମାଆ ନୁହେଁ, ସୁନ୍ଦରୀ ତରୁଣୀ । ତାର ହସର ମାଧୁର୍ଯ୍ୟ ବାଳକ ବା କିଶୋର ହୃଦୟଙ୍ଗମ କରିପାରେ କିପରି ? ପାଠ୍ୟପୁସ୍ତକରେ ଏହି ହସର ପ୍ରୟୋଗ ଅନୁଚିତ, ଅସୁନ୍ଦର ।

କବି ଲେଖିଛନ୍ତି—'ଅଠ ବୁରେ ପ୍ରାଚୀମୂଳ ହସୁଅଛି ଧଳା
ଶୋଭୁଛି ଶୋଭଇ ଯଥା ହସିଲେ ଅବଳା ।'

ପାଠ୍ୟପୁସ୍ତକ ରଚନାରେ ମଧୁସୂଦନଙ୍କ ଭ୍ରାଞ୍ଚ ଚନ୍ଦ୍ରମୋହନ ଗ୍ରହଣ କରିଛନ୍ତି । ଚନ୍ଦ୍ରମୋହନଙ୍କ ଋତୁ କବିତା ସେହି ଯୋଜନା ଅନୁକ୍ରମେ ରଚିତ ହୋଇଅଛି— ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନା ଓ ବିଷ୍ଣୁ ପଦେ ନତି । ଋତୁ କବିତା ସଂଯୁକ୍ତ ନହେଲେ ସେପରିକି କିଶୋରୋପଯୋଗୀ ପାଠ୍ୟପୁସ୍ତକ ରଚିତ ହୋଇ ନ ପାରେ । ଚନ୍ଦ୍ରମୋହନଙ୍କ 'ବସନ୍ତ' କବିତାର ଆରମ୍ଭ—

'ଦକ୍ଷିଣ ଦୁଆରେ ଫେଡ଼ି ଧାଡକାରେ
ଝଳେ କଲେ ଦୃଷ୍ଟିକ୍ଷୀଣ
ଧରଣୀ ବଦନ— ମଣ୍ଡଳ ବନ୍ଧନ
ଦଶିଲକ ଆନ ଅନ ।'

ଶେଷ— 'ଯେ ଧାଡ଼ା ଉଡ଼ାଲେ ଏ କୁସୁମ କାଳ
ନମ ତାଙ୍କ ଶ୍ରୀପଦ୍ମରେ ।'

'ଧାଡକା' ଶବ୍ଦଟି କଣୋଦ୍ଧେପଯୋଗୀ ହୋଇନାହିଁ । 'ଗ୍ରୀଷ୍ମ' କବିତାରେ 'ଜ୍ୱାଳାଇଣ ଆତପକୁ ପଥିକେ ଚଳଲେ'—ପଥିକ ଛତା ଟାଣି ଯାଏ, ଉଡ଼ାଏ ନାହିଁ । ହୁଏ ତ ପବନ ଛତାକୁ ଉଡ଼ାଇ ଓଲଟାଇ ଦିଏ । ଏହି କବିତାର ଶେଷ ମଧୁବାବୁଙ୍କ ନମୁନାରେ ସଗଠିତ, ଉପଦେଶାତ୍ମକ ।

'ଏ ଜଗତେ ସୁଖ ଦୁଃଖ ଅଛୁ ସବୁଠାଇଁ
ଉଭୟେ ଅଛନ୍ତି ରଚି ଜଗତର ସାଇଁ
ଆପାତରେ ଯହିଁ ଦୁଃଖ ପରିଣାମେ ସୁଖ
ବାଳକେ ନୋହିବ କେବେ ଦୁଃଖରେ ବିମୁଖ ।'

'ଆପାତ' ଶବ୍ଦ ପ୍ରୟୋଗ ଅନୁପଯୋଗୀ ।

'ମହୀରୁହକୁଳେ ଉହ୍ଲ ଅଟ୍‌ରେ ବ୍ୟାକୁଳ,
ପର୍ଣ୍ଣେ ଫଳେ ବର୍ଣ୍ଣେ ପୁଣି କୁସୁମେ ମଞ୍ଜୁଳ ।'

'ଅଟୁ' ଶବ୍ଦଟି ଗଦ୍ୟର, ପଦ୍ୟରେ ଝୁଣ୍ଟିଲା ପରି ଲାଗେ, କବିତାର ଲାବଣ୍ୟ-ହାନି ଘଟାଏ । କିନ୍ତୁ ପଣ୍ଡିତିଆ ଭାବ, ବ୍ୟାକରଣ ପ୍ରତି ପକ୍ଷପାତ, ଗଦ୍ୟ ଓ ପଦ୍ୟର ଧ୍ୱନିଗତ ତାରତମ୍ୟ ଜ୍ଞାନର ଅଭାବ ଯୋଗୁଁ ସ୍ଥାନେ ସ୍ଥାନେ ଅସ୍ୱାଭାବିକ ବୋଧ ହେଲେ ହେଁ ଚନ୍ଦ୍ରମୋହନଙ୍କ ଋତୁ କବିତା ଏକ ସ୍ୱତନ୍ତ୍ର ପଦକ୍ଷେପ, ଏକ ଭିନ୍ନ ସ୍ୱାଦର କବିତା । ଏହା ଋତୁଶ୍ରୀ ଅନୁଭବରେ ନବ ନବ ପ୍ରସ୍ଥ ଉଦ୍‌ଘାଟନ କରେ । ଗତାନୁଗତିକ ସ୍ରୋତରେ ଭସି ନଯାଇ ନୂତନ ବାଟ ଫିଟାଇଥିବାରୁ ଚନ୍ଦ୍ରମୋହନ ଚିର ବନ୍ଦନୀୟ । ତରୁଣ ବୟସରେ ସଫଳବନ୍ଧ ଲେଖକ ପ୍ରୌଢ଼ ବା ବାର୍ଦ୍ଧକ୍ୟରେ ଲେଖି ନପାରେ କାହିଁକି ? କେଉଁ ଦୁରବସ୍ଥା ତାଙ୍କୁ ଲେଖନୀ ଛାଡ଼ିବାକୁ ବାଧ କରେ ? ବହୁ ପ୍ରତିଭା ଏ ପ୍ରଦେଶରେ ନଷ୍ଟଭ୍ରଷ୍ଟ ହୋଇଯାଇଛି । ତାର ହିସାବ ସମୀକ୍ଷାଲାଗି କିଏ କେବେ ହୋଇନାହିଁ ? ସାହିତ୍ୟଫସଲ ଯେପରି ଏଠି ଭଲଭାବେ ଉଧେଇବ, ପ୍ରତିଭା ସମସ୍ତ ଅନୁକୂଳତା ଓ ଉତ୍ସାହ ଲାଭ କରିପାରିବ, ସେଥିଲାଗି ଏବେ ଏହି ସମୀକ୍ଷା ଏକାନ୍ତ ଆବଶ୍ୟକ ।

ଚନ୍ଦ୍ରମୋହନ 'କୈଫିୟତ' ନାମିତ ନମ୍ରୋକ୍ତ ପତ୍ରରେ ସାହିତ୍ୟ ରଚନା ପ୍ରତି ପ୍ରତିକୂଳ ସାମାଜିକ କାରଣମାନ ଉଲ୍ଲେଖ କରିଛନ୍ତି । ବ୍ୟକ୍ତିଗତ କାରଣ ଉଲ୍ଲେଖକୁ ସେ ଅପ୍ରାସଙ୍ଗିକ ମନେ କରିଛନ୍ତି । ତଥାପି ମାଲମକଦ୍ଦମା ବା ସେହିପରି ଦୁର୍ଘଟଣାଜନିତ ଦୁଶ୍ଚିନ୍ତା, ଜୀବନର ଗତାନୁଗତିକତା ଯୋଗୁଁ ଉଦ୍ଦୀପନାର ଅଭାବ ତୁଲିତ ସୃଷ୍ଟିହୀନତାର ବ୍ୟକ୍ତିଗତ କାରଣଭାବେ ଉଲ୍ଲେଖ କରାଯାଇପାରେ । କିନ୍ତୁ ସାହିତ୍ୟ କରିଆରେ ଦେଶମାତୃକାର ସେବାର ନୈତିକ ଦାୟିତ୍ୱରୁ ସେ ନିଜକୁ ମୁକୁଳେଇ ପାରିନାହାନ୍ତି । ସେଥିଲାଗି ଲେଖିଛନ୍ତି ମନସ୍ତାପ ଓ ଉତ୍କଳସାହିତ୍ୟର ସମ୍ପାଦକ ଶ୍ରୀ ବିଶ୍ୱନାଥ କରଙ୍କୁ ଦେଇଛନ୍ତି 'କୈଫିୟତ୍ ।'

## କୈଫିୟତ୍

ଶ୍ରୀଯୁକ୍ତ 'ଉତ୍କଳସାହିତ୍ୟ' ସମ୍ପାଦକ ମହୋଦୟ, ସମୀପେଷୁ

ମହାଶୟ ,

ଆପଣ ମୋତେ ଉତ୍କଳସାହିତ୍ୟ ପତ୍ରିକାରେ ଲେଖିବାପାଇଁ ପତ୍ରଦ୍ୱାରା ଓ ମୌଖିକ ଅନେକ ଥର ଅନୁରୋଧ କରିଅଛନ୍ତି ଏବଂ ମୁଁ ନ ଲେଖିବାରୁ ବ୍ୟଥିତ ହୋଇଅଛନ୍ତି । ଏକଥା ଅନେକ ସମୟରେ ମୋର ମନେ ପଡ଼େ ଓ ତାହା ସହିତ ସମସ୍ତ ସମୟରେ ଯେଉଁ ଭାବର ଉଦୟ ହୁଏ, ତାହା ଆଜି ଏହି ପତ୍ରରେ ଆପଣଙ୍କଠାରେ ବ୍ୟକ୍ତ କଲି । ଆପଣଙ୍କ ପତ୍ରିକାରେ ଏହା ପ୍ରକାଶ କରିବାକୁ ଇଚ୍ଛା କଲେ ପ୍ରକାଶ କରିପାରନ୍ତି । ଯେଉଁ କାରଣରୁ ମୁଁ ଲେଖିବାର ଅଭ୍ୟାସ ପରିତ୍ୟାଗ କରିଅଛି, ତାହା ମୁଁ ବର୍ତ୍ତମାନ ଆପଣଙ୍କଠାରେ ବ୍ୟକ୍ତ କରିବାକୁ ଅସମର୍ଥ ।

ଏହି ଉତ୍କଳ ପ୍ରଦେଶରେ ଲୋକେ ମୋତେ ଲେଖକ ବୋଲି ଗଣନା କରନ୍ତି, ଏହା ମନେ କଲେ ମୁଁ ସମସ୍ତ ସମୟରେ ବିସ୍ମିତ ହୁଏ । କିନ୍ତୁ ଏହି ପରି ଦେଶ ଲେଖକ ଓ ଲେଖାରେ ଦରିଦ୍ର, ଏହା ମନେ କଲାକ୍ଷଣି ସେ ବିସ୍ମୟ କ୍ରମେ କ୍ଷୀଣ ହୋଇ ବିଷାଦରେ ପରିଣତ ହୁଏ । ସ୍ଥୂଳ ବୁଦ୍ଧିରେ ଏହି ଦରିଦ୍ରତାର କାରଣ ଅନୁସନ୍ଧାନ କଲେ ମୋର ପ୍ରତୀତି ଜନ୍ମେ ଯେ ଉତ୍କଳର ଆଧୁନିକ ଅବସ୍ଥା ସାହିତ୍ୟ ବିକାଶର ଅନୁକୂଳ ନୁହେଁ, ସମ୍ପୂର୍ଣ୍ଣ ରୂପରେ ନ ହେଲେ ବହୁ ପରିମାଣରେ ।

ମନୁଷ୍ୟମାନଙ୍କ ମଧ୍ୟରେ ସର୍ବଦା ନାନା ପ୍ରକାର ଭାବ ଜନ୍ମେ । ତନ୍ମଧ୍ୟରୁ ଅଧିକାଂଶ ଠିକ୍ ବୃଷ୍ଟିପାତଜନିତ ଜଳବୁଦ୍‌ବୁଦ ପରି । "ହୃଦ୍ୟୁତ୍ପନ୍ନେ ବିଳୀୟନ୍ତେ" । ଅତଏବ ତାହାର ଅବଶେଷ ବା ଚିହ୍ନ ପ୍ରାପ୍ତ ଆଉ କିଛି ରହେ ନାହିଁ । ବିଶେଷ

ଘଟଣାଜନିତ ଗାଢ଼ଭାବ ଅପେକ୍ଷାକୃତ ଦୀର୍ଘକାଳ ସ୍ଥାୟୀ ହୁଏ । ଏହି ଭାବର ମାତ୍ରା ଯେତେବେଳେ ଅତ୍ୟଧିକ ହୋଇ ମନ ମଧ୍ୟରେ ପ୍ରଚୁର ସ୍ଥାନ ନ ପାଏ, ସେତେବେଳେ ତାହା ଉଛୁଳିପଡ଼େ । ଏ ସମୟରେ ଅନୁଭବୀ ଅନ୍ୟ ନିକଟରେ ତାହା ବ୍ୟକ୍ତ କରିପକାଏ ଅଥବା ନିର୍ଜନରେ ହର୍ଷ ବା ବିଷାଦର ଅଧୀନ ହୋଇ ପ୍ରଳାପବତ୍ କହିପକାଏ । ଯେଉଁମାନେ ଶବ୍ଦଶାସ୍ତ୍ରରେ ଅଧିକାର ବା ରଚନାଶକ୍ତି ଲାଭ କରିଅଛନ୍ତି, ସେମାନେ ତାହା ଗଦ୍ୟ, ପଦ୍ୟ ବା ପ୍ରବନ୍ଧାକାରରେ ଅନ୍ୟଠାରେ ପ୍ରକାଶ କରନ୍ତି । ମାତ୍ର ଭାବ ଗାଢ଼ତମ ହୋଇ ମନୁଷ୍ୟ ମନକୁ ଅଭିଭୂତ କଲେ ମନୁଷ୍ୟ ଜଡ଼ୀଭୂତ ହୁଏ, ସେତେବେଳେ କବିତା ପ୍ରଭୃତି ତାହା ପକ୍ଷରେ ଅସମ୍ଭବ ହୁଏ । ଏଣୁ ଦେଖାଯାଏ ଯେ କୃତବିଦ୍ୟ ଲୋକେ ନବୀନ ବୟସରେ ପଦାର୍ପଣ କଲେ, ନୂତନ ଦେଶରେ ଉପସ୍ଥିତ ହେଲେ, ଅଥବା ନୂତନ ବା ଅଦ୍ଭୁତ ଦୃଶ୍ୟ ବା ଘଟଣା ଅନୁଭବ କଲେ, ସ୍ୱୀୟ ମନୋଭାବ ଲିପିବଦ୍ଧ କରିବା ପାଇଁ ଉତ୍ସୁକ ହୁଅନ୍ତି ।

ଆର୍ଯ୍ୟମାନେ ଯେତେବେଳେ ଭାରତବର୍ଷରେ ପ୍ରବେଶ କଲେ, ଆର୍ଯ୍ୟାବର୍ତ୍ତର କମନୀୟ ଶୋଭାରେ ବିସ୍ମିତ ଆର୍ଯ୍ୟଋଷିମାନଙ୍କ ମନରେ ନାନା ନବୀନ ଭାବର ଉଦୟ ହେଲା । ସେମାନେ ସେହି ଭାବଗୁଡ଼ିକ ଛନ୍ଦୋବଦ୍ଧ ଭାଷାରେ ପ୍ରକାଶ କଲେ । ସୂର୍ଯ୍ୟବଂଶର ପବିତ୍ର ଓ ଉଜ୍ଜ୍ୱଳ କୀର୍ତ୍ତିରେ ମୁଗ୍ଧ ହୋଇ କବିଗୁରୁ ବାଲ୍ମୀକି ଆଦି କାବ୍ୟ ରଚନା କଲେ । ବ୍ୟାସଦେବ ତତ୍କାଳୀନ ସମାଜ ଓ ରାଜନୀତିର ବୈଚିତ୍ର୍ୟମୟ ଚିତ୍ରଗୁଡ଼ିକର ଉପାଦାନରେ ବିରାଟ ମହାଭାରତ ପ୍ରଣୟନ କଲେ । ବିଖ୍ୟାତ ଚୀନ୍ ପରିବ୍ରାଜକ ଭାରତର ଶାନ୍ତିମୟ ସମାଜନୀତି ପ୍ରଭୃତିରେ ମୋହିତ ହୋଇ ମାତୃଭାଷାରେ ତାହା ଲିପିବଦ୍ଧ କଲେ । ସମ୍ରାଟଶିରୋମଣି ଆକବରଙ୍କ ଉଦାର ଶାସନ କାଳରେ ଆଇନ୍-ଇ-ଆକବରୀ ଜନ୍ମଲାଭ କଲା । ଭୌଗୋଳିକ ଆବିଷ୍କାର ଓ ମୁଦ୍ରାଯନ୍ତ୍ରର ଉଦ୍ଭାବନ ଇଉରୋପୀୟ ସାହିତ୍ୟରେ ନବ ଯୁଗର ଅବତାରଣା କଲା । ଏ ଦେଶରେ ଇଂରେଜ ରାଜତ୍ୱରେ ସରସ୍ୱତୀସେବକ ବଙ୍ଗୀୟ ଯୁବକମାନେ ଦେଶାନ୍ତର ଗମନ କରି ଅଦୃଷ୍ଟପୂର୍ବ ପ୍ରାକୃତିକ ଓ କୃତ୍ରିମ ଶୋଭା, ସମାଜନୀତି ପ୍ରଭୃତି ପ୍ରବନ୍ଧାକାରରେ ବର୍ଣ୍ଣନା କଲେ ଏବଂ ଭାଷାନ୍ତର ଲିଖିତ ନାନା ଗ୍ରନ୍ଥର ଆଲୋଚନାରେ ସେମାନଙ୍କ ମନରେ ଯେଉଁ ଭାବଗୁଡ଼ିକ ମୁଦ୍ରିତ ହେଲା, କାବ୍ୟାଦିରେ ତାହା ପୁନର୍ଜନ୍ମ ଲାଭ କଲା । ସୁତରାଂ ଉଦ୍ଦୀପନର ଅଭାବରେ, ଭାବର ଅସଦ୍ଭାବରେ ପ୍ରକୃତ କାବ୍ୟ କବିତା ପ୍ରଭୃତି ଅସମ୍ଭବ । ଏ ପ୍ରଦେଶର ଲୋକେ ପ୍ରଗାଢ଼ ଅଧ୍ୟବସାୟ ସହକାରେ ନାନା ଶାସ୍ତ୍ରାଲୋଚନ, ଉଚ୍ଚ ବିଷୟ ଚିନ୍ତନ ଏବଂ ବିଦ୍ୟା ବାଣିଜ୍ୟ ପ୍ରଭୃତି ଉଦ୍ଦେଶ୍ୟରେ ବିଦେଶ ଗମନ କରି 'ଦ୍ୱିଜତ୍ୱ' ଲାଭ ନ କଲେ ସାହିତ୍ୟ ବିକାଶ ପକ୍ଷରେ ଅନୁକୂଳ ପବନର ଆଶା ଦୁରପରାହତ ।

ଆଳସ୍ୟ ଓ ବ୍ୟସନରେ ବର୍ତ୍ତମାନ ଉତ୍କଳ ଜର୍ଜରୀଭୂତ । ଯେଉଁ ଉତ୍କଳୀୟମାନେ କୃତୀ ବା କୃତକଳ୍ପ ବୋଲି ଗଣ୍ୟ, ସେମାନେ ଏ ଦଉଡ଼ି ଶିକୁଳିରୁ ଆପଣାକୁ ବିମୁକ୍ତ ନ କଲେ ଉତ୍କଳର ଜଡ଼ତ୍ୱ ଘୁଞ୍ଚିବ ନାହିଁ, ଏ ପ୍ରଦେଶ ବିଦ୍ୟା ଗୌରବରେ ମହାସ୍ଥାନ୍ ଓ ଧନ ବଳରେ ବଳୀସ୍ଥାନ୍ ହୋଇପାରିବ ନାହିଁ ।

ଚନ୍ଦ୍ରମୋହନ ମହାରଣା

୧୩୦୯-୧୦ ସାଲ, ଚତୁ-ସପ୍ତମ ବର୍ଷ, ଉତ୍କଳସାହିତ୍ୟ, ପୃ ୬୩-୭୪ ।

ରଚିତ ଗ୍ରନ୍ଥ ପ୍ରକାଶିତ ନ ହେବାରୁ ଚନ୍ଦ୍ରମୋହନଙ୍କ ଲେଖିବାର ଉତ୍ସାହ ଭଟ୍ଟା ପଡ଼ିଯାଇଥିବ । 'ନବୋଦ୍ୟମ' ଛପାଇ ତାଙ୍କ ମନ ମାରି ଯାଇଥିଲା । ସବୁ ଖାଇ ଘୋଡ଼ା ଆଗରେ ଡେଇଁବାର ସାହସ ଆସି ନଥିବ । ପ୍ରକାଶ ଲାଗି ରାଜା ମହାରାଜାମାନଙ୍କର ଦ୍ୱାରସ୍ଥ ହେବାକୁ ସେ ମର୍ଯ୍ୟାଦାହାନିକର ମନେ କରିଥିବେ । ପ୍ରକାଶନ ଲାଗି ତତ୍ପରତାର ଅଭାବରୁ ତାଙ୍କର ସମସ୍ତ ପରବର୍ତ୍ତୀ ଲେଖା ପାଣ୍ଡୁଲେଖ୍ୟ ଅବସ୍ଥାରେ ରହିଯାଇଥିବ । ସେସବୁ ବିନଷ୍ଟ ନ ହୋଇଥିଲେ ଉତ୍କଳଭାରତୀଙ୍କ ପ୍ରାଙ୍ଗଣ-ଉଦ୍ୟାନର ଏକ ପୂର୍ଣ୍ଣାଙ୍ଗ ଚାରୁକାର୍ଯ୍ୟ ଖଚିତ ମନ୍ଦିର ପରି ଦିଶୁଥାନ୍ତା ।

ଏବେ ତାହା ଖାଁଣାଙ୍କ ଏକ ଉପଚ୍ଛନ୍ନ ପରି ହଣେ । ସତେ ଯେପରି କେଉଁ ଯୁଗରେ ନିର୍ମିତ ଭିତ୍ତିମାତ୍ର ଅବଶିଷ୍ଟ ଏକ ଭଗ୍ନ ମନ୍ଦିର । ଅତୀତର ସାନ୍ଦ୍ର ନିର୍ଜନତା ଭିତରୁ କୋମଳ କାକଳି ପରି ଶୁଣାଯାଏ ତାର କାରୁଣ୍ୟ—

ଭଲ ମନ୍ଦ ଆଦି ସୃଷ୍ଟି ବେଳ ସୀମା
ଯଦି ଦେଖନ୍ତି ସଭାରେ
ଏ ସୀମା ସୃଷ୍ଟିର ଦେଖିଲ ହେ ହରି
ସେ ସୀମାଟି କେଉଁଠାରେ ?

( ପାପୀର ଆଶା, ସଂଗୀତ—ଚନ୍ଦ୍ରମୋହନ, ଉ: ସା-୧୩୦୯-୧୦ )

ଚନ୍ଦ୍ରମୋହନଙ୍କ ବ୍ୟକ୍ତିତ୍ୱ ଓ କବିତ୍ୱ ପରସ୍ପରର ପରିପୂରକ । କଳାପର୍ଦ୍ଦାର ଅନ୍ତରାଳରେ ଉଭୟର ମହିମା କୀର୍ତ୍ତିତ । ପ୍ରଥମଟି ଦୃଢ଼ ଆତ୍ମପ୍ରତ୍ୟୟ ଓ ସ୍ୱକୀୟ: ଗୌରବଭରା, ଦ୍ୱିତୀୟଟିକୁ ଆଚ୍ଛନ୍ନ କରଦେଲା ପରି ବୋଧହୁଏ । ସେ ଚିରନ୍ତନ ଶିକ୍ଷକ, ମୁଖ୍ୟମାନଙ୍କ ମଧ୍ୟରେ ମହାମୁଖ୍ୟ, ପଦ୍ୟ ବା ଗଦ୍ୟ ରଚନା କଲାବେଳେ ସେ ଶିକ୍ଷକତା ପ୍ରତି ଆନ୍ତରିକ ମମତା ତ୍ୟାଗ କରିପାରି ନାହାନ୍ତି ।

# ଗୌରୀଶଙ୍କର ରାୟ

ଜନ୍ମ—୧୮୩୮, ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ
ମୃତ୍ୟୁ—୧୯୧୭, ମାର୍ଚ୍ଚ ୭ ତାରିଖ

"ହାତେ ତୁମ
ଦୀପିକାର କ୍ଷୀଣାଲୋକ ଶିଖା
ଚୌଦିଗେ ତମିସ୍ରଭରା ଉତ୍କଳ ଭୂମିର
ତୁମେ ଦିନେ ଲେଖିଥିଲ ଉଜ୍ଜ୍ୱଳ ଭୂମିକା ।"

—କୃଷ୍ଣବିହାରୀ

"ଗୌରୀଶଙ୍କର ପ୍ରତିଭାଶାଳୀ ନୁହନ୍ତି, କେବେ ହେଲେ ପ୍ରତିଭାର ଦାବୀ କରିନାହାନ୍ତି । ସେ ସରଳ, ସହଜ ମନୁଷ୍ୟଟିଏ, ସରଳ ସହଜଭାବରେ ନିଜର ଅନ୍ତରାତ୍ମାର ଆଲୋକ ଅନୁସନ୍ଧାନ କରି ନୀରବ ସାଧନପଥରେ ଅଗ୍ରସର ହୋଇଅଛନ୍ତି । ବ୍ରତଧାରୀର ନିଷ୍ଠା ତାଙ୍କ ଜୀବନର ପ୍ରଧାନ ଲକ୍ଷଣ । ଜୀବନର ସକଳ କାର୍ଯ୍ୟରେ ସେ ସେହି ନିଷ୍ଠାର ପରିଚୟ ଦେଇଅଛନ୍ତି । ଏହି ୫୦ ବର୍ଷ ଭିତରେ ଦେଶର ଏପରି କୌଣସି କାର୍ଯ୍ୟ, କୌଣସି ଆନ୍ଦୋଳନ, କୌଣସି ଅନୁଷ୍ଠାନ ହୋଇ ନାହିଁ, ଯହିଁରେ ଏହି କର୍ମୀପୁରୁଷଙ୍କର କିଛି ହେଲେ ଯୋଗ ବା ସହାନୁଭୂତି ବା ସାହଚର୍ଯ୍ୟ ନାହିଁ ।"

"ଗୌରୀଶଙ୍କର ଶତ ଶତ ଦରିଦ୍ର, ଅସହାୟ ଛାତ୍ରଙ୍କ ଶିକ୍ଷାପଥରେ ସାହାଯ୍ୟ କରିଅଛନ୍ତି, ବହୁ ବିପନ୍ନ ଦୁଃସ୍ଥ ନରନାରୀଙ୍କୁ ଯଥାଶକ୍ତି ଅର୍ଥଦାନ କରିଅଛନ୍ତି । ଦେଶର ନାନା ସଦନୁଷ୍ଠାନରେ ଅର୍ଥ ଓ ସାମର୍ଥ୍ୟ ବ୍ୟୟ କରିଅଛନ୍ତି, ପ୍ରଚୁର ଅର୍ଥ ବ୍ୟୟ କରି କାୟସ୍ଥ ବୋର୍ଡିଂ, ବାଳିକାସ୍କୁଲ, ଡାକ୍ତରଖାନା ପ୍ରତିଷ୍ଠିତ କରିଦେଇ ଅଛନ୍ତି । ଏ ନଗରରେ ପ୍ରଧାନ କୀର୍ତ୍ତିସ୍ତମ୍ଭ ସ୍ୱରୂପ ଟାଉନହଲ ନିର୍ମାଣ

କରି ଦେଇଅଛନ୍ତି । ଏ ସମସ୍ତ ଛାଡ଼ିଦେଲେ ସୁଦ୍ଧା କେବଳ କଟକ ପ୍ରିଣ୍ଟିଂ କମ୍ପାନୀର ସଫଳତା ଓ ଉନ୍ନତି, ଉତ୍କଳଦୀପିକାର ପ୍ରଚାର ଓ ପରିଚାଳନ ଲାଗି ସେ ସମଗ୍ର ଦେଶର ଅଶେଷ ଶ୍ରଦ୍ଧା ଓ ସମ୍ମାନର ପାତ୍ର ।"

( ଉତ୍କଳ ସାହିତ୍ୟ, ଅଷ୍ଟାଦଶ ଓ ଊନବିଂଶ ବର୍ଷ )

ବିଶ୍ୱନାଥ କରଙ୍କ ଉକ୍ତ ମନ୍ତବ୍ୟ ଗୌରୀଶଙ୍କର ଜୀବନୀର ସାରତତ୍ତ୍ୱ । ଏକ ସଂସାରରେ ସେବା କରି ଜଣେ କର୍ମୀ, ଏ ସଂସାର ତ୍ୟାଗ କରି ଜଣେ ବା ଯୋଗୀ କିନ୍ତୁ ଗୌରୀଶଙ୍କର ଉଭୟ—କର୍ମୀ ଓ ଯୋଗୀ କିମ୍ବା ଗୋଟିଏ ଶବ୍ଦରେ "କର୍ମ-ଯୋଗୀ ।" କର୍ମ ତାଙ୍କର ଯୋଗସାଧନା ପରି ଏକନିଷ୍ଠ, ଯୋଗ ମଧ୍ୟ କର୍ମନିବଦ୍ଧ । ଏହା ତାଙ୍କର ଉପାଧି ମାତ୍ର ନୁହେଁ, ଅକ୍ଷରେ ଅକ୍ଷରେ ସତ୍ୟ ।

ଗୌରୀଶଙ୍କର ଆଧୁନିକ ଓଡ଼ିଶାର ଜଣେ ମହାନ୍ ଯୋଦ୍ଧା । ତାଙ୍କ ଯୁଦ୍ଧ ଅବିଚାର ସହିତ, ଅନ୍ୟାୟ ଓ ଅତ୍ୟାଚାର ସହିତ । ଲେଖନୀ ତାଙ୍କର ଅସ୍ତ୍ର, ନିଷ୍ଠା ତାଙ୍କର ସହାୟ, ସାହସିକତା ତାଙ୍କର ସମ୍ବଳ, ଆତ୍ମବଳ ହିଁ ତାଙ୍କର ବଳ । ଉତ୍କଳର ସ୍ୱାର୍ଥରକ୍ଷା, ସେବା ତାଙ୍କର ଲକ୍ଷ୍ୟ । ସେଥିଲାଗି ସେ କୌଣସି ବିପଦ ବରଣ କରିବାକୁ ସେ ପ୍ରସ୍ତୁତ ଥିଲେ, ସର୍ବସ୍ୱ ତ୍ୟାଗ କରିବାକୁ କୁଣ୍ଠିତ ହେଉ ନ ଥିଲେ ।

ସେପରି ଅଧ୍ୟବସାୟୀ, ସେହିପରି ଦୃଢ଼ପ୍ରତିଜ୍ଞ, ନିର୍ଭୀକ, ସ୍ୱାବଲମ୍ବୀ ସତ୍-ପୁରୁଷ । କୌଣସି କର୍ମ ଥରେ ଆରମ୍ଭ କଲେ ଶେଷ ନ କରି ଛାଡ଼ନ୍ତି ନାହିଁ । ଅସାଧାରଣ ବ୍ୟକ୍ତିତ୍ୱ ଯୋଗୁଁ ସେ ବିପଦକୁ ସହଜରେ ଅତିକ୍ରମ କରି ପାରନ୍ତି । ବିଦେଶୀ ଶାସକ ତାଙ୍କ ମତାମତକୁ ଗୁରୁତ୍ୱ ଦେଉଥିଲେ; କ୍ଷମତାର ଧମକରେ ନଇଁଯିବାର ପାତ୍ର ସେ ନଥିଲେ । କି ଦେଶୀ କି ବିଦେଶୀ ସମସ୍ତଙ୍କ ଶ୍ରଦ୍ଧା ଆକର୍ଷଣ କରିବାକୁ ମହତ୍ତ୍ୱ ସେ ଅର୍ଜନ କରି ପାରିଥିଲେ ।

ସେ କାଳେ ଓଡ଼ିଶାର ଦାନା ଖାଇ ଓଡ଼ିଶାର ସ୍ୱାର୍ଥ ବିରୁଦ୍ଧରେ ଯିବା କେତେକ ଶିକ୍ଷିତ ବଙ୍ଗାଳୀଙ୍କର ନିତ୍ୟନୈମିତ୍ତିକ କର୍ମ ହୋଇଥିଲା । କିନ୍ତୁ ଗୌରୀ-ଶଙ୍କରଙ୍କ ଜୀବନ ଭିନ୍ନ ଉପାଦାନରେ ଗଢ଼ା ହୋଇଥିଲା । ସେ ବଙ୍ଗାଳୀ କୁଳରେ ଜନ୍ମ ହୋଇ ଯେ କୌଣସି ଓଡ଼ିଆଙ୍କ ଅପେକ୍ଷା ଅଧିକ ଓଡ଼ିଆ ହୋଇପାରିଥିଲେ । ତେଣୁ ଗୌରୀଶଙ୍କରପାର୍କକୁ କଟକ ସହର ଓ ସମଗ୍ର ଓଡ଼ିଶା ହୃଦୟର ଅତି ଆଦରର ପଦକ ପରି ଧାରଣ କରିଛି । ଗୌରୀଶଙ୍କର ଓ ତାଙ୍କ ସାନଭାଇ ନାଟ୍ୟକାର ରାମଶଙ୍କର ଉତ୍କଳର ହୃଦୟନିଧି । ସେ କାଳ ଉତ୍କଳର କୃତୀ ସନ୍ତାନମାନେ ଗୌରୀଶଙ୍କରଙ୍କ ମହତ୍ତ୍ୱମହିମାକୁ ବଖାଣି ଦେଇଛନ୍ତି—

"ଉତ୍କଳ ମେଦିନୀର ସହ୍ୟ କରନ୍ତେ ରଣ
ଉତ୍କଳ ପତ୍ରିକା ରୂପ ପାଶୁପତ ଧର
ବିଶ୍ୱଜେ ବାଲେନ୍ଦୁ ଯଥା ଚନ୍ଦ୍ରଚୂଡ଼ ଶିରେ
ତବ ଭାଲେ ଯଶଚନ୍ଦ୍ର ଭାତିବେ ଅଚିରେ ।"

( କବିବର ରାଧାନାଥ ରାୟ, କବିତାବଳୀ, ୧୮୬୮ ସାଲ )

"ଶୁଭ କ୍ଷଣେ ଜନ୍ମ ତବ ଉତ୍କଳ ଉତ୍ସଙ୍ଗେ
କର୍ମ ଯୁଗେ କର୍ମଯୋଗୀ କେତେ ବନ୍ଧୁ ସଙ୍ଗେ
ପ୍ରତି ନିତ୍ୟ ସୁସାହସେ ବିଶ୍ୱାସେ ବିକ୍ରମେ
ସାଧିଅଛ ସୁସଂକଳ୍ପ ପୁଣ୍ୟ ପରିଶ୍ରମେ ।"

ଭକ୍ତକବି ମଧୁସୂଦନ

"ହେ ଗୌରୀଶଙ୍କର, ଧନ୍ୟ ତୁମର ସାହସ
ପତ୍ରିକା ଲେଖୁଛ ବସି ତିରିଶ ବରଷ
ନ ମାନି ବିପଦ ବାଧା ନ ଗ୍ରହି ଦେହକୁ
ମନପ୍ରାଣ ସମର୍ପି ପାଳିଛ ବ୍ରତକୁ
ଦେଖି ଦେଖି ତେର ଦିନ ଜାଣିଛୁ ବିଶେଷ
ଅଟ ତୁମ୍ଭେ ଜଣେ Man of Business."

ଫକୀରମୋହନ ସେନାପତି, ଉତ୍କଳ ଭ୍ରମଣଂ

"ବୈଶାଖର ଝଡ଼ ଶ୍ରାବଣେ ଧାର
ତବ କର୍ମ ଯୋଗେ ବନ୍ଧ ନ କରେ
ଏକନିଷ୍ଠ ଯୋଗୀ ଜୀବନଟି ସାର
ସାହିତ୍ୟ ସମାଜେ ସ୍ୱଦେଶହିତରେ ।"

ନନ୍ଦକିଶୋର ବଳ

୧୮୩୮ ଖ୍ରୀଷ୍ଟାବ୍ଦରେ ଗୌରୀଶଙ୍କରଙ୍କ ଜନ୍ମ; ଜନ୍ମସ୍ଥାନ କଟକ ଜିଲ୍ଲାର ଅସୁରେଶ୍ୱର, ପଣ୍ଡିତପଡ଼ା ଗ୍ରାମ। ପିତାଙ୍କ ନାମ ସଦାଶିବ ପ୍ରସାଦ ରାୟ, ସେ ମୋହରରି କାର୍ଯ୍ୟ କରୁଥିଲେ । ସେତେବେଳେ ଚାଟଶାଳୀରେ ଅବଧାନ, ମକ୍ତବରେ ଆଖୁନ୍‌ଜୀ; ଚାଟଶାଳୀରେ ତାଳପତ୍ର ପୋଥି, ମକ୍ତବ୍‌ରେ ହରତାଳି କାଗଜର କିତାପ । ଗୌରୀଶଙ୍କର ଅବଧାନଙ୍କଠାରୁ ଓଡ଼ିଆ, ଆଖୁନ୍‌ଜୀଙ୍କଠାରୁ ଉର୍ଦ୍ଦୁ ଓ ଫାରସୀ ଭାଷା ଶିକ୍ଷା କରିଥିଲେ । ସେତେବେଳେ ଦଲିଲ୍‌ଦସ୍ତାବିଜ୍ ସବୁ ପାରସୀରେ ଲେଖା ଯାଉଥିଲା, ମୁଖ୍ୟତଃ ପାରସୀ ମାଧ୍ୟମରେ ଶାସନ କାର୍ଯ୍ୟ ଚଳୁଥିଲା । ବାଲ୍ୟ ବୟସରେ ସେ ସୁରୁଚି ଭାବେ ପରିଚିତ ହୋଇଥିଲେ ।

୧୧ ବର୍ଷ ବୟସରେ କଟକ ଆସି ଗୌରୀଶଙ୍କର ଇଂରାଜୀ ସ୍କୁଲରେ ପଢ଼ିଲେ । ସେ ଜୁନିଅର ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମାସିକ ଆଠ ଟଙ୍କା ସରକାରୀ ବୃତ୍ତି ଲାଭ କରିଥିଲେ ।

ଉଚ୍ଚ ଶିକ୍ଷାଲାଭ ଲାଗି ପ୍ରବଳ ଇଚ୍ଛା; କିନ୍ତୁ ସେଥିଲାଗି କଟକ ବା ଓଡ଼ିଶାରେ ଅନୁକୂଳ ସୁଯୋଗ ସୁବିଧା ସୃଷ୍ଟି ହୋଇ ନ ଥିଲା । ୧୮୫୭ ଖ୍ରୀଷ୍ଟାବ୍ଦରେ ସେ ହୁଗୁଳି ଯାତ୍ରା କଲେ; ରେଳପଥ ତ ଦୂରର କଥା, ସେତେବେଳେ କଟକରୁ କଲିକତା ପର୍ଯ୍ୟନ୍ତ ନିରବଚ୍ଛିନ୍ନ ପଥ ବି ନ ଥିଲା । ଚତୁର୍ଦ୍ଦିଗ ଅରଣ୍ୟସଙ୍କୁଳ, ବନ୍ୟଜନ୍ତୁ ଓ ସ୍ୱେଚ୍ଛାଚାରୀ ଦସ୍ୟୁଙ୍କର ବିଭୀଷିକା ମନରେ ଆତଙ୍କ ସୃଷ୍ଟି କରୁଥିଲା । ୧୬ ଅବସ୍ଥାରେ ସେ ଏକ ଶଗଡ଼ଗାଡ଼ିରେ ଚଢ଼ି ବାଲେଶ୍ୱର ପର୍ଯ୍ୟନ୍ତ ଯାତ୍ରା କଲେ; ତାପରେ ପଦବ୍ରଜ ହିଁ ଆଶ୍ରା; ବାଲେଶ୍ୱରରୁ ଚାଲି ଚାଲି ଯାଇ ହୁଗୁଳିରେ ପହଞ୍ଚିବାକୁ ତାଙ୍କୁ ଦଶ ଦିନ ଲାଗିଥିଲା ।

କିନ୍ତୁ ଦୁର୍ଯୋଗ; ସବୁ ଶ୍ରମ ବ୍ୟର୍ଥ ହୋଇଗଲା । କଲିକତାରେ କୌଣସି ସିପାହି ଗୋଳମାଳ ଉଠିଥିବା ସମ୍ବାଦ ପାଇ ୧୮୫୮ରେ ପିତା ତାଙ୍କୁ କଟକ ଫେରାଇ ନେଲେ । ଉଚ୍ଚଶିକ୍ଷାରେ ଡୋରି ଦିଆହେଲା ।

ତା ପରେ ସେ ଚାକିରି ଅନୁସନ୍ଧାନରେ ଲାଗିଲେ । ପହିଲେ ବାଲେଶ୍ୱର ଜିଲା ସ୍କୁଲରେ ଚାକିରିଟିଏ ମିଳିଲା—ଶିକ୍ଷକତା; ମାସିକ ବେତନ ଟ ୨୦ ଙ୍କା । ଏକାନ୍ତ କର୍ମଠ ଗୌରୀଶଙ୍କରଙ୍କୁ ସ୍ଥିତିଶୀଳ ଶିକ୍ଷକଜୀବନ ସୁଖପ୍ରଦ ବୋଧ ହେଲା ନାହିଁ । ପ୍ରାୟ ଏକ ବର୍ଷ ବାଲେଶ୍ୱରରେ କଟାଇଲା ପରେ ସେ କଟକ କମିସନର ଅଫିସ୍‌ରେ ଜଣେ ଅସ୍ଥାୟୀ ଅମଲାଭାବେ ନିଯୁକ୍ତି ଲାଭ କଲେ । ଅଳ୍ପକାଳ ମଧ୍ୟରେ ସେ କର୍ତ୍ତୃପକ୍ଷଙ୍କ ସୁଦୃଷ୍ଟି ଆକର୍ଷଣ କରିପାରିଥିଲେ, ନିୟମାନୁବର୍ତ୍ତିତା ଓ କର୍ତ୍ତବ୍ୟନିଷ୍ଠା ଯୋଗୁଁ । ଯାହା ଠିକ୍ ବୋଲି ବିଚାରୁଥିଲେ, ସେ କରୁଥିଲେ ।

ତାପରେ ମନିଅର୍ଡର ଏଜେଣ୍ଟ ପଦବୀକୁ ତାଙ୍କୁ ବଦଳି କରାଗଲା । ପୋଷ୍ଟ-ଅଫିସ୍ ନିୟମପାଳନ ପ୍ରତି ତାଙ୍କର କଠୋର ଦୃଷ୍ଟି ଥିଲା । ଉପରିସ୍ଥଙ୍କ ଲାଲ୍‌ଚକ୍ଷୁକୁ ତାଙ୍କର ତିଳାର୍ଦ୍ଧେ ଭୟ ନ ଥିଲା । ଥରେ ସ୍ୱୟଂ ମାଜିଷ୍ଟ୍ରେଟ୍ ସାହେବ ଡିନଟା ବାଜିଗଲା ପରେ ମନିଅର୍ଡର ଲାଗି ପିଅନ ହାତେ ଟଙ୍କା ପଠାଇଲେ । ବେନିୟମ କାମ କରି ପାରିବେ ନାହିଁ ବୋଲି କହି ସେ ପିଅନ୍‌କୁ ଫେରାଇ ଦେଲେ ।

ମାଜିଷ୍ଟ୍ରେଟ୍ ରାଗି କହିଲେ—ମୁଁ ହୁକୁମ୍ ଦେଉଛି, କର । ଗୌରୀଶଙ୍କର ନିର୍ଭୀକ ଭାବେ ଉତ୍ତର ଦେଲେ—ମୁଁ ବେଆଇନ୍ ହୁକୁମ୍ ମାନିପାରିବି ନାହିଁ । ମନିଅର୍ଡର ହେବ ତ ଆପଣ କାଲେ କାଟି କରି ଦିଅନ୍ତୁ ।

ସାହେବ ଏକେଣ୍ଟଙ୍କର କାର୍ଯ୍ୟ ନିଜେ କଲେ, ସେ ଧନର ହିସାବ ଜାଞ୍ଚି ନିଜେ ସଂଶୋଧନ କରିଦେଲେ ।

ଗୌରୀଶଙ୍କର ଏ ନିୟମବହିର୍ଭୂତ କଥା ଉପରିସ୍ଥଙ୍କୁ ଜଣାଇଲେ । ଉପରୁ କଡ଼ା ତାଗିଦ୍ ଆସିଲା । ମାଜିଷ୍ଟ୍ରେଟ୍ କ୍ରୋଧରେ ଥରଥରି ଧମକ୍ ଦେଲେ—ଶୀଘ୍ର ଆସି ମୋ ସହିତ ସାକ୍ଷାତ୍ କର, ନଚେତ୍ ବିଷମ ପରିଣାମ ଭୋଗିବ । ତୁମ ଚାକିରି ଖାଇବି ।

ଗୌରୀଶଙ୍କର ଟିକିଏ ହେଲେ ଡରିଲେ ନାହିଁ । ଏ ବିଷୟ 'ଉତ୍କଳଦୀପିକା' ପତ୍ରିକାରେ ଆଲୋଚନା କଲେ; ସାହେବଙ୍କ ମନରାଗ ମନରେ ମଲା; ସେ ଏଣିକି ସତର୍କ, ସାବଧାନ ହେଲେ ।

କଟକ କଲେକ୍ଟର କଚେରିରେ ଗୌରୀଶଙ୍କର ପ୍ରାୟ ୧୬ ବର୍ଷ କିରାଣି କାର୍ଯ୍ୟ କରିଥିଲେ; ତାପରେ, ତାଙ୍କର ପଦୋନ୍ନତି ହେଲା, ସେ ଏକଶତ ଟଙ୍କା ଦରମାରେ ଅନୁବାଦକ ( ଟ୍ରାନ୍ସଲେଟର ) ଭାବେ ନିଯୁକ୍ତି ଲାଭ କଲେ । ସେ ଦୁଇଟି କାର୍ଯ୍ୟ ଏକାବେଳକେ କରୁଥିଲେ—ସରକାରଙ୍କ ଚାକିରି, ଉତ୍କଳଦୀପିକାର ସମ୍ପାଦନା । ସେ ଚାକିରି କରିଥିଲେ, କିନ୍ତୁ ମୁଣ୍ଡ ବିକିଦେଇ ନ ଥିଲେ । ଉଚ୍ଚ କର୍ମକର୍ତ୍ତାଙ୍କୁ ଖୁସି କରିବା ଲାଗି ସେ କୌଣସି ଦେଶବିରୋଧୀ ବା ଆତ୍ମବିରୋଧୀ କର୍ମ କରୁ ନ ଥିଲେ; ସେ ସ୍ୱାଧୀନ ମନୋବୃତ୍ତିକି ଯେ କୌଣସି ପ୍ରଲୋଭନରେ ବି ବଳି ଦେଉ ନଥିଲେ, ସର୍ବଦା ଆତ୍ମମର୍ଯ୍ୟାଦାର ପତାକା ଉଚ୍ଚକୁ ଟେକି ରଖିଥିଲେ । ସତ୍ୟ ପ୍ରକାଶ ଲାଗି ତାଙ୍କର ତିଳାର୍ଦ୍ଧ ସଙ୍କୋଚ ନଥିଲା । ଫଳରେ ବିଦେଶୀ ସରକାରର ପ୍ରିୟପାତ୍ର ଓ ବିଶ୍ୱାସଭାଜନ ହୋଇ ପାରିଥିଲେ । ଏଣେ ଦେଶୀୟ ମାନରେ ବି ତାଙ୍କ ସ୍ଥାନ ଅତି ଉଚ୍ଚ ଥିଲା । ଦୁଇ ଦିଗକୁ ସମ୍ଭାଳି ଉଭୟର ପ୍ରିୟଭାଜନ ହେବା ସହଜସାଧ୍ୟ ନୁହେଁ । ପ୍ରାୟ ୨୦ ବର୍ଷ ଏହି ପଦବୀରେ ରହି ୧୮୮୨ ଖ୍ରୀଷ୍ଟାବ୍ଦରେ ସରକାରୀ କାର୍ଯ୍ୟରୁ ଗୌରୀଶଙ୍କର ଅବସର ଗ୍ରହଣ କଲେ । ଓଡ଼ିଶାର ତତ୍କାଳୀନ କମିସ୍ ସାହେବ 'ସ୍ୱାମ ସାହେବ' ନାମରେ ସେତେବେଳେ ସର୍ବସାଧାରଣରେ ପରିଚିତ ଥିଲେ । ସେ ଗୌରୀଶଙ୍କରଙ୍କୁ ଦେଖାଇ କହୁଥିଲେ—ସେଇ ଏକା ଜଣେ ମଣିଷ ଭଳି ମଣିଷ ।

ଗୌରୀଶଙ୍କର ଏକାନ୍ତ ସାହିତ୍ୟପ୍ରେମୀ; ପ୍ରାଚୀନ ସାହିତ୍ୟ ଉପରେ ତାଙ୍କର ଦଖଲ ଥିଲା; ପ୍ରିଣ୍ଟିଂ କମ୍ପାନୀରେ ବହି ଏହାର ପ୍ରକାଶ ଓ ପ୍ରଚାର ଦାୟିତ୍ୱ ସେ ବହନ କରିଥିଲେ ଓ ଏହାର ଉପରେ ଭିତ୍ତିକରି ସେ ଓଡ଼ିଆ ସାହିତ୍ୟର ଅସ୍ତିତ୍ୱ ପ୍ରମାଣ କରିଥିଲେ; 'ଇନ୍ଦ୍ରଧନୁ' ଓ 'ବିଜୁଳି' ସଂଗ୍ରାମରେ ସେ ଇନ୍ଦ୍ରଧନୁ ପକ୍ଷ ସମର୍ଥନ କରିଥିଲେ ଓ କେତୋଟି ଉଚ୍ଚକୋଟୀର ପ୍ରବନ୍ଧ ମଧ୍ୟ ଏହି ପତ୍ରିକାରେ ପ୍ରକାଶ

କରିଥିଲେ । କିନ୍ତୁ ସାହିତ୍ୟ ସାଧନା ଲାଗି ସେ ଅବକାଶ ସୃଷ୍ଟି କରିପାରି ନ ଥିଲେ; ସାମ୍ବାଦିକତା ଓ ସମାଜସେବାରେ ହିଁ ତାଙ୍କର ସମସ୍ତ ଶକ୍ତି ନିୟୋଜିତ ହୋଇଥିଲା ।

ପାଦ୍ରିମାନଙ୍କ ସ୍ଥାପିତ ମିସନ ପ୍ରେସ୍ ଖ୍ରୀଷ୍ଟିୟାନ୍ ଧର୍ମପୁସ୍ତକ ଓ ପାଠ୍ୟପୁସ୍ତକ ସବୁ ପ୍ରକାଶ କରୁଥିଲା; ଓଡ଼ିଆ ସାହିତ୍ୟ ପୁସ୍ତକ ଛାପିବାର କୌଣସି ବ୍ୟବସ୍ଥା ନଥିଲା । ବିଚିତ୍ରାନନ୍ଦ ଓ ଜଗନ୍ମୋହନଙ୍କ ସହଯୋଗରେ ୧୮୬୫ ଖ୍ରୀଷ୍ଟାବ୍ଦରେ ପ୍ରିଣ୍ଟିଂ କମ୍ପାନୀ ସ୍ଥାପିତ ହେଲା । କମିସନର ରେଭେନ୍ସା ସାହେବ ଓ ଢେଙ୍କାନାଳ ରାଜା ଭଗୀରଥ ମହେନ୍ଦ୍ର ବାହାଦୁର ଏ ଦିଗରେ ବିଶେଷ ସହାୟକ ହୋଇଥିଲେ ।

ଏକ ଛାପାଖାନା ସ୍ଥାପନ ଏ ଯୁଗର ଏକ ଉଲ୍ଲେଖଯୋଗ୍ୟ ଘଟଣା ନୁହେଁ, କିନ୍ତୁ ସେ କାଳରେ ଏହା ଦେଶୀୟ ଚେଷ୍ଟାର ଏକ ମହନୀୟ ସ୍ୱରୂପଭାବେ ଏକାନ୍ତ ଦୃଷ୍ଟି-ଆକର୍ଷଣକାରୀ ହୋଇଥିଲା, ଆଧୁନିକ ଓଡ଼ିଆ ସାହିତ୍ୟର ମୂଳଦୁଆ ପକାଇଥିଲା, ପ୍ରାଚୀନ ସାହିତ୍ୟକୁ ଅଭିନବ ରୂପରେ ସର୍ବ ସମକ୍ଷରେ ପରିବେଷଣ କରିଥିଲା, ଦେଶର ସ୍ୱରୂପ ରୂପାୟିତ କରି ଏକ ସମ୍ବାଦପତ୍ର ପ୍ରକାଶ ପାଇଥିଲା । କଟକ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ ଦେଶ, ଭାଷା ଓ ସାହିତ୍ୟପ୍ରେମର ଏକ ମହନୀୟ ଦୃଷ୍ଟାନ୍ତ । ଏହାର ମାଧ୍ୟମରେ ହିଁ ଅଭ୍ୟୁଦୟ ଯୁଗର ଶୁଭାରମ୍ଭ ।

ପ୍ରେସ୍‌ଟିଏ ଚଳାଇବା ଏବେପରି ସେତେବେଳେ ସହଜସାଧ୍ୟ ବିଷୟ ନ ଥିଲା । ସିସା ଅକ୍ଷର ତିଆରି ହୋଇ ନ ଥିଲା; ପଥରପଟା ଉପରେ ହାତରେ ଲେଖି ଛାପିବାକୁ ହେଉଥିଲା । ପଥୁଲି ଅକ୍ଷର ଲେଖିବାରେ ଢଗଁରିଥି ଷାଠିଅଙ୍କ ନାମ ସ୍ମରଣୀୟ; ତାଙ୍କ ଲିପି ଅତ୍ୟୁତ୍ତମ ବିବେଚିତ ହେଉଥିଲା । 'ଅକ୍ଷର ଛାପା' ଶୀର୍ଷକରେ ୪-୮-୧୮୬୭ ର 'ଉତ୍କଳଦୀପିକା'ରେ ଗୌରୀଶଙ୍କର ଲେଖିଥିଲେ—"ଆମ୍ଭେମାନେ ବର୍ଷାଧିକ କାଳ ପତ୍ରିକା ପଥର ଛାପାରେ ଚଳାଇ ଆଜଠାରୁ ଅକ୍ଷର ଛାପାରେ ପତ୍ରିକା ଆରମ୍ଭ କଲୁଁ । ପଥରଛାପା ଅକ୍ଷର ପାଠକମାନେ ପଢ଼ିବାକୁ କ୍ଳେଶ ପାଉଥିଲେ । ତାହା ଆମ୍ଭେମାନେ ଜାଣିକରି ମୂଳ୍ୟା ଉପାୟାଭାବରେ ସେଥିର ପ୍ରତିକାର କରିବାକୁ ସକ୍ଷମ ହୋଇ ନ ଥିଲୁଁ । ଏଥର ବୋଧ ହୁଅଇ ସେମାନେ ତାଦୃଶ କଷ୍ଟ ପାଇବେ ନାହିଁ ଓ ଅକ୍ଷର ଛାପାରେ ଆମ୍ଭେମାନେ ଅତ୍ୟଳ୍ପ ଦିନ ହେଲା କାର୍ଯ୍ୟାରମ୍ଭ କରିଥିବାରେ ଯଦ୍ୟପି କି ପ୍ରଥମ ଦୁଇ ତିନି ସଂଖ୍ୟା କର୍ମ ସର୍ବାଙ୍ଗରେ ଉତ୍ତମ ହେବନାହିଁ । ମାତ୍ର ଅଳ୍ପ କାଳରେ ଉତ୍ତମାଂଶ ମୁଦ୍ରାଙ୍କନ ଦ୍ୱାରା ପାଠକ ମହାଶୟଙ୍କୁ ଆହ୍ଲାଦିତ କରିବୁଁ ଭରସା ଅଛୁ ।"

ପ୍ରିଣ୍ଟିଂ କମ୍ପାନୀ ପ୍ରାଚୀନ କାବ୍ୟ, ମହାଭାରତ, ରାମାୟଣାଦି ପୁରାଣ, ଧର୍ମଶାସ୍ତ୍ର, ଓଡ଼ିଆ ପାଞ୍ଜି ପ୍ରକାଶ କରିଥିଲେ । ଗୌରୀଶଙ୍କରଙ୍କ ନେତୃତ୍ୱରେ ଏହି ଅନୁଷ୍ଠାନ

ସୁଶୃଙ୍ଖଳଭାବେ ଚାଲିଥିଲା, ଅଂଶୀଦାରମାନଙ୍କୁ ୫୫ ହଜାର ଟଙ୍କା ଲାଭ ଦେଇ ୪୦ ହଜାର ଟଙ୍କାର ସମ୍ପତ୍ତି ଅର୍ଜନ କରିଥିଲା । ୧୯୧୫ ପର୍ଯ୍ୟନ୍ତ ସେ ଏହା ସହିତ ସମ୍ପୃକ୍ତ ଥିଲେ ।

## ଉତ୍କଳଦୀପିକା

'ଉତ୍କଳ ଭାଷା ପ୍ରାଣ' ଉତ୍କଳ ଦୀପିକା ଗୌରୀଶଙ୍କରଙ୍କ ଜୀବନର ସର୍ବଶ୍ରେଷ୍ଠ କୀର୍ତ୍ତି । ପ୍ରିଣ୍ଟିଂକମ୍ପାନୀ ବସିବାର ପ୍ରାୟ ୧ ବର୍ଷ ପରେ ଅର୍ଥାତ୍ ୧୮୬୫ ଖ୍ରୀଷ୍ଟାବ୍ଦରେ ଏହି ସାପ୍ତାହିକର ଶୁଭାରମ୍ଭ । ପଥର ଅକ୍ଷର ଛାପାରେ ପହିଲେ ଚଉପୃଷ୍ଠା ଓ ସୀସା ଅକ୍ଷର ହେଲାପରେ ଏହା ଆଠ ପୃଷ୍ଠାରେ ପ୍ରକାଶିତ ହେଉଥିଲା । ୧୮୬୬ ସନର ଜାନୁଆରୀ ପହିଲାରୁ ଏହାର ଦ୍ୱିତୀୟ ବର୍ଷର ଗଣନା ହୋଇଥିଲା; ଗୌରୀଶଙ୍କର ଏହାର ପ୍ରଥମ ସମ୍ପାଦକ ନିର୍ବାଚିତ ହୋଇଥିଲେ । ଗ୍ରାହକଙ୍କରେ କୃଚ୍ଛ୍ରପୋଷଣ, ଦୀପିକା ଜରିଆରେ ଦେଶସେବାର ଗୁରୁ ଦାୟିତ୍ୱ ବହନ ଓ ଉଭୟ ମଧ୍ୟରେ ସାମଞ୍ଜସ୍ୟ ରକ୍ଷା ଗୌରୀଶଙ୍କରଙ୍କ ବ୍ୟକ୍ତିତ୍ୱର ଏକ ବଡ଼ ବିଶେଷତ୍ୱ ଥିଲା; ବୃତ୍ତି ବୃତ୍ତିର ପ୍ରତିକୂଳ ହୋଇ ନ ଥିଲା; ପୁଅ ଦାୟରେ ସେ 'ବାରଣ ବଢ଼େଇର ଦାଣ୍ଡ' କେବେ ଭୁଲି ନ ଥିଲେ; ଫଳରେ ଛିଡ଼ାହୋଇ ପାରିଥିଲା ଦୀପିକାରୂପ କୋଣାର୍କ । ପ୍ରାୟ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଏହି ପତ୍ରିକା ନିରବଚ୍ଛିନ୍ନଭାବେ ଚଳାଇବା ନିଶ୍ଚିତଭାବେ ଏକ ଅସାଧ୍ୟ ସାଧନ ।

ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ଜାତୀୟଜୀବନର ଏକ କରୁଣତମ ଅଧ୍ୟାୟ । ଏଥିରେ ଏକ-ତୃତୀୟାଂଶରୁ ଅଧିକ ଲୋକକ୍ଷୟ ଘଟିଥିଲା; ଏହା ଜାତୀୟଜୀବନକୁ ବିପର୍ଯ୍ୟସ୍ତ ଓ ନଷ୍ଟଭ୍ରଷ୍ଟ କରିଦେଇଥିଲା । ଏହି ସର୍ବନାଶୀ ବିପଦ ପ୍ରତି ସରକାର ଓ ସଙ୍ଗତିସମ୍ପନ୍ନ ବ୍ୟକ୍ତିମାନଙ୍କ ଦୃଷ୍ଟି ଆକର୍ଷଣ କରି ଗୌରୀଶଙ୍କର ଲକ୍ଷ ଲକ୍ଷ ଲୋକଙ୍କୁ ମୃତ୍ୟୁ କବଳରୁ ରକ୍ଷା କରିଥିଲେ । ଦୀପିକା ହୋଇଥିଲା ବିପଦର ପ୍ରକୃତ ବାନ୍ଧବୀ, ଅନ୍ଧକାରର ଏକ ଜ୍ୱଳନ୍ତ ଦୀପଶିଖା ।

ଜଳସେଚନ ଉଦ୍ଦେଶ୍ୟରେ କେନାଲ ଖନନ ବ୍ରିଟିଶ୍ ଅମଳର ପ୍ରଥମ କୃଷି-ଉନ୍ନତିମୂଳକ କାର୍ଯ୍ୟ । ମହାନଦୀରେ ନରାଜ ଆନିକଟ, ଜୋବ୍ରାବନ୍ଧ ଓ ମାଛଗାଁ, ତାଳଦଣ୍ଡା କେନାଲାଦିର ସମ୍ବାଦ ଓ ମନ୍ତବ୍ୟ ଦୀପିକା ବହନ କରିଥିଲା । ୧୮୭୪-୭୫ରେ କଟକରେ ପୂର୍ଣ୍ଣାଙ୍ଗ କଲେଜ, ପୁରୁଷୋତ୍ତମରେ ସଂସ୍କୃତ ବିଦ୍ୟାଳୟ, କଟକରେ ନର୍ମାଲ ସ୍କୁଲ ସ୍ଥାପନ, ହିନ୍ଦୁ ବାଳିକା ବିଦ୍ୟାଳୟ, ବିଭିନ୍ନ ଉଚ୍ଚ ଓ ନିମ୍ନ ବିଦ୍ୟାଳୟାଦି ସ୍ଥାପନ ଦ୍ୱାରା ଶିକ୍ଷାର ପ୍ରସାର, ଓଡ଼ିଶା ସ୍କୁଲସମୂହ ନିମିତ୍ତ ଓଡ଼ିଆ ପୁସ୍ତକ ପ୍ରସ୍ତୁତ ଓ

ମୁଦ୍ରଣ, ଉତ୍କଳ ଭାଷାର ଉନ୍ନତି କି ରୂପେ ସମ୍ଭବ, ଉତ୍କଳଭାଷାର ଉନ୍ନତି ପ୍ରତି ସମ୍ବଲପୁରରେ ଓଡ଼ିଆ ଶିକ୍ଷାବିସ୍ତାର, ଉତ୍କଳ ଭାଷା ଚର୍ଚ୍ଚା ସମୀକ୍ଷା ସଭା, ଉତ୍କଳଭାଷାରେ ଶିକ୍ଷା ଦେବାର ବିଧାନ, ଓଡ଼ିଆଭାଷାରେ ଶିକ୍ଷାଦାନର ଆବଶ୍ୟକତା, ଉତ୍କଳଭାଷା ଉଠାଇଦେବାର ଉଦ୍ୟମ, ଗଡ଼ଜାତରେ ଶିକ୍ଷାଦାନ, ଉତ୍କଳଭାଷୋଦ୍ଦୀପନୀ ସଭା, ଉତ୍କଳ ଭାଷାର ପୁନରୁଦ୍ଦୀପନ ପାଇଁ ହୋଇଥିବା ସଭା ଆଦିର ବିବରଣୀ ପ୍ରକାଶ କରି ଓ ଦିଗ୍‌ଦର୍ଶନ ଦେଇ ପତ୍ରିକା ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା ଓ ନବଯୁଗର ଦ୍ୱାର ଉଦ୍‌ଘାଟନ କରିଥିଲା ।

ଓଡ଼ିଶା ସହିତ ସମ୍ବଲପୁରର ମିଶ୍ରଣ, ବାଲେଶ୍ୱର ସହିତ କାନ୍ଥି ସବ୍‌ଡିଭିଜନର ମିଶ୍ରଣ, ଓଡ଼ିଶା ସହିତ ସଂଯୁକ୍ତ ହେବା ଲାଗି ଗଞ୍ଜାମର ଆନ୍ଦୋଳନ, ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଓ ନବୋତ୍କଳ ପ୍ରଦେଶଗଠନାଦିରେ ଦୀପିକାର ନେତୃତ୍ୱ ପ୍ରଶଂସନୀୟ ।

କେଉଁଝରର ଭୂୟାଁ ବିପ୍ଳବ, ଗଡ଼ଜାତର ରାଜା ଓ ମୋଗଲବନ୍ଦୀ ଜମିଦାରଙ୍କ ଅତ୍ୟାଚାର, ଜଳକର ଆଦାୟ ଜୁଲମ୍, ଘାଟ ଅତ୍ୟାଚାର, ବାଣିଜ୍ୟ ବିଭାଗର ଦୁର୍ନୀତି, ପୁଲିସ ଓ ଅବକାରୀ ବିଭାଗର ଅତ୍ୟାଚାର, ହାକିମହୁକୁମଙ୍କ ଶିଥିଳ ଶାସନର କୁତ୍ସିତ ରୂପକୁ ପଦାରେ ପକାଇ ଦେଇଥିଲେ ।

ପଶୁବଳି ନିବାରଣ, ସମାଜର କୁପ୍ରଥାର ଦୂରୀକରଣରେ ଗୌରୀଶଙ୍କରଙ୍କ ସକ୍ରିୟ ଭୂମିକା ପ୍ରଶଂସାଯୋଗ୍ୟ ।

ପୁରାତନ କୀର୍ତ୍ତି-ସଂରକ୍ଷଣ, ଓଡ଼ିଆ ତାଳପତ୍ର ପୋଥି ଭଣ୍ଡାରଣ, କମ୍ପାନୀ ସ୍ଥାପନ, ବିଭିନ୍ନ ସେୟାରଯୁକ୍ତ କମ୍ପାନୀ ସ୍ଥାପନ, ବଣିଘର ନିର୍ମାଣ, ବିଭିନ୍ନ ଚିକିତ୍ସାଳୟ ସ୍ଥାପନ, ଓଡ଼ିଶାରେ ପ୍ରଥମ ରେଳପଥ, ଓଡ଼ିଶାରେ ସୋଲ୍ଟାନ ଲୁଣ ଉପରେ କର, ନବ କଳେବର ଓ ରଥଯାତ୍ରା, ପୁରୀରାଜା ଦିବ୍ୟସିଂହ ଦେବଙ୍କ କଳାପାଣି, ସରକାରୀ କାର୍ଯ୍ୟରେ ଦେଶୀୟ ଲୋକଙ୍କ ନିଯୁକ୍ତି, ନବୀନଚନ୍ଦ୍ର ସେନ, ରଙ୍ଗଲାଲ ବାନୁର୍ଜୀ, ନନ୍ଦକିଶୋର ଦାସ, ଫକୀରମୋହନ, ରାଧାନାଥ, ରେଭେନ୍‌ସା, ବିମ୍ସ ଆଦି ବିଶିଷ୍ଟ ବ୍ୟକ୍ତିଙ୍କ ନିଯୁକ୍ତି, ଓଡ଼ିଆ ଟାଇପ୍ ତିଆରି ଓ ପୋଷ୍ଟକାର୍ଡ ପ୍ରଚଳନ ଆଦି ଧର୍ମ, ଅର୍ଥନୀତି ଓ ଇତିହାସ ଉପଯୋଗୀ ସମ୍ବାଦ ଦୀପିକାରେ ପ୍ରକାଶ ପାଉଥିଲା ।

କଟକରେ ଗୋଟିଏ ସାଧାରଣ ପାଠାଗାର ସ୍ଥାପନ ଲାଗି ଶତାଧିକ ବର୍ଷ ତଳେ ଗୌରୀଶଙ୍କର ଆନ୍ଦୋଳନ ଚଳାଇଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ସ୍ୱାଧୀନତା ଲାଭ, ଉତ୍କଳର ସାଂସ୍କୃତିକ ଅଭ୍ୟୁତ୍‌ଥାନ ପରେ ବି ତାହା ସମ୍ଭବ ହୋଇ ପାରିନାହିଁ ।

ଓଡ଼ିଆ ଭାଷାର ସ୍ୱାର୍ଥରକ୍ଷା ଓ ବିକାଶ ଦିଗରେ ଦୀପିକାର ଭୂମିକା ଅତ୍ୟୁଜ୍ଜ୍ୱଳ । ଆଧୁନିକ ସାହିତ୍ୟର ଆଦ୍ୟ ବିକାଶକାଳ ନାନା ପଡ଼ୋଶୀ ଚକ୍ରାନ୍ତରେ ଧୂମାଚ୍ଛନ୍ନ; ଓଡ଼ିଆ ଭାଷାକୁ ବିନାଶ କରିଦେବା ଥିଲା କେତେକ ଅଦୂରଦର୍ଶୀ, ମୂଢ଼ମତି ବିଦ୍ୱାନଙ୍କର ଅପଚେଷ୍ଟା । ଓଡ଼ିଶାର ଗୌରବମୟ ଇତିହାସ ଓ ସଂସ୍କୃତି ବିଷୟରେ ଅଜ୍ଞ ସେମାନେ, ସ୍ୱାର୍ଥାନ୍ଧ; ଓଡ଼ିଶାର କଲ୍ୟାଣ ନାମରେ ଘୋର ଅକଲ୍ୟାଣ କରୁଥିଲେ; ସେମାନଙ୍କ ଓଡ଼ିଆଭାଷା ଅବଲୋପ ଚେଷ୍ଟା ଫଳବତୀ ହେଲ ନାହିଁ, ଅଂଶତଃ ଗୌରୀଶଙ୍କରଙ୍କ ପ୍ରକାଶେ; ଦୀପିକା ହିଁ ଥିଲା ତାଙ୍କର ବଜ୍ରବାଣ । ପ୍ରାଣମୂର୍ଚ୍ଛା ସଂଗ୍ରାମରେ ସେ ବିପକ୍ଷର ଦୁରାଶାକୁ ଅଙ୍କୁରରେ ହିଁ ବିନଷ୍ଟ କରିଦେଇଥିଲେ । ଗୌରୀଶଙ୍କରଙ୍କ ଅତୁଳନୀୟ ଓଡ଼ିଆ ପ୍ରୀତି ଓଡ଼ିଆ ଜାତି ଚିର ସ୍ମରଣ କରିବ ।

ପାଠ୍ୟ ପୁସ୍ତକର ଅଭାବ ଓଡ଼ିଆ ଭାଷାର ଦୁର୍ଗତିର ମୁଖ୍ୟ କାରଣ ଥିଲା । ଏହି ଅଭାବ ଦୂର କରିବାଲାଗି ସରକାର ପୁରସ୍କାର ଘୋଷଣା କରିଥିଲେ । ଢେଙ୍କାନାଳର ରାଜା ଓଡ଼ିଆ ସାହିତ୍ୟପ୍ରେମୀ ଭଗୀରଥି ମହେନ୍ଦ୍ର ବାହାଦୁର ଓଡ଼ିଶାର ଇତିହାସ ସଙ୍କଳନ ଲାଗି ସରକାରଙ୍କ ଶିକ୍ଷା ବିଭାଗ ହାତରେ କିଛି ଟଙ୍କା ଦେଇଥିଲେ । ସରକାରୀ ଘୋଷଣା ପରେ ପ୍ୟାରୀମୋହନ ଆଚାର୍ଯ୍ୟ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ସଚ୍ଚିଦାନନ୍ଦ ଦାସ, ଜଗନ୍ମୋହନ ଲାଲ, ଫକୀରମୋହନ ସେନାପତି, ଦୁଃଖୀକର ବିଦ୍ୟାରତ୍ନ, କପିଳେଶ୍ୱର ବିଦ୍ୟାଭୂଷଣ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଦ୍ୱାରକାନାଥ ଚକ୍ରବର୍ତ୍ତୀ ଓ ଗୌରୀଶଙ୍କର ରାୟ ଓଡ଼ିଆ ପାଠ୍ୟପୁସ୍ତକ ରଚନା ଦିଗରେ ବ୍ରତୀ ହୋଇଥିଲେ । ପାଠ୍ୟପୁସ୍ତକ ପ୍ରକାଶ ପରେ ଓଡ଼ିଶାରେ ବଙ୍ଗଳା ସ୍ଥାନରେ ଓଡ଼ିଆ ଚଳାଇବା ସମ୍ଭବ ହୋଇଥିଲା, ସରକାରୀ ଆଦେଶ ବି ମିଳିଥିଲା । କିନ୍ତୁ ସେତେବେଳେ ସ୍କୁଲମାନଙ୍କରେ ଅଧିକାଂଶ ଶିକ୍ଷକ ଥିଲେ ବଙ୍ଗାଳୀ; ଓଡ଼ିଆ ସାହିତ୍ୟରେ ପାରଙ୍ଗମତାର ଅଭାବ ସେମାନଙ୍କୁ ବିବ୍ରତ କଲା; ଓଡ଼ିଆଭାଷା ପ୍ରଚଳନରେ ସେମାନେ ହେଲେ ମୁଖ୍ୟ ଅନ୍ତରାୟ; ସେ ଆନ୍ଦୋଳନକୁ ପ୍ରତ୍ୟକ୍ଷ ପ୍ରୋତ୍ସାହିତ ପ୍ରଦାନ କଲେ ରାଜେନ୍ଦ୍ରଲାଲ୍ ମିତ୍ରଙ୍କପରି ପଣ୍ଡିତ । ଓଡ଼ିଆଙ୍କ ପ୍ରକୃତ ସମସ୍ୟାକୁ ଏଡ଼ିଦେଇ ଶ୍ରୀମିତ୍ର ଏକ ଭାଷଣରେ କହିଥିଲେ—

"ଉତ୍କଳର ହିତାକାଂକ୍ଷୀ ଯେ ହେବେ, ସେ ସର୍ବାଗ୍ରେ ଉତ୍କଳଭାଷା ଉଠାଇଦେଇ ବଙ୍ଗଳା ଭାଷା ପ୍ରଚଳନ କରିବାର ଚେଷ୍ଟା କରିବେ । କାରଣ ଯେତେକାଳ ଉତ୍କଳ ଭାଷା ଉଠିଯାଇ ନାହିଁ ସେତେକାଳଯାଏ ଉତ୍କଳର ଉନ୍ନତି ହେବା ଅସମ୍ଭବ ।"

ତାଙ୍କ ସଙ୍କୀର୍ଣ୍ଣ କଳନାରେ ଓଡ଼ିଶାର ଆୟତନ କ୍ଷୁଦ୍ର, ଲୋକସଂଖ୍ୟା ମାତ୍ର ୨୦ ଲକ୍ଷ । ସେଥିରୁ ସ୍ତ୍ରୀ, ପିଲା ବାଦ୍ ଦେଲେ ୧୦।୧୨ ଲକ୍ଷ ଓଡ଼ିଆ ଭାଷା ଜାଣିବା

ସମ୍ଭବ । ଏତକ ଲୋକ କ ଏକ ସ୍ୱତନ୍ତ୍ର ଭାଷା ରକ୍ଷିପାରନ୍ତି ? ଓଡ଼ିଆ ସ୍ୱଳ୍ପ; ଖଣ୍ଡି ଏ ପୁସ୍ତକ ଛପାଇ ବର୍ଷରୁ ତାର ମୂଲ୍ୟଙ୍କ ଉଠାଇବା ଅସମ୍ଭବ । ତେଣୁ ବଙ୍ଗଳାରେ ଦଶ ସହସ୍ରକ ପୁସ୍ତକ ମୁଦ୍ରିତ ହେଉଥିବା ସ୍ଥଳେ ଓଡ଼ିଆରେ ଦଶ ଶହ ଖଣ୍ଡରୁ ଅଧିକ ମୁଦ୍ରିତ ହୋଇପାରୁ ନାହିଁ । ଏ ଅବସ୍ଥାରେ ଓଡ଼ିଆ ଭାଷାର ଉନ୍ନତି କରାଯାଇ ନପାରେ ।

ଏହି ବକ୍ତବ୍ୟର ତୀବ୍ର ପ୍ରତିବାଦ କରି ୧୮୬୪ ଖ୍ରୀଷ୍ଟାବ୍ଦରେ ଗୌରୀଶଙ୍କର ଦୀପିକାରେ ଲେଖିଥିଲେ—

"ଯାହାର ଯେଉଁ ବିଷୟରେ ଜ୍ଞାନ ନାହିଁ ତାହାର ସେହି ବିଷୟରେ କୌଣସି କଥା କହିବା ଅନୁଚିତ ଅଟଇ । ପ୍ରକୃତରେ ଦେଖାଯାଏ ଯେ ଉତ୍କଳଭାଷା ପ୍ରଚଳିତ ଥିବା ଭୂମିର ଆୟତନ ବଙ୍ଗଳା ପ୍ରଚଳିତ ଥିବା ଦେଶରୁ ଊଣା ନୁହଇ, ଅତଏବ ଉତ୍କଳଭାଷାର ଉନ୍ନତି ହେବାର ସମ୍ଭାବନା ଅଛି ।"

ଓଡ଼ିଶା ବର୍ତ୍ତମାନ ବିଚ୍ଛିନ୍ନ ହୋଇ ବିଭିନ୍ନ ପ୍ରଦେଶରେ ମିଶିଛି । ଓଡ଼ିଆ ଭାଷା ଅନାଥେଣ୍ଡିଆ କାଙ୍ଗାଳି ବାଡ଼ ପ୍ରାପ୍ତ ହୋଇଅଛି । ଉତ୍କଳଭାଷା ଦୁଃଖ ଘରର କୁଣିଆ ହୋଇ ଓପାସେ ଶୋଇଅଛି । କେହି ଏହାର ଚର୍ଚ୍ଚା କରିବାକୁ ନାହିଁ । ତାଙ୍କ ବିଚାରରେ ଏହି ଅବସ୍ଥା ସବୁକାଳେ ରହିବ ନାହିଁ, ଏ ଅଧୋଗତି ସାମୟିକ ମାତ୍ର ।

ଉମାଚରଣ ହାଲ୍‌ଦାର 'Star' ପତ୍ରିକାରେ ଏକ ଦୀର୍ଘ ପ୍ରବନ୍ଧ ଲେଖିଥିଲେ, ତାର ମର୍ମ—"ଏଣିକି ଓଡ଼ିଆ ଭାଷାର ପୁସ୍ତକ ବଙ୍ଗାକ୍ଷରରେ ଛପାହେବା ଆବଶ୍ୟକ । ତାହେଲେ ବଙ୍ଗଳା ଓ ଓଡ଼ିଆ ଲୋକେ ଓ ସାହେବମାନେ ଓଡ଼ିଆ ଭାଷା ସହଜରେ ଶିଖି ପାରିବେ ।"

ଦୀପିକା ଏ ସମ୍ପର୍କରେ ନିମ୍ନ ବ୍ୟଙ୍ଗାତ୍ମକ ମନ୍ତବ୍ୟ ପ୍ରକାଶ କରିଥିଲେ— "ହାଲ୍‌ଦାର ବାବୁଙ୍କୁ ଜଣେ ଉତ୍କଳର ହିତୈଷୀ ବୋଲିବାକୁ ହେବ । ପ୍ରଧାନ ପ୍ରଶ୍ନ ଏହିକି ଯେବେ ବଙ୍ଗଳା କଲମ ଓ ସିହାଇରେ ଉତ୍କଳାକ୍ଷର ଲେଖା ହେଲା ତେବେ ବଙ୍ଗଳା ଅକ୍ଷରରେ କିମ୍ପାଇଁ ଲେଖା ନ ହେବ ? ଅସ୍ମଦ୍ ଦେଶୀୟ ପାଠକମାନେ ଯେବେ କାଗଜ କଲମ ସିହାଇର ସୃଷ୍ଟି ବିଷୟ ନ ଜାଣନ୍ତି ତେବେ ସ୍ମରଣ ରଖନ୍ତୁ ଯେ ଏ ସମସ୍ତ ବଙ୍ଗଳାରୁ ଜାତ ହୋଇଅଛି ।"

ଓଡ଼ିଆ ଅକ୍ଷର ବିକୃତ, ତେଣୁ ବର୍ଜନୀୟ; ହାଲ୍‌ଦାରଙ୍କ ଏହି ଉକ୍ତିରେ ଗୌରୀଶଙ୍କର ଏହି ମନ୍ତବ୍ୟ ଦେଇଛନ୍ତି—

"ଓଡ଼ିଆ ଓ ବଙ୍ଗଳା ଅକ୍ଷର ସବୁକୁ ବାନ୍ଧୁ ମନୋରଞ୍ଜନ ପୂର୍ବକ ପରୀକ୍ଷା ଓ ତୁଳନା କରି ଦେଖିଲେ ଯେ ବଙ୍ଗଳା ଅକ୍ଷର ବଡ଼ ଶୋଭା ପାଉଅଛି, ଏହା ତାହାଙ୍କ ଗଜମୁକ୍ତା ହାରରେ ଖଚିତ ୯ଶତ ପଦକ ପ୍ରାପ୍ତ ବଡ଼ ଜାଜ୍ୱଲ୍ୟମାନ ଦିଶିଲା । ଅଥବା ବାବୁଙ୍କର ବୈଷ୍ଣବ ଭାବ ଉଦୟ ହୋଇଥିବ ଯେ ତ୍ରିଭଙ୍ଗ ରୂପ ଦେଖି ଗୋପ କନ୍ୟାଙ୍କର କଥା ଅକସ୍ମାତ୍ ମନରେ ପଡ଼ିବାରୁ ପ୍ରେମରେ ମୂର୍ଚ୍ଛି ହୋଇଗଲେ । ଯେବେ ଏପରି କିଛି ନ ହୋଇଥିବ, ତେବେ ବାବୁ କାହିଁକି ଏ ଦୁଇ ଅକ୍ଷରକୁ ଦେଖି ଦେଖି ବଙ୍ଗଳାକୁ ସୁନ୍ଦର ମନେକରି ହଠାତ୍ ଚମକି ପଡ଼ି କହିଲେ ଯେବେ ବଙ୍ଗଳା ଅକ୍ଷର ଏତେ ସୁନ୍ଦର ତେବେ ଓଡ଼ିଆ ଭାଷା କାହିଁକି ଏଥିରେ ଲେଖା ନ ହେବ ? 'ନବଗୁଞ୍ଜର' ଛନ୍ଦ ନାମରେ ଏକ ବ୍ୟଙ୍ଗାତ୍ମକ ସଙ୍ଗୀତ ପତ୍ରିକାରେ ପ୍ରକାଶ ପାଇଥିଲା—

"ସଙ୍ଗାତ, କି ଶୁଣିଲୁ ଅଚମ୍ଭିତ
ନାହିଁ ଏଥି କଳି ଆଚମ୍ଭିତ କେ
ଓଡ଼ିଆ ପାଇଁକି ଯାହାଙ୍କ ଚେଷ୍ଟା
କରମ ବାଟିଯା ହେଲା
ବଣାକଲ ତାଙ୍କୁ ଓଡ଼ିଆ ଅକ୍ଷର
ଭାଷା ଅଡୁଆ କରିଲରେ ।
ଶିଖି ନାନା ଜନ ବୋଲନ୍ତି ପୁରାଣ
ବୁଦ୍ଧି ହୋଇଛି ନବାଡ଼
ଏ କି ହଟହଟା ଅକ୍ଷର କେତେଟା
ମଣ୍ଡୁଛନ୍ତି କଣ୍ଟାବାଡ଼ ରେ ।
ଟାଣପଣେ ଜଣେ ପିନ୍ଧାଣ ଖଣ୍ଡିରୁ
ଯତନେ ପିନ୍ଧାଣ ଫେଡ଼ି
ବଙ୍ଗଳା ଅକ୍ଷରେ ଓଡ଼ିଆ ଲେଖିବା
ବାଧ୍ୟକ ଦେଇଛି ଇଡ଼ରେ ।
ପାଇ ଏ ବିଧାନ ଗୁରୁଙ୍କ ପ୍ରଧାନ (ଅଧ୍ୟାପକ)
କରୁଛନ୍ତି କେତେ ନାଟ
ତା ଦେଖି ମୁଁ ଭାଳେ ପରଚକ୍ରୁ ଦେଲେ
କଣାକୁ ଦିଶିବ ବାଟ ରେ ।"

ସ୍କୁଲମାନଙ୍କରେ ଉଭୟ ବଙ୍ଗଳା ଓ ଓଡ଼ିଆ ପଢ଼ାଇବାକୁ ସରକାରୀ ଆଦେଶ ଥିଲା; କିନ୍ତୁ ବାଲେଶ୍ୱର ଜିଲା ସ୍କୁଲ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ

ପକ୍ଷେ ଓଡ଼ିଆ ପଢ଼ାଇବା କାଠିକର ପାଠ ଥିଲା । ଅଜ୍ଞାନତା କାଳେ ପଦାରେ ପଡ଼ିଯିବ, କାନ୍ତିଚନ୍ଦ୍ର ଶଙ୍କିତ ହେଲେ; 'ମୂର୍ଖ ମାଇଲେ ଫିଟ ସର' ହେଲା ତାଙ୍କର ବିଚାର; ଏହାର ଅନ୍ୟ ନାମ ବିଭ୍ରାଟ; ସହସ୍ର ବର୍ଷ ଧରି ପ୍ରଚଳିତ ଗୋଟାଏ ସମୃଦ୍ଧ ଭାଷାକୁ ଏଭଳି ଶୀଘ୍ରରେ ବିଲୁପ୍ତ କରାଯାଇ ନ ପାରେ । କିନ୍ତୁ କାନ୍ତିଙ୍କ ମୁଣ୍ଡରେ ଭୂତ ପଶିଥିଲା; ସେଥିରୁ ବାହାରିଲା 'ଉଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' ପୁସ୍ତକ । ପଣ୍ଡିତଙ୍କ ଯୁକ୍ତି— ବଙ୍ଗଳା ଗୋଟିଏ ବିଶୁଦ୍ଧ ଭାଷା, ଓଡ଼ିଆ ତାର ବିକୃତ ରୂପାନ୍ତର । ବିକୃତ ଭାଷା ନ ପଢ଼ି ଶୁଦ୍ଧ ଭାଷା ପଢ଼ିବା ଦେଶ ପକ୍ଷରେ କଲ୍ୟାଣକର । ପ୍ରକୃତ ପକ୍ଷେ କାନ୍ତିଙ୍କର ମସ୍ତିଷ୍କ ହିଁ ବିକୃତ ଥିଲା; ଓଡ଼ିଆ ଭାଷାର ସ୍ୱତନ୍ତ୍ର ଅସ୍ତିତ୍ୱ ଅସ୍ୱୀକୃତ ହେବା ଫଳରେ ଏକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା; ଆଧୁନିକ ସାହିତ୍ୟ ସୃଷ୍ଟି ଓ ପ୍ରାଚୀନ ସାହିତ୍ୟ ପ୍ରକାଶ ଲାଗି ଏହା ଯୋଗାଇଥିଲା ଜ୍ୱଳନ୍ତ ଉଦ୍ଦୀପନା ।

ଗୌରୀଶଙ୍କର ଉତ୍କ୍ଷିପ୍ତ ହୋଇ ଦୀପିକାରେ ଲେଖିଥିଲେ—"କେବଳ କେତେକ ସୌସାଦୃଶ୍ୟ ହେତୁରୁ ଯେବେ ଦୁଇ ବା ଅଧିକ ଭାଷାକୁ ଏକ ବୋଲିଯାଇ ପାରେ ତେବେ କେହି ଉଡ଼ିଆରୁ ହିନ୍ଦୀ ବା ବଙ୍ଗଳା ବାହାରି ଥିବାର କହିଲେ ଦୋଷ ହେବନାହିଁ । ମାତ୍ର ଉଡ଼ିଆମାନେ ତାହାଙ୍କୁ ଏତେ ଅହଙ୍କାର କରନ୍ତି ନାହିଁ । ଅଥଚ ବିଚାର କଲେ ଏମାନଙ୍କର ଅହଙ୍କାର କରିବାର ଅନେକ କାରଣ ଅଛି । ଓଡ଼ିଶାର କୀର୍ତ୍ତି-କଳାପ ବଙ୍ଗଳାରେ ନାହିଁ । ଓଡ଼ିଶାର ରାଜା ଏକ ସମୟରେ ବଙ୍ଗଳାର ତ୍ରିବେଣୀ ପର୍ଯ୍ୟନ୍ତ ଅଧିକାର କରିଥିଲେ । ବଙ୍ଗଳାର କୌଣସି ରାଜା କେବେ ଓଡ଼ିଶାକୁ ଜୟ କରିବାର ଶୁଣା ନାହିଁ । ଅତଏବ ବଳବୀର୍ଯ୍ୟ ଓ ଶିଳ୍ପ କୌଶଳରେ ଓଡ଼ିଶାର ପୂର୍ବ-କାଳୀୟ ଲୋକ ବଙ୍ଗଳାରୁ ଶ୍ରେଷ୍ଠ ଥିବା ପ୍ରତ୍ୟକ୍ଷ ଭାଷା କିମନ୍ତେ ଅନ୍ୟଠାରେ ଋଣୀ ହୋଇଥିଲେ ଏହା କଦାଚ ସମ୍ଭବ ନୁହେ, ବରଂ ଓଡ଼ିଶାର ଭାଷା କେତେକ ବଙ୍ଗଳାରେ ଚଳିବାର ଅନୁମାନସିଦ୍ଧ ଅଟେ ।"

"ବିଶେଷରେ ଓଡ଼ିଆରେ ଯେତେ ପ୍ରାଚୀନ ଗ୍ରନ୍ଥ ଅଛି ବଙ୍ଗଳାରେ ତେତେ ନାହିଁ । ମାଗିଆଣିଲା ଧନରେ କି କୁଟୁମ୍ବ ପୋଷାଯାନ୍ତି ?"

"କେତେ ମୂର୍ଖପଣିଆ, ପୁଣି ସାହସ ମଧ୍ୟ କେତେ, ସଂସ୍କୃତ, ପାରସୀ, ଓ ହିନ୍ଦୀ ଶବ୍ଦମାନଙ୍କୁ ବଙ୍ଗଳା ବୋଲି ଅନାୟାସରେ ପରିଚୟ ଦେଇ ଅଛନ୍ତି ।"

ଦୀପିକା, ୨୭।୨।୧୮୭୦

"ଗ୍ରନ୍ଥକାର ଯଦି ପକ୍ଷପାତଶୂନ୍ୟ ହୋଇ ବିଚାର କରିବାକୁ ଚେଷ୍ଟା କରି-ଥାନ୍ତେ ତେବେ ଜାଣିପାରନ୍ତେ ଯେ ବର୍ତ୍ତମାନ ବଙ୍ଗଳା ଓ ଉଡ଼ିଆରେ ଯେଉଁ

ପୁସ୍ତକାଦ ରଚିତ ହୋଇଅଛୁ ତନ୍ମଧ୍ୟରେ ଅଧିକ ସଂସ୍କୃତ ଶବ୍ଦ ମିଶ୍ରିତ ହୋଇଥିବାରୁ ଏ ଦୁହିଁଙ୍କର ବହୁତର ସମତା ଦେଖାଯାଏ । ସୁତରାଂ ଏ ଦୁଇ ଭାଷାକୁ ପୃଥକ୍ ବୋଲିବାକୁ ହେବ ଓ କାନ୍ତିବାକୁ ଯେତେ ପୁସ୍ତକ ରଚନା କରନ୍ତୁ ଦୁଇ ଭାଷା କଦାଚ ଏକ ହୋଇ ନ ପାରିବ ।''

''ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହଇ,'' ଜ୍. ଦୀ.

୩।୪।୧୮୭୦

ନିଜ ମତକୁ ଦୃଢ଼ତର କରିବା ଲାଗି ଗୌରୀଶଙ୍କର ଏ ସମ୍ପର୍କରେ 'କାଳକାନ୍ତା-ଶବ୍ଦ୍ୟ'ର ମତ ଉଦ୍ଧାର କରିଛନ୍ତି । ଏହା ହିଁ ତାଙ୍କ ଏ ବିଚରେ ସିଦ୍ଧାନ୍ତ ଆଡ଼କୁ ଘେନିଯାଇଅଛୁ—

''ପୁସ୍ତକର ଭୂମିକାରେ ପ୍ରକାଶ ଯେ ଓଡ଼ିଶାକଚେହେରୀସମୂହରେ ବଙ୍ଗଳା ପରିବର୍ତ୍ତିରେ ଓଡ଼ିଆ ଭାଷା ପ୍ରଚଳିତ କରିବାରେ କମିସନର ଓ ସିଦନାରୀମାନେ ଭ୍ରମରେ ପଡ଼ିଅଛନ୍ତି । କାରଣ ଏ ଦୁଇ ଭାଷାକୁ ସେମାନେ ପୃଥକ୍ ଜ୍ଞାନ କରନ୍ତି । ତଦନୁସାରେ ଲେଖକ ଓଡ଼ିଆ ସ୍ୱତନ୍ତ୍ର ଭାଷା ନ ଥିବା ଓ ତାହା ବଙ୍ଗଳାର ଅପଭ୍ରଂଶ ମାତ୍ର ଥିବାର ପ୍ରମାଣ କରିବାକୁ ଚେଷ୍ଟା ପାଇଅଛନ୍ତି । ମାତ୍ର ଆମ୍ଭମାନଙ୍କ ବିବେଚନାରେ ସେ କୃତକାର୍ଯ୍ୟ ହୋଇନାହାନ୍ତି । ତାହାଙ୍କର ମତ ସମର୍ଥନ ପାଇଁ ସେ ଗୋଟିଏ ମାତ୍ର ହେତୁ ଦର୍ଶାଇ ଅଛନ୍ତି । ତାହା ଏହି ଯେ ଅନେକ ବଙ୍ଗଳା ଓ ଓଡ଼ିଆ ଶବ୍ଦ ଏକା ପ୍ରାପ୍ତ ଅଟଇ । କିନ୍ତୁ ଏ କଥା ବଙ୍ଗଳା ଓ ଗୁଜୁରାଟୀ ପକ୍ଷରେ ମଧ୍ୟ କୁହାଯାଇପାରେ ଓ ଆମ୍ଭେମାନେ ଆପେ ଆପେ ଅନୁଭବ କରି କହୁଅଛୁଁ ଯେ ଜଣେ ସୁଶିକ୍ଷିତ ବଙ୍ଗାଳୀ ଗୁଜୁରାଟୀର ଗୋଟିଏ ଅକ୍ଷର ସୁଦ୍ଧା ନ ଜାଣି ଉକ୍ତ ଭାଷାର ଦଶାଂଶର ନ ଅଂଶ ବୁଝିପାରିବ ମାତ୍ର ଏଥିପାଇଁ କି କେହି ଗୁଜୁରାଟୀ କି ବଙ୍ଗଳାକୁ ଏକ ବୋଲି ଅନୁମାନ କରନ୍ତି ? ପ୍ରକୃତ କଥା ଏହି ଯେ ଓଡ଼ିଆ, ବଙ୍ଗଳା, ଗୁଜୁରାଟୀ ଓ ଅନ୍ୟ ଭାଷାମାନ ସଂସ୍କୃତରୁ ଉଦ୍ଭବ ହୋଇଥିବାରେ ସେହି ହେତୁରୁ ତାହାଙ୍କର ସୌସାଦୃଶ୍ୟ ଅଛୁ । ଆମ୍ଭେମାନେ ବୋଧ କରୁଁ କି ଯେମନ୍ତ ତଳ ଉଚ୍ଚ ଭାଷା ଉପର ଉଚ୍ଚ ଭାଷାର ଅପଭ୍ରଂଶ ନୁହଇ ସେହି ରୂପ ଓଡ଼ିଆ ବଙ୍ଗଳାର ଅପଭ୍ରଂଶ ନୁହଇ । ଯେବେ କି ଓଡ଼ିଆ ଶବ୍ଦ ବଙ୍ଗଳା ହୁଅଇ ( ଆମ୍ଭେମାନେ ଏ କଥା ସ୍ୱୀକାର କରିନାହୁଁ ) ତେବେ ହେଁ ଗଭର୍ଣ୍ଣମେଣ୍ଟ ଏହାକୁ ଓଡ଼ିଶା ଅଦାଲତସମୂହର ଭାଷା କରିବାରେ ଯଥାର୍ଥ ବିଚାର କରିଅଛନ୍ତି । କାରଣ ଏହା ମନ୍ଦ ବଙ୍ଗଳା ହେଲେ ମଧ୍ୟ ଓଡ଼ିଶା ପ୍ରତି ଭଲ ଭାଷା ଅଟଇ ଏବଂ ଓଡ଼ିଶାର ତିନ କୋଟି ଲୋକ କେବଳ ଏ ଭାଷାରେ କଥାବାର୍ତ୍ତା କରନ୍ତି ଏମନ୍ତ ନୁହେ । ଏ ଭାଷାରେ ପୂର୍ବର ଅନେକ ସାହିତ୍ୟଗ୍ରନ୍ଥ ରଚନା ହୋଇଅଛୁ ଓ ଦିନ ଦିନ ରଚନା ବୃଦ୍ଧି ହେଉଅଛୁ ।

ଅତଏବ ଓଡ଼ିଶାର ଲୋକଙ୍କୁ ବଳପୂର୍ବକ ବଙ୍ଗଳା ଶିକ୍ଷା ଦେଲେ ଗଭର୍ଣ୍ଣମେଣ୍ଟ ସେହି ପ୍ରାୟ ଅନ୍ୟାୟ କରନ୍ତେ କି ଯେମନ୍ତ ପ୍ରସିଆ ଗଭର୍ଣ୍ଣମେଣ୍ଟ ଉପର ଉତ୍ତର ଉଚ୍ଚଭାଷା ହୋଲ୍‌ଷ୍ଟାନର ପ୍ରଚାର ବିଷୟରେ ଅନ୍ୟାୟାଚରଣ କରିଥିଲେ ।"

ଆତ୍ମପକ୍ଷ ସମର୍ଥନ କରୁଥିବାରୁ ସେ ଏଡ୍‌କେସନ ଗେଜେଟର ମତ ମଧ୍ୟ ଉଦ୍ଧାର କରିଅଛନ୍ତି; ଏହାର ସମ୍ପାଦକ ବଙ୍ଗଦେଶବାସୀ, ଶିକ୍ଷା ବିଭାଗର ଜଣେ ବିଶିଷ୍ଟ କର୍ମଚାରୀ ଓ ବିଶିଷ୍ଟ ପଣ୍ଡିତ । ସ୍କୁଲ ଇନସପେକ୍ଟର ଥିବାରୁ ବିଭିନ୍ନ ଅଞ୍ଚଳର ଭାଷା ବିଷୟରେ ଅଭିଜ୍ଞ । ଓଡ଼ିଆର ପକ୍ଷପାତୀ ହେବାର ମଧ୍ୟ ବିଶେଷ କିଛି କାରଣ ନାହିଁ ।

"ଫଳତଃ ଆମ୍ଭମାନଙ୍କ ବିବେଚନାରେ ସେ ଯେଉଁ ପ୍ରଣାଳୀରେ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ' ପ୍ରମାଣ କରିଅଛନ୍ତି ସେ ପ୍ରଣାଳୀ ଅବଲମ୍ବନ କଲେ ଓଡ଼ିଆ କାହିଁକି ହିନ୍ଦୀ ମଧ୍ୟ ସ୍ୱତନ୍ତ୍ର ଭାଷା ନୁହେ ଏ କଥାର ସୁପ୍ରମାଣ ହୋଇପାରେ । ବଙ୍ଗଳା ଓ ଓଡ଼ିଆ ଭାଷାରେ ଯେପରି ଅନେକ ମେଳ ଅଛି ହିନ୍ଦୀ ଓ ବଙ୍ଗଳାରେ ମଧ୍ୟ ସେହିପରି ମେଳ ଦେଖାଯାଏ ।"

"କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଅବଲମ୍ବିତ ବିଚାର ପଦ୍ଧତିକୁ ଯଦି ସତ୍ ପଦ୍ଧତି ବୋଲି ଗ୍ରହଣ କରାଯାଏ ତେବେ ଯେପରି ଓଡ଼ିଶା ଦେଶରେ ବଙ୍ଗଳା ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇଅଛି, ସେହିପରି ବଙ୍ଗଳା ଓ ଓଡ଼ିଶା ଉଭୟ ଦେଶରେ ହିନ୍ଦୀ ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇପାରେ ଅଥବା ସମୁଦାୟ ଆର୍ଯ୍ୟାବର୍ତ୍ତରେ ଏକ ବଙ୍ଗ ଭାଷା ବା ଏକ ଓଡ଼ିୟା ଭାଷା ବା ଏକ ଆସାମୀ ଭାଷା କିମ୍ବା ହିନ୍ଦୀ ଭାଷା ପ୍ରଚଳିତ ହେବା ଉଚିତ ବୋଲି ମଧ୍ୟ ପ୍ରତିପନ୍ନ ହୋଇପାରେ ।"

"ସେ ଯେଉଁ ସ୍ଥଳରେ ଓଡ଼ିୟା ଓ ବଙ୍ଗଳାର ମେଳ ଦେଖିଛନ୍ତି ସେ ସ୍ଥଳେ ଦୁହିଙ୍କି ବଙ୍ଗଳା ବୋଲିଅଛନ୍ତି । ଯେଉଁ ସ୍ଥଳେ ଭିନ୍ନ ରୂପ ଦେଖିଅଛନ୍ତି ସେ ସ୍ଥଳରେ ଓଡ଼ିୟାକୁ ବିଶୁଦ୍ଧ ବଙ୍ଗଳାର ଅପଭ୍ରଂଶ ବୋଲିଅଛନ୍ତି, ଏହି କି ବିଚାରର ରୀତି ? ଯେଉଁ ସ୍ଥଳରେ ଦୁହିଙ୍କର ମେଳ ସେ ସ୍ଥଳରେ ବଙ୍ଗଳା କାହିଁକି ବିଶୁଦ୍ଧ ଓଡ଼ିୟାର ଅପଭ୍ରଂଶ ନହେଲା ? ଏହି ଅପଭ୍ରଂଶ ଶବ୍ଦ ମାତ୍ର ମହାଅନର୍ଥକର । କିଏ କାହାର ଅପଭ୍ରଂଶ କି ନା ଏହା ବିଚାର କରିବା ଆବଶ୍ୟକ ଥିଲା ।

( ୩୦।୪ ୧୮୭୦, ଉ. ଦୀ, ସଂଖ୍ୟା ୧୮ )

ପରଶେଷରେ ଗୌରୀଶଙ୍କର ନମ୍ର ସିଦ୍ଧାନ୍ତରେ ଉପନୀତ ହୋଇ ଏହି ଅଶ୍ଲାଘ୍ୟ ସଂଗ୍ରାମର ସଙ୍କଳ୍ପନୋଚିତ ଅବସାନ ଘଟାଇଛନ୍ତି—

"ବସ୍ତୁତଃ ଓଡ଼ିଆ ବଙ୍ଗଳାର ଅପଭ୍ରଂଶ ନୁହେଁ ଏବଂ ବଙ୍ଗଳା ମଧ୍ୟ ଓଡ଼ିଆର ଅପଭ୍ରଂଶ ନୁହେ । ବଙ୍ଗଳା, ଓଡ଼ିଆ ଓ ଆସାମୀ ଏକ ମୂଳରୁ ସମୁତ୍ପନ୍ନ ଏକ ବୃକ୍ଷର ଭିନ୍ନ ଭିନ୍ନ ଶାଖା ସ୍ୱରୂପ, ଏକ ପ୍ରସୂତିର ଭିନ୍ନ ଭିନ୍ନ ସନ୍ତତି ମାତ୍ର । ମୂଳ ବୃକ୍ଷ କାଳ ସହକାରରେ ଲୋପ ପାଇଅଛି । ଶାଖାଗଣ ଆପଣା ଆପଣା ଅନ୍ତର୍ନିହିତ ଶକ୍ତି ପ୍ରଭାବରେ ପରସ୍ପରର ନିରପେକ୍ଷ ହୋଇ ପ୍ରାଣ ଧାରଣ କରିଅଛନ୍ତି । ଏମାନଙ୍କୁ ବଳପୂର୍ବକ ଏକ ଶରୀରରେ ପରିଣତ କରିବାକୁ ଚେଷ୍ଟା କଲେ ବୃଥା ପ୍ରଯତ୍ନ ହେବ । ଜୀବନସ୍ରୋତ ଯେ ଦ୍ୱିଧା ହୋଇ ପ୍ରବାହିତ ହେଉଅଛି ତାହା ଆଉ ମିଳିବାର ନୁହେ । ସେ ମିଳିବାର ସମୟ ଯାଇଅଛି । ଯେବେ ବଙ୍ଗଳା ଓ ଓଡ଼ିଆ ମିଳିବାର ହୋଇଥାନ୍ତା ଏମାନଙ୍କର ଶୈଶବାବସ୍ଥାରେ ସେ ମେଳ ଘଟିଥାନ୍ତା । ବର୍ତ୍ତମାନ ଏ ଦୁହେଁ ସମଧିକ ପରିପୁଷ୍ଟ ଓ ସ୍ୱାଧୀନଭାବରେ ପ୍ରାଣଧାରଣର ଉପଯୋଗୀ ଅଙ୍ଗ ପ୍ରତ୍ୟଙ୍ଗ ଭୂଷିତ ହୋଇଅଛନ୍ତି । ଏତେବେଳେ ଏମାନଙ୍କର କାହାକୁ ବଳପୂର୍ବକ ଅଦାଲତ ଓ ବିଦ୍ୟାଳୟମାନଙ୍କର ଦୂରୀଭୂତ କଲେ ଲୋପ ପାଇପାରିବ ନାହିଁ । ପ୍ରତ୍ୟୁତ ଅଦାଲତ ଓ ବିଦ୍ୟାଳୟରେ ବଳପ୍ରଚଳିତ ଭାଷାର କ୍ରମେ ଅବନତି ହେବ । ଅମ୍ଭେମାନେ ଆସାମର ଅଦାଲତରେ ପ୍ରଚଳିତ ବଙ୍ଗଭାଷା ଦେଖିଅଛୁଁ ।"

ଗୌରୀଶଙ୍କର ଆଧୁନିକ ଓଡ଼ିଆ ଗଦ୍ୟ ଭାଷାର ଜଣେ ପ୍ରବର୍ତ୍ତକ । ଉତ୍କଳ ଦୀପିକାର ଭାଷା ସାଧାରଣ ଭାବ ପ୍ରକାଶକ ଭାଷା, ସର୍ବଜନବୋଧ । ଏହା କିଛି ଅଂଶରେ ସାହିତ୍ୟିକ ଗଦ୍ୟ, ବ୍ୟଙ୍ଗାତ୍ମକ, ସମାଲୋଚନାମୂଳକ, କ୍ୱଚିତ୍ ବିଦ୍‌ବତ୍ତା ପ୍ରକାଶକ, ଗବେଷଣାମୂଳକ, କିନ୍ତୁ ଅଧିକାଂଶରେ ଦୈନନ୍ଦିନ ଆଳାପ ଆଲୋଚନାରେ ବ୍ୟବହୃତ ଗଦ୍ୟ, ଅତ୍ୟଧିକ ସଂସ୍କୃତ ଶବ୍ଦ ପ୍ରୟୋଗରେ ଭାରାକ୍ରାନ୍ତ ନୁହେ । ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଉକ୍ତି ଏ କ୍ଷେତ୍ରରେ ପ୍ରଣିଧାନଯୋଗ୍ୟ—

"ଗୌରୀଶଙ୍କର ସମ୍ପାଦକ ରୂପେ ଅବତୀର୍ଣ୍ଣ ହେବା ପୂର୍ବରୁ ଉତ୍କଳର ଗୋଟିଏ ସାଧାରଣ ଭାଷା ନଥିଲା । ପୂର୍ବେ ଲିଖିତ ଉପାୟରେ ଉତ୍କଳୀୟମାନଙ୍କ ମଧ୍ୟରେ ଭାବର ଆଦାନପ୍ରଦାନ ହେଉ ନଥିବାରୁ ଉତ୍କଳ ଭାଷା ପ୍ରାଦେଶିକତାରେ ପୂର୍ଣ୍ଣ ଥିଲା । ଏମନ୍ତ କି ଉତ୍କଳ ଭାଷା ଗୋଟିଏ ଅଞ୍ଚଳରେ ବ୍ୟବହୃତ ହେଉଥିବା ଭାଷାକୁ ଅନ୍ୟ ଅଞ୍ଚଳର ଲୋକେ ବୁଝିପାରୁ ନଥିଲେ । ଭାଷାରୁ ପ୍ରାଦେଶିକତା ଦୂର କରି ସମଗ୍ର ଉତ୍କଳରେ ଗୋଟିଏ ସାଧାରଣ ଭାଷା ପ୍ରବର୍ତ୍ତାଇବା ବିଷୟରେ ଉତ୍କଳଦୀପିକା ଯେଉଁ କାର୍ଯ୍ୟ କରିଅଛି, ତାହିର ମୂଲ୍ୟ ନିରୂପଣ କରିବା ସହଜ ନୁହେଁ ।"

( ଗୋପାଳଚନ୍ଦ୍ର ପ୍ରହରାଜ, ଉତ୍କଳ ସାହିତ୍ୟ, ଦ୍ୱାବିଂଶ ବର୍ଷ )

ଗୌରୀଶଙ୍କରଙ୍କ ଦୀପିକା ସମ୍ପାଦକୀୟ ବିଷୟରେ ସୁସାହିତ୍ୟିକ ଶ୍ରୀ ଶଶିଭୂଷଣ ରାୟଙ୍କ ଉକ୍ତି ମଧ୍ୟ ଯଥାର୍ଥ—

"ସିକ୍ତ ଲେଖନୀପ୍ରସୂତ ସମ୍ପାଦକୀୟ ଭାଷାରେ ଉତ୍କଳୀୟ ପ୍ରେମିକର, କବିର, ନାଗରିକର, ଦୁଃଖୀର, ବ୍ୟଥିତର, ବିପନ୍ନର, ସାଧକର, ଭକ୍ତର, ଧର୍ମୋନ୍ମାଦର ହୃଦୟୋଚ୍ଛ୍ୱାସ ଓ ହୃଦୟ ଯେପରି ଅନୁଭୂତ ହେଉଥିଲା । ତାହାଙ୍କ ବାଙ୍ଗ ସୁଦ୍ଧା ହୀରକ ପ୍ରାୟ ସମୁଜ୍ଜ୍ୱଳ ବୋଧ ହେଉଥିଲା । ( ଉ: ସା:, ବଂଶ, ଏକବିଂଶ ବର୍ଷ )

ପ୍ରାଚୀନ ସାହିତ୍ୟ ପ୍ରତି ତାଙ୍କର ଅକଳନୀୟ ଶ୍ରଦ୍ଧା; ତା'ର ସଂରକ୍ଷଣ ଲାଗି ସେ ପ୍ରାଣପାତ ପରିଶ୍ରମ କରିଥିଲେ । "ତାହାଙ୍କର ଅଧ୍ୟବସାୟ ହିଁ ମହାକବି ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଦୀନକୃଷ୍ଣ ଓ ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୃତିଙ୍କୁ ସାଧାରଣ ଚକ୍ଷୁରେ ଅଭ୍ୟୁତ୍ଥାନ କରାଇ ଉତ୍କଳକୁ ଗୌରବାନ୍ୱିତ କରିଅଛି"—(ଶଶିଭୂଷଣ ରାୟ)

ଗୌରୀଶଙ୍କର ଓଡ଼ିଆକୁ ମାତୃଭାଷା ରୂପେ ପ୍ରୀତିଅର୍ଘ୍ୟ ଅର୍ପଣ କରିଛନ୍ତି, ତା'ର ଗୌରବକୁ ଯେ କୌଣସି ପ୍ରତିକୂଳ ପରିସ୍ଥିତିରେ ବି କ୍ଷୁଣ୍ଣ ହେବାକୁ ଦେଇନାହାନ୍ତି । ଆମ୍ଭମାନଙ୍କ ମାତୃଭାଷା ( ୩୦।୫।୧୮୭୮, ଉ: ଦୀ, ଦ୍ୱାବିଂଶ ସଂଖ୍ୟା ) ଶୀର୍ଷକରେ ଏହା ସୁସ୍ପଷ୍ଟ ହୋଇଅଛି—

"ଆମ୍ଭମାନଙ୍କ ମାତୃଭାଷା ଓଡ଼ିଆ, ଏହା ଦୁଧପିଆ ପିଲାମାନେ ସୁଦ୍ଧା ଜାଣନ୍ତି । ଯହିଁରେ ଏ ଭାଷାର ଉନ୍ନତି ହେବ ସେଥିର ଚେଷ୍ଟା ଆମ୍ଭମାନଙ୍କର ଉଚିତ । ପୃଥିବୀ ମଧ୍ୟରେ ଯେଉଁ ଯେଉଁ ଜାତି ସଭ୍ୟତା ସୋପାନରେ ଆରୋହଣ କରିଅଛନ୍ତି ସେମାନେ ଆପଣା ଆପଣା ମାତୃଭାଷାକୁ ବୃଦ୍ଧି କରିବା ନିମନ୍ତେ ସାଧ୍ୟାନୁସାରେ ଯତ୍ନ କରୁଅଛନ୍ତି; ମାତ୍ର ଦୁଃଖର ବିଷୟ ଏହି ଯେ ଆମ୍ଭେମାନେ ତାହା ନକରି ସେଥିର ବିପରୀତ କରୁଅଛୁଁ । ଆମ୍ଭମାନଙ୍କର ମାତୃଭାଷା କିଛି ନୂତନ ଭାଷା ନୋହେ, ଏହା ବହୁ ଦିନର ଭାଷା । ଯେଉଁମାନେ ଏହା ଅବିଶ୍ୱାସ କରନ୍ତି ସେମାନେ ପୁରୁଣା ପୋଥିମାନ ଫିଟାଇ ଦେଖନ୍ତୁ, ତାହାହେଲେ ଆମ୍ଭମାନଙ୍କ ଉକ୍ତିର ପ୍ରମାଣ ପାଇବେ । ଆମ୍ଭମାନଙ୍କ ମାତୃଭାଷା ଦୁଇଶହ ବର୍ଷ ପୂର୍ବେ ଯେପରି ଅବସ୍ଥାରେ ଥିଲା, ଆଜି ବଙ୍ଗଳା ଭାଷା ଏତେ ଉନ୍ନତି ଲାଭ କରିସୁଦ୍ଧା ପ୍ରାୟ ସେହି ରୂପ ଅବସ୍ଥାପନ୍ନ ହୋଇଅଛି । ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୃତିଙ୍କ କାବ୍ୟ ଯେଉଁମାନେ ମନଦେଇ ପଢ଼ିଅଛନ୍ତି ସେହିମାନେ ସେଥିର ପ୍ରମାଣ ପାଇଅଛନ୍ତି ।

ଗୌରୀଶଙ୍କର 'ଉତ୍କଳ ଶୁଭୋଦୀପନୀ ସଭା'ର ସମ୍ପାଦକ ଥିଲେ, ଓଡ଼ିଆ ସାହିତ୍ୟର ଉନ୍ନତି ଏହି ଅନୁଷ୍ଠାନର ଲକ୍ଷ୍ୟ ଥିଲା; ସେ ଜୀବନ ବିଷକାଳ ଏହି ଅନୁଷ୍ଠାନ

ସୁରୁଖୁରୁରେ ଚଳାଇଥିଲେ । ଏହି ଅନୁଷ୍ଠାନ ଜରିଆରେ କଟକସ୍ଥିତ ମୋହ୍ଲେକର-ମାନଙ୍କ ଭାଷା ସଂସ୍କାର ଚେଷ୍ଟା କରିଥିଲେ—"କିରୂପେ ଉତ୍କଳ ଭାଷା ଉନ୍ନତ ହେବ, ସର୍ବସାଧାରଣ ଉତ୍କର୍ଷ ସାଧନରେ ଯତ୍ନବାନ ହେବ ଏବଂ ସରକାରୀ ମହକୁମାମାନଙ୍କରେ ବର୍ତ୍ତମାନ ଚଳନ୍ତ ଥିବା ମିଶ୍ରିତ ଭାଷା ପରିବର୍ତ୍ତରେ ବିଶୁଦ୍ଧ ଭାଷା ଚଳନ ହେବ ଓ କେବଳ ଉପଯୁକ୍ତ ବ୍ୟକ୍ତିମାନେ ଅମଲାଗିରି କର୍ମ କରିପାରିବେ" ସେ ଯତ୍ନବାନ୍ ହୋଇଥିଲେ ।

କଟକ ମ୍ୟୁନିସିପାଲିଟିରେ ନିର୍ବାଚନ ବ୍ୟବସ୍ଥା ପ୍ରବର୍ତ୍ତନ, ପଲ୍ଲୀ ଗ୍ରାମମାନଙ୍କରେ ନିର୍ବାଚନସିଦ୍ଧ ଲୋକାଲବୋର୍ଡ ଗଠନ, କଟକରୁ ଚାନ୍ଦବାଲି ଓ ବାଲେଶ୍ୱର ପର୍ଯ୍ୟନ୍ତ ଷ୍ଟିମାର ପ୍ରଚଳନ, ସମ୍ବଲପୁରରୁ ଓଡ଼ିଆ ଭାଷା ଉଠିଯିବାରେ ତୀବ୍ର ପ୍ରତିବାଦ ଓ ପ୍ରତିକାର ଲାଗି ବଡ଼ଲାଟଙ୍କୁ ନିବେଦନ, ସମ୍ବଲପୁର, ମଧ୍ୟପ୍ରଦେଶ ପ୍ରଭୃତି ଓଡ଼ିଆ ଅଞ୍ଚଳର ଓଡ଼ିଶା ସହିତ ମିଶ୍ରଣ ପ୍ରଭୃତି ନାନା ସତ୍‌କାର୍ଯ୍ୟରେ ଏହି ଅନୁଷ୍ଠାନ ବ୍ରତୀ ହୋଇଥିଲା ।

ସେ ସମଗ୍ର ଭାରତରେ ଗୋଟିଏ ଲିପି ପ୍ରଚଳନର ପକ୍ଷପାତୀ ଥିଲେ । ତା ହେଲେ ବିଭିନ୍ନ ପ୍ରାଦେଶିକ ଭାଷାଭାଷୀ ଲୋକେ ପରସ୍ପରର ଭାବାତ୍ମାର ନିକଟବର୍ତ୍ତୀ ହୋଇପାରିବେ, ପ୍ରାଦେଶିକ ସାହିତ୍ୟ ପ୍ରଗତିର ମୁଖ୍ୟ ବାଧା ଦୂର ହୋଇଯିବ । ଗୌରୀଶଙ୍କରଙ୍କ ଉତ୍କଳ ସାହିତ୍ୟ ସମାଜର ଦ୍ୱାଦଶ ବାର୍ଷିକ ଅଭିଭାଷଣ ଦ୍ରଷ୍ଟବ୍ୟ ( ୧୬।୧୨।୧୯୧୬, ବିଂଶ ଓ ଏକବିଂଶ ବର୍ଷ, ଉତ୍କଳ ସାହିତ୍ୟ ) ।

"ସମଗ୍ର ଭାରତରେ ଏକଲିପି ପ୍ରଚାର ବାଦର ମୁଁ ଜଣେ ପକ୍ଷପାତୀ । ମୋର ଦୃଢ଼ ବିଶ୍ୱାସ ଯେ ଯେମନ୍ତ ଦେବନାଗର ଅକ୍ଷରଯୋଗେ ସଂସ୍କୃତ ଗ୍ରନ୍ଥ ପ୍ରଚାରର ସୁବିଧା ହୋଇଅଛି, ତେମନ୍ତ ସେହି ଅକ୍ଷରରେ ଭିନ୍ନ ଭିନ୍ନ ପ୍ରାଦେଶିକ ଭାଷା ଗ୍ରନ୍ଥମାନ ପ୍ରକାଶିତ ହେଲେ ବହୁ ପରିମାଣରେ ପରସ୍ପର ସେ ସମସ୍ତ ପଢ଼ିବାର ବାଧା ଘୁଞ୍ଚିଯିବ ଏବଂ ବୁଝିବା ସହଜ ହେବ । ଅନ୍ତତଃ ଏକାକ୍ଷର ଯୋଗେ ଭିନ୍ନ ଭିନ୍ନ ଭାଷା ଗ୍ରନ୍ଥ ପଢ଼ିବାର ବାରପଣ କଷ୍ଟ ଦୂର ହୋଇଯିବ । ଅଳ୍ପ ଶ୍ରମରେ ଲୋକେ ପରସ୍ପର ସାହିତ୍ୟାଞ୍ଚଳ ଲଭିବାକୁ ସମର୍ଥ ହେବେ । ଅନେକ ଭାଷା ମଧ୍ୟରେ ତଫାତ୍ ଅଳ୍ପ । କିନ୍ତୁ ଭିନ୍ନାକ୍ଷର ଯୋଗେ ଅନ୍ତରାୟ ବିସ୍ତର ଘଟିଅଛି । ଆପଣା ସାହିତ୍ୟକୁ ଆପଣା ଘରେ ବନ୍ଦକରି ରଖିବା ଅପେକ୍ଷା ଯଥାସମ୍ଭବ ଗ୍ରହଣଆଡ଼େ ବିସ୍ତାର କରିବା ଭଲ । ଏହା ବୋଧକରେଁ, କେହି ଅସ୍ୱୀକାର କରିବେ ନାହିଁ, ଏ ଦିଗକୁ ସାହିତ୍ୟସମାଜର ମନ ଆକୃଷ୍ଟ ହେବା ବାଞ୍ଛନୀୟ ।

ଏକାବେଳକେ ପ୍ରାଦେଶିକ ଅକ୍ଷର ଉଠାଇଦେବାକୁ ମୁଁ କହୁନାହିଁ । ହାତଲେଖା ଯେପରି ଚାଲୁଅଛି ସେହିପରି ଚାଲୁଥାଉ, କେବଳ ପୁସ୍ତକାଦି ଛପା ଦେବନାଗରରେ ହେବା ମୋର ଅଭିପ୍ରାୟ ।”

ବାର୍ଦ୍ଧକ୍ୟ ଯୋଗୁଁ ୧୯୧୫ ରେ ସେ ଉତ୍କଳଦୀପିକା ସହ ସମସ୍ତ ସମ୍ପର୍କ ଛିନ୍ନ କଲେ । ଗ୍ରନ୍ଥ ଓ ସମ୍ବାଦପତ୍ର ପାଠ ଓ ସଙ୍ଗୀତ ଚର୍ଚ୍ଚା ତାଙ୍କର ଶେଷ ଅବଲମ୍ବନ ଥିଲା । ଶେଷ ଜୀବନରେ ଭାରତ ସରକାର ତାଙ୍କୁ ରାୟ ବାହାଦୁର ପଦରେ ଭୂଷିତ କରିଥିଲେ । ୧୯୧୭ ମାର୍ଚ୍ଚ ମାସରେ ତାଙ୍କର ଦେହାନ୍ତ ହେଲା ।

ପାରିବାରିକ ପୂର୍ଣ୍ଣ ସନ୍ତୋଷ ତାଙ୍କ ଜୀବନରେ ନ ଥିଲା । ରଘୁନାଥପୁର ନିବାସୀ ମାଣିକ ମିଶ୍ରଙ୍କ କନ୍ୟାଙ୍କୁ ସେ ବିବାହ କରିଥିଲେ । ମାତ୍ର ୩୭ ବର୍ଷ ବୟସରେ ତିନିଗୋଟି କନ୍ୟା ଓ ଗୋଟିଏ ପୁତ୍ର କୋଳରେ ଦେଇ ପତ୍ନୀ ସଂସାରରୁ ବିଦାୟ ନେଲେ । ଏଗାର ବର୍ଷ ବୟସରେ ଏକମାତ୍ର ପୁତ୍ର କୈଳାସର ଅକାଳ ମୃତ୍ୟୁ ଘଟିଲା । ଗୌରୀଶଙ୍କର ଦ୍ୱିତୀୟ ବିବାହ କରି ନ ଥିଲେ । ସାନ ଭାଇ ରାମଶଙ୍କର ତାଙ୍କ କାୟା ସଙ୍ଗେ ଛାୟାପରି ଥିଲେ, ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ସହାୟକ ହେଉଥିଲେ; ତେଣୁ ପତ୍ନୀବିୟୋଗ ପରେ ବି ତାଙ୍କୁ ସାଂସାରିକ ଦୁଃଖକଷ୍ଟ ବାଧି ନ ଥିଲା । ଗୌରୀଶଙ୍କର ତିନି ଭାଇଙ୍କୁ ମଣିଷ କରିବାଲାଗି ଯତ୍ପରୋନାସ୍ତି ଚେଷ୍ଟା କରିଥିଲେ । ଭାଇମାନେ ଜ୍ୟେଷ୍ଠଭ୍ରାତାଙ୍କୁ ପିତାପରି ମାନୁଥିଲେ ।

ଗୌରୀଶଙ୍କର ଭୋଗୀ ନ ଥିଲେ, ତାଙ୍କ ସାଂସାରିକ ଚଳଣି ଏକାନ୍ତ ସରଳ ଥିଲା । ସେ ମୋଟା ଚାଉଳର ଭାତ ଖାଉଥିଲେ, ମୋଟା ଦେଶୀ ଖଦୀ ପିନ୍ଧୁଥିଲେ । ଫଳରେ ବହୁ ଧନ ସଞ୍ଚୟ କରିଥିଲେ ଓ ସତ୍କାର୍ଯ୍ୟରେ ତାହା ବ୍ୟୟକରି ଦେଇଥିଲେ । ଶଶିଭୂଷଣ ରାୟଙ୍କ ଭାଷାରେ କହିଲେ “ସେ ନିଜ ସକାଶେ କଷ୍ଟନ୍ନାତ୍ର ବ୍ୟବସ୍ଥା କରି ସମସ୍ତ ଅର୍ଥ ପରହିତ କାର୍ଯ୍ୟରେ ସମର୍ପଣ କରିଯାଇଛନ୍ତି ।”

କଟକ ଟାଉନହଲ ତାଙ୍କର ପ୍ରଧାନ କୀର୍ତ୍ତି; ୧୯୦୯ ଖ୍ରୀଷ୍ଟାବ୍ଦରେ ଏହା ନିର୍ମିତ; ଏଥିଲାଗି ଗୌରୀଶଙ୍କର ଏଗାର ହଜାର ଟଙ୍କା ବ୍ୟୟ କରିଥିଲେ । କଟକ କାଠଗଡ଼ାସାହିର କାୟସ୍ଥ ଛାତ୍ରାବାସ ସେ ଚଉଦ ହଜାର ଟଙ୍କା ବ୍ୟୟକରି ନିର୍ମାଣ କରିଥିଲେ । ସେ ପ୍ୟାରୀମୋହନ ଏକାଡେମୀ ସହିତ ସଂପୃକ୍ତ ରହି ବହୁ ଉନ୍ନତି କରିଥିଲେ; ବିଶେଷତଃ ଏହାର ଛାତ୍ରାବାସ ନିର୍ମାଣ ଲାଗି ବହୁ ଅର୍ଥ ବ୍ୟୟ କରିଥିଲେ । ସ୍ୱ ଜନ୍ମସ୍ଥାନ ଦକ୍ଷିଣପଡ଼ା ଗ୍ରାମର ଉନ୍ନତି ଲାଗି ସେ ବିଶେଷ ଚେଷ୍ଟିତ ଥିଲେ । ଏହି ଗ୍ରାମରେ ସେ ଗୋଟିଏ ବାଳିକା ବିଦ୍ୟାଳୟ, କବିରାଜୀ ଓ ଡାକ୍ତରୀ ଔଷଧାଳୟ ସ୍ଥାପନ କରିଥିଲେ । ଏହି ଅନୁଷ୍ଠାନମାନଙ୍କର ଗୃହ ନିର୍ମାଣ ଲାଗି ସେ ସାତହଜାର

ଟଙ୍କା ଦାନ କରିଥିଲେ ଓ ରକ୍ଷଣାବେକ୍ଷଣ ଲାଗି ବ୍ୟାଙ୍କରେ ସେମାନଙ୍କ ନାମରେ ଦଶ ହଜାର ଟଙ୍କା ରଖି ଯାଇଥିଲେ । କୂପ ଖନନ, ପୁଷ୍କରିଣୀର ପଙ୍କୋଦ୍ଧାର, ପୁରାତନ ମନ୍ଦିରମାନଙ୍କ ଜୀର୍ଣ୍ଣସଂସ୍କାର ଆଦି କାର୍ଯ୍ୟରେ ସେ ଅକାତରରେ ବହୁ ଅର୍ଥ ବ୍ୟୟ କରିଥିଲେ ।

ଗାଇବା ବଜାଇବାରେ ତାଙ୍କର ଝୁଙ୍କ୍ ଥିଲା । ବେଶ୍ୟାମାନଙ୍କୁ ସଙ୍ଗୀତ ଶିକ୍ଷା ଦେବାରେ ସେ ବହୁ ଅର୍ଥ ବନ୍ଦୋବସ୍ତ କରିଥିଲେ । ବେଶ୍ୟାମାନଙ୍କ ଯୋଗେ ଓଡ଼ିଶୀ ସଙ୍ଗୀତ ଶିକ୍ଷା ବିସ୍ତାର ଲାଭ କରିବ, ଏହି ବିଶ୍ୱାସ ତାଙ୍କର ଥିଲା, ଏହା ବ୍ୟର୍ଥ ପ୍ରମାଣିତ ହୋଇଥିଲା ।

ଗୌରୀଶଙ୍କର ଜଣେ ଦକ୍ଷ ସମ୍ପାଦକ, ଜଣେ ସମାଜଶିଳ୍ପୀ, ଜଣେ ଉତ୍କୃଷ୍ଟ କର୍ମୀ ଓ ଦାନବୀର । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଲାଗି ସେ ଧନ, ମନ, ପ୍ରାଣ ଉତ୍ସର୍ଗ କରି ଯାଇଛନ୍ତି । ଉତ୍କଳର ଉନ୍ନତି ଚିନ୍ତା ହିଁ ତାଙ୍କୁ ଆଜୀବନ ଆଚ୍ଛନ୍ନ କରି ରଖିଥିଲା । ସେ ବୁଝିଥିଲେ—ଜୀବନ ଅର୍ଥ କର୍ମ—ସତ୍କର୍ମ—କର୍ମଠାରୁ ବଳି ଧର୍ମ ନାହିଁ । ଦୀପିକାଟି ଜାଳି ଉତ୍କଳର ଘରେ ଘରେ ତାର ଆଲୋକ ବିତରଣ କରିଦେବା ଲାଗି ନିଜ ଜୀବନକୁ ସେ ତୈଳପରି ବ୍ୟବହାର କରିଥିଲେ । କବି ମଦନମୋହନ ପଟ୍ଟନାୟକ ଯଥାର୍ଥ ଲେଖିଛନ୍ତି—

"ହୃଣକୋଳେ ଗ୍ରୀଷ୍ମସମ
ଅଟଳ ପଣେ ଶୈଳୋପମ
ସବ୍ୟସାଚୀ ଲକ୍ଷ୍ୟ ଧରି
ଧର୍ମଦେବ ସାକ୍ଷ୍ୟ କରି
ସହିଚ କେତେ ନିର୍ଯ୍ୟାତନ
ଗୌରୀଶଙ୍କର ତପୋଧନ ।"

## ସାହାଯ୍ୟକାରୀ ଗ୍ରନ୍ଥ—

(୧) କର୍ମଯୋଗୀ ଗୌରୀଶଙ୍କର—ପଣ୍ଡିତ ମୃତ୍ୟୁଞ୍ଜୟ ରଥ
(୨) ରାଧାନାଥ ଜୀବନୀ—ଦୁର୍ଗାଚରଣ ରାୟ
(୩) ସମ୍ବାଦପତ୍ରେ ସେକାଳ ଓଡ଼ିଶା—ସୁଧାକର ପଟ୍ଟନାୟକ
(୪) ଉତ୍କଳସାହିତ୍ୟ ପତ୍ରିକା



# କାମପାଳ ମିଶ୍ର

ଜନ୍ମ—୧୮୭୫

ମୃତ୍ୟୁ—୧୯୨୭

---

"କିଏ ବା କାହାର
ସଂସାର ନିର୍ଜନ ! ଜନ୍ମଠାରୁ ମୃତ୍ୟୁ ଯାଏ
ମନୁଷ୍ୟ ଏକାକୀ !"

—କାମପାଳ

ଜନ୍ମାବଧି କାମପାଳଙ୍କ ଏକାକୀତ୍ୱବୋଧ ଏକାନ୍ତ ନିବିଡ଼; ଜନ୍ମପରେ ସେଇ ବୋଧର ତୀବ୍ର ତାଡ଼ନାରେ ଶିଶୁ ବିକଳ ହୋଇ କାନ୍ଦେ । କୈଶୋର ବା ଯୌବନରେ ସହାନୁଭୂତିଶୀଳ ସମଜଦାର ନ ପାଇଲେ ବିଦୀର୍ଣ୍ଣ ପ୍ରାଣ ହାହାକାର କରିଉଠେ । ବାର୍ଦ୍ଧକ୍ୟରେ ତ ଆତ୍ମସ୍ୱାର୍ଥରେ ଆତ୍ମୀୟ ସ୍ୱଜନ ଦୂରେଇଯାନ୍ତି । ନିରୁପାୟ ବୃଦ୍ଧ ନିଷ୍ଫଳଭାବେ ପଡ଼ିରହେ ।

ବାଲ୍ୟ, କୈଶୋରରେ କାମପାଳ ଉଦାସୀନ ପ୍ରକୃତିର ଥିଲେ, ଦୂର ଆକାଶ ସହିତ ତାଙ୍କର ହୃଦୟ ବନମସ୍ତ ଗୃହିଥିଲା । ବାର୍ଦ୍ଧକ୍ୟରେ ଏକାନ୍ତ ଦୂରର ହିଁ ହୋଇଗଲେ, ନିକଟ ସହିତ ତାଙ୍କର ତିଳାର୍ଦ୍ଧ ଆତ୍ମୀୟତା ରହିଲା ନାହିଁ । ତାଙ୍କ ମନ ବା ମର୍ମ ଭିତରେ କାହାର ପଶିବାର ସାଧ୍ୟ ନ ଥିଲା । ସେ ହୋଇ ଉଠିଲେ ଦଗହଗ୍ର, ସ୍ଥୂଳ ଅଭିବ୍ୟକ୍ତିରେ ଉନ୍ମାଦଗ୍ରସ୍ତ ।

ପ୍ରକୃତ 'ସୀତା ବିବାହ' ନାଟକରେ ତାଙ୍କ ନିଜ ଜୀବନର କଥା ଯେପରିକି ବ୍ୟକ୍ତ ହୋଇଥିଲା—

''ଜବେ ରେ କୋକିଲ ରୁହି
ବିରଜିଲୁ ମରୁଦେଶେ
ପାଷାଣେ ଦେଖିଲୁ ଜୀବ ଲତିକା
ପାଦ ପରଶେ !''

ସାହିତ୍ୟ ତାଙ୍କ ଶୁଷ୍କ, ରୁକ୍ଷ ଓ ଏକାକୀ ଜୀବନର ସରସ ସହଚର ଥିଲା । ତାଙ୍କ ଜ୍ୟେଷ୍ଠ ଭ୍ରାତା ନୀଳମଣି ମିଶ୍ର 'ତପକେଳି' ଗ୍ରନ୍ଥରେ 'ଅଦ୍ଭୁତ ସ୍ୱପ୍ନ' ଶୀର୍ଷକ ଏକ ଅସମ୍ପୂର୍ଣ୍ଣ କାବ୍ୟ ଲେଖିଥିଲେ । ଏହି ପୁସ୍ତିକା ହିଁ କବିତା ରଚନା ଦିଗରେ ପଣ୍ଡିତଙ୍କୁ ପ୍ରରୋଚିତ କରିଥିଲା । ସେ ଲେଖିଥିଲେ—

''ସେହି ସମୟରେ ମୋର ନିର୍ବୋଧ କବିତା ରଚନାଭିଳାଷ କୌଣସି ବିଷୟ ନିରୂପଣରେ ଅକ୍ଷମ ହୋଇ ଶୂନ୍ୟରେ ସଞ୍ଚରଣ କରୁଥିଲା । କିନ୍ତୁ ଏହି ସୁଗନ୍ଧ କୁସୁମଭୂଷିତ ଅସମ୍ପୂର୍ଣ୍ଣ କାବ୍ୟବୃକ୍ଷଟିର ଆଶ୍ରୟ ଲଭିକରି ସ୍ଥିର ଓ ନିଶ୍ଚିନ୍ତ ହୋଇଥିଲା । ମୋର ଅକିଞ୍ଚିତ୍କର 'ଅପୂର୍ବ ସ୍ୱପ୍ନ'ର ଏହି ମୂଳ ବୃତ୍ତାନ୍ତ ଅଟେ । କେତେକ ବନ୍ଧୁବର୍ଗ ଦ୍ୱାରା ଉତ୍ସାହିତ ହୋଇ ଏହାକୁ 'ଓଡ଼ିଆ ଓ ନବସମ୍ବାଦ' ପତ୍ରିକାରେ ପ୍ରକାଶ କରିଥିଲି । ମୋର ସାହିତ୍ୟିକ ଜ୍ଞାନ ଅତି ସାମାନ୍ୟ ଓ ବିଦ୍ୟା ଅପର୍ଯ୍ୟାପ୍ତ । ଏପରି ଅବସ୍ଥାରେ କାବ୍ୟ ରଚନା କରିବା ପ୍ରକୃତ ହାସ୍ୟାସ୍ପଦ ଅଟେ । ଯେଉଁ ସମୟରେ ଯେ ରୁଚି ତଦନୁଯାୟୀ କାର୍ଯ୍ୟ କରିଯିବାର ପନ୍ଥା ବିଧେୟ । କିନ୍ତୁ ମୁଁ ପୁରାତନ ରୁଚି ଅନୁଧାବନ କରି ଅନେକ ସ୍ଥଳ ଦୂଷିତ କରିଅଛି । ଆଶା କରେ, ସହୃଦୟ ପାଠକ କ୍ଷମା କରିବେ ।''

'ଅପୂର୍ବ ସ୍ୱପ୍ନ', ଭୂମିକା

ଗୋପାଳଚନ୍ଦ୍ର ପ୍ରହରାଜ, ବ୍ରଜସୁନ୍ଦର ଦାସ ପ୍ରଭୃତି ସାହିତ୍ୟିକ ସହାଧ୍ୟାୟୀମାନେ ତାଙ୍କୁ ସାହିତ୍ୟ ରଚନା ଦିଗରେ ପ୍ରରୋଚିତ କରିଥିଲେ । ରେଭେନ୍ସା କଲେଜ ହୋଇ ଉଠିଥିଲା ତାଙ୍କ ସାହିତ୍ୟିକ ଜୀବନର ଆଦ୍ୟ ସୂତିକାଗାର ।

କାମପାଳଙ୍କ ଜନ୍ମସ୍ଥାନ ଯାଜପୁର ସମୀପବର୍ତ୍ତୀ ସ୍ୱପ୍ନପୁର ଗ୍ରାମ । ତାଙ୍କ ଜନ୍ମ ୧୮୭୫ ଖ୍ରୀଷ୍ଟାବ୍ଦରେ, ପିତାଙ୍କ ନାମ ଦାମୋଦର ବିଦ୍ୟାବାଗୀଶ, ମାତାଙ୍କ ନାମ ଗଙ୍ଗା ଦେବୀ । ଗ୍ରାମ୍ୟ ଚାଟଶାଳୀ ଶିକ୍ଷାର ପରିସମାପ୍ତି ପରେ ସେ ଯାଜପୁର ହାଇସ୍କୁଲରୁ ୧୮୯୪ ଖ୍ରୀଷ୍ଟାବ୍ଦରେ ଏଣ୍ଟ୍ରେନ୍ସ୍ ପାସ୍ କରିଥିଲେ । ତାର ଠିକ୍ ଦୁଇବର୍ଷ ପରେ ୧୮୯୬ ରେ କଲେଜ ଜୀବନକାଳରେ ତାଙ୍କ କ୍ଷୁଦ୍ରକାବ୍ୟ

'ଅପୂର୍ବ ସ୍ୱପ୍ନ' ପ୍ରକାଶ ପାଇଥିଲା । ତତ୍ପରବର୍ତ୍ତୀ ବର୍ଷ ଅର୍ଥାତ୍ ୧୮୯୭ ରେ ସେ ବି. ଏ. ଓ ୧୯୦୧ ରେ ସେ ବି. ଏଲ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ ତାଙ୍କର 'ଗୀତାବିବାଦ' ନାଟକ ପ୍ରକାଶ ପାଇଥିଲା । ମୟୂରଭଞ୍ଜ ଗଡ଼ଜାତର ରାଜଧାନୀ ବାରିପଦାର ଏସ୍. ଡି. ଓ. ଥିବା ସମୟରେ ସେ 'ବସନ୍ତ ଲତିକା' ନାଟକ ଲେଖିଥିଲେ । ତାଙ୍କର ଅନ୍ୟ ଦୁଇଗୋଟି ନାଟକ 'ହରିଶ୍ଚନ୍ଦ୍ର' ଓ 'ଦୁର୍ଗା ଶବଗ୍ନ' ଏବେ ବି ପାଣ୍ଡୁଲିପି ଅବସ୍ଥାରେ ଅଛି । ନାଟ୍ୟକାର ଭାବରେ ହିଁ କାମପାଳ ବିଶେଷ ପ୍ରତିଷ୍ଠା ଅର୍ଜନ କରିଯାଇଛନ୍ତି ।

ଦେଶପ୍ରାଣ କୁଳବୃଦ୍ଧ ମଧୁସୂଦନଙ୍କ ସମ୍ପର୍କରେ ଆସି ତାଙ୍କର ଦେଶାତ୍ମବୋଧ ଓ ଉତ୍କଳପ୍ରାଣତା ଜାଗ୍ରତ ହେଲା । ସେ ସ୍ୱଜାତିରେ ଜଳାଞ୍ଜଳି ଦେଇ ଉତ୍କଳ-ସମ୍ମିଳନୀର ଜଣେ ଏକନିଷ୍ଠ କର୍ମୀଭାବରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଚେଷ୍ଟାରେ ଆତ୍ମନିୟୋଗ କଲେ । ଓଡ଼ିଆ ଭାଷା ଓ ସାହିତ୍ୟର ସଂଗଠକଭାବେ ସେ ମନୋନୀତ ହୋଇଥିଲେ ଓ ଜ୍ୱାଳାମୟୀ ଭାଷଣରେ ସହକର୍ମୀମାନଙ୍କୁ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ କରିଥିଲେ ।

କିନ୍ତୁ କୌଣସି ଅର୍ଥୋପାୟ ବା ପୃଷ୍ଠପଟରେ ପୋଷକ ବଳିଷ୍ଠ ସଂଗଠନ ନ ଥାଇ କର୍ମୀ ବା ଦେଶସେବକଭାବେ ଚଳିବା ଏକ ବିଡ଼ମ୍ବନା । କାମପାଳ ଭାବପ୍ରବଣତା ତ୍ୟାଗ କରି ପୁଣି ଚାକିରୀ କଲେ—ସେ ଢେଙ୍କାନାଳରେ ଦେୱାନ୍ ହେଲେ । କିନ୍ତୁ ତାଙ୍କ ସ୍ୱାଧୀନ ମନୋବୃତ୍ତି ସହିତ ଗଡ଼ଜାତର ଖାମଖିଆଲି ରାଜରାଜୁଡ଼ା ଗତିବିଧି ଆଦୌ ଖାପ ଖାଇଲା ନାହିଁ । ସେ ଯାଜପୁର ଫେରିଯାଇ ସ୍ୱାଧୀନ ଓକିଲାତି ବ୍ୟବସାୟ କଲେ । ସେତିକିବେଳେ ହିଁ ତାଙ୍କର ମନ୍ଦ୍ରୁଷ୍ଟ ବିକୃତି ଘଟିଲା । ସେ କିଛିକାଳ ନିର୍ଜନ ବୈତରଣୀର ନିକଟରେ ଅବସ୍ଥାନ କଲେ ଓ କ୍ରମେ ଲୋକସମାଜ ସହିତ ସମ୍ପର୍କ ହରାଇ ବସିଲେ; ସୁଦୂର ଗ୍ରହତାରା ସହିତ ସତେ ଯେପରି ତାଙ୍କର ଗୁରୁତର ବିଷୟରେ ଆଳାପ ଆଲୋଚନା ଚାଲିଥିଲା ।

ଚିକିତ୍ସା ପରେ ଆରୋଗ୍ୟ ଲାଭକରି ସେ ଯାଜପୁର ହାଇସ୍କୁଲରେ ପ୍ରଧାନ ଶିକ୍ଷକଭାବେ ନିଯୁକ୍ତ ହୋଇଥିଲେ । ଗଭୀର ପାଣ୍ଡିତ୍ୟ ଓ ଉତ୍କୃଷ୍ଟ ଅଧ୍ୟାପନା ଯୋଗୁଁ ସେ ଅଚିରେ ପ୍ରତିଷ୍ଠା ଲାଭ କରିଥିଲେ । କିନ୍ତୁ ବିକୃତିର ପୁନରାବୃତ୍ତି ଘଟିଲା, କୌଣସି ଔଷଧ କାମ କଲା ନାହିଁ । ଭାବବିହ୍ୱଳ-ଅବସ୍ଥାରେ ସେ ସେକ୍ସପିଅର, କାଳିଦାସ, ଭବଭୂତି, ରାଧାନାଥ, ମଧୁସୂଦନଙ୍କ କବିତାମାନ ଅନର୍ଗଳ ଭାବେ ଆବୃତ୍ତି କରୁଥିଲେ । ଚିଦଗ୍ରଧିତାର ଶୃଙ୍ଖଳା ବା ବନ୍ଧ ଭାଙ୍ଗିଯାଇଥିଲା, ପ୍ରବଳ ବେଗରେ ପ୍ରବାହିତ ହେଉଥିଲା ବନ୍ୟା ସ୍ରୋତପରି ବାକ୍ । ଜଣେ ପ୍ରତିଭାଶାଳୀ ନାଟ୍ୟକାରଙ୍କୁ ଏହିପରିଭାବେ

ହୋଇଗଲା ଏକ ଶୋଚନୀୟ ଘଟଣା । ଊନବିଂଶ ଶତାବ୍ଦୀର ଶେଷପାଦ ଓ ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ କାମପାଳ ଯେ ଶ୍ରେଷ୍ଠ ନାଟ୍ୟକାର, ଏହା ନିଃସନ୍ଦେହ । ଉନ୍ମତ୍ତ ଅବସ୍ଥାରେ ଏହି ମନୀଷୀ ୧୯୨୭ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କଲେ ।

'ଅପୂର୍ବ ସ୍ୱପ୍ନ' ତାଙ୍କର ଆଦ୍ୟସୃଷ୍ଟି; ପ୍ରକାଶ କାଳ ୧୮୯୬ । ରେଭେନ୍‌ସା କଲେଜ ଛାତ୍ର କାମପାଳ ଏଇଭାବରେ ଉତ୍ସର୍ଗପତ୍ର ଲେଖିଥିଲେ—

"ସକଳ ସଦ୍‌ଗୁଣଭୂଷଣ, ବିଦ୍ୱଜ୍ଜନମନରଞ୍ଜନ, କବିତାକୁସୁମମଧୁପ, ବାମଣ୍ଡାଧିପ ଶ୍ରୀ ଶ୍ରୀ ଶ୍ରୀ ସୁଡ଼ଳଦେବ ମହାରାଜା K. C. I. E. ମହାମହିମ, କରକମଳେଷୁ, ସମୁଚିତ ସମ୍ମାନ ପୁରଃସରଃ ନିବେଦନମିଦମ୍

ମହାରାଜା,

ଏହି 'ଅପୂର୍ବ ସ୍ୱପ୍ନ' ନାମକ କବିତା କୁସୁମଟି ଆପଣଙ୍କ ହସ୍ତରେ ସମର୍ପଣ କଲି । ଏହାର ବାହ୍ୟିକ ଚାକଚକ୍ୟ ନାହିଁ କିମ୍ବା ଏହା ସୁଗନ୍ଧବିଶିଷ୍ଟ ନୁହେଁ । ତଥାପି ଭ୍ରମରକୁ ସମୟ ସମୟରେ ନିମ୍ବ କିମ୍ବା ଅର୍କ କୁସୁମରେ ବସିଥିବାର ଦେଖି ଏହା ଆପଣଙ୍କ ନାମରେ ଉତ୍ସର୍ଗ କରିବାକୁ ସାହସୀ ହୋଇଅଛି । ଦୟାପୂର୍ବକ ଆମୂଳ ପାଠକଲେ ଶ୍ରମ ସଫଳ ମଣିବି । ଇତି ।

କାମପାଳ ମିଶ୍ର ଶର୍ମଣଃ

ଜଣେ କଲେଜଛାତ୍ରର ଏପରି ଏକ ଅକୃତ୍ରିମ ଉକ୍ତିର ସୃଷ୍ଟିକୁ ଗ୍ରହଣ କରିବା ବିଦ୍ୱୋତ୍ସାହୀ ବାମଣ୍ଡା ରାଜା ବାସୁଦେବ ସୁଡ଼ଳଦେବଙ୍କ ପକ୍ଷରେ ଏକ ମହାନୁଭବତାର ପରିଚୟ । ଓଡ଼ିଆ ସାହିତ୍ୟ ରଚନାରେ ନବୀନମାନଙ୍କୁ ପ୍ରୋତ୍ସାହିତ କରିବା ତାଙ୍କର ଲକ୍ଷ୍ୟ ଥିଲା ଓ ସେ ଏହାର ପ୍ରକାଶବ୍ୟୟ ବହନ କରିଥିଲେ ।

ଭକ୍ତକବି ମଧୁସୂଦନ ଏଇ ପୁସ୍ତିକାର ମୁଖବନ୍ଧରେ ଲେଖିଥିଲେ—

"ଉତ୍କଳ ସାହିତ୍ୟାକାଶରେ ନବୀନ କବି ଶ୍ରୀମନ୍ତ କାମପାଳ ମିଶ୍ର ମହାଶୟଙ୍କର ଶୁଭୋଦୟ ଦେଖି ଅତ୍ୟନ୍ତ ପ୍ରୀତ ହେଲି । 'ଅପୂର୍ବ ସ୍ୱପ୍ନ' ତାହାଙ୍କର ପ୍ରଥମ ପ୍ରୟାସର ଫଳ । ଅଳ୍ପ ବୟସରେ ଛାତ୍ରାବସ୍ଥାରେ କବି ଯେଉଁ କୃତିତ୍ୱ ଦେଖାଇ ଅଛନ୍ତି ତାହା ତାହାଙ୍କର ଶକ୍ତିମତ୍ତା ଏବଂ ଭାବୀ ଯଶ ଓ ଗୌରବର ପରିଚାୟକ ଅଟେ । କବିତାଟି ସର୍ବାଙ୍ଗସୁନ୍ଦର ଅନବଦ୍ୟ ନୋହିଲେ ହେଁ ଭାବସୌନ୍ଦର୍ଯ୍ୟ ଓ ପଦଲାଳିତ୍ୟ ଉଭୟଥା ଆଦରଣୀୟ ହୋଇଅଛି । କେତେକ ସ୍ଥଳରେ କବି ଅସଂଯତ କଳ୍ପନା ଏବଂ ଦୂଷିତ ରୁଚିକୁ ପ୍ରଶ୍ରୟ ପ୍ରଦାନ କରିଥିବାର ବୋଧ ହେଲା । କିନ୍ତୁ ମୋହର ବିଶ୍ୱାସ ଏବଂ ଆଶା ଯେ କବି ପବିତ୍ର ଏବଂ ଉଚ୍ଚ ଆଦର୍ଶମାନ ସମ୍ମୁଖରେ ରଖି ସର୍ବାଙ୍ଗସୁନ୍ଦର,

ନିର୍ମଳ ଉଦାର ଭାବସମନ୍ୱିତ କବିତା ଦ୍ୱାରା ଉତ୍କଳସାହିତ୍ୟକୁ ଅଳଙ୍କୃତ ଓ ଗୌରବାନ୍ୱିତ କରିପାରିବେ।"

୧୩।୯।୧୮୯୬ ମଧୁସୂଦନ ରାଓ

'ଅପୂର୍ବ ସ୍ୱପ୍ନ' ବଙ୍ଗଳାଶ୍ରୀ ପରରେ ରଚିତ ୩୪ ପୃଷ୍ଠାର କ୍ଷୁଦ୍ର କାବ୍ୟଟିଏ, ଆଦ୍ୟ ଯୌବନର ସ୍ୱପ୍ନ; ଏହି ଜାତୀୟ ସ୍ୱପ୍ନ ଦେଶପ୍ରେମୀ ଯୁବକ ଦେଖୁଥିବେ; କିନ୍ତୁ ଅନ୍ୟପକ୍ଷେ ଏହା ଅସାଧାରଣ। ଦୁର୍ଦ୍ଦଶାଗ୍ରସ୍ତା ଉତ୍କଳଜନନୀଙ୍କ ପ୍ରତି ଗଭୀର ପ୍ରେମ ଏଥିରେ ରୂପାୟିତ।

କବିଙ୍କ ସ୍ୱପ୍ନ ଏହିପରି। ସେ ପର୍ବତ ଶ୍ରୀ ଦର୍ଶନ କରୁ କରୁ ଗୋଟିଏ ରମଣୀ ଗୀତ ଗାଉଥିବାର ଶୁଣିଲେ। ପରିଚୟରୁ ଜାଣିଲେ—ସେ ସ୍ୱର୍ଗର ଉର୍ବଶୀ, ପର୍ବତ ବିହାର ଲାଗି ମର୍ତ୍ତ୍ୟକୁ ଆସିଛନ୍ତି। କବିଙ୍କ ସଙ୍ଗରେ ସେମାନେ ଉର୍ବଶୀ ଶିବ ଦର୍ଶନ କଲେ, କିନ୍ତୁ ତାପରେ ହଠାତ୍ ଉଭେଇଗଲେ, କବି ମଣିମୟ ପୁରରେ ଗୋଟିଏ କରୁଣ ସ୍ୱର ଶୁଣିଲେ। କିଏ କାନ୍ଦୁଛି ବୋଲି ପଚାରିବାରୁ ପାର୍ବତୀ କହିଲେ—ସେ ତୁମର ଉତ୍କଳଜନନୀ, ନିଜ ପୁତ୍ରମାନଙ୍କର ଅଧୋଗତି ଦର୍ଶନରେ କ୍ରନ୍ଦନ କରୁଛନ୍ତି—

"ନାନା ଦେଶ ନାରୀ ଗଣ ମଧ୍ୟେ ତୋର
ଉତ୍କଳ ଜନନୀ ସେହି
କାନ୍ଦେ ଅବିରତ ତୁମ୍ଭ କର୍ମ ବୋଲି
ଜଗତେ ନାହାନ୍ତି କେହି।

× × ×

ଉନ୍ନତ ସୋପାନ କଲେ ଆରୋହଣ
କି ହେବ ବୋଲି କହଣ
ବଙ୍ଗ ସୁତେ ତୋର କାଢ଼ୁଛନ୍ତି କାଳ
ହୋଇ ଉଦ୍ୟମବିହୀନ।
ଜଗନ୍ନାଥ ପ୍ରଭୁ ଦେଇଛନ୍ତି ସବୁ
ହସ୍ତ ପଦ ଆଖି କାନ
ସଫାରେ ଉଦ୍ୟମ କଲେ ଦୟାମୟ
କରନ୍ତି କରୁଣା ଦାନ।

× × ×

ସହୁଛୁ ପାଦପ ଆତପ ସନ୍ତାପ
ଶିଶିର ଝଡ଼ ବରଷା
ଉନ୍ନତ ହେବାରେ ତେଜୁଅଛୁ କ ସେ
ସକଳ ଆଶା ଭରସା ?

× × ×

ଶୁଣନ୍ତେ ଏସନ ଗିରଜା ବଚନ
ହୃଦୟେ ଶୋକ ଅନଳ
ଅତ୍ୟନ୍ତ ପ୍ରଖର ହୋଇଣ ଜଳଲ
ଝରଲ ନୟନୁଁ ଜଳ ।"

'ଅପୂର୍ବ ସ୍ୱପ୍ନ' ପ୍ରଥମ ଲେଖା, ପ୍ରାଥମିକ ସ୍ତରର ଲେଖା । ତାପରେ କାମପାଳ 'ବନେ ବନମଲ୍ଲୀ', 'ଧବଳେଶ୍ୱର', 'ଉଷା ଓ ଗୋଲପ', 'ଆଶା', 'ସୀତା ବନବାସ' ପ୍ରଭୃତ କବିତା ରଚନା କରିଛନ୍ତି ।

ତାଙ୍କ 'ଶାନ୍ତିମନ୍ଦିର' (୭ମ ଖଣ୍ଡ, ୭ମ ସଂଖ୍ୟା, ଉତ୍କଳସାହିତ୍ୟ) କବିତା ତତ୍ତ୍ୱଜ୍ଞାନ ଭରା, ଉପଦେଶାତ୍ମକ । ଭକ୍ତକବି ମଧୁସୂଦନଙ୍କ 'ଜୀବନ ଚିନ୍ତା' କବିତାର ପ୍ରଭାବ ଏହା ଉପରେ ପଡ଼ିଲା ପରି ବୋଧହୁଏ । ମାୟାମୟ ସଂସାରରେ ନିପୀଡ଼ିତ ହୋଇ ସେ ଶାନ୍ତିରାଜ୍ୟର ସ୍ୱପ୍ନ ଦେଖିଛନ୍ତି । ସେ ଶାନ୍ତିରାଜ୍ୟ କପରି ? ତାହା ଏକ ଅତି ସୁନ୍ଦର ସ୍ଥାନ; ସେଠି ଶ୍ରମ ଅଛି, ଶ୍ରମର କ୍ଳେଶ ନାହିଁ; ଆଶା ଅଛି, ଆଶାର ବିନାଶ ନାହିଁ । ସେଠି ଲୋକେ ଚିରଯୌବନ ଭୋଗ କରନ୍ତି, ଭୋଗର କ୍ଷୟ ନାହିଁ, ଭୋଗ ଲିପ୍ସା ବି ନାହିଁ । ସେଠି ସଂଗ୍ରାମ ନାହିଁ, ରକ୍ତପିପାସୁର ସ୍ଥାନ ନାହିଁ । ସେ ସ୍ଥାନ ବିଧବାର କରୁଣ କ୍ରନ୍ଦନ ଧ୍ୱନିରେ ମୁଖରିତ ନୁହେ ।

"ଭ୍ରମିବାକୁ ସେହି ଶାନ୍ତି ଉପବନେ
ସେହି ସୁକୁମାର ଫୁଲ ଅଧରେ
ଭ୍ରମର ହେବାକୁ ଚିରଦିନ, ମନ
ନିରନ୍ତର ଯହିଁ କାମନା କରେ,
ମାୟା ବନ୍ଧିନୀ ଅପସରି ଯିବ
ପଳାଇବ ଦୂରେ ମୋହ, ଅଜ୍ଞାନ
ସ୍ୱରଗ ଆଲୋକ ହୃଦୟେ ଘୋଟିବ
ଦିଶିବ ଅଦୂରେ ଜ୍ଞାନ ସୋପାନ ।"

'ମଲ୍ଲୀଫୁଲ ଉଲ୍ଲାସ' (୭ମ ଖଣ୍ଡ, ୮ମ ସଂଖ୍ୟା, ଉ: ସା:) କବିତା ପ୍ରାଚୀନ ଝଙ୍କାରାଭରଣ ରୀତିରେ ରଚିତ । ମଲ୍ଲୀକୁ କବି ସଖୀ ବୋଲି ସମ୍ବୋଧନ କରିଛନ୍ତି, ତାର ସଦ୍‌ଗୁଣ ଶିଖିବା ଲାଗି ତତ୍ପର ହୋଇଛନ୍ତି—"ମଲ୍ଲୀ, ତତେ ସକାଳେ ଦେଖିଥିଲି, ଏବେ ସନ୍ଧ୍ୟାରେ ଦେଖୁଛି; ଏତେ ହସିବାର କାରଣ କଣ ? ତୋର ପ୍ରିୟତମ କିଏ ? କାହା କଥା ଭାବି ତୁ ଏତେ ପ୍ରଫୁଲ୍ଲିତ ? ସନ୍ତ୍ରସମୀର କଣ ତୋର ପ୍ରିୟତମ ? ଏକଥା ଯଦି ସତ୍ୟ, ତେବେ ତା ପ୍ରତି ଅଭିମାନ କରି ସାରାଦିନ ସୂର୍ଯ୍ୟତାପରେ ଏତେ ସନ୍ତାପିତ ହେଉ କାହିଁକି ?

"ଦାରୁଣ ବିଚ୍ଛେଦ ଅନ୍ତେ ମଧୁର ମିଳନ
ଉପଜେ ହୃଦୟେ ଯଥା ସରସ ଚନ୍ଦନ
ନବ ବସନ୍ତ ପର୍ବେ
ଶୁଷ୍କ ତରୁ ଅଙ୍ଗେ ନବପଲ୍ଲବ ଅଙ୍କୁରେ ।
ପ୍ରବଳ ତରଙ୍ଗ ତୋର ହୃଦୟ ଉଲ୍ଲାସ
ରଖାଇ ନେଉଛୁ ଖେଦ ହୋଇଲେ ପ୍ରକାଶ
ସଖି, ତୋଠାରୁ ଶିଖିବି
ସୁଖକାଳେ ଗତ ଭାବ ଦୁଃଖେ ନ ଭାଳିବି ।"

କବିତାକ୍ଷେତ୍ରରେ କାମପାଳ ଉଲ୍ଲେଖଯୋଗ୍ୟ ମୌଳିକତାର ପରିଚୟ ଦେଇପାରି ନାହାନ୍ତି । କବିପ୍ରତିଷ୍ଠାଲାଭ ସୁଦୂର ପରାହତ ହୋଇଅଛି । ଉତ୍କଳସାହିତ୍ୟରେ ତାଙ୍କ କବିତା ସ୍ଥାନ ପାଇଥିଲା, ଏଇ ଯଥେଷ୍ଟ; କେତେକ କବିତା ପ୍ରକାଶଯୋଗ୍ୟ ଅବସ୍ଥାକୁ ଆସିଥିଲା, ଏତିକି ହିଁ ତାଙ୍କର ସାଫଲ୍ୟ ଓ ଆତ୍ମପ୍ରସାଦ ଲାଭର ହେତୁ ।

କାମପାଳ ସାହିତ୍ୟର ନାନା ବିଭାଗରେ ହାତ ଦେଇଥିଲେ, ନୂଆ ଲେଖକ ପକ୍ଷରେ ଏହା ସ୍ୱାଭାବିକ । କେଉଁଆଡ଼େ ସାଫଲ୍ୟ ଲାଭ ହେବ, ଆରମ୍ଭକାଳ କହି ନପାରେ; କାରଣ ଆତ୍ମଆବିଷ୍କାର ସହଜସାଧ୍ୟ ନୁହେଁ, କଠୋର ସାଧନା ଭିତରେ ଦିନେ ହଠାତ୍ ଲେଖକ ସିଦ୍ଧି ଦେଖେ, ପାଠକସମାଜ ଭିତରୁ ଏକ ମହାସ୍ରୋତ ଦିନେ ଆସେ; ଏହାକୁ ଯଶ ବା ପ୍ରତିଷ୍ଠା କୁହାଯାଏ । ଆତ୍ମ ଆବିଷ୍କାର ଲାଗି ଦିନେ ହୁଏତ ସେ ଗାଳ୍ପିକ ହେବାକୁ ଚେଷ୍ଟିତ ହୋଇଥିଲେ; ଏହାର ସିଦ୍ଧି କବିତା ଅପେକ୍ଷା ନିଶ୍ଚିତଭାବେ ଉଜ୍ଜ୍ୱଳତର ।

କାମପାଳଙ୍କ 'ଅମ୍ବିକା' ଏକ ଦୀର୍ଘ ଗଳ୍ପ, ଏକାନ୍ତ ସୁଖପାଠ୍ୟ, ଏକା-ନିଃଶ୍ୱାସରେ ପଢ଼ିହୁଏ, ଏକାନ୍ତ କରୁଣ; ଆଖିରେ ଲୁହ ରହେନାହିଁ । ଦେଶରୁ

ବାଳବିବାହ ନିରାକରଣ, ବିଧବା ବିବାହ ପ୍ରଚଳନ ପ୍ରଭୃତି ସମାଜସଂସ୍କାର ପ୍ରସ୍ତାବର ବଶବର୍ତ୍ତୀ ହୋଇ ସେ ଏହି ଗଳ୍ପଟି ରଚନା କରିଥିଲେ, କିନ୍ତୁ ପ୍ରଚାରର ଉପରେ କେଉଁଠି କଳାତ୍ମକତାର ହାନି ଘଟିନାହିଁ । ଆମୂଳାନ୍ତ ନାଟକୀୟ ଉତ୍କଣ୍ଠା ବିଦ୍ୟମାନ ।

'ଅମ୍ବିକା' ବାଳବିବାହର କୁପରିଣାମ ଉପରେ ଆଲୋକପାତ କରିଛୁ ଓ ବିଧବାବିବାହ ଶାସ୍ତ୍ରସମ୍ମତ ବୋଲି ଦୃଢ଼ସ୍ୱରରେ ଘୋଷଣା କରିଅଛୁ ।

ପଣ୍ଡିତ ବିଶ୍ୱନାଥ ବାଳବିଧବା କନ୍ୟାକୁ ପୁଣି ବିଭା ଦେବା ଲାଗି ଚେଷ୍ଟିତ ହେବାରେ ସମାଜରେ ତୀବ୍ର ବିକ୍ଷୋଭ ସୃଷ୍ଟି ହୋଇଥିଲା । ସେ ବିଫଳତାର ଅନୁତାପରେ ସଂସାର ତ୍ୟାଗ କରି ସନ୍ନ୍ୟାସୀ ହୋଇଗଲେ । ଅମ୍ବିକା ନଦୀରେ ଆତ୍ମହତ୍ୟା କରୁଥିବାବେଳେ ବଣିକ ପୁତ୍ର ନିଶାକର ତାର ଜୀବନ ରକ୍ଷା କଲା ଓ ତାକୁ ବିଭା ହେଲା । ସନ୍ନ୍ୟାସୀ ବିଶ୍ୱନାଥ କନ୍ୟା ଓ ଜାମାତାକୁ ଆଶୀର୍ବାଦ କଲା ପରେ ସନ୍ତୋଷରେ ସ୍ୱର୍ଗାରୋହଣ କଲେ ।

ତାଙ୍କର ଅନ୍ୟତମ ଗଳ୍ପ (ପ୍ରଭାମୟୀ) ଅସଂପୂର୍ଣ୍ଣ, ଏକମାତ୍ର ସୁଲଭ ପ୍ରବନ୍ଧ 'ଶିକ୍ଷା ଓ ସମାଲୋଚନା' ଏବେ ବି. ଏ. ଶ୍ରେଣୀର ପାଠ୍ୟ, ତାଙ୍କ ବ୍ୟାପକ ଅଧ୍ୟୟନ, ଗଭୀର ଅନୁଶୀଳନ ଓ ଭାବୁକତାର ଉତ୍କୃଷ୍ଟ ନମୁନା । ଏହା ତାଙ୍କ ଚିନ୍ତାର ସ୍ୱଚ୍ଛତା, ସୂକ୍ଷ୍ମମତା, ବିଶ୍ଳେଷଣ-ଶକ୍ତି ଓ ସରସତାର ଚମତ୍କାର ପରିଚୟ ଦିଏ । ସେ କାହାକୁ ଅନୁସରଣ ବା ଅନୁକରଣ କରିନାହାନ୍ତି, ସ୍ୱଳ୍ପ ସାଧନାରେ ସିଦ୍ଧି ହାସଲ କରିଛନ୍ତି । ତାଙ୍କ ଶୈଳୀ ଏକ ସ୍ଥିର, ସିଦ୍ଧ ଓ ଆତ୍ମ-ପ୍ରତ୍ୟୟଭରା ସରଣୀରେ ସ୍ୱାଭାବିକ ପ୍ରବାହରେ ଗତିକରି ଚାଲିଛି । ଏହି ଗୋଟିଏ ପ୍ରବନ୍ଧ ଏକଶ୍ଚନ୍ଦ୍ରସ୍ତମୋ ହନ୍ତି; ସେକାଳରେ ସ୍ୱାତନ୍ତ୍ର୍ୟଚିହ୍ନିତ, ତାଙ୍କୁ ପ୍ରାବନ୍ଧିକ ଭାବେ ଗୌରବ ଦେବାକୁ ସମର୍ଥ । ନିମ୍ନରେ ଏହି ପ୍ରାବନ୍ଧିକ ବା ସମାଲୋଚକଙ୍କର କେତୋଟି ଉକ୍ତି ଉଦ୍ଧୃତ ହେଲା । ସମାଲୋଚକର କାର୍ଯ୍ୟ କଣ ?

ସମାଲୋଚକବୃନ୍ଦ ସାହିତ୍ୟଭଣ୍ଡାରକୁ ନିଜ ପ୍ରତିଭାତେଜରେ ଉଜ୍ଜ୍ୱଳ କରନ୍ତି, ଅପରିଷ୍କୃତ ଚିନ୍ତାରାଶି ପରିଷ୍କାର କରନ୍ତି, ସାହିତ୍ୟର ଅଙ୍ଗ ପରିପୁଷ୍ଟ କରନ୍ତି; ପାଠକ ଓ ଲେଖକମାନଙ୍କର ପ୍ରୀତିଭାଜନ ହୁଅନ୍ତି; କବିମାନଙ୍କୁ ଉତ୍ତେଜିତ କରନ୍ତି ଏବଂ ସମସ୍ତ ସାହିତ୍ୟକ୍ଷେତ୍ରରେ ପ୍ରଧାନ କାର୍ଯ୍ୟକାରୀ ହୋଇ ନିଜ ଦେଶର ଓ ଲେଖକମାନଙ୍କର ଉନ୍ନତି ସାଧନ କରନ୍ତି ।"

ସତ୍ କାବ୍ୟ କାହାକୁ କହନ୍ତି ?

"ଯେଉଁ କାବ୍ୟରେ ଦେଖିବ ଦାମ୍ପତ୍ୟ ଅନୁରାଗର ଅସୀମ ଆନନ୍ଦ ଓ ପ୍ରଣୟ ବର୍ଣ୍ଣିତ ହୋଇଅଛି, ମାତା ପୁତ୍ର ପ୍ରତି, ପୁତ୍ର ଜନନୀ ପ୍ରତି, ମାତା ପିତା ପ୍ରତି, ପିତା ପରିବାର ପ୍ରତି ସ୍ୱାଭାବିକ ସ୍ନେହର ପରିଚୟ ଦେଉଅଛନ୍ତି, ଭକ୍ତି ଓ ଶ୍ରଦ୍ଧା ଜଗତରେ ଉଚ୍ଚାସନ ଯୋଗ୍ୟ, ଦୋଷର ଦଣ୍ଡ ଅଛି, ପାପର ପରାଭବ ଅଛି, ସ୍ନେହର ପୁରସ୍କାର ଅଛି, ପ୍ରକୃତ ଅଙ୍ଗରେ ସୌନ୍ଦର୍ଯ୍ୟମୟ ନରନାରୀଙ୍କର ମନୋହର ଚରିତ୍ର ପଦ୍ଧତିରୁ ତାହାର ସୁଅଳଙ୍କୃତ ଅଙ୍ଗର ବର୍ଣ୍ଣନା ଅଛି, ପ୍ରକୃତ ସାଧୁବ୍ୟକ୍ତିମାନଙ୍କର ଆଦର ଅଛି, କଳ୍ପନାଜଗତରେ ନରନାରୀମାନଙ୍କର ନାନାପ୍ରକାର ଆଚରଣ-ବ୍ୟବହାର, ପରସ୍ପର ପ୍ରତି ସ୍ୱାଭାବିକ ସ୍ନେହ, ଦୟା, ଘୃଣା, କ୍ରୋଧ, ଅନୁକମ୍ପା ପ୍ରଭୃତି ଅତି ସୂକ୍ଷ୍ମଭାବରେ ଚିତ୍ରିତ ହୋଇଅଛି, ନାନାପ୍ରକାର ସଦୁପଦେଶ କାବ୍ୟର ପ୍ରଧାନ ନର୍ମରେ ଉପଯୁକ୍ତ ସ୍ଥାନରେ ସନ୍ନିବିଷ୍ଟ ହୋଇଅଛି, ବିଶେଷତଃ ଯାହା ଉଚ୍ଚ, ଉଦାର କଳ୍ପନା ଆମ୍ଭମାନଙ୍କର ଦୈନିକ ଚିନ୍ତାକୁ ଉଦ୍ରେକିତ କରି ବିଶାଳ କଳ୍ପନା ସମୁଦ୍ରରେ ସୁମହତ୍ ଭାବତରଙ୍ଗର କାନ୍ତଚ୍ଛଟା ପ୍ରଦର୍ଶନପୂର୍ବକ ଉତ୍କର୍ଷ ଦିଗରେ ଧାବମାନ କରୁଅଛି, ମୂଳତଃ ଯାହା ପଢ଼ି ପାଠକ ଉନ୍ନତ ହୋଇଥିବାର ଅନୁଭବ କରନ୍ତି—ତାହାକୁ ଜାଣିବା ପ୍ରକୃତ ସତ୍‌କାବ୍ୟ।"

"ସତ୍ ସମାଲୋଚନାର ରାଜସିଂହାସନ ଚତୁଃପାର୍ଶ୍ୱରେ ନମ୍ରତା, ଭକ୍ତି, ନ୍ୟାୟ ଓ ସ୍ପଷ୍ଟବାଦିତା—ଏ ଚାରିଗୋଟି ସହଚରୀ ସର୍ବଦା ବିଦ୍ୟମାନ।"

"ସଂସାର କ୍ଷେତ୍ରରେ ପ୍ରତିଭାଶାଳୀ ବ୍ୟକ୍ତି ଜଣେ ଧର୍ମନିଷ୍ଠ ପଥିକ। ସେ ସର୍ବଦା ନିଜର ଉଦ୍ଦେଶ୍ୟମନ୍ଦିର ଆଡ଼କୁ ଗମନ କରନ୍ତି।"

"ପ୍ରତିଭାଶାଳୀର ଇଚ୍ଛା ଗିରିତୁଲ୍ୟ, ଯାହା ସହସ୍ର ସହସ୍ର ସମୁଦ୍ରତରଙ୍ଗ ଓ ବ୍ୟାଘାତ ସହ୍ୟକରି ସେହିପରି ଦୃଢ଼ ଥାଏ।"

"ଗୁଣଗ୍ରାହୀ ସମାଲୋଚକ ସାହିତ୍ୟର ପ୍ରକୃତ ପରିପୋଷକ।"

"ଉଦାର ପ୍ରବୃତ୍ତି ମନୁଷ୍ୟର ଶେଷ ଶିକ୍ଷାଫଳ।"

ରାମପାଳ ସମାଲୋଚକର ଯେଉଁ ଉଚ୍ଚ ଆଦର୍ଶ ଉପସ୍ଥାପନ କରିଛନ୍ତି, ତାହା ଏବେ ବି ଶ୍ରେୟ। ସେ ସାହିତ୍ୟିକଙ୍କ ଅପେକ୍ଷା ବହୁପାଠୀ, ରସଗ୍ରାହୀ, ଉନ୍ନତ ବିବେକଶୀଳ ସମାଲୋଚକକୁ ଉଚ୍ଚତର ଆସନ ପ୍ରଦାନ କରିଛନ୍ତି।

ସୀତାବିବାହ—ସୀତାବିବାହ ଉତ୍କୃଷ୍ଟ ଓଡ଼ିଆ ନାଟକମାନଙ୍କ ମଧ୍ୟରେ ଅନ୍ୟତମ । ପରିଚିତ ବିଷୟ ପରିବେଷଣ ଶୈଳୀର ଉତ୍କୃଷ୍ଟତା ଯୋଗୁଁ ଏକାନ୍ତ ରୁଚିକର ଓ ହୃଦୟଗ୍ରାହୀ ହୋଇଅଛି, ରଚନାର ପ୍ରାୟ ଏକ ଶତାବ୍ଦୀ ପରେ ବି ଏହାର ମଞ୍ଚମୂଲ୍ୟ ଲୋପ ପାଇନାହିଁ ।

୧୯୩୭ ରେ ପ୍ରଥମ ଓଡ଼ିଆ ସବାକ୍ ଚଳଚ୍ଚିତ୍ର ନାଟକ ହେବାର ଗୌରବ ଏହା ଅର୍ଜନ କରିଥିଲା । କିନ୍ତୁ ପ୍ରୟୋଗକ୍ଷେତ୍ରରେ ଏହାର କଳାତ୍ମକତା ବହୁଳାଂଶେ କ୍ଷୁଣ୍ଣ କରାହୋଇଥିଲା । ଅମିତ୍ରାକ୍ଷର ଛନ୍ଦରେ ରଚିତ ରାମ ପରଶୁରାମଙ୍କ ଉକ୍ତି ଏଥିରୁ ଉଡ଼ାଇ ଦିଆଯାଇଥିଲା । ହୁଏତ ଆଧୁନିକ ସିନେମାକଳାଦୃଷ୍ଟିରୁ ଏପରି ଅଙ୍ଗଚ୍ଛେଦର ପ୍ରୟୋଜନ ଅନୁଭବ କରାଯାଇଥିଲା, କିନ୍ତୁ ସାହିତ୍ୟିକ ବା ନାଟ୍ୟୀୟ କଳା ଦୃଷ୍ଟିରୁ ଏହି ସ୍ଥାନ ପ୍ରାଣୋତ୍ପୀଡ଼କ ହୋଇଥିଲା ।

କାମପାଳ ଆଉ କିଛି ନ ଲେଖି ଏଇ ସୀତାବିବାହ ନାଟକଟିଏ ଲେଖି ଯାଇଥିଲେ ଅମର ହୋଇଥାନ୍ତେ । ବିଦଗ୍ଧ ନାଟକର ଜୟଯାତ୍ରାର ଏହା ଏକ ନିର୍ଦ୍ଦିଷ୍ଟ ମାଇଲଖୁଣ୍ଟ । କି ଗଦ୍ୟ କି ପଦ୍ୟ ସର୍ବତ୍ର ଅପୂର୍ବ କବିତ୍ୱ ପୂରିରହିଛି ।

ନାଟକଟି ଅଧିକାଂଶରେ ଅମିତ୍ରାକ୍ଷର ଛନ୍ଦରେ ରଚିତ । ଇତସ୍ତତଃ ସାମାନ୍ୟ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ କାମପାଳ ଅମିତ୍ରାକ୍ଷର ଛନ୍ଦ ପ୍ରୟୋଗରେ ଅପୂର୍ବ ଶକ୍ତିମତ୍ତା ପ୍ରଦର୍ଶନ କରିଯାଇଛନ୍ତି । ରାଧାନାଥଙ୍କ ବ୍ୟତୀତ ଓଡ଼ିଆ ସାହିତ୍ୟରେ ଏଦିଗରେ ତାଙ୍କର ସମାସ୍କନ୍ଧ ଆଉ କେହି ନାହିଁ । ଏଥିରେ ଓଜସ୍ୱିତା, ତଡ଼ିତ୍‌ଶିଖାର ଔଜଲ୍ୟ ଓ ଚମକ ପୂରିରହିଛି । ବାଗ୍ମିତା ଓ ସଂଯମର ଏହା ଏକ ମଧୁର ସମନ୍ୱୟ । ଭାବୋଚ୍ଛ୍ୱାସର ପ୍ରବାହ ପ୍ରବଳ ଓ ପ୍ରଚଣ୍ଡ । ବୀରରସ ଓ ଶାନ୍ତରସ ଉଭୟର ପ୍ରୟୋଗରେ ତାଙ୍କ ଲେଖନୀ ସାର୍ଥକ ହୋଇଅଛି ।

ପଚିଶ ବର୍ଷରୁ ଊର୍ଦ୍ଧ୍ୱକାଳ ନଗର ଓ ଗ୍ରାମାଞ୍ଚଳର ପୁରସ୍କାର ବିତରଣୀ ସଭାମାନଙ୍କରେ ରାମ ପରଶୁରାମ ସଲାପ ଏକ ଚିତ୍ତାକର୍ଷକ ବିଷୟଭାବେ ପରିବେଷଣ କରାଯାଉଥିଲା । ମହାଯାତ୍ରାର ଅମର୍ଷୀବାଣୀର ସମକକ୍ଷ ନୋହିଲେ ବି ଏହାର ଓଜସ୍ୱିତା ପ୍ରଶଂସନୀୟ । ତଳେ କିଞ୍ଚିତ୍ ଦୃଷ୍ଟାନ୍ତ ଦିଆଗଲା—

ପରଶୁରାମ—ତୁହି କିରେ ସୂର୍ଯ୍ୟବଂଶ ଅଦ୍ୱିତୀୟ ରବି
ଧରାଧାମେ ବୀର ବୋଲି ଜଗତେ ବୋଲାଉ ?
କ୍ଷତ୍ରିୟକୁଳ ଉଜ୍ଜ୍ୱଳ କରିବାକୁ ପୁଣି
ହୋଇଛୁ କୃତସଂକଳ୍ପ, ରେ ରେ ଅହଙ୍କାରି ।

ଦୁର୍ଦ୍ଦାନ୍ତ ରାଘବ ! ମନେ କି କରିଛୁ ତୁହି
ଶୌର୍ଯ୍ୟବଳେ ଏ ବ୍ରହ୍ମାଣ୍ଡର ଏକମାତ୍ର ବୀର !
ଯହାର ତାଡ଼କା ପ୍ରାଣ କାଢ଼ିଛୁ ସେ ଥିଲା
ରେ ରେ ଜଘନ୍ୟ ଖଦ୍ୟୋତ ! କି ଗର୍ବରେ ତୁହି
ପ୍ରଚଣ୍ଡ ମାର୍ତ୍ତଣ୍ଡ ପ୍ରଭା ମଳିନ କରିବୁ ?

(ସ୍ୱଗତ ) କି ଆଶ୍ଚର୍ଯ୍ୟ ଭସ୍ମୀଭୂତ କ୍ଷତ୍ରିକୁଳ, ରକ୍ତ
ଧୌତ ହୋଇ ପୁଣି ପଡ଼ିଥିଲା ଅଗ୍ନିବିନ୍ଦୁ,
ଦାବାନଳ ହୋଇ ଯାହା ଡରାଏ ସିଂହକୁ !

ରାମ— ମୁହିଁ ପ୍ରଭୋ ! ସୂର୍ଯ୍ୟବଂଶେ ଅଯୋଧ୍ୟା ସନ୍ତାନ
ତବ ଦାସ ବୋଲି ମୋର ଅଛୁ ଯାହା ଗର୍ବ
କରନ୍ତୁ ରକ୍ତପାତେ ଶରଣ ମୋହର
ଦୟା କରି କହ ପ୍ରଭୋ ! କି ଦୋଷ କରିଛି
ପଡ଼ିଛି ଚରଣେ ତବ ?

× × ×

ପରଶୁରାମ—ଜାଣି କି ନଥିଲୁ ଆରେ ଜଘନ୍ୟ ମୂଷିକ
ପରଶୁରାମ କ୍ଷତ୍ରିକୁଳ କାଳାନ୍ତକ ନାମେ
ହାହାକାର ଧ୍ୱନି ଉଠେ କ୍ଷତ୍ରିୟ କୁଳରେ
ଭୂମିକମ୍ପ ଉପୁଜଇ ପରଶୁ ଝଲକେ
ସୁବୀର ଧମନୀ ରକ୍ତ ଶୀତଳ ହୁଅଇ,
ତ୍ରିଗୁଣ ସପତବାର କ୍ଷତ୍ରିୟ ଜଗତ
ବିଧ୍ୱଂସିତ ହୋଇଥିଲା ଯାହାର ପ୍ରତାପେ
ଜୀବିତ ସେ ଅଛି ଆଜି କି ଗର୍ବରେ ଆରେ
ବର୍ବର ! ତୁଷାର ରକ୍ତ, ରଘୁକୁଳ କୀଟ !
ଦେଖାଇଲୁ ବୀରପଣ ଜନକ ମନ୍ଦିରେ,
କୀଟଭୁକ୍ତ ଶିବଧନୁ ନାରୀଙ୍କ ଛନ୍ଦରେ ଭାଙ୍ଗି
କାପାଇଁରେ ନିଦ୍ରାଗତ ପରଶୁକୁ
କମ୍ପିତ କରିଲୁ ?

ଲକ୍ଷ୍ମଣ— ଧୈର୍ଯ୍ୟ ଲୁପ୍ତ ହେଲା ମୋର
ବସାଣ୍ଡି ନ ହୋଇ ବୃଷ କପର ରେ ବୃଦ୍ଧ
ସହିଲୁ ମୁହୂର୍ତ୍ତେ ହାୟ ଏ ଘୋର ଲାଞ୍ଛନା--
ବସ୍ତ୍ରକୂଳ କୁଳାଙ୍ଗାର ଅହଙ୍କାରୀ ଜଣେ
ନର୍ଦ୍ଦୋଷୀ ଆର୍ଯ୍ୟଙ୍କୁ ଆଜ ପଦାଘାତ କଲା
ଯାଉ ଲକ୍ଷ୍ମଣ ପରାଣ—ଏ ଗୁର ଜୀବନ—
କୁଳରେ କଳଙ୍କ ଲାଗୁ, ଲୁପ୍ତ ହେଉ କୀର୍ତ୍ତି
ଦଶରଥ ପୁତ୍ର ବୋଲି କେହି ନ କହନ୍ତୁ
ରାମଚନ୍ଦ୍ର ଭ୍ରାତା ବୋଲି କେହି ନ ଚହ୍ନନ୍ତୁ
ନିଶ୍ଚୟ ନିଶ୍ଚୟ ଆଜ ଏହି ଖଡ଼୍ଗଧାରେ
ବଧିବ ଏ ଦୁଷ୍ଟ ଦ୍ବିଜ ଦୁର୍ଦ୍ଦାନ୍ତ ବର୍ବର ।

ପର୍ଶୁରାମ— ମୃତ୍ୟୁ ନିକଟ ହୋଇଲେ ଏହିପରି ଲୋକେ
ପ୍ରଳାପ କରନ୍ତି !
ରେ ରେ ଅଜ୍ଞାନ ଅର୍ଭକ;
କ୍ଷତ୍ରି ସ୍ତ୍ରୀକୁଳ କାମିନୀ ମଣ୍ଡଳୀ ମଧ୍ୟରେ
ଅଭ୍ୟାସ କରିଛୁ ବୋଲି ଏ ବୀର ବଚନ
ମନେ କି କରିଛୁ ବୃଦ୍ଧ ଡରାଇବୁ ମୋତେ ?
ଯାର ନାମେ ଡରେ ପୃଥ୍ୱୀ, କ୍ଷଣକାଳ ରହି
କ୍ଷତ୍ରିୟ ରକ୍ତପିପାସୁ ଏହି ପର୍ଶୁ ମୋର
ଲମ୍ବିତ ହୋଇବ ତୋର ସୁକୁମାର କଣ୍ଠେ ।

× × ×

ସାହିତ୍ୟିକ ଅଭିରାମ ଭଞ୍ଜ ଏହି ନାଟକର ଅନୁକ୍ରମଣିକାରେ ଲେଖିଛନ୍ତି, ଅମିତ୍ରାକ୍ଷର ଛନ୍ଦ କେବଳ କବିତ୍ୱ ପ୍ରକାଶକ ନୁହେ, ଉପଯୋଗୀ ଭାବମାଧୁର୍ଯ୍ୟ ରକ୍ଷା ନିମିତ୍ତ ବ୍ୟବହୃତ ହୋଇଅଛୁ । ନାଟକରେ ଯେ ସମସ୍ତ ଗୀତ ସନ୍ନିବେଶିତ ହୋଇଅଛୁ, ତାହାର ସ୍ୱର ଆଧୁନିକ ଥିଏଟର ରାଗିଣୀରେ ରଚିତ । ଗୀତଗୁଡ଼ିକ ସୁମଧୁର ସ୍ୱରବିଶିଷ୍ଟ, ସହଜ, ସୁକୋମଳ ଶବ୍ଦ, ତଥାପି ଭାବଗର୍ଭକ ଓ ଉପଯୁକ୍ତ ସ୍ଥଳରେ ସନ୍ନିବେଶିତ ହେବାରୁ ଚିତ୍ତାକର୍ଷକ ହୋଇଅଛୁ, ସନ୍ଦେହ ନାହିଁ ।

କାମପାଳଙ୍କ ଭାଷା ନାଟକର ପାତ୍ରୋପଯୋଗୀ ହୋଇଅଛୁ । କେଉଁଠି ସଂସ୍କୃତ ଶବ୍ଦଭରା, କେଉଁଠି ୀ । ଗାଉଁଲି ରୂପରେ ଏହା ଆମ ସମ୍ମୁଖରେ ଦେଖା ଦେଉଛୁ—

"ଗୋଡପଣା ଚୂଲିପଣାଏ ଖାଲି ମୋ ସଙ୍ଗରେ ଝାହୁଲି କରିବେ ! ତାଙ୍କର କଣ ଉଉଣୀ ଝିଅଟିଏ ନାହାନ୍ତି ? କଲେ ମା ! ମୁଁ କଣ ଦାଣ୍ଡକୁ ବାହାରିବ ନାହିଁ ? ସବୁଦିନ ବନ୍ଦୁ ଭୂଆଡୁଣୀ ଥିବ !"

ଲୋକଗୀତ ବିଶେଷତଃ ହଳିଆ, ନାଉରୀ ଗୀତ ପ୍ରତି ତାଙ୍କର ଦୃଷ୍ଟି ଥିଲା । ସେ ସେମାନେ ବୋଲୁଥିବା ଗୀତ ଛନ୍ଦରେ ହିଁ ନାଉରୀ ଗୀତଟି ରଚନା କରିଛନ୍ତି—

'ଇନ୍ଦ୍ରନୀଳମଣି ଗୁହ୍ମରେ ଶୋଇତ
ସଇ ସୁନାଗୋରୀ ସୀତା
ମେଘ କାନ୍ଥ୍ୱଦଥା ଘରେ କଲେ ମିତ
ବିଜୁଳି ଏତେ ଶୋଭିତା !'

କବିତା ଅପେକ୍ଷା ନାଟକରେ ହିଁ କାମପାଳଙ୍କ କବିତ୍ୱ ଅଧିକ ଉଚ୍ଛୁଳିଛି । ଗୋଟିଏ ପଦ ଉଦ୍ଧୃତ ହେଲା—

'ସୁନା ହାତେ ଧରି
ସୁନା ମାଳ ସଖୀ
ଫିଙ୍ଗୁଥାଏ ଦୀନ ଜନେ
ହାର ଖସୁଛି କି
ସୀତା ପଡ଼ୁଛି ଗୋ
ଚମକିଲେ ସବିଜନେ !'

ଏହା ଅବଶ୍ୟ ଭକ୍ତିଯୁଗ କବିଙ୍କର ଉପଯୋଗୀ ଏକ ଅତି କଥନ, ଏ ଯୁଗରେ ଅଚଳ ।

କାମପାଳ ରାମସୀତାଙ୍କୁ ଦେବଦେବୀରେ ପରିଣତ କରିଛନ୍ତି; ଫଳରେ ସେମାନେ ମାନବସମାଜ ପକ୍ଷରେ ଅନନୁକରଣୀୟ ହୋଇ ଉଠିଛନ୍ତି । ବିଶ୍ୱନାଥ କର 'ସୀତାବିବାହ ସମ୍ବନ୍ଧରେ ଦୁଇ ଗୁଟି କଥା' ଶୀର୍ଷକରେ ଉ: ସା: ରେ ଯେଉଁ ମନ୍ତବ୍ୟ ପ୍ରକାଶ କରିଛନ୍ତି ତାହା ଅନୁଧ୍ୟେୟ ।

"କାମପାଳବାବୁ ସାହିତ୍ୟକ୍ଷେତ୍ରରେ ଜଣେ ଶିକ୍ଷାନବିସ, ଉତ୍କଳସାହିତ୍ୟ କ୍ଷେତ୍ରରେ ପ୍ରବୀଣ ଲୋକର ନିତାନ୍ତ ଅଭାବ ନାହିଁ । ଲେଖାଟା ଥରେ ସେହିପରି କୌଣସି ବ୍ୟକ୍ତିକୁ ଦେଖାଇ ଦେଇଥିଲେ ଭଲ ହୋଇ ନଥାନ୍ତା କି ? ତାହେଲେ ପୁସ୍ତକ ମଧ୍ୟରେ ଅଭ ଏତେ ଭାଷାଗତ, ରଚନାଗତ, ବ୍ୟାକରଣସମ୍ବନ୍ଧୀୟ, ଭୌଗୋଳିକ ଏବଂ ଐତିହାସିକ ଭୁଲ୍ ପରିଦୃଷ୍ଟ ହୁଅନ୍ତା ନାହିଁ ।"

"ସୀତା ଚରିତକୁ ଉତ୍କଳନାରୀସମାଜ ଆଗରେ ଆଦର୍ଶ କରି ଧରିବା ଏବଂ ଉତ୍କଳୀୟ ସମାଜର ବିବାହ ପ୍ରଣାଳୀର ସଂସ୍କାର କରିବା ଯଦି କାମପାଳବାବୁଙ୍କର ଉଦ୍ଦେଶ୍ୟ ହୋଇଥାଏ, ତାହେଲେ ଉଭୟ ଉଦ୍ଦେଶ୍ୟ ହିଁ ତାଙ୍କର ବ୍ୟର୍ଥ ହୋଇଅଛି ବୋଲିବାକୁ ହେବ । ପୁରାଣରେ ରାମସୀତା ଅବତାର ବୋଲି ଘୋଷିତ ହୋଇଅଛନ୍ତି ସତ, ମାତ୍ର ପୁରାଣରେ ଏପରି ଲେଖା ହୋଇନାହିଁ ଯେ ଯୁଗ ଯୁଗାନ୍ତରରେ ମଧ୍ୟ ଲୋକେ ସେମାନଙ୍କୁ ଦେବତାରୂପେ ପୂଜା କରୁଥିବେ ।

× × ×

ସୀତାଙ୍କ ମାନସିକ ସରଳ ସ୍ୱଭାବ, ଜନକଜନନୀଙ୍କ ପ୍ରତି ଅତୁଳ୍ୟ ସ୍ନେହ, ଅପୂର୍ବ ସ୍ୱାମୀଭକ୍ତି ଇତ୍ୟାଦି ଦେଖି ଆମ୍ଭମାନଙ୍କ କନ୍ୟାମାନେ ଆପଣା ଆପଣା ଚରିତ୍ରକୁ ମୁଦ୍ଧିତ କରିବା ଭଲ ନା ତାହାର ଦେବଚରିତ୍ର ଦେଖି ହତାଶ ହୋଇ ଚୁପ୍‌ହୋଇ ବସି ରହିବା ଭଲ ? ସୀତାରାମଙ୍କ ଅବତାରବାଦଟା ବାଦ୍ ଦେଇଥିଲେ କି କାମପାଳବାବୁଙ୍କ ଧର୍ମରେ ଆଘାତ ଲାଗିଥାନ୍ତା ? କାମପାଳବାବୁ ଭକ୍ତୀୟ ଅନୁକରଣରେ ଯେଉଁ ମଧୁଶଯ୍ୟା ରଚନା କରି ଅଛନ୍ତି ତଦ୍ଦ୍ୱାରା ଦେଶର କି ମଙ୍ଗଳ ହେବ ? ରାମସୀତାଙ୍କର ପରସ୍ପର ଟଣାଓଟରା, ପୁଣି ସୀତାଙ୍କ ମୁଖରେ 'ଫୁଲ ପାଖକୁ ଭ୍ରମର ଯାଏ ନା ଭ୍ରମର ପାଖକୁ ଫୁଲ ଯାଏ'—ଏସବୁ ଦୃଶ୍ୟ ପିତା କନ୍ୟା, ଭାଇ ଭଗିନୀ ଏକତ୍ର ବସି ଦେଖିପାରିବେ ତ ?

"ହୋଇଥାନ୍ତା ଅଯୋଧ୍ୟାରେ ବିବାହ ଉତ୍ସବ
କୌଶଲ୍ୟା ଜନନୀ ମୋର ବର ବଧୂ ଦେଖି
କେତେ କେତେ ସୁଖରାଶି ହୃଦୟେ ପୋଷନ୍ତେ
ନ ହେଲା, ଦଇବ ବଳେ କା'ର ବଳ ଅଛି ?"

ରାମଚନ୍ଦ୍ରଙ୍କ ମୁଖରେ ଏ ଜାତୀୟ ସ୍ତ୍ରୀଜନୋଚିତ ଉକ୍ତି ବ୍ୟବହାର କରିବାକୁ କାମପାଳ ସଙ୍କୋଚ କରିନାହାନ୍ତି । ଏହା କି ପର୍ଶୁରାମ ସମକ୍ଷରେ ବନ୍ଧନରେ ପ୍ରାଣଭିକ୍ଷା ମାଗିବା ନୁହେ ?

× × ×

ଯତ୍କିଞ୍ଚିତ୍ ସାମାନ୍ୟ ଦୋଷତ୍ରୁଟି ସତ୍ତ୍ୱେ କାମପାଳ ଜଣେ ଉଚ୍ଚକୋଟୀର ନାଟ୍ୟକାର ଭାବରେ ପ୍ରତିଷ୍ଠିତ ହୋଇଛନ୍ତି ।

'ବସନ୍ତ ଲତିକା' ନାଟ୍ୟକାରଙ୍କ ମୃତ୍ୟୁପରେ ୧୯୩୩ ରେ ପ୍ରକାଶ ପାଇଥିଲା । ଏହା ଖଣ୍ଡିଏ ଐତିହାସିକ ନାଟକ । କବିକଳ୍ପନା ସୀତାବିବାହ ଅପେକ୍ଷା ଏହି ନାଟକରେ ଅଧିକ ଉନ୍ମୁକ୍ତଭାବେ କ୍ରୀଡ଼ା କରିଛି ।

"ମୟୂରଭଞ୍ଜର ରାଜା ବୀରେଶ୍ୱର କନିଷ୍ଠା ରାଣୀଙ୍କ ପ୍ରରୋଚନାରେ ପାଟ ମହାଦେଈ ଓ ତାଙ୍କର ଶିଶୁ ସନ୍ତାନ ରାମଚନ୍ଦ୍ରଙ୍କୁ ରାଜ୍ୟରୁ ବିତାଡ଼ନ କରିଦେଲେ । ପାଟ ମହାଦେଈ ନିଜର ସନ୍ତାନ ସହ ମାଣଝୀଙ୍କୁ ଗ୍ଳଲଆସିଲେ । କିନ୍ତୁ କନିଷ୍ଠା ରାଣୀଙ୍କ ଚକ୍ରାନ୍ତ ହେତୁରୁ ତାଙ୍କୁ ମାଣଝୀ ଛାଡ଼ି ପୁରୀ ଗ୍ଳଲଯିବାକୁ ହେଲା । ମାମୁଁଙ୍କ ଅର୍ଥ ସାହାଯ୍ୟରେ ରାମଚନ୍ଦ୍ର ଶିକ୍ଷିତ ହେଲେ, ଯବନ ଆକ୍ରମଣକୁ ପ୍ରତିରୋଧ କରିବାପାଇଁ ରାମଚନ୍ଦ୍ରର ସେନାପତିତ୍ୱ, ଜୟଲାଭ ହେତୁ ପୁରୀ ରାଜାଙ୍କ କନ୍ୟା ଲତିକା ସହିତ ତାର ବିବାହ, ତୀର୍ଥାଟନରେ ମାତା ପୁତ୍ରଙ୍କର ମାଣଝୀ ଆଗମନ, ସେଠାରେ ଶୋକସନ୍ତପ୍ତ ପିତା ବୀରେଶ୍ୱରଙ୍କ ଦର୍ଶନ ଓ ପରିଶେଷରେ ସମସ୍ତଙ୍କର ମିଳନ—ନାଟକ ବିଷୟବସ୍ତୁର ଏ ଶୈଳ୍ପିକ ବିନ୍ୟାସ କୌଶଳ ସର୍ବାଂଶରେ ଗ୍ଯୁର୍ଯ୍ୟମୟ । ମାତା ପୁତ୍ରର ଶେଷ ମିଳନ ଅତୀବ ବୈଚିତ୍ର୍ୟପୂର୍ଣ୍ଣ ଓ କବିତ୍ୱବ୍ୟଞ୍ଜକ । ବୀରେଶ୍ୱରଙ୍କ ଗଭୀର ଅନୁତାପ, ରାଣୀଙ୍କର ଅସୀମ ଧୈର୍ଯ୍ୟ ଓ ରାମଚନ୍ଦ୍ରର ଅମାପ ଶୌର୍ଯ୍ୟବୀର୍ଯ୍ୟ ପ୍ରକୃତ ମାନବିକ ଗୁଣରାଶି ହେତୁ ଏ ଚରିତ୍ରସବୁ ଯଥାର୍ଥତଃ ପ୍ରାଣବନ୍ତଭାବେ ଚିତ୍ରିତ ହୋଇଛନ୍ତି । ରାମଚନ୍ଦ୍ରର ଛଦ୍ମ ନାମ ବସନ୍ତ । ବସନ୍ତ ଓ ଲତିକାର ନାମାନୁସାରେ ନାଟକଟିର ନାମ 'ବସନ୍ତ ଲତିକା' । ଏ ନାଟକର ଶୈଳ୍ପିକ ମୂଲ୍ୟ 'ସୀତାବିବାହ' ଅପେକ୍ଷା ଉଚ୍ଚରେ ।"

ଡକ୍ଟର ନଟବର ସାମନ୍ତରାୟ, ଓ. ସା. ଇତିହାସ, (୧୮୦୩—୧୯୨୦)

"ମୌଳିକତା ପ୍ରତିଭାର କଷଟି ପଥର । ଏତଦ୍ୱାରା ତାହା ସୁବର୍ଣ୍ଣ କି ପିତ୍ତଳ ପାଠକେ ସହଜରେ ବୁଝିପାରିବେ ।" ପ୍ରତିଭା ସମ୍ପର୍କରେ—'ଶିକ୍ଷା ଓ ସମାଲୋଚନା' ପ୍ରବନ୍ଧରେ କାମପାଳ ଯାହା ଲେଖିଛନ୍ତି ତାହା ତାଙ୍କ ନାଟକ ପଢ଼ିଲାପରେ ହୃଦୟଙ୍ଗମ କରିହୁଏ । ସେ ଯେ ଖାଣ୍ଟି ସୁନା, ଏହା ସେ ଲେଖନୀମୁନରେ ପ୍ରମାଣ କରିଯାଇଛନ୍ତି ।

ତାଙ୍କ ପ୍ରତିଭା ଫୁଟି ଫୁଟି ନଥିଲା । ବିପୁଳ ସମ୍ଭାବନାର ସଙ୍କେତ ଦେଇ କାମପାଳ ଦିଗ୍‌ବଳୟରେ ଅନ୍ତର୍ହିତ ହୋଇଗଲେ । ଜ୍ୱଳନ୍ତ ଦୀପ୍ତ ମଶାଲ ହଠାତ୍ ଯେପରି କି ଲିଭିଗଲା । ଅସମ୍ପୂର୍ଣ୍ଣତାର ଅସନ୍ତୋଷ ଏବେ ବିଦଗ୍ଧ ଉତ୍କଳୀୟ ପ୍ରାଣକୁ ନିପୀଡ଼ିତ କରେ ।

●

# ତାରଣୀ ଚରଣ ରଥ

ଜନ୍ମ—୧୮୮୩

ମୃତ୍ୟୁ—ଜୁନ୍ ୨୨ ତାରିଖ, ୧୯୨୨

---

ଦେଶର ସାଂସ୍କୃତିକ ରୂପରଙ୍ଗ ବଦଳାଇ ଦେବା ଲାଗି ତାରଣୀଚରଣଙ୍କ ଅନ୍ତରରେ ତୀବ୍ର ବ୍ୟାକୁଳତା ଥିଲା । ସେ ଏକାବେଳକେ ହେବାକୁ ଚାହୁଁଥିଲେ ସହସ୍ରବାହୁ, ଏକାଧାରରେ ଅନେକ କିଛି—ଜୀବତତ୍ତ୍ୱବିତ୍, ଲିପିତତ୍ତ୍ୱବିତ୍, ଲୋକସଂସ୍କୃତିବିତ୍, ଐତିହାସିକ, କବି, ଗାଳ୍ପିକ, ଔପନ୍ୟାସିକ, ·ପ୍ରାବନ୍ଧିକ, ସମାଲୋଚକ । ମନୁଷ୍ୟର ଶକ୍ତି ସୀମିତ । ସମାନ୍ତରଭାବରେ ବିଦ୍ୟାର ବିଭିନ୍ନ ବିଭାବରେ ଜଣେ ବୈଶିଷ୍ଟ୍ୟ ହାସଲ କରି ନ ପାରେ । ଗୋଟିଏ ଦିଗରେ ନିଜସ୍ୱ କୃତିତ୍ୱ ଦେଖାଇବା ଆଗରୁ ବିଦ୍ୟୋତ୍ସାହୀ ତାରଣୀଚରଣ ସଂସାର ତ୍ୟାଗ କରିଗଲେ, ମାତ୍ର ୩୯ ବର୍ଷ ବୟସରେ ।

ଓଡ଼ିଆ ସାହିତ୍ୟର ଇତିହାସ ରଚନାରେ ସେ ଦିଗ୍‌ଦର୍ଶକ । ଶିଳାଲେଖ ଓ ତାମ୍ରଲେଖ ପାଠରେ ମଧ୍ୟ ସେ ଅଗ୍ରଣୀ । ଲୁକ୍‌କାୟିତ ଜାତୀୟ ଇତିହାସ ଉଦ୍ଧାରରେ ସେ ଆଜୀବନ ତତ୍ପରତା ଦେଖାଇଛନ୍ତି । ଗୌରବମୟ ଜାତୀୟ ଇତିହାସ ନ ଜାଣିଲେ ଜାତିର ପୁନରୁତ୍ଥାନ ସମ୍ଭବ ନୁହେ । ତାଙ୍କର ବିଶ୍ୱାସ ଥିଲା, ଜନ୍ମଭୂମି ଗଞ୍ଜାମରୁ ତେଲୁଗୁ ପ୍ରଭାବ ଦୂର ନ କଲେ ଓଡ଼ିଆଭାଷା ପୁନରୁଜ୍ଜୀବିତ ହୋଇ ପାରିବ ନାହିଁ । ଜାତିବତ୍ସଳ, ଓଡ଼ିଆଭାଷାପ୍ରେମୀ ତାରଣୀଚରଣ ସେଥିଲାଗି ଆଜୀବନ ଚେଷ୍ଟିତ ହୋଇଥିଲେ । ସରକାରୀ ଚାକିରି ମଧ୍ୟରେ ନାନା ପ୍ରତିକୂଳ ପରିସ୍ଥିତିରେ ରହି ତାଙ୍କୁ କାର୍ଯ୍ୟ କରିବାକୁ ହୋଇଥିଲା । ଅବସରର ପ୍ରତ୍ୟେକ ମୁହୂର୍ତ୍ତକୁ ସେ ସଜୀବ ଓ ସମୃଦ୍ଧ କରିଥିଲେ । ତାଙ୍କୁ ପୃଷ୍ଠପଟରୁ ହୁଏତ ପ୍ରେରଣା ଦେଉଥିଲେ କବିପ୍ରବର ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ, ସାହିତ୍ୟିକ ଶ୍ୟାମସୁନ୍ଦର ରାଜଗୁରୁ ଓ ଭାଷାତତ୍ତ୍ୱବିତ୍ ଗୋପୀନାଥ ନନ୍ଦ ।

ବ୍ରହ୍ମପୁର ସହରରେ ୧୮୮୩ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ, ଏହି ସହର ସେତେବେଳେ ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଅନ୍ତର୍ଭୁକ୍ତ ଥିଲା ।

ତାରଣୀଙ୍କ ପିତାଙ୍କ ନାମ ଶ୍ରୀବତ୍ସ ରଥ । ସ୍କୁଲ ଶିକ୍ଷକରୁ ସହକାରୀ ସ୍କୁଲ ଇନସ୍‌ପେକ୍ଟର ହୋଇ ସେ ଅବସର ଗ୍ରହଣ କରିଥିଲେ । ରଥ ପରିବାର ସମଗ୍ର ଗଞ୍ଜାମ ଜିଲ୍ଲାରେ ଏକ ଶିକ୍ଷିତ ପରିବାର ଭାବରେ ସୁପରିଚିତ ଥିଲା । ସମଗ୍ର ଗଞ୍ଜାମ ଜିଲାରେ ୧୨ ଜଣ ଗ୍ରାଜୁଏଟ୍‌ଙ୍କ ମଧ୍ୟରୁ ଏକଦା । ରଥ ପରିବାରରେ ୮ ଜଣ ଥିଲେ । ତାରଣୀ ମାନ୍ଦ୍ରାଜ ପ୍ରେସିଡେନ୍‌ସି କଲେଜରୁ ବି. ଏ. ପାସ୍ କଲେ ।

ସେତେବେଳେ ଗଞ୍ଜାମର ସମସ୍ତ ସ୍କୁଲ ପରିଦର୍ଶକ ତେଲୁଗୁ । ଏକ ପ୍ରାଥମିକ ଓଡ଼ିଆ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ସେମାନେ ଓଡ଼ିଆ ସ୍କୁଲ ପରିଦର୍ଶନର ଯୋଗ୍ୟତା ଅର୍ଜନ କରୁଥିଲେ । ପ୍ରକୃତ ପକ୍ଷେ ସେମାନଙ୍କର କିଛି ଓଡ଼ିଆ ଭାଷା ବା ସାହିତ୍ୟ ଜ୍ଞାନ ନ ଥିଲା । ଫଳରେ ସ୍କୁଲଗୁଡ଼ିକ ଉତ୍ପୀଡ଼ିତ ଓ ଓଡ଼ିଆଭାଷା ଲାଞ୍ଛିତ ହେଉଥିଲା । ଓଡ଼ିଆ ସାହିତ୍ୟର ବିକାଶ ଲାଗି କ୍ଷେତ୍ର ଏକାନ୍ତ ପ୍ରତିକୂଳ ଥିଲା । ସାଷାଣୀ ଅବସ୍ଥାର ଉଦ୍ଧାର ଲାଗି ଯେଉଁ କେତେକ ଭାଷାପ୍ରେମୀ ଶିକ୍ଷିତ ଯୁବକ ଆଗଭର ହୋଇଥିଲେ, ତାରଣୀ ଚରଣ ସେମାନଙ୍କର ଅଗ୍ରଯୋଦ୍ଧା । ସେ ବି. ଏ. ପାସ୍ ପରେ ପ୍ରଥମେ ଶିକ୍ଷାବିଭାଗରେ ସହକାରୀ ଇନ୍‌ସପେକ୍ଟର ଭାବେ ଯୋଗ ଦେଇଥିଲେ । ତା ପରେ ମାନ୍ଦ୍ରାଜରେ ବି. ଏଲ୍. ପାସ୍ କରି ସେ ବ୍ରହ୍ମପୁରରେ ଓକିଲାତି କଲେ ଓ କିଛି କାଳ ପରେ ମୁନସିଫ୍‌ଭାବେ ନିଯୁକ୍ତ ହେଲେ । ୧୯୦୮ ରେ ଆସ୍କା, ତାପରେ ଅନୁଗୁଳ ଓ ଶେଷରେ ଏଲ୍ଲୋରଭରମ୍ (ଗୋଦାବରୀ ଜିଲାର ଅନ୍ତର୍ଗତ) ସହରରେ ମୁନସିଫ୍‌ଭାବେ କାର୍ଯ୍ୟ କଲେ । ୧୯୧୨ ରେ ଆସ୍କା ଆସିଥିବା ବେଳେ ସିରିବ୍ରାଲ୍ ମେଲେରିଆରେ ଆକ୍ରାନ୍ତ ହୋଇ ସେ ଇହ ଧାମ ତ୍ୟାଗ କଲେ ।

ତାଙ୍କ ମୃତ୍ୟୁରେ ମର୍ମାହତ ହୋଇ ବିଶ୍ୱନାଥ କର ଉତ୍କଳ ସାହିତ୍ୟ ( ଷଷ୍ଠ-ବିଂଶତି ବର୍ଷ ) ପତ୍ରିକାରେ ଲେଖିଥିଲେ—

"ତାରଣୀଚରଣଙ୍କ ଜୀବନଟି ଯେପରି ନିରାଡ଼ମ୍ବର, ରଚନା ସେହିପରି ନିରାଡ଼ମ୍ବର ଥିଲା । ବୈଜ୍ଞାନିକ ତତ୍ତ୍ୱ ସହଜ ଓ ସରଳ ଭାଷାରେ ପ୍ରକାଶ କରିବାର କ୍ଷମତା ତାଙ୍କର ଯଥେଷ୍ଟ ଥିଲା । ଐତିହାସିକ ତଥ୍ୟାନୁସନ୍ଧାନ ପ୍ରତି ତାଙ୍କର ଅନୁରାଗ ଯଥେଷ୍ଟ ଥିଲା । ତାଙ୍କ ପରି ଜଣେ ସୁଲେଖକ, ଅନୁରାଗୀ ସାହିତ୍ୟସେବକ, ଶ୍ରମଶୀଳ ତଥ୍ୟାନୁସନ୍ଧିତ୍ସୁଙ୍କ ଅକାଳ ବିୟୋଗରେ ଆମ୍ଭେମାନେ ଅତ୍ୟନ୍ତ ବ୍ୟଥିତ ହୋଇଅଛୁ ।"

ତାରଣୀଚରଣ ଗତାନୁଗତିକ ଛନ୍ଦରେ କଣେ କବି ଥିଲେ । କିନ୍ତୁ ସେ ଦିଗରେ ତାଙ୍କ ପ୍ରତିଭାର ଉଜ୍ଜ୍ୱଳ ସୂଚନା ମିଳେ ନାହିଁ । ସାଧନା ଅଭାବରୁ ଏହା ପ୍ରାଥମିକ ସ୍ତରରେ ହିଁ ରହିଗଲା । ଗୋଟିଏ ଉଦ୍ଧୃତ ମ'ନ ଦେଉଅଛୁ—

"ଯା କୋଡ଼ ଆଶ୍ରୟ ଥିଲା ବୁଧ ବୀରଙ୍କର
ଆଜ ତହିଁ ବନ୍ୟ ଜନ୍ତୁ କରନ୍ତି ବିହାର
ଶୁଭୁଥିଲା ସଦା ଯହିଁ ତୁର୍ଯ୍ୟବାଦ୍ୟ ରୋଳ
ନିର୍ଜନତା ଶାନ୍ତ ଆଜ ବିରାଜେ ସେ ସ୍ଥଳ ।"

ଉତ୍କଳ ସାହିତ୍ୟ ୧୩୧୫ ମସିହା

ଗବେଷକ ଭାବରେ ତାରଣୀଚରଣ ଶ୍ରଦ୍ଧାସ୍ପଦ । ଉତ୍କଳସାହିତ୍ୟ ପତ୍ରିକାର ସେ ଜଣେ ନିୟମିତ ଲେଖକ ଥିଲେ । ତାଙ୍କର ଅଧିକାଂଶ ରଚନା ସେଥିରେ ହିଁ ପ୍ରକାଶିତ ହୋଇଥିଲା ।

'ଜୟଦେବ ଭଞ୍ଜଙ୍କ ତାମ୍ରଶାସନ' ପ୍ରବନ୍ଧଟି ୯ । ୩ । ୧୯୨୨ ରେ ଉତ୍କଳ ସାହିତ୍ୟ ସମାଜରେ ପଠିତ ହୋଇଥିଲା । ତା ଉପରେ ଆଲୋଚନା କରି ଗବେଷକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଉ: ସା: ରେ ନିମ୍ନ ମନ୍ତବ୍ୟ ପ୍ରକାଶ କରିଥିଲେ—"ତାରଣୀ ଚରଣଙ୍କ ପ୍ରତ୍ନତତ୍ତ୍ୱାନୁରାଗ ପ୍ରଶଂସନୀୟ । ସେ ବହୁକାଳ ହେଲା ଗୁମୁସର ରାଜ୍ୟର ଇତିହାସ ସଂଗ୍ରହରେ ବ୍ରତୀ ଅଛନ୍ତି । ପ୍ରାଚୀନ ତାମ୍ରଶାସନଖଣ୍ଡି ଗୁମୁସର ରାଜ୍ୟରୁ ପ୍ରାପ୍ତ, ସୁତରାଂ ଏ ବିଷୟରେ ତାଙ୍କର ମତ ଅଧିକ ଆଦରଣୀୟ ହେବା ସ୍ୱାଭାବିକ ।"

ଗୁମୁସର ଇତିହାସରେ ରାଜର୍ଷି ସମଗ୍ର ଭାରତ ଭ୍ରମଣକାରୀ ଶ୍ରୀକର ଭଞ୍ଜ, ଅତ୍ୟାଚାରୀ ଧନଞ୍ଜୟ ଭଞ୍ଜଙ୍କ ଜୀବନୀ, ପ୍ରଜାମେଳୀର ଇତିହାସ ସେ ବର୍ଣ୍ଣନା କରିଛନ୍ତି ।

'ଚମ୍ପା' ପ୍ରବନ୍ଧରେ ଚିଲିକାଂଶିତସ୍ଥ ଚମ୍ପା ଗ୍ରାମର ପ୍ରାକୃତିକ ଦୃଶ୍ୟ ଓ ଖଲ୍ଲିକୋଟ ରାଜାଙ୍କ ଚମ୍ପା ପ୍ରାସାଦ ବର୍ଣ୍ଣିତ । ଗଞ୍ଜାମ କଲେକ୍ଟର ସ୍ନୋଡ୍‌ଗ୍ରସ୍ (Snodgross) ନାମକ ଜଣେ ଗଞ୍ଜାମ ଜିଲା କଲେକ୍ଟର ୧୭୯୨ ଖ୍ରୀଷ୍ଟାବ୍ଦରେ ଏହା ନିର୍ମାଣ କରିଥିଲେ । ଗଞ୍ଜାମ ଜିଲାରେ ଦୁର୍ଭିକ୍ଷ ଘୋଟିଥିବା ସମୟରେ ବହୁ ଧନ ବ୍ୟୟ କରିଥିବାରୁ ଇଷ୍ଟଇଣ୍ଡିଆ କମ୍ପାନୀ ତାଙ୍କୁ ପଦଚ୍ୟୁତ କରିଥିଲା । ତାଙ୍କ ପେନ୍‌ସନ୍ ମଧ୍ୟ ସ୍ଥଗିତ ହୋଇଥିଲା । ବିଲାତ ଫେରିଗଲା ପରେ ଦୁଃସ୍ଥ ଓ ଜୀର୍ଣ୍ଣଶୀର୍ଣ୍ଣ ବେଶରେ ସେ ଏକ ସମାର୍ଜନୀ ଧରି କମ୍ପାନୀ ଡିରେକ୍ଟରମାନଙ୍କ ଯାତାୟାତ ପଥ ପ୍ରତିଦିନ ପରିଚ୍ଛନ୍ନ କରୁଥିଲେ । ଜଣେ ଡିରେକ୍ଟର ଦିନେ ଅଟକି ପଚାରିଲେ—ମହାଶୟ, ଏ କଣ ? ସେ ଉତ୍ତର ଦେଲେ—ଭାରତବର୍ଷରେ ଦୀର୍ଘ ରାଜସେବାର ଏଇ ପରିଣତି । ତାପରେ ତାଙ୍କୁ ପେନ୍‌ସନ୍ ଦେବାର ବ୍ୟବସ୍ଥା ହୋଇଥିଲା ।

ଅସ୍କା ଚନ୍ଦ କାରଖାନାର ପ୍ରତିଷ୍ଠାତା ମିନ୍‌ଚନ୍ ସାହେବଙ୍କଠାରୁ ଖଣ୍ଡି କୋଟ୍ ଭିକ୍ଷା ଏହା ହସ୍ତ କରିଥିଲେ ।

ତାରିଣୀଙ୍କ 'ଜଉଗଡ଼' ପ୍ରବନ୍ଧଟି ଅଶୋକଙ୍କ ଶିଳାଲେଖର ଐତିହାସିକ ରହସ୍ୟ ଉଦ୍‌ଘାଟନ କରିଅଛି । ପହିଲେ ମେଜର ଜେନେରାଲ କନିଂହାମ୍ ଏହାର ପାଠୋଦ୍ଧାର କରିଥିଲେ । 'ଧଉଳି' ପାହାଡ଼ଠାରୁ ଏଥିରେ ଅଧିକ ଦୁଇ କୋଟି ଅନୁଶାସନ ଖୋଦିତ ହୋଇଅଛି । ସେସବୁ ଗିରିଜନଙ୍କ କଲ୍ୟାଣ ଲାଗି ଉଦ୍ଦିଷ୍ଟ ।

'କବିଦ୍ୱୟଙ୍କ ସଂସାର ଓ ଜୀବନ ଚିନ୍ତ' ପ୍ରବନ୍ଧରେ ସେ ରଥ କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କ ଜୀବନଦର୍ଶନର ଏକ ତୁଳନାତ୍ମକ ଆଲୋଚନା କରିଛନ୍ତି । ତାଙ୍କ ମତରେ ରାଧାନାଥଙ୍କ ତମସାବୃତ, ନୈରାଶ୍ୟପୂର୍ଣ୍ଣ ଜୀବନଚିନ୍ତ ଅପେକ୍ଷା ମଧୁସୂଦନଙ୍କ ଆଲୋକମୟ ଓ ଆଶାପୂର୍ଣ୍ଣ ଜୀବନଚିନ୍ତ ଅଧିକ କଲ୍ୟାଣକର ।

ମାନବଜୀବନ ଉଦ୍ଦେଶ୍ୟଶୂନ୍ୟ ନୁହେ । ଶ୍ମଶାନ ହିଁ ତାର ଚରମ ଲକ୍ଷ୍ୟ ନୁହେ । ମାନବଜୀବନ କେବଳ ଦୁଃଖପୂର୍ଣ୍ଣ ଓ ନୈରାଶ୍ୟମୟ ନୁହେ । ମନୁଷ୍ୟ ପକ୍ଷରେ ଏହିପରି ଧାରଣା ଭ୍ରମ ମାତ୍ର ଏବଂ ଦୁର୍ବଳ ହୃଦୟର ପରିଚୟକ । ଏହି ପ୍ରକାର ମତ ପୋଷଣ ନିଜର ଓ ସମଗ୍ର ସଂସାରର ଅନାବଶ୍ୟକ ଭାର ତୁଲ୍ୟ ଅଟେ । ସେମାନଙ୍କ ଚକ୍ଷୁରେ ସମଗ୍ର ସଂସାର ବିଷମୟ । ଏଣୁ ସେମାନେ ନିଜ ପ୍ରାଣରେ ବିନା କାରଣରେ ପୁଣି ବଡ଼ କଷ୍ଟ ଅନୁଭବ କରନ୍ତି । ଜଗତର କୌଣସି ଉପକାର କରିବା ଦୂରେଥାଉ, ବରଂ ପ୍ରଭୂତ ଅପକାର ସାଧନ କରନ୍ତି ଏବଂ ପରମପିତା ପରମେଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ ଅଗ୍ରସର ହୋଇ ମୃତ୍ୟୁମାର୍ଗର ବିପଥଗତ ଦିଗରେ ଚାଲନ୍ତି । ପକ୍ଷାନ୍ତରେ ଯେଉଁମାନେ ଦ୍ୱିତୀୟ ମତର ପୋଷକ, ସେମାନେ ନିଜର ଓ ଜଗତର ଅଶେଷ ମଙ୍ଗଳ ସାଧନ କରନ୍ତି । ତଦ୍ ଦ୍ୱାରା ମାନବହୃଦୟରେ ପ୍ରଭୂତ ବଳ ଓ ଧୈର୍ଯ୍ୟ ଉଦିତ ହୁଏ ଏବଂ ତାହାର ସାହାଯ୍ୟରୁ ମାନବ ସଂସାରର ସମସ୍ତ ଦୁଃଖକଷ୍ଟ ଅତିକ୍ରମ କରି ଅଦ୍‌ଭୁତ କାର୍ଯ୍ୟମାନ ସମ୍ପାଦନ କରିବାକୁ ସମର୍ଥ ହୁଏ । ଏହି ମତ ହିଁ ସମସ୍ତଙ୍କର ଅବଲମ୍ବନୀୟ, ଏହି ବଳ ହିଁ will power, soul force, ମନବଳ ବା ଆତ୍ମବଳ ନାମରେ ବିଦିତ ଅଟେ । ସେ କବି Long Fellow ଙ୍କ କବିତା ଉଦ୍ଧାର କରିଛନ୍ତି—

> Tell me not in mournful numbers
> Life is not an empty dream.

ତୁଳନାରେ ରାଧାନାଥଙ୍କ ଜନ୍ମତର ପ୍ରତିପନ୍ନ କରିଥିବାରୁ କାଳନ୍ଦୀଚରଣ ପାଣିଗ୍ରାହୀ ତାରିଣୀଙ୍କୁ ତୀବ୍ରଭାବେ ସମାଲୋଚନା କରିଛନ୍ତି ଓ ତାରିଣୀ ତାର ଉତ୍ତର

ଦେଇଛନ୍ତି । ତାରଣୀଙ୍କ ଏକଦେଶଦର୍ଶୀ ମତ ଗ୍ରହଣଯୋଗ୍ୟ ହୋଇ ନ ପାରେ । ରାଧାନାଥଙ୍କ ଦୁଃଖବାଦୀ ଦର୍ଶନ ମଧ୍ୟ ଏକ ଜୀବନସତ୍ୟ । କେବଳ ମତ ବା ଦର୍ଶନ-ଦୃଷ୍ଟିରୁ କଳାର ମହତ୍ତ୍ୱ ବା ନ୍ୟୂନତା ପ୍ରତିପନ୍ନ କରାଯାଇ ନ ପାରେ ।

'ଜୀବମାନଙ୍କର ପୁନରୁତ୍ପତ୍ତି', 'ଜୀବ ବନ୍ଧନ' ପ୍ରଭୃତି ବୈଜ୍ଞାନିକ ପ୍ରବନ୍ଧ ରଚନା କରିଥିବାରୁ ନୂତନ ମାର୍ଗ ପ୍ରଦର୍ଶକ ଭାବେ ତାରଣୀଚରଣ ନିଶ୍ଚୟ ଅଭିନନ୍ଦନୀୟ ।

କବି ଭରତସେଣ, ପୂର୍ଣ୍ଣମଣି କବି, କବିସୂର୍ଯ୍ୟ ରାୟଗୁରୁ ପ୍ରବନ୍ଧ ଜୀବନୀ-ମୂଳକ । ସେଣଙ୍କ ନବାସ ଧରାକୋଟ, ରଚନା—ପୁଲୋଚନା ପରିଣୟ, ଉପେନ୍ଦ୍ର-ଭଞ୍ଜଙ୍କ ରଚନାରୀତି ଅନୁସରଣରେ ଊନବିଂଶ ଶତାବ୍ଦୀରେ ରଚିତ ।

ପୂର୍ଣ୍ଣମଣିଙ୍କ ଜନ୍ମସ୍ଥାନ ଗୁମୁସର, ରଚନା ଅଧ୍ୟାତ୍ମ ରାମାୟଣ । କବିସୂର୍ଯ୍ୟ ବଳଦେବଙ୍କ ଜୀବନୀ ଉପରେ ଆଲୋକପାତ କରି ପରେ ସେ କହିଛନ୍ତି ଯେ ତାଙ୍କ କବିତା ପ୍ରବାଦ ବା ପ୍ରବଚନରେ ପରିଣତ ହୋଇଅଛି, ଯଥା—

"ଭୁଆ ନେଇ ଗୁହା କନ୍ଦରେ ରଖିଲେ
ସିଂହ ପରାକ୍ରମ କି କରିବ ?
କୁଆ ନେଇ ଶୁଆ ପାଖରେ ରଖିଲେ
ରାମ ନାମ କି ସେ ଭଣିବ ?"
"ଯାହା ମନ ଯହିଁକି ରସେ,
ତାହା ବିନା ତାକୁ ଆନ ନ ଦିଶେ ।"
"ଯାହାର ଯେମନ୍ତ ସ୍ୱଭାବ
ପ୍ରାଣ ଗଲେ ଗୁଡ଼ କି ଯିବ ?"

ଲୋକଗଳ୍ପ ସଂଗ୍ରାହକମାନଙ୍କ ମଧ୍ୟରେ ତାରଣୀଚରଣଙ୍କ ଶୈଳୀଗତ ବୈଶିଷ୍ଟ୍ୟ ପ୍ରକଟିତ । ତାଙ୍କ ସଂଗୃହୀତ ଗଳ୍ପ ଉତ୍କଳସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା, କିନ୍ତୁ 'ଉତ୍କଳ କାହାଣୀ' ବା 'କଥା ଲହରୀ' ପରି କୌଣସି ଗଳ୍ପ ସଞ୍ଚୟନରେ ରୂପାୟିତ ହୋଇପାରି ନଥିଲା ।

ତାରିଣୀଙ୍କ ଗଳ୍ପରେ କଥାଣି ନାହିଁ, କିନ୍ତୁ କଥା ଆରମ୍ଭରେ ପରିବେଶର ସୂଚନା ସେ ଦେଇଛନ୍ତି । ଲୋକଗଳ୍ପ ଲାଗି ସ୍ୱତନ୍ତ୍ର ପରିବେଶ ଲୋଡ଼ା । 'କାଳୀ ପଦ୍ମା କଥା' ଏହିପରିଭାବରେ ଆରମ୍ଭ କରାଯାଇଛି—

"କଥାଟିଏ କହ, କଥାଟିଏ କହ ବୋଲି ସମସ୍ତେ ପାଟିକରି ଆଉ ରହିଦେଲୁ ନାହିଁ । ଚମ୍ପାନାନୀ ତୁଳସୀ ଚଉଁରାମୂଳେ ସଞ୍ଜବଳତା ଦେଉଥିଲା । 'ରହଥା ଗୋ ମା' ବୋଲି ଧାଇଁ ଆସିଲା, ବୁଢ଼ୀ ଆପୁଣି ଆମକୁ ଗୋଟିଏ ଢଗ ପଗ୍ଗର ପାଞ୍ଚଲାଣି— "ପାକୁଡ଼ୁ ପାକୁଡ଼ୁ ପୁଞ୍ଜିଏ, ଝୁଲୁ ଠୋଓ ଠୋଓ ପୁଂଜଏ, ପାଲୁରୁ ବାଲୁରୁ ପୁଂଜଏ ।"

ଆମେ କେହି କହିପାରିଲୁ ନାହିଁ । ପଛେ ହିଁ ଆମେ ହାରିଲୁ ବୋଲି କହିବାରୁ ବୁଢ଼ୀ ଅର୍ଥ କହିଲା—ବର୍ଷକରେ ଶୀତକାଳ ଚାରିମାସ, ଖରାକାଳ ଚାରିମାସ, ଆଉ ବରଷାକାଳ ଚାରିମାସ ।

ତାପରେ ବୁଢ଼ୀ ଆରମ୍ଭିଲା—ଶୁଣରେ ପିଲାଏ, ଆଜି ତୁମକୁ କୋଟୀ ପଦ୍ମା କଥା କହିବ ।

ଆମେ ପିଲାପାକ ଜକାଜକି ହୋଇ ବସି ତା ମୁହଁକୁ ଚାହିଁ ରହିଲୁ ।

"ଗୋଟିଏ ରାଇଜରେ ରଜାଟିଏ ଥିଲା । ସେ ରାଇଜର ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କୋଟୁଆଳ ପୁଅ ପିଲାଦିନରୁ ସଙ୍ଗାତ । ଚାରିଜଣଙ୍କର ଗୋଟିଏ ପ୍ରାଣ । ଦିନେ ସମସ୍ତେ ବସି ବିଚାର କଲେ—ଆମର ବାପାମାନେ ତ ବୁଢ଼ା ହେଲେଣି । ଅଳପ ଦିନରେ ଆମକୁ ରାଇଜର ଦେଖାରଖା ବୁଝିବାକୁ ପଡ଼ିବ । ଏବେ ମରୁବେଳେ କେତେ ଘରେ ବସିଥିବା ? ଆଉ ପଛକୁ କୁଆଡ଼େ ଯାଇପାରିବା କି ? ଏବେ ଏକା ଭଲ ସମୟ ହୋଇଛି, ଚାଲ ଦେଶ ବୁଲିଆସିବା ।"

ତାଙ୍କ ସଂଗୃହୀତ ଗଂଜାମ ଅଞ୍ଚଳର 'କଲରେଇ ଫୁଲ'ର କିଛି ବିଶେଷତ୍ୱ ଅଛି । ଗଳ୍ପର ବିଷୟ ଭିନ୍ନ, ବଚନିକା ମଧ୍ୟ ଭିନ୍ନ ।

'ଗୋଟିଏ ରାଇଜରେ ଏକ ସାଧବ ଥାଏ ଯେ ତାର ଅକଳନା ସମ୍ପତ୍ତି ଥାଏ । ତାର ସାତପୁଅ ଆଉ ଗୋଟିଏ ସୁନାନାକୀ ଝିଅ । ଛ'ପୁଅ ବିଭାହୋଇ ଛ'ବୋହୂ ଆଣିଲେ । ସାନପୁଅ ବିଭା ହୋଇ ନ ଥାଏ । ଝିଅଟି ବଡ଼ ଗେହ୍ଲାରେ ବଢ଼ି ଥାଏ । ତାକୁ କଲରେଇ ଫୁଲ ବୋଲି ନାଁ ଦେଇଥିଲେ । ଦିନେ ଦାଣ୍ଡକୁ ପାଚିଲା କେନ୍ଦୁଫଳ ବିକା ଆସିଥିଲା । ସାଧବ ଘର ସାନ ପୁଅଟି ଯାଇ କେତୋଟି କିଣି ଆଣିଲା । କେଉଟା ଖାଇଲା, ବାକିସବୁ ଅଟେଇରେ ନେଇ ଲୁଚେଇ ଦେଇଥାଏ । କଲରେଇ ଫୁଲ ସ୍ଥା ଦେଖି ଥିଲା, ସାନଭାଇ ପଦାକୁ ବାହାରିଯିବାରୁ ଝିଅଟି ଯାଇ ଫଳଗୁଡ଼ିକ ଅଟେଇରୁ କାଢ଼ି ଆଣି ଖାଇଦେଲା । ସାନଭାଇ ଦେଖିଲାବେଳକୁ

ଝଟେଇରେ ଆଉ ଫଳ ନାହିଁ । କେତେ ଖୋଜିଲ, କାହିଁ ପାଇଲ ନାହିଁ । ପଛକୁ କଲରେଇ ଫୁଲ ଭୁଣ୍ଡରୁ ବାହାରି ବାଶିଲ, ସେଇ ଖାଉଥିବାର ଜଣସ୍ତ ଜାଣିଲ । ସେ ତା କେନ୍ଦୁଫଳ ଖାଇଲା ତାକୁ ଏକା ବନ୍ଧୁଜନ ବୋଲି ଏକାଜଣ ଧରି ବସିଲ, ଜଏ କେଉଁ ଜନ୍ମରେ ବେଳେ ବୁଝିଲି ନାହିଁ ।"

ଗଛଟଣ ପରେ କୋଇଲିବୁଢ଼ ପକେଇଗଲେ । କଲରେଇ ଆଉ କଇଁଚୁ ଫେଠିଲ ନାହିଁ । ବୋହୂମାନେ ଗାଇଲେ—

ଆସ ଗୋ ଆସ ଗୋ କଲରେଇ ଫୁଲ
ବନ୍ଧୁ ହବ ପର
ଲହୁଣୀର ବେଦୀ ଛରଲି ଗଲ
ପାନର ଗ୍ରୁମୁଣ୍ଡିଆ ଲେହଲି ଗଲ
ଆସ ଗୋ ଆସ ଗୋ କଲରେଇ ଫୁଲ
ବନ୍ଧୁ ହବ ପର ।
ପାଖ ବରଯାତ ବାହୁଡ଼ି ଗଲେ
ଦୂର ବରଯାତ ଶୋକରେ ମଲେ
ଆସ ଗୋ ଆସ ଗୋ କଲରେଇ ଫୁଲ
ବନ୍ଧୁ ହବ ପର ।
ଶଙ୍ଖୁଆ ଭଣ୍ଡାରୀ ଶୋକରେ ମଲ
ଲୋକ ଜାତ ସବୁ ପୋଚକି ଗଲ
ଆସ ଗୋ ଆସ ଗୋ କଲରେଇ ଫୁଲ
ବନ୍ଧୁ ହବ ପର ।

କଲରେଇ ନଈ ଭିତରୁ ଉତ୍ତର ଦେଲ—

ସେବେ ହୋଇଥିଲ ବୋହୂ
ଏବେ ହବ ଜାଆ
ତୁମ୍ଭର ମୁହିଁକୁ ମୁଁ କେମିତ ଚୁହିଁବ ?
ବୁଡ଼ ରେ ଡଙ୍ଗି ବୁଡ଼

ବାପ ମା ଡାକିବାରୁ କଲରେଇ କହିଲ—

ସେବେ ହୋଇଥିଲ ମା ବାପ
ଏବେ ହବ ଶାଶୁ ଶଶୁର
ତୁମ୍ଭର ମୁହିଁକୁ କେମିତ ଚାହିଁବ ?
ବୁଡ଼ରେ ଡଙ୍ଗି ବୁଡ଼ ।

ଶେଷକୁ ଋଷି ଯାଉଥିବା ଦାନ୍ତକାଠିକୁ କହିଲା—ତୁ ଯେବେ ସନ୍ଧ୍ୟାସୁଗର ଦାନ୍ତକାଠି ହୋଇଥିବୁ, ଡଙ୍ଗା ହୋଇଯିବୁ । ଦାନ୍ତକାଠି ଡଙ୍ଗା ହୋଇଗଲା । କଲରେଇ ସେଥିରେ ବସି ବସି ଭାସି ଭାସି କୂଳରେ ଲାଗିଲା; ଗୋଟିଏ ମଠରେ ରହିଲା । ବାବାଜୀ ପାଳିଲେ ଝିଅପରି । କଏ ଏମିତି କହୁଚି ବୋଲି ବାବାଜୀ ଏଣେ ତେଣେ ଖୋଜିଲେ, ସେଇ ବନରୁ ସେ ଅଖା ଭିତରେ ରହେ । ବାବାଜୀ ଅଖାଟିକୁ କାନ୍ଧରେ ପକାଇ ଭିକ ମାଗିଯାଏ, ସେ ଅଖା ଭିତରୁ ଗାଏ—

କଲରେଇ ଫୁଲ ବହୁତ ଦୁଃଖ
ଆଞ୍ଜୁଳା ମୁଠାଇ ଦିଅ ଗୋ ଭିକ ।
ବାପ ଭାଇ କଲେ ବଡ଼ କୁକର୍ମ
ଗୁରୁଆଡ଼େ ନାହିଁ ତ ଧର୍ମ
ଯୋଗୀ ପାଦପଦ୍ମ କରଇ ସେବା
ଅଟନ୍ତି ସେ ମୋର ଧର୍ମର ବାବା
ଭୋକେ ଶୋଷେ ହଜି ଯାଉଚି ପ୍ରାଣ
ଆଞ୍ଜୁଳା ମୁଠାଇ ଦିଅ ଗୋ ଅନ୍ନ ।

ଏମିତି ବୋଲୁ ବୋଲୁ ଦିନେ କଲରେଇର ସଙ୍ଗାତ ଏ ଗୀତ ଶୁଣିଲା । ବାପାକୁ କହି ଅଖାରୁ କଲରେଇକୁ କାଢ଼ି ଭଲ ଘରେ ବାହା କରିଦେଲା ।

ସ୍ୱାମୀଜୀ ଯୁବକମାନଙ୍କୁ ଲୋକଲୋଚନକୁ ଆଣିବା ତାରଣୀଚରଣଙ୍କର ଉଦ୍ଦେଶ୍ୟ ଥିଲା । କାରଣ ଏହିପରି କବିମାନଙ୍କ ପୋଥିସବୁ ଗୃହଦାହ ଓ କୀଟଦଂଶ ଫଳରେ ନଷ୍ଟଭ୍ରଷ୍ଟ ହୋଇ ଯାଉଥିଲା ।

'ମାଇଗୁଲିଆ ଟଙ୍କେଇ ସାହୁ' ତାଙ୍କର ଏକ କ୍ଷୁଦ୍ର ଗଳ୍ପ । ସାରଥି ଭଲ ଗୃହୀ, କିନ୍ତୁ ତା ପୁଅ ରଙ୍କ ଅନାଡ଼ି, ଅପଦାର୍ଥ—ମେଦମାଂସ ମେଞ୍ଚାଟେ । କୌଣସି ଦାୟିତ୍ୱ ମୁଣ୍ଡକୁ ନିଏନାହିଁ, କିଛି କାର୍ଯ୍ୟ କରେନାହିଁ । ପୁତ୍ରର ଚିନ୍ତାରେ ବୈଦ୍ୟ ସାରଥି ଆଖି ବୁଜିଲା । ସ୍ତ୍ରୀର ଗ୍ରାସ ଶିମ୍ବ ଭୟରେ ରଙ୍କ ଆଉ ଘରେ ପଶିଲାନାହିଁ । ସାରଥିର ସୁଖର ସଂସାର ଭାଙ୍ଗି ଚୂରମାର ହୋଇଗଲା, ଘର ଡିହରେ ପରିଣତ ହେଲା ।

ଏହି ଗଳ୍ପରେ କେତେକ ଢଗ ବ୍ୟବହୃତ ହୋଇଅଛି—

'କୁଳ ଝିଅ କି କାଳିଆ
ଗୁଡ଼ ପାଣି କି ଗୋଳିଆ ?'
'ମାଇଗୁଲିଆ ଟଙ୍କେଇ ସାହୁ
ମାଇପ ହାତରୁ କହୁଣି ଖାଉ ।'

ଏହି ଗଳ୍ପରେ ପ୍ରଯୁକ୍ତ କେତୋଟି ହଳିଆ ଗୀତ ଲୋକସାହିତ୍ୟ ପ୍ରତି ତାରିଣୀଙ୍କ ଗଭୀର ଅନୁରାଗର ସୂଚନା ଦିଏ :—

'ରାମ ବିଭାକାଳେ ଯେ ଲକ୍ଷଣ ବରକାତି
କନକ ବେଦୀ ତଳେ ଫେକିଦେଲେ ଛତି
ଛତି ଗୁରିପାଖେ ଯେ ମୁକୁତା ଲମ୍ବ ଲମ୍ବ ହେ ।'

'ରାବଣ ମଲା ବୋଲି ଲଙ୍କାରେ ବାରତା
ରାଣୀ ମନ୍ଦୋଦରୀ କାନ୍ଦଇ କି କଲୁ ବିଧାତା ହୋ'

'ଗୋଠକୁ ସୁନ୍ଦର ଗାଈ
ଗାଁକୁ ସୁନ୍ଦର ନଡ଼ିଆ ଗଛ ଗୁଡ଼ି
ଝିଅକୁ ସୁନ୍ଦର କୋଳି
ଟୋକାକୁ ସୁନ୍ଦର ପିନ୍ଧିଲା ଟେଡ଼ି ବାଳ ।'

ତାରିଣୀଙ୍କ 'ଅନ୍ନପୂର୍ଣ୍ଣା' ଟିଏ କ୍ଷୁଦ୍ର ଐତିହାସିକ ଉପନ୍ୟାସ । ରଚନାକାଳ ୧୯୨୨ । ବିଜୟ ନଗର ରାଜା କୃଷ୍ଣଦେବ ରାୟଙ୍କ ସହିତ ଗଜପତି ରାଜା ପ୍ରତାପରୁଦ୍ରଙ୍କ ଯୁଦ୍ଧ, ପରାଜୟ, ରାୟଙ୍କ ସହିତ ପ୍ରତାପଙ୍କ କନ୍ୟା ଅନ୍ନପୂର୍ଣ୍ଣାର ବିବାହ ଏହାର ବିଷୟବସ୍ତୁ । ଏହା ଏକ ଘଟଣାପ୍ରଧାନ ଉପନ୍ୟାସ ଓ ଐତିହାସିକ ଉପନ୍ୟାସ-ସାହିତ୍ୟ ରଚନା କ୍ଷେତ୍ରରେ ଏହାର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି ।

ତାଙ୍କ 'ଉତ୍କଳସାହିତ୍ୟର ଇତିହାସ' ୭୨ ପୃଷ୍ଠାର ପୁସ୍ତକଟିଏ, ୧୯୧୪ ରେ ଏହା ରଚିତ ଓ ୧୯୧୬ ରେ ପ୍ରକାଶିତ ହୋଇଥିଲା । ୧୧ ବର୍ଷ ପରେ ୧୯୨୭ ରେ ଏହାର ଦ୍ୱିତୀୟ ସଂସ୍କରଣ ହୋଇଥିଲା । ଓଡ଼ିଆ ସାହିତ୍ୟର ଆଦ୍ୟକାଳରୁ ସତ୍ୟବାଦୀ ଯୁଗ ପର୍ଯ୍ୟନ୍ତ କବି ଓ ଲେଖକମାନଙ୍କ ଉପରେ ଏହା କ୍ଷୀଣ ଆଲୋକପାତ କରିଅଛି । ଏକ ଆଦ୍ୟ ପ୍ରଚେଷ୍ଟାଭାବରେ ଏହାର ଏକ ସ୍ୱତନ୍ତ୍ର ମୂଲ୍ୟ ରହିଅଛି । ନାୟିକବି ସୁଲକ୍ଷଣା, ରେବା, ଅନ୍ନପୂର୍ଣ୍ଣା, ନର୍ମଦା, ପ୍ରତିଭା ଓ କୁନ୍ତଳାକୁମାରୀଙ୍କ ରଚନା ଉପରେ ସେ ସ୍ନେହ ମଙ୍ଗଳ ରଶ୍ମିପାତ କରିଛନ୍ତି । ତାଙ୍କ ଉପସଂହାରରେ ସେ କହିଛନ୍ତି—"ଭାରତର ଅନ୍ୟାନ୍ୟ ଭାଷାର ସାହିତ୍ୟମାନଙ୍କ ତୁଳନାରେ ଉତ୍କଳସାହିତ୍ୟର ଆଶାନୁରୂପ ଉନ୍ନତି ସାଧିତ ହୋଇପାରି ନାହିଁ । ଉତ୍କଳ ସନ୍ତାନଗଣଙ୍କ ଦ୍ୱାରା ମାତୃଭାଷା ଓ ସାହିତ୍ୟ ପ୍ରତି ଉପଯୁକ୍ତ ଶ୍ରଦ୍ଧା, ଉତ୍ସାହ ଓ ସେହି ଦିଗରେ କଠୋର ସାଧନା ଦେଖା ନ ଗଲେ ଉତ୍କଳସାହିତ୍ୟର ବର୍ତ୍ତମାନ ଦୁରବସ୍ଥା ଦୂର ହୋଇ ପାରିବ ନାହିଁ ।"

ପରବର୍ତ୍ତୀ କାଳରେ ତାଙ୍କ ଯୁଗବିଭାଗ ଓ ଧାରା ପ୍ରାୟ ଅନୁସୃତ ହୋଇଅଛି । ସେ ଧାରେଲା ବା ଆଦିମଯୁଗ, ଜଗନ୍ନାଥ ବା ବୈଷ୍ଣବ ଯୁଗ, ଉପେନ୍ଦ୍ର ବା କାବ୍ୟଯୁଗ ରାଧାନାଥ ବା ଆଧୁନିକ ଯୁଗ ଏହି ଭାବରେ ଯୁଗ ବିଭାଜନ କରିଛନ୍ତି ।

ତାରଣୀଙ୍କ ଗବେଷଣାମୂଳକ ଇଂରାଜୀ ପ୍ରବନ୍ଧମାନ "ବିହାର ଓଡ଼ିଶା ସୋସାଇଟି ରିସର୍ଚ୍ଚ ଜର୍ଣ୍ଣାଲ୍" ଓ "ଇପିଗ୍ରାଫିଆ ଇଣ୍ଡିକା"ରେ ପ୍ରକାଶିତ ହୋଇଥିଲା । ପରବର୍ତ୍ତୀ ଗବେଷକମାନେ ତାଙ୍କ ନାମ ଶ୍ରଦ୍ଧା ସହିତ ସ୍ମରଣ କରନ୍ତି ।

ତାରଣୀଙ୍କ 'ମଦନମଂଜରୀ' ଓ 'ଦ୍ରିଷିକୁଳା' କବିତା ଗ୍ରନ୍ଥ ପ୍ରକାଶିତ ହୋଇଥିଲା; ସେ ସମସ୍ତ ଦେଖିବାର ସୌଭାଗ୍ୟ ମୋର ହୋଇ ନାହିଁ ।

ତାରଣୀଙ୍କ ଜୀବନ ସମ୍ପୃକ୍ତ ପ୍ରତି ଏକ ଉତ୍ସର୍ଗୀକୃତ ଜୀବନ । 'ଉତ୍କଳସାହିତ୍ୟ' ପତ୍ରିକାରେ ପ୍ରକାଶିତ ତାଙ୍କ ଗଳ୍ପ ଓ ପ୍ରବନ୍ଧାବଳୀର ଏକ ତାଲିକା ଉପସ୍ଥାପିତ ହେଲା—୧ । ପ୍ରବାଳଶ୍ରେଣୀ—୧୯୦୪; ୨ । ଅହ୍ଲାବାଦ—୧୯୦୪; ୩ । ଶୁଆ ଓ କାଉ କଥା—୧୯୦୪; ୪ । ଜୀବରାଜ୍ୟ—୧୯୦୬; ୫ । ମହାକବି ଉପେନ୍ଦ୍ରଭଂଜ ସାରବର—୧୯୦୮; ୬ । ଜୀବମାନଙ୍କର ପୁନରୁତ୍ପତ୍ତି-୧୯୧୦; ୭ । କାଳପଦ୍ମା କଥା-୧୯୧୧, ୮ । ଜୀବର ଉତ୍ପତ୍ତି—୧୯୧୧; କଲରେଇ ଫୁଲ କଥା—୧୯୧୨; ୯ । କେରଣ୍ଡି ମାଛ କଥା—୧୯୧୨; ୧୦ । ପାଖୀ ପକ୍ଷୀ କଥା ୧୯୧୨, ୧୧ । ଉତ୍କଳର ପ୍ରଥମ କବି କିଏ ?—୧୯୧୩; ୧୨ । ଜୀବ ଜଗତରେ ମନୁଷ୍ୟର ସ୍ଥାନ (୧୯୧୩) ୧୩ । ରାଜକବି ଘନଭଂଜ—୧୯୧୩; ୧୪ । ସ୍ୱର୍ଗୀୟ ନରସିଂହ ଦାସଙ୍କ ମୃତ୍ୟୁ ଉପଲକ୍ଷ୍ୟେ—୧୯୧୩; ୧୫ । ମାଇଗୁଲିଆ ଝେଙ୍କେଇ ସାଢୁ —୧୯୧୫; ୧୬ । ସୂର୍ଯ୍ୟମଣି କବି—୧୯୧୫; ୧୭ । କବିସୂର୍ଯ୍ୟ ରାୟଗୁରୁ—୧୯୧୫; ୧୮ । କବି ଭରତ କ୍ଷେତ୍ର—୧୯୧୫, ୧୯ । ଦକ୍ଷିଣ ଓଡ଼ିଶା ରାଜ୍ୟ—୧୯୧୯; ୨୦ । ଓଡ଼ିଆ କବିତାରେ ଉପଧା ମିଳନ—୧୯୨୧; ୨୧ । ଉତ୍ତର—୧୯୨୧; ୨୦ । ଓଡ଼ିଆ ଲିପି—୧୯୨୧; ୨୧ । କବି ଦ୍ୱିଜଙ୍କ ସମ୍ବାଦ ଓ ଜୀବନଚରିତ— ୧୯୨୧; ୨୨ । ଉତ୍ତର ୧୯୨୧; ଜୀବମାନଙ୍କର ଅପଗମନ ଓ ଲୋପ ୨୩ । ମେଣ୍ଢା ବଳି; ୨୪ । ପ୍ରାଚୀନ ଭାରତର ସାହିତ୍ୟସମ୍ପତ୍ତି ୨୫ । କବିବର ରାଧାନାଥ ରାୟ ବାହାଦୁର ୨୬ । କବି ଭୁପତି ପଣ୍ଡିତ; ୨୭ । ସିଂହରାଜ ୨୮ । ପଦ୍ୟାବଳୀ ୨୯ । ଜୟଭଂଜଦେବଙ୍କ ତାମ୍ରଶାସନ; ୩୦ । କୁଲଡ଼ ଦୁର୍ଗ ବର୍ଣ୍ଣନ; ୩୧ । ଜଉଗଡ଼ ୩୨ । ରମ୍ଭା ୩୩ । ଅନଙ୍ଗବର୍ମ ଚୋଡ଼ଗଙ୍ଗ ଦେବ ୩୪ । ଗଞ୍ଜାନଗର ।

ବିହାର-ଓଡ଼ିଶା ରିସର୍ଚ୍ଚ ଜର୍ନାଲ୍ ଓ ଇପିଗ୍ରାଫିଆ ଇଣ୍ଡିକାରେ ପ୍ରକାଶିତ ଇଂରାଜୀ ପ୍ରବନ୍ଧ—(1) Note on Orissa temples of copper plate inscriptions (2) King Prataprudra Deb of Orissa and his Saraswatibilas. (3) Purusottam Deb, King of Orissa, (4) Ramananda Ray.



# ଗୋବିନ୍ଦ ରଥ

ଜନ୍ମ—୧୮୪୮, କାର୍ତ୍ତିକ ଶୁକ୍ଳପକ୍ଷ ଚତୁର୍ଥୀ

ମୃତ୍ୟୁ—୧୯୧୮ ମଇ ୨୮ ତାରିଖ

---

୧୦।୪।୧୮୭୫, କଟକ

ରଥେ,

ନମସ୍କାର । ଅସ୍ମମାନଙ୍କ ସମସ୍ତ ମଙ୍ଗଳ । ତୁମ୍ଭର ଖଣ୍ଡିଏ ପତ୍ର ପାଇ ସେଥିରେ ଯାହା ଜାଣିବାର ସମସ୍ତ ଜାଣିଅଛୁ । ଅସ୍ମମାନଙ୍କର ସ୍କୁଲ୍ ଏକ ପ୍ରକାର ଉତ୍ତମ ଚଳୁଅଛୁ । ପ୍ରାୟ ୬୦ ସଂଖ୍ୟକ ପିଲା ହେଲେଣି । ୩୧ ତାରିଖ ଦିନ ମ୍ୟାନେଜିଂ କମିଟିର ପ୍ରଥମ ଅଧିବେଶନ ହୋଇଯାଇଅଛୁ । ବାବୁ କୈଳାସଚନ୍ଦ୍ର ସଭାପତି ଓ କାର୍ଯ୍ୟାଧ୍ୟକ୍ଷ । × × × ଏ ଅଧୀନ ସମ୍ପାଦକ ନିଯୁକ୍ତ ହୋଇଅଛନ୍ତି । ସ୍କୁଲଗୃହ ନିର୍ମିତ ହେବାର ସ୍ଥିର ହୋଇଅଛୁ । କି ରୂପେ ଟଙ୍କା ଉଠିବ ଓ ଶିକ୍ଷକମାନେ ଉଚିତମତେ ବେତନ ପାଇବେ ଏହା ନିର୍ଦ୍ଧାରଣର ଭାର ସମସ୍ତଙ୍କ ଉପରେ ରହିଅଛୁ ।

× × ×

ତୁମ୍ଭ ବଦଳରେ ଯେ ଅଛନ୍ତି ସେ ବଡ଼ ଶାନ୍ତ ପ୍ରକୃତିର ଲୋକ । ତୁମ୍ଭସକାଶେ ଅଦ୍ୟାବଧି ପିଲାଙ୍କର ଦୁଃଖ ଯାଇନାହିଁ । କାଲି ତୁମ୍ଭେ ଆସିବ, ପରଦିନ ଆସିବ, ଏହି ପ୍ରକାରେ ପିଲାଏ ତୁମ୍ଭ କଥା ପଚ୍ଛରିଲେ, ମୁଁ ସେମାନଙ୍କୁ ଭଣ୍ଡିଅଛୁ । ଆଉ ବିଳମ୍ବ ନ କରିବ । ସପ୍ତାହ ମଧ୍ୟରେ ଯେମନ୍ତ ତୁମ୍ଭେ ଆସି ଏଠାରେ ପହଞ୍ଚିବ । ସୁନ୍ଦର ମୂଲ୍ ସମସ୍ତଙ୍କଠାରୁ ଅସୁଲ କରି ଆଣିବ । × × ×

ତୁମ୍ଭ କଥା ସବୁବେଳେ ଆସ୍ମମାନଙ୍କ ମଧ୍ୟରେ ପଡ଼ୁଥାଏ । ଶୀଘ୍ର ଆସିବ ।

ଭବଦୀୟ

ଏକାତ୍ମା

**ପ୍ୟାରିମୋହନ ଆଚାର୍ଯ୍ୟ**

ଆଜକୁ ପ୍ରାୟ ଶହେବର୍ଷ ତଳେ ଏଇ ମୂଲ୍ୟବାନ୍ ପତ୍ରଖଣ୍ଡି ଲିଖିତ ହୋଇଥିଲା । ଗୋବିନ୍ଦ ରଥଙ୍କ କଟକନଗର୍ଣ୍ଣ କବିତା ପୁସ୍ତିକାରେ ( ୧୮୯୧ ) ଏହା ପ୍ରକାଶିତ ଓ 'ପ୍ୟାରୀମୋହନ ଏକାଡେମୀ'ରେ ରକ୍ଷିତ ରହିଅଛି । ପ୍ୟାରୀମୋହନଙ୍କର ଏହି ଏକମାତ୍ର ପତ୍ର ସଂରକ୍ଷିତ । ଏଥିରୁ ଗୋବିନ୍ଦ ରଥେ ତାଙ୍କ ଏକାଡେମୀ ସ୍ଥାପନରେ ଓ 'ଉତ୍କଳପୁତ୍ର' ପତ୍ରିକା ପ୍ରକାଶରେ ସାହାଯ୍ୟ କରିଥିବା କଥା ଜଣାଯାଏ ।

ରଥେ ଜଣେ ସମାଜସେବୀ, ଶିକ୍ଷାପ୍ରେମୀ, ସାହିତ୍ୟବିଳାସୀ ବ୍ୟକ୍ତି; ସେ ସ୍ପଷ୍ଟବାଦୀ, ସ୍ୱାଧୀନଚେତା, ଆତ୍ମନିର୍ଭରଶୀଳ ଓ ସଂଗ୍ରାମୀ ମନୁଷ୍ୟ—ଅନ୍ୟାୟ ଅତ୍ୟାଚାରର ବିରୁଦ୍ଧରେ ସେ ଖାଲି ଲେଖନୀ ଉତ୍ତୋଳନ କରୁ ନ ଥିଲେ, ସେ ସକ୍ରିୟ ସଂଗ୍ରାମ ମଧ୍ୟ କରୁଥିଲେ । ସେଥିରେ ତାଙ୍କର କ୍ଷୟକ୍ଷତି ଘଟିଲେ ବା ସେ ନିଜେ କ୍ଷତ ବିକ୍ଷତ ହେଲେ ସେ ଭ୍ରୂକ୍ଷେପ କରୁ ନ ଥିଲେ । ଜୀବନ ମାନେ ସଂଗ୍ରାମ ସେ ବୁଝିଥିଲେ । ସେ ସଂଗ୍ରାମ ଆତ୍ମସ୍ୱାର୍ଥ ରକ୍ଷା ଲାଗି ନୁହେଁ; ବିପନ୍ନଙ୍କୁ ରକ୍ଷା କରିବା ଦାୟିତ୍ୱ ସେ ଆପେ ଆପେ ଗ୍ରହଣ କରିଥିଲେ ଓ ସେ ବାବଦରେ ଅକାତରରେ ଅର୍ଥ ବ୍ୟୟ କରୁଥିଲେ ।

ସେ କାଳରେ ଆଧୁନିକ ଓଡ଼ିଆ ପୁସ୍ତକର ଏକାନ୍ତ ଅଭାବ ଅନୁଭୂତ ହେଉଥିଲା । ରଥେ ଦୁଇଶତ ଛୋଟ ଛୋଟ ପୁସ୍ତକ ରଚନା କରି ଆଂଶିକଭାବରେ ସେହି ଅଭାବ ପୂରଣ କରିଥିଲେ । ଛପାଇବା ପ୍ରଶ୍ନ ତାଙ୍କ ଆଗରେ କେବେ ବଡ଼ ହୋଇ ଦେଖା ଦେଇ ନ ଥିଲା । ସେ ଏକାଧାରରେ ଥିଲେ ଲେଖକ, ପ୍ରକାଶକ ଓ ନିଜ ପୁସ୍ତକର ବିକ୍ରେତା । ପୁସ୍ତକ ବିକ୍ରୟ କରି ସେ ଲକ୍ଷାଧିକ ଟଙ୍କା ସଞ୍ଚୟ କରିଥିଲେ, କଟକ ନିମଚଉଡ଼ିରେ କୋଠାଘର ତୋଳିଥିଲେ ଓ ଗ୍ରାମରେ ୭୦ ଏକର ଜମି କ୍ରୟ କରିଥିଲେ । ଲକ୍ଷ୍ମୀ ଓ ସରସ୍ୱତୀ ଉଭୟେ ତାଙ୍କ ପ୍ରତି ସୁପ୍ରସନ୍ନା ଥିଲେ । ତେଣୁ ଯଶ ତୃଷ୍ଣା ବନ୍ଧ୍ୟ ନ ଥିଲା ବା ଅର୍ଦ୍ଧାଶନରେ ତାଙ୍କୁ କାଳ କଟାଇବାକୁ ହୋଇ ନ ଥିଲା । ରଥଙ୍କର ଏହି ସାରସ୍ୱତ ଓ ସମୃଦ୍ଧ ଜୀବନକୁ ଲକ୍ଷ୍ୟ କରି ଫକୀରମୋହନ ଉତ୍କଳଭ୍ରମଣରେ ଯଥାର୍ଥ ଲେଖିଥିଲେ—ଧନ୍ୟ ରଥେ କରିଅଛ ବ୍ରାହ୍ମଣପଣିଆ

ପୁସ୍ତକ ଛପାଇ ଦେଇ ଅଣେ ଧନଣିଆ
ଆଚ୍ଛା ହେଲା, ଭଲ ହେଲା ପେଟ ଚଳୁ ଥାଉ
ଖଣ୍ଡେ କେତେ ପୋଥି ମଧ୍ୟ ଛପା ହୋଇଯାଉ ।

ରଥେ ପୁସ୍ତକ ଆୟ ଉପରେ ନିର୍ଭରଶୀଳ ସେ କାଳର ଏକମାତ୍ର ଲେଖକ । ଫକୀରମୋହନ ଜୀବନସାରା ପାଠ କାରବାର କଲେ ବି ଶେଷରେ ଦାନାପାଣି ଲାଗି ତାଙ୍କୁ କାଠ ବ୍ୟବସାୟ କରିବାକୁ ପଡ଼ିଥିଲା । ରାଧାନାଥ, ମଧୁସୂଦନ,

ଗଙ୍ଗାଧର ବା ନନ୍ଦକିଶୋର ପୁସ୍ତକ ଆୟରୁ ପ୍ରାପ୍ୟ କିଛୁ ପାଉ ନଥିଲେ । ଅବଶ୍ୟ ରଚୟିତା କବି ବା ସାହିତ୍ୟିକଭାବରେ ସେମାନଙ୍କ ପରି ପ୍ରତିଷ୍ଠିତ ହୋଇପାରିଲେ ନାହିଁ । ପୁସ୍ତକ ପ୍ରକାଶ ଓ ବିକ୍ରୟରେ ତାଙ୍କର ବହୁ ଶକ୍ତି କ୍ଷୟ ଘଟିଥିଲା । କଳାତ୍ମକ ମହତ୍ତ୍ୱ ହାସଲ ଲାଗି ଯେଉଁ ତପସ୍ୟା ଆବଶ୍ୟକ, ତାହା ତାଙ୍କର ନ ଥିଲା । ସେ କାଳଜୟୀ ହୋଇପାରିଲେ ନାହିଁ, ବରଂ କାଳଚକ୍ରର ଗତିବେଗରେ ତାଙ୍କ ପୁସ୍ତକସବୁ ଶୁଷ୍କ ପତ୍ର ପରି କାହିଁ ଉଡ଼ିଗଲା ।

ଇଂରାଜୀ ଶାସନର ଆଦ୍ୟ ଭାଗରେ ଅନ୍ୟାନ୍ୟ ଗଡ଼ଜାତ ପରି ବାଙ୍କୀ ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । ବାଙ୍କୀ ରାଜା ଜଗନ୍ନାଥ ହରିଚନ୍ଦନ ମହାପାତ୍ରଙ୍କୁ ନରହତ୍ୟା ଅପରାଧରେ ସରକାର କଳାପାଣି ପଠାଇଲେ, ତାଙ୍କ ରାଜ୍ୟକୁ ୧୮୪୦ ଖ୍ରୀଷ୍ଟାବ୍ଦରେ ଖାସ୍ କଲେ । ବାଙ୍କୀ ତାର ସ୍ୱତନ୍ତ୍ର ସତ୍ତା ହରାଇବାର ଆଠବର୍ଷ ପରେ ଅର୍ଥାତ୍ ୧୮୪୮ ଖ୍ରୀଷ୍ଟାବ୍ଦରେ ( ରାଧାନାଥ ରାୟଙ୍କ ଜନ୍ମବର୍ଷ ) କାର୍ତ୍ତିକ ଶୁକ୍ଳପକ୍ଷ ଚତୁର୍ଥୀ ଦିନ ପାଟପୁର ଗ୍ରାମରେ ବ୍ରାହ୍ମଣକୁଳରେ ଗୋବିନ୍ଦଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଦୀନବନ୍ଧୁ ରଥ । ତାଙ୍କର ଅକାଳ ମୃତ୍ୟୁପରେ ପିତାମହ ଅପର୍ତ୍ତି ରଥ ତାଙ୍କର ଓ ତାଙ୍କ ଭାଇ ରାମଚନ୍ଦ୍ରଙ୍କର ଲାଳନ ପାଳନ ଭାର ବହନ କରିଥିଲେ । ତାନ୍ତ୍ରିକ ଓ ବିଦ୍ୱାନଭାବରେ ଅପର୍ତ୍ତିଙ୍କର ପ୍ରତିଷ୍ଠା ଥିଲା । ପୁରୀରାଜା ତାଙ୍କୁ ସଭାପଣ୍ଡିତଭାବେ ବରଣ କରିନେଇ ଖୋର୍ଦ୍ଧା ଦାଣ୍ଡିମାଳର ଛତାବର ଗ୍ରାମ ବୃତ୍ତି ସ୍ୱରୂପ ଦେଇଥିଲେ । ତାପରେ ଅପର୍ତ୍ତି ଜନ୍ମସ୍ଥାନ ତ୍ୟାଗକରି ଛତାବରରେ ଅବସ୍ଥାନ କଲେ । ଗୋବିନ୍ଦ ସେଠା ଗ୍ରାମ୍ୟ ପାଠଶାଳାରେ ପଢ଼ିବାକୁ ଲାଗିଲେ ।

ପିଲାଦିନେ ଗୋବିନ୍ଦ ପାଲା, ଯାତ୍ରା ପ୍ରଭୃତି ଲୋକନାଟ୍ୟାନୁଷ୍ଠାନ ପ୍ରତି ବିଶେଷ ଆକୃଷ୍ଟ ଥିଲେ । ସେ ନିଜେ ଛାନ୍ଦ, ଚୌପଦୀ ପ୍ରଭୃତି ବୋଲୁଥିଲେ, ଛାନ୍ଦ ବା ନାଁଦଅକ୍ଷିଏ ଶୁଣିଲେ ଆଗ୍ରହରେ ଟିପି ରଖୁଥିଲେ ।

ଛତାବର ଗ୍ରାମରେ ପଣ୍ଡିତ ଅପର୍ତ୍ତି ରହିପାରିଲେ ନାହିଁ । ତାଙ୍କର ଅକାଳ ମୃତ୍ୟୁ ଘଟିଲା । ଅନ୍ତ୍ୟେଷ୍ଟିକ୍ରିୟା କରିବାଲାଗି ଗୋବିନ୍ଦ ଜନ୍ମସ୍ଥାନକୁ ଆସିଲେ ଓ ଆଉ ଖୋର୍ଦ୍ଧା ଫେରିଲେ ନାହିଁ । କନିଷ୍ଠ ପିତୃବ୍ୟ ପଣ୍ଡିତ କୃପାସିନ୍ଧୁଙ୍କ ପାଖରେ ସେ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟ ପଢ଼ିବାକୁ ଲାଗିଲେ । ତାପରେ ଟିକିରା ସ୍କୁଲରେ ଭର୍ତ୍ତିହୋଇ ଏଣ୍ଟ୍ରେନ୍ସ ପଢ଼ିଲେ । ସେ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ସେ କୃତିତ୍ୱ ସହିତ ଏଣ୍ଟ୍ରେନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୮୬୯ ଖ୍ରୀଷ୍ଟାବ୍ଦରେ କଟକ ନର୍ମାଲ ସ୍କୁଲରେ ଅଧ୍ୟୟନ କଲେ । ଟ୍ରେନିଂ ପ୍ରାପ୍ତି ପରେ ସେ ପୁରୀରେ ବାରଟଙ୍କା ବେତନରେ ଶିକ୍ଷକତା କଲେ, ସରକାରଙ୍କ ତରଫରୁ ପ୍ରାପ୍ତ ମାସିକ ଚାରି ଟଙ୍କାରେ ଏକ ନୈଶ ବିଦ୍ୟାଳୟରେ ମଧ୍ୟ ଶିକ୍ଷକତା କରୁଥିଲେ । ତାପରେ କଟକରେ ୨୦ ଟଙ୍କା

ବେତନରେ ଏକ କରାଣୀ ଚାକରୀ ତାଙ୍କୁ ମିଳିଥିଲା । ସାକ୍ଷାତ୍କାରରେ ଗୋବିନ୍ଦଙ୍କ ସ୍ୱାଧୀନ ମନୋବୃତ୍ତିର ପରିଚୟ ପାଇ ହାକିମ କହିଲେ—ତୁମକୁ ଏ ଚାକିରି ନ ଯୋଗାଏ । ଏପରି ସଙ୍କୀର୍ଣ୍ଣକ୍ଷେତ୍ରରେ ଆବଦ୍ଧ ରହିଲେ ଏହି ମୂଲ୍ୟବାନ ଜୀବନଟି ନଷ୍ଟ ହୋଇଯିବ । ରଥେ ଏହି ଉପଦେଶକୁ ଈଶ୍ୱରଙ୍କ ଆଦେଶ ପରି ମାନିନେଇ ସ୍ୱାଧୀନ ପୁସ୍ତକ ବ୍ୟବସାୟ ଆରମ୍ଭ କଲେ ।

ରଥଙ୍କ 'ବର୍ଣ୍ଣବୋଧକ' ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରୀ ହେବାକୁ ଲାଗିଲା । ସେତେବେଳେ ରାଧାନାଥ, ମଧୁସୂଦନଙ୍କ 'କବିତାବଳୀ', ଫକୀରମୋହନଙ୍କ 'ରାମାୟଣ, ଅଯୋଧ୍ୟାକାଣ୍ଡ', ଜଗନ୍ମୋହନ ଲାଲଙ୍କ 'ଭ୍ରମ ଭଞ୍ଜନ' ପାଠ୍ୟଭାବେ ନିର୍ବାଚିତ ହୋଇଥିଲା । ଶିକ୍ଷା ବିଭାଗରେ ପ୍ରଭାବ ପ୍ରତିପତ୍ତି ଥିବାଯୋଗୁଁ ହାକିମମାନେ ସ୍ୱରଚିତ ପୁସ୍ତକସବୁ ପାଠ୍ୟଭାବେ ଗ୍ରହଣ କରାଇନେଇ ପାରୁଥିଲେ । ଗୌରୀଶଙ୍କର ରାୟ 'ଉତ୍କଳ ଦୀପିକା'ରେ ଏହାର ତୀବ୍ର ସମାଲୋଚନା କରିଥିଲେ । ଏ ବିଗରେ ତାଙ୍କର ପ୍ରଧାନ ସହାୟକ ଥିଲେ ଗୋବିନ୍ଦ ରଥ । 'ଗୋଥ' ଏହି ଛଦ୍ମନାମରେ ତାଙ୍କ ସମାଲୋଚନାସବୁ ପ୍ରକାଶ ପାଉଥିଲା ।

ସେ କାଳରେ ରଥଙ୍କ ନିର୍ଭୀକତା ପ୍ରଶଂସନୀୟ ସ୍ତରକୁ ଉଠିଥିଲା । ତହସିଲ୍‌ଦାର ଶ୍ରୀନାଥବାବୁ ଉତ୍କୋଚ ଗ୍ରହଣକରି ବଡ଼ଲୋକ ହୋଇଥିଲେ । ପ୍ରଜାମାନଙ୍କୁ ଘୋର ନିପୀଡ଼ନରୁ ରକ୍ଷା କରିବାଲାଗି ରଥେ ତାଙ୍କ ବିରୁଦ୍ଧରେ ମକଦ୍ଦମା କଲେ ଓ ଜୟଯୁକ୍ତ ହେଲେ । ଶ୍ରୀନାଥବାବୁ କାରାବାସ ଶଙ୍କାରେ ଆତ୍ମହତ୍ୟା କରିଥିଲେ । ନିୟମିତ ଆଇନ୍‌ଶାସ୍ତ୍ର ଅଧ୍ୟୟନ ନ କଲେ ବି ସେ ବାସ୍ତବ ଅଭିଜ୍ଞତାରୁ ଏ ବିଗରେ ପ୍ରବୀଣତା ଅର୍ଜନ କରିଥିଲେ ଓ କଟେକ୍ଟରଙ୍କୁ ଗଲେ ସେ ଓକିଲ ମୋକ୍ତାରଙ୍କ ସାହାଯ୍ୟ ଲୋଡ଼ୁ ନ ଥିଲେ, ନିଜେ ଜବାବ୍‌ସୁଆଲ୍ କରୁଥିଲେ ।

ଗୃହାଭାବରୁ ଉତ୍କଳସାହିତ୍ୟ ସମାଜର ସଭା ଅଗେ ଟ୍ରେନିଂସ୍କୁଲରେ ହେଉଥିଲା । ଏଥିରେ ରାୟସାହେବ ଯୋଗେଶଚନ୍ଦ୍ର ରାୟ 'ଇତିହାସର ଭ୍ରମ' ଶୀର୍ଷକ ଏକ ପ୍ରବନ୍ଧ ପାଠ କରିଥିଲେ । ଉତ୍କଳୀୟ ବ୍ରାହ୍ମଣମାନଙ୍କର ମର୍ଯ୍ୟାଦାହାନି ଲାଗି କହିବାରେ ରଥେ ତୀବ୍ର ପ୍ରତିବାଦ କରିଥିଲେ । ତା ଫଳରେ ଆକ୍ଷେପାଂଶମାନ ଶ୍ରୀରାୟ ପ୍ରବନ୍ଧରୁ ଉଠାଇ ଦେଇଥିଲେ ।

ରଥେ ପୁରୀ ଜିଲ୍ଲା ବୀରନରସିଂହପୁର ଗ୍ରାମରେ ବିବାହ କରିଥିଲେ । ସେ ସନ୍ତାନହୀନ ଥିଲେ ଓ ବିବାହର ଅଳ୍ପକାଳ ପରେ ତାଙ୍କର ସ୍ତ୍ରୀବିୟୋଗ ଘଟିଥିଲା । ସେ ଏକ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ ।

ଭୟଙ୍କର ଜ୍ୱର ଫଳରେ ହଠାତ୍ ତାଙ୍କର ମୃତ୍ୟୁ ହେଲା ୧୯୧୮ ( ଫକୀର ମୋହନଙ୍କ ମୃତ୍ୟୁ ବର୍ଷ ) ମଇ ୨୮ ତାରିଖରେ ୭୦ ବର୍ଷ ବୟସରେ । ଉଥଙ୍କ 'ଫିରିଙ୍ଗି ସାହେବ' କବିତା ବ୍ୟଙ୍ଗାତ୍ମକ—ତାଙ୍କ ଉର୍ବରତାର ଏକ ନମୁନା । ଏହା ସେ କାଳେ ଉତ୍କଳ ପ୍ରସିଦ୍ଧି ଲାଭ କରିଥିଲା—

"ଏଥର ମଲେ ସାହେବ ହେବି
ଲାଲ୍ ମୁଣ୍ଡରେ କ୍ୟାପ୍ ଦେବି
ଚିକେନ୍ ଫ୍ଲାନେଲ୍ ପ୍ୟାଣ୍ଟଲୁନ୍ କରି
ନାଇଟ୍‌ରେ ପିନ୍ଧୁଥିବି ।
ନେଟିଭ୍ ଦେଖିଲେ
ନିକଟେ ଆସିଲେ
ଡାକି ବୋଲି ଦୂର୍ ଦୂର୍ କରିବି ।
ଇଣ୍ଡିପେଣ୍ଡିଆନ୍ ଯେବେ ଦେଖିବି
ନିଖିଣ୍ଡି ମଜୁରି ତହିଁ ମାରିବି
ଗୁଡ୍‌ବାଇ ଫ୍ରେଣ୍ଡ୍ ବୋଲିଣ ସେକେଣ୍ଡ
କରି ଲେଟ୍ ମି ଗୋ ବୋଲି ଚଳିବି ।
ମୂରଲୀ ମୁଖରେ ସ୍ମୋକ୍ ଗୁଞ୍ଜିବି
ପିଚ୍ ବାଡ଼ିଖଣ୍ଡି ହାତେ ଧରିବି
ୱାଇଟ୍ ହ୍ୟାଣ୍ଡ୍ସ ପକେଟେ ପୂରାଇ
ହୁଇଟିନ୍ ସୁଧା ସପ୍‌କୁ ଯିବି ।
ସପ୍‌ରୁ ଶିଟ୍‌ଷ୍ଟ୍ରି କରିବାବେଳେ
ଅଲ୍‌ଡ ପିପଲ୍ ଦେଖିବେ ଡୋଳେ
ଚଳି ଚଳି ଦେବ ଅବତାର ମୂର୍ତ୍ତି
ଯାଉଛନ୍ତି ଆହା ଆନନ୍ଦ ଭୋଳେ ।
କାମ୍ବ୍ରିଜ୍ କଲେଜେ କିଛୁ ପଢ଼ିବି
ଗ୍ରନ୍ଥରେ ସିଭିଲିଆନ୍ ହେବି
କେବଳ ଭାରତ ଅଲ୍ ମାଇଁ ହୋପ୍
ଏଠାରେ ହାକିମୀ ଆସି କରିବି ।
ଟେନ୍ ଓ କ୍ଲକ୍‌ରେ କୋର୍ଟ୍ ଚଢ଼ିବି
ଧସ୍ କରି କୋଟେ ଆସି ମିଳିବି
ଛତ୍ରଗଣ ମଧ୍ୟେ ଶନି ଯେଉଁ ପ୍ରାପ୍ତେ
ଅମଲାଙ୍କ ମଧ୍ୟେ ସଲାମ୍ ନେବି ।

ରଥଙ୍କର ବହୁସଂଖ୍ୟକ ପୁସ୍ତିକା ମଧ୍ୟରୁ ମାତ୍ର ତିନୋଟି ମୋର ହସ୍ତଗତ ହୋଇଅଛି—କଟକ ନଗରୀ, କୁସୁମ କଳିକା, କବିତାକଳାପ ।

'କଟକ ନଗରୀ'ର ପ୍ରକାଶକାଳ ୧୮୯୨, ମୂଲ୍ୟ ଦୁଇଅଣା । ଏହାକୁ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ' ପରି ଏକ 'କଟକ ଭ୍ରମଣଂ' କୁହାଯାଇପାରେ । 'ବେତ୍ରା ପରିକ୍ରମା' ପରି ଏହା ଏକ ନିର୍ଦ୍ଦେଶିକା ପୁସ୍ତିକା, ପଦ୍ୟରେ ଲିଖିତ ଏଥିରେ ଜୋବ୍ରା ବୃରୁଜ, ରେଭେନ୍‌ସା କଲେଜ, ବାଲୁବଜାର, ନୂଆ ସଡ଼କ, ଚୌଧୁରୀବଜାର, ଗୋପାଳଜୀ ମଠ, ଦେବଗିରି ମଠ, ଦରଘା ବଜାର, କଟକ ପ୍ରିଣ୍ଟିଂ କମ୍ପାନୀ, କଟକ ଏକାଡେମୀ, ଯୁଡ଼ାହାଟ, ପଲଟଣ ବଜାର, ଅନାଥାଶ୍ରମ, ଲାଲମଠ, ଗୋରା କବର, ବାରବାଟୀ କିଲ୍ଲା, ଲାଟ ଗିରିଜା, ଇଂରାଜ ପଲ୍ଲୀ, ବଡ଼ ଡାକ୍ତରଖାନା, କ୍ଷୋବରା ଘାଟ କଳଘର, ଧବଳେଶ୍ୱର, ଲେଡ଼ି ଡଫରିନ୍ ହସପିଟାଲ, ସତୀଚଉରା, ନନ୍ଦକେଶ୍ୱରୀ ପଠା, ବନ୍ଧବାସେଲୀ, ଗଡ଼ଗଡ଼ିଆ ମହାଦେବ ଓ ସିଦ୍ଧନାଥ ଧବଳେଶ୍ୱର ଠାକୁରଙ୍କ ବର୍ଣ୍ଣନା କରାଯାଇଛି ।

ପ୍ରିଣ୍ଟିଂକମ୍ପାନୀ ସ୍ଥାପନ, 'ଉତ୍କଳ ଦୀପିକା' ବା 'ଇନ୍ଦ୍ରଧନୁ' ପ୍ରକାଶନର ସଙ୍କେତ ଏହି ପୁସ୍ତିକାରୁ ମିଳିଥାଏ—

ଉତ୍କଳ ଦୀପିକା ପତ୍ର ଏଥି ମୁଦ୍ରାଙ୍କନ
ଇନ୍ଦ୍ରଧନୁ ଏହିଠାରେ ହୁଏ ସମ୍ପାଦନ
ବାବୁ ଶ୍ରୀ ବିଚିତ୍ରାନନ୍ଦ ବିଶେଷ ଯତନ
କରିଣ ଏହି କମ୍ପାନୀ କଲେକ ସ୍ଥାପନ ।

ପ୍ୟାରୀମୋହନ ଆଚାର୍ଯ୍ୟ ଓ କଟକ ଏକାଡେମୀ ସ୍ଥାପନ ବିଷୟ ଏଥିରେ ସଂକ୍ଷିପ୍ତଭାବେ ଉଲ୍ଲିଖିତ । ପ୍ୟାରୀ ଓ ଗୋବିନ୍ଦ ଉଭୟେ ଏହି ଅନୁଷ୍ଠାନର ସ୍ଥାପୟିତା ବୋଲି ରଥେ ଲେଖିଛନ୍ତି ।

"କଟକରେ ବିଦ୍ୟାଳୟ ଦେଖି ବିରାଜିତ
ଏକାଡେମୀ ନାମେ ଯେହୁ ହୋଇଛି ବିଦିତ
ସାମାନ୍ୟ ବାଳକରୁ ଯେତେକ ତରୁ ପରିଣତ
ଏହି ବିଦ୍ୟାଳୟେ ଯେହି ସବୁ ସୁସଂଗତ ।
ଶ୍ରୀ ପ୍ୟାରୀ ଶ୍ରୀ ଗୋବିନ୍ଦଙ୍କ ବିଶେଷ ଯତ୍ନରେ
ପ୍ରଥମେ ସ୍ଥାପିତ ଏହା କଟକ ନଗରେ ।

କହୁଥିଲେ ଧନେ ପ୍ୟାରୀ ହସି ହସି କରି
ଏହି ବିଦ୍ୟାଳୟ ରଥେ, ପୁତ୍ର କନ୍ୟା ପରି
ଅସମୟେ ପ୍ରିୟ ପ୍ୟାରୀ ହେଲେ ପରଲୋକ
ହୃଦୟରେ ଜନ୍ମିଥିଲା ଗୁରୁତର ଶୋକ
ଦେଖିଲିଣି କେତେଥର ତାହାଙ୍କୁ ସ୍ୱପନ
ଥିଲେ କେତେ କଣଆଦେ ଉନ୍ନତି ସାଧନ
ପ୍ରିୟବନ୍ଧୁ ପ୍ୟାରୀଙ୍କର ଅତି ପୁରାତନ
ପତ୍ରରୁ ଏଠାରେ କିଛି କଲି ସଯୋଜନ ।

'କୁସୁମ କଳିକା' ୧୮୮୪ ରେ ପ୍ରକାଶିତ, ମୂଲ୍ୟ ଦୁଇଅଣା । ଏଥିରେ ସରସ୍ୱତୀ ଆବାହନ, ମହାଲକ୍ଷ୍ମୀ ଆବାହନ, କୃଷକ, ପଞ୍ଚାୟତ, ଅଳୀକ ଆଶା, ଭାରତବର୍ଷ, ନୌକାରୋହଣ, ମହାନଦୀ ତୀର ବରୁଣ ବାକ୍ୟ, ବାଲ୍ୟକାଳ, ଚନ୍ଦ୍ର, ମିତବଚନ, ବନ୍ଧୁଠାରୁ ବିଦାୟ ଗ୍ରହଣ—ଏଇ ତେରୋଟି କବିତା ସଙ୍କଳିତ ହୋଇଅଛି ।

'ମହାଲକ୍ଷ୍ମୀ ଆବାହନ' ରେ ଓଡ଼ିଶାର ପ୍ରସିଦ୍ଧ ନଅଙ୍କ ଦୁର୍ଭିକ୍ଷର କରାଳଦୃଶ୍ୟ ଚର୍ଚ୍ଚିତ ହୋଇଅଛି—

'ନବାଙ୍କ ଦୁର୍ଭିକ୍ଷେ ତବ ପୁତ୍ରଗଣ
କେମନ୍ତ ଅବସ୍ଥା ଭଜିଅଛନ୍ତି
ଲକ୍ଷ ଲକ୍ଷ ପ୍ରାଣୀ ଯମଙ୍କ ସଦନ
ଯାଇ ପୁଣି ଆଉ ନେ ବା ଅଛନ୍ତି
ନାହିଁ ଗୋ ତାଙ୍କର ଅଶ୍ରୁ ମାତ୍ର ସୁଖ
ଅଣନ ବସନେ କ୍ଳେଶିତ ସଦା
ନ ଦେଖନ୍ତି କେବେ ମଣି ମୁକ୍ତା ମୁଖ
ହୋଇଛି ଆବାସ କେବଳ ପଦା ।

'କୃଷକ' କବିତାରେ ରାଧାନାଥଙ୍କ ପ୍ରତି କବିଙ୍କ ଦରଦ ପ୍ରକାଶିତ ହୋଇଅଛି— 'ଏ ସମାଜରେ ଯାହାର ଧନରତ୍ନ ଅଛି ସେ ସମ୍ମାନ ପାଏ । କିନ୍ତୁ ଏ ସମ୍ମାନ ପ୍ରକୃତ ପକ୍ଷେ କୃଷକର ପ୍ରାପ୍ୟ । କାରଣ ସେ ପରଲାଗି ଖଟେ । ତାର ପ୍ରାୟ ସମସ୍ତ ଉତ୍ପାଦନ ଅନ୍ୟମାନେ ଭୋଗ କରନ୍ତି—

'ତୁ କେଉଁ ଖାଉଛୁ ସକଳେ ଦେଉଛୁ,
ବଳିବା ପାଇଁକି ପିଉଛୁ ତୋକେ ।'

'ପଞ୍ଚାମୃତ' କବିତାରେ ପଞ୍ଚଙ୍କର ବିଚାରକୁ ପରମେଶ୍ବରଙ୍କର ବିଚାର ପରି ସମ୍ମାନ ଦିଆଯାଇଛି । ଏକ ସନ୍ତାନ ଉପରେ ଦୁଇନାରୀ ଦାବୀ ଉପସ୍ଥାପିତ କରିବାରେ ତାକୁ କାଟି ଅଧେ ଅଧେ ବାଣ୍ଟି ନେବା ପ୍ରସ୍ତାବରେ ପ୍ରକୃତ ଜନନୀ ଜଣାଯାଇଛି ।

'ଅନିତ୍ୟ ଆଶା' ଏକ ଲୋକଗଳ୍ପ ଉପରେ ଆଧାରିତ । ଗଉଡ଼ ଘିଅଠୋବା ମୁଣ୍ଡେଇନେବା ବାଳକକୁ ଦୁଇ ଟଙ୍କା ମଜୁରି ପାଇଲେ ଗାଈ କିଣିବ, ତାର ବାଛୁରି ଜନ୍ମ ହେବ, ତାପରେ ତାର ପଲ୍ଲେ ଗାଈ ହେବେ, ବହୁତ ଧନରତ୍ନ ହେବ, ସେ କୋଠାବାଡ଼ ଗଢ଼ିବ, ଅପ୍‌ସରୀ ପରି ସୁନ୍ଦରୀ ବିଭାହେବ, ତାର କନ୍ଦର୍ପପରି ରୂପବନ୍ତ ପୁଅ ଜନ୍ମହେବ, ସେ ବାପା ଖାଇବାକୁ ଆସ ବୋଲି ଡାକଲେ ମୁଁ ନାହିଁ କରିବି । ସ୍ବାଭାବ ମୁଣ୍ଡ ହଲାଇ ନାହିଁ କରିବାମାତ୍ରେ ଘିଅଠୋବା ଭୂଇଁରେ ପଡ଼ି ଚୂନା ହୋଇଗଲା ।

ରଥଙ୍କ 'ଗଡ଼ଗଡ଼ିଆ ଘାଟ' ଓ ମାନସିଂଙ୍କ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' କବିତା ସମ ପରିସ୍ଥିତି ମଧ୍ୟରେ ରଚିତ । ମହାନଦୀ ତୀର ଶିବମନ୍ଦିର, ପାହାଡ଼ ଜଙ୍ଗଲ, ଅଦୂରେ ଭଗ୍ନ ବାରବାଟୀ ଦୁର୍ଗ । ଭାବ ପ୍ରାୟ ଏକାପରି । ଏଥିରେ ପ୍ରକୃତି ବର୍ଣ୍ଣନା ସଙ୍ଗେ ଅତୀତର ଗୌରବ ସ୍ମରଣ କରାଯାଇଛି—ମାନସିଂଙ୍କ କବିତା ଯେ ଅଧିକ ଉଚ୍ଚକୋଟୀର, ତୁଳନାତ୍ମକ ଆଲୋଚନାରୁ ବୁଝାଯାଏ । ତଳେ ରଥଙ୍କ କବିତାର ଦୁଇଟି ପଦ ଉଦ୍ଧୃତ ହେଲା—

'ପୂର୍ବର ଗଗନେ ରମ୍ୟ ସିଂହାସନେ
ଚନ୍ଦ୍ର ରହିଛନ୍ତି ବସିରେ
ନଦୀର ଗର୍ଭରେ ନିର୍ମଳ ଜଳରେ
ଶରଚ୍ଚନ୍ଦ୍ର ଯାଏ ଭାସିରେ ।'
'ଏକା ଭଗ୍ନ ଦୁର୍ଗ ମୋର ଦୁଃଖସ୍ବର୍ଗ
ନେଇଗଲା ଚାହିଁ ହୃଦରେ
ଦୁଃଖରେ କାତର ହେଲା କଳେବର
ଅତୀତ ମହିମା ସ୍ମରିରେ ।'

'ବାଲ୍ୟକାଳ' ବହୁ ଜୀବନ୍ତ ବାଲ୍ୟସ୍ମୃତି ବହନ କରେ । କିନ୍ତୁ ନନ୍ଦକିଶୋରଙ୍କ ତାଦୃଶ କବିତା ପରି ଏହା କରୁଣ ଓ ବ୍ୟଞ୍ଜନାମୟ ହୋଇପାରି ନାହିଁ । 'ବନ୍ଧୁଠାରୁ ବିଦାୟ ଗ୍ରହଣ' ଏକ ଉତ୍କୃଷ୍ଟ ଗୀତିକବିତା, ମାଧୁର୍ଯ୍ୟ ଓ କାରୁଣ୍ୟଭରା—

"ଯେତେବେଳେ ପଡ଼ିଥିବ ପୂର୍ଣ୍ଣଚନ୍ଦ୍ର ଆଭା
ଅନୁପମ ହୋଇଥିବ ପ୍ରକୃତିର ଶୋଭା
ସାଗର ପର୍ବତ ନଦୀ ସରୋବର ବନ
ଆନନ୍ଦେ ସକଳେ ହୋଇଥିବେ ଭାସମାନ
ଚନ୍ଦ୍ରିମା ରାତିରେ ଯେତେବେଳେ ବସିଥିବ
ତେତେବେଳେ ବନ୍ଧୁ ତୋତେ ସ୍ମରଣ କରିବ

× × ×

ତପନ ତାପରେ ଯେବେ ଦଗ୍ଧ ହେଉଥିବ
ତେତେବେଳେ ବନ୍ଧୁ ତୋତେ ସ୍ମରଣ କରିବ

× × ×

ଯେବେ ଜଗନ୍ନାଥ ସ୍ୱର ଜୀବନ ଛାଡ଼ିବ
ତେତେବେଳେ ବନ୍ଧୁ ତୋତେ ସ୍ମରଣ କରିବ ।

'କବିତାକଳାପ', ୧ମ ଭାଗ, ତୃତୀୟ ସଂସ୍କରଣ ୧୮୮୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ । ପୂର୍ଣ୍ଣିମା ନିଶାକାଳ, ପଞ୍ଜୁରିବଦ୍ଧ ଶୁକପକ୍ଷୀ ପ୍ରତି, ପ୍ରକୃତିର ଶୋଭା, ଆଶା, ସ୍ୱଦେଶ, ଦ୍ୱୀପାନ୍ତରିତ ବ୍ୟକ୍ତିର ଖେଦ, ପୁରୁଷୋତ୍ତମର କେତେକ ଦୃଶ୍ୟ, ଇନ୍ଦୁମତୀ ସ୍ୱୟମ୍ବର (ଅନୁବାଦ), ଶମନ ପ୍ରତି, ଧ୍ରୁବଙ୍କ ପଳାୟନ ଜନିତ ସୁନୀତିଙ୍କ ରୋଦନ, ପ୍ରଭାତ, ମାତି—ଏହି ବାରୋଟି କବିତା ସଙ୍କଳନର ଅନ୍ତର୍ଭୁକ୍ତ । ସମସାମୟିକ କବିମାନଙ୍କ କବିତା ସହିତ ଏ ସବୁର ଯଥେଷ୍ଟ ସାମଞ୍ଜସ୍ୟ ରହିଅଛି । ପ୍ରକୃତି ବର୍ଣ୍ଣନା ଉଚ୍ଚକୋଟୀର ହୋଇଅଛି—

'ଦେଖି ଚନ୍ଦ୍ରରୂପ ଭାବେ ନାନା ରୂପ
ପ୍ରକୃତି ମସ୍ତକେ କେ ଦେଲା ଛଟକେ
ଏ ଚନ୍ଦନ ଟୋପା ଅତି ଯତନେ
କିବା ରୌପ୍ୟ ଥାଳୀ ଧରି ରହି ବାଳୀ
ଭକ୍ତ ସଦକାରେ ଆନନ୍ଦଭରେ ।
ନିଶାର ସମୀର ଅତି ଅନିବାର
ହୋଇ ଟପ ଟପ ଝରେ ଥପ ଥପ
ଅଭିଷିକ୍ତ କରେ ମେଦିନୀ ଦେହେ
ନକ୍ଷତ୍ର ମଣ୍ଡିତା ଚନ୍ଦ୍ରେ ଅଲଙ୍କୃତା
ପବନ ସେବିତା ତହୁଁ ପୁଲକିତା
ରଜନୀ ଆନନ୍ଦ ଅନ୍ତୁ କି ବହେ ?

କବି ନିଜ ଭାବନାକୁ ଯଥାର୍ଥଭାବେ ରୂପାୟିତ କରିଛନ୍ତି । ଓଡ଼ିଶାକୁ ସେ ପ୍ରାଣ ଭରି ଭଲ ପାଉଥିଲେ । ତେଣୁ ସ୍ୱଦେଶଚନ୍ତା ତାଙ୍କର ପ୍ରାଣରେ ବାଣୀ ବନ୍ଧନ କରେ—

'ଓଡ଼ିଶା ମୋହର ମର୍ତ୍ତେ ସ୍ୱର୍ଗପୁର'
'ଓଡ଼ିଶା ଭାବନା ଉନ୍ନତି କାମନା
ହୁଏ ମୋର ନିରନ୍ତର ।'

'ଦ୍ୱୀପାନ୍ତରିତ ବ୍ୟକ୍ତିର ଖେଦ' ମଧୁସୂଦନଙ୍କ 'ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ' ସହିତ ତୁଳନୀୟ, ନିର୍ବାସିତ ବ୍ୟକ୍ତି ପ୍ରିୟ ପୁତ୍ର, ପ୍ରିୟା ପତ୍ନୀ, ଦୁଃଖିନୀ ଜନନୀ, ବୃଦ୍ଧ ପିତା, ବନ୍ଧୁ, ପଡ଼ୋଶୀ, ଗ୍ରାମୋଦ୍ୟାନ, ଗ୍ରାମର ନଦୀ, ଆକାଶକୁ ଦ୍ୱିଖଣ୍ଡିତ କରିଥିବା ଗ୍ରାମର ପର୍ବତ ଓ ସ୍ୱଦେଶର ରାଜଧାନୀକୁ ସ୍ମରଣ କରୁଛି । ପବନକୁ ଡାକୁଛି ସ୍ୱଦେଶକୁ ଉଡ଼ାଇ ନେବାଲାଗି । ଶେଷରେ କହୁଛି—ସୂର୍ଯ୍ୟ, ପବନ ବା ସମୁଦ୍ର ଜଡ଼ ପଦାର୍ଥ । ଏସବୁ ମୋତେ କିପରି ସାହାଯ୍ୟ କରିପାରିବେ ? ଏକମାତ୍ର ସାହାଭରସା ଭଗବାନ୍ ।

'ଇନ୍ଦୁମତୀ ସ୍ୱୟମ୍ବର' କବି ଗଙ୍ଗାଧର ମେହେରଙ୍କ 'ଇନ୍ଦୁମତୀ' ସହିତ ତୁଳନୀୟ । ଇନ୍ଦୁମତୀ ମୌଳିକ ରଚନା ପରି ଲାଗେ । 'ଇନ୍ଦୁମତୀ ସ୍ୱୟମ୍ବର'ରେ ପ୍ରଚେଷ୍ଟାର କ୍ଳିଷ୍ଟତା ସୁସ୍ପଷ୍ଟ—

'ଶଙ୍କର ଶିର ଚନ୍ଦ୍ର କରରେ
କୃଷ୍ଣପକ୍ଷ ରାତ୍ର ଘନ ତମିରେ
କୌମୁଦୀ ଉତ୍ସବ କରି ଅନୁଭବ
କାଟନ୍ତୁ ସମସ୍ତ ଆନନ୍ଦ ମନେ
ଏହାଙ୍କୁ ବର ଗୋ ମୃଗନୟନେ
ସିପ୍ରା ନଦୀ ତୀର ରମ୍ୟ ଉଦ୍ୟାନେ ।'

୧୮୯୮ ଖ୍ରୀଷ୍ଟାବ୍ଦରେ ବଙ୍ଗର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଉଡ୍‌ବର୍ଣ୍ଣ ସାହେବ କଟକ ଆସିଥିଲେ । ତାଙ୍କ ସମ୍ମାନ ଉଦ୍ଦେଶ୍ୟରେ ଏକ ଦରବାର ହୋଇଥିଲା । ସେଥିରେ ପୁରୀର ଠାକୁର ରାଜା, ଗଡ଼ଜାତର ରାଜା ଓ ଜମିଦାରମାନେ ଉପସ୍ଥିତ ହୋଇଥିଲେ । ଗୋବିନ୍ଦ ରଥ 'ଲାଟ ଦର୍ଶନ' ଶୀର୍ଷକ କବିତା ଛପାଇ ଦରବାରରେ ବିତରଣ କରିଥିଲେ; ସେଥିରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଓ ନାନା ଦୁଃଖ ଦୁର୍ଦ୍ଦଶା ଦୂରୀକରଣ ପ୍ରସ୍ତାବ ଥିଲା—

"କହିବ କି କଥା ଶୁଣିବ ଆପଣ
ନାହିଁ ଡହିଁ କିଛୁ ବଢ଼ାଣିଆପଣ ।
ଅନୁଭବ ସିଦ୍ଧ ଯାହା ହୁଏ ଜାଣ
ସେହି ଅଟେ ସିନା ପ୍ରାର୍ଥନା ବାଣୀ ।
ସହଜରେ ଦିଅ ସୁବିଗ୍ଧର ଦାନ
ସଂଶୋଧନ କର ଏ ଦଣ୍ଡବିଧାନ
ସୁମାର୍ଜିତ ହେଉ କାର୍ଯ୍ୟ ସାଧମାନ
ଦେଶୀ ମାପେ ଦେଶ ରଖ ପ୍ରମାଣି ।
ଅସଂଖ୍ୟ ଆଇନ ବନ୍ଧା ବିଧିମାନ
ମଧ୍ୟେ ପଡ଼ି ଆମେ ହେଉ ହତଜ୍ଞାନ
ଉତ୍କଳର ପାଇଁ ସ୍ୱତନ୍ତ୍ର ବିଧାନ
କରିଦିଅ ଲାଟ ପ୍ରାର୍ଥନା ଏତେ ।
ଗଂଜାମ ସମ୍ବଲପୁରକୁ ଏଥର
କଟକ ସାଙ୍ଗରେ ଆଣି ଯୋଗକର
ରେଲ ଛକ ପାତ ହେଲା ତ ଦେଶର
ଆଉ କାହା ପାଇଁ ବିଳମ୍ବ କେତେ ।
କୃଷିପ୍ରଧାନ ଏ ଦେଶ ନବ ଲାଟ
ଜଳରକ୍ଷା ପାଇଁ କର ଭଲ ବାଟ
ପଙ୍କେ ନିମଜ୍ଜିତ ସର୍ବ ଜୋଡ଼ ପାଟ
ଅକରୁଣ କରେ ବାରିବାହକ
ପଡ଼ିଯାଏ ଦେଶେ ହାହାକାର ଡାକ ।

( ରାଧାନାଥ ଜୀବନୀ, ପୃ ୨୮୩ )

ଗୋବିନ୍ଦ ରଥ ଉତ୍କଳସମ୍ମିଳନୀର ଜଣେ ମୁଖ୍ୟ ଉଦ୍ୟୋକ୍ତା ଓ ନିଷ୍ଠାପର କର୍ମୀ ଥିଲେ; ଉତ୍ସାହର ଏକ ଜୀବନ୍ତ ପ୍ରତୀକ ଥିଲେ ସେ । ବହୁ ବ୍ୟକ୍ତିଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିବାର ଶକ୍ତି ତାଙ୍କର ଥିଲା । ବିଭିନ୍ନ ସମ୍ମିଳନୀକୁ ଉପଜୀବ୍ୟ କରି ସେ ସାମୟିକ ପୁସ୍ତିକାସବୁ ରଚନା କରି ନିଜ ହାତରୁ ଛପାଉଥିଲେ । ସମ୍ମିଳନୀମାନଙ୍କ ସାଫଲ୍ୟ ଲାଗି ତାଙ୍କର ଶ୍ରମ ଓ ତ୍ୟାଗ ଅଳ୍ପ ନ ଥିଲା । ୧୯୧୫ ରେ ଅନୁଷ୍ଠିତ ସମ୍ବଲପୁର ଉତ୍କଳସମ୍ମିଳନୀ ଉପରେ ୧୯୧୬ରେ ସେ ଖଣ୍ଡିଏ ପୁସ୍ତିକା ରଚନା କରିଥିଲେ । ଏଥିରେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ, ଇଞ୍ଜିନିଅରିଂ ସ୍କୁଲ ଓ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ସ୍ଥାପନାଦି ବିଷୟରେ ଆଲୋକପାତ କରାଯାଇଥିଲା ।

ସମ୍ମିଳନୀ ମଣ୍ଡପ ଓ ପ୍ରାଙ୍ଗଣରେ ଉଲ୍ଲିଖିତ ମହତ୍ତ୍ୱବାଣୀ ଓଡ଼ିଶାର ବିଭିନ୍ନ ସମସ୍ୟା ଓ ଅଭାବ ପ୍ରତି ଦୃଷ୍ଟି ଆକର୍ଷଣ କରୁଥିଲା; ଉଦାହରଣ ସ୍ୱରୂପ କେତୋଟି ଉଦ୍ଧୃତ ହେଲା—

"ଶରୀରଂ ବା ପାତୟେତ୍ କାର୍ଯ୍ୟଂ ବା ସାଧୟେତ୍"
"ଉତ୍କଳର ସୁତାସୁତ, ଲାଗି କର ଦେଶ ହିତ"
"ନିୟମ କରିଛି ବିଧି, ସାଧନାରେ ହୁଏ ସିଦ୍ଧି"
"ମାତୃଭାଷା ମାତୃଭୂମି, ଅଟନ୍ତି ଦୁହେଁ ଜନନୀ"
"ସଦା ଚିନ୍ତ ଦେଶ ହିତ, ଦୁଃଖ ଘୁଞ୍ଚିବ କିଞ୍ଚିତ"
"ଦେଖ ଆଜି ନବ ଯୁଗେ, ରତ ସର୍ବେ କର୍ମଯୋଗେ"
"କର୍ମ କର କର୍ମବୀର ଜନନୀର ଦୁଃଖ ହର"
"ଧନ ଯେବେ ଅଛି ହାତେ, ଦାନକର ଦେଶ ହିତେ"
ସ୍ମର ହେ ପୂର୍ବ ଗୌରବ, ସ୍ମର ହେ ପୂର୍ବ ବିଭବ"
"ମା ସମ୍ପଦେ ମୋ ସମ୍ପଦ, ମା ବିପଦେ ମୋ ବିପଦ"
"ସାହିତ୍ୟ ଉନ୍ନତି ପଥ, କର ହେ ଭାଇ ପ୍ରଶସ୍ତ"
କୃଷି ବାଣିଜ୍ୟରେ ମନ, ଦେଇ ଭାଇ ରଖ ମାନ"
"ବିସ୍ତ ନାରୀ ଶିକ୍ଷା, କର ଦେଶ ରକ୍ଷା"

ରଥଙ୍କ ସାହିତ୍ୟସାଧନା ବହୁମୁଖୀ । ତାଙ୍କ ରଚନା ମଧ୍ୟରୁ କେତେକ ଦେଶପ୍ରେମମୂଳକ, ଉଦ୍‌ବୋଧନାତ୍ମକ । କେତେକ ସମାଜ ସଂସ୍କାର ଲାଗି ଉଦ୍ଦିଷ୍ଟ । କେତେକ ସାମୟିକ ଆନ୍ଦୋଳନ ଲାଗି ଆହୂତ ସଦ୍‌ଗୁଣ ନିବେଦିତ । କେତେକ ଅନୁବାଦ । ତାଙ୍କ ସାହିତ୍ୟର ସମସାମୟିକ ମୂଲ୍ୟ ଯଥେଷ୍ଟ ଥିଲା, ସ୍ୱୀକାର କରିବାକୁ ହେବ । କିନ୍ତୁ ସାହିତ୍ୟ ଅପେକ୍ଷା ତାଙ୍କ ବ୍ୟକ୍ତିତ୍ୱ ଉନ୍ନତତର କୋଟିରେ ଅବସ୍ଥିତ । ସେ ଉତ୍କଳର ସର୍ବାଙ୍ଗୀନ ଉନ୍ନତି ଲାଗି ନାନାଭାବେ ନିଜକୁ ଉତ୍ସର୍ଗ କରି ଯାଇଛନ୍ତି । ତାଙ୍କ ବ୍ୟକ୍ତିତ୍ୱ ଓ ମହତ୍ତ୍ୱ ଚିରସ୍ମରଣୀୟ ।



# ଶଶିଭୂଷଣ ରାୟ

ଜନ୍ମ—୧୦ । ୩ । ୧୮୭୬

ମୃତ୍ୟୁ—୪ । ୯ । ୧୯୫୩

---

"ଅମୁତ୍ତ ଚଳ କଲ୍ଲୋଳରେ
ଜୋଛନା ଅଙ୍ଗ ହୋଇଛୁ ମୂକ
ବହୁଦ ଆଉ କନ୍ଦନ କାନେ
ପାହାଡ଼ ବନ ଭ୍ରମଣ ସୁଖ
ମଉଳ ଅଛୁ ଅଶୋକ କଳି
କଂଶୁକର ନାହିଁ ସେ ଝଳି
ବକୁଳ ବନେ ନାହିଁ ରେ ନାହିଁ
ମଧୁପ ମଧୁ ଗୁଂଜରଣ
ମଳୟ ମଧୁ ପରଶେ ଆଉ
ଶିହରେ ନାହିଁ ଆମ୍ରବନ
ଫଗୁଣ ଛବି ପଡ଼ୁଛି ଫିକା
ଶଇଳ ମାଳେ ଶାଳ୍ମଳୀରେ
ନାହିଁ ନାହିଁ ସେ ଅଗ୍ନିଶିଖା

× ×

ଏଇ ପ୍ରସଙ୍ଗେ ଅନ୍ତ ଯାଏ
ପାହାଡ଼ ବନ ଆତ୍ମା ଜାଣେ
ନାମ ତା ଶଶିଭୂଷଣ ରାୟେ ।" କୁଞ୍ଜବିହାରୀ

ଏଇ କବିତାଟି 'ଝଙ୍କାର'ରେ ପଢ଼ି ଶଶିବାବୁ ମୋ ପାଖକୁ ଅଯାଚିତରେ ଚିଠିଟିଏ ଲେଖିଥିଲେ--ଶେଷ ଚିଠି, ଆଶୀର୍ବାଦଭରା । ଲୋକେ ତାଙ୍କ କଥା

ଝରୁଛନ୍ତି, ତାଙ୍କ ଦାନକୁ ସ୍ୱୀକାର କରୁଛନ୍ତି, ଏଇ ଆଶ୍ୱାସନା ଘେନ ସେ ସଂସାରରୁ ବିଦାୟ ନେଇଥିଲେ, ଏଇ କବିତା ପ୍ରକାଶର ଅଳ୍ପଦିନ ପରେ ୪ । ୯ । ୧୯୬୩ରେ ।

ସାହିତ୍ୟ ଲାଗି ଜୀବନକୁ ଅର୍ଘ୍ୟ ଦେଇଥିଲେ ସେ; ଅହରହ ଓଡ଼ିଆ ସାହିତ୍ୟର ଉନ୍ନତି ଚିନ୍ତା, ପ୍ରତ୍ୟହ କିଛି ନୂତନ ସୃଷ୍ଟି କରିବାର ଭାବନା । ଗଦ୍ୟ ସାହିତ୍ୟର ଜଣେ ଶ୍ରେଷ୍ଠ ବରାଣି, ଆଶ୍ଚର୍ଯ୍ୟ, ମୃତ୍ୟୁର ମାତ୍ର ଅଳ୍ପଦିନ ପରେ ସେ ଆଜି ବିସ୍ମୃତ ।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଯଥାର୍ଥ ଲେଖିଛନ୍ତି--"ଶଶିଭୂଷଣ ଆଜକୁ ଅନ୍ତତଃ ଷାଠିଏ ବରଷ ହେବ, ନିଷ୍ଠା ସହକାରେ ଏକାଗ୍ରଭାବରେ ସାହିତ୍ୟସେବାରେ ଲାଗିଛନ୍ତି, ତାଙ୍କର ଅନ୍ୟ ଅବଲମ୍ବନ ନାହିଁ । ସାହିତ୍ୟାରାଧନା ତାଙ୍କର ଅସ୍ଥିମଜ୍ଜଗତ ହୋଇଅଛି । ସେ ବୁଲିବୁଲି କଲାବେଳେ ଯାହା ତାଙ୍କ ଆଖିରେ ପଡ଼େ ବା ଯାହା ଚିନ୍ତା କରିଥାଆନ୍ତି, ଘରକୁ ଆସି ବସିଲାବେଳେ ସେଗୁଡ଼ିକ ଲିପିବଦ୍ଧ କରନ୍ତି ।

କବିବର ରାଧାନାଥ ଥିଲେ ଉତ୍କଳପ୍ରକୃତିଙ୍କ ପୂଜକ । ଶଶିଭୂଷଣ ପିତାଙ୍କର ପ୍ରକୃତିପୂଜାକୁ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ହୋଇ ଅଛନ୍ତି । ରାଧାନାଥ ଉତ୍କଳ ପ୍ରକୃତିକୁ କବିତାରେ ଆରାଧନା କରୁଥିଲେ । ଶଶିଭୂଷଣ ଗଦ୍ୟାକାରରେ ପିତୃଦେବଙ୍କ ଅନୁସରଣ କରି ଅଛନ୍ତି ।"

ପ୍ରବନ୍ଧ ପ୍ରବାହ, ମୁଖବନ୍ଧ, ୧୯୫୪

୧୮୭୭ ଖ୍ରୀଷ୍ଟାବ୍ଦ, ମାର୍ଚ୍ଚ ୧୦ ତାରିଖରେ ଶଶିଭୂଷଣଙ୍କ ଜନ୍ମ । କବିବର ରାଧାନାଥଙ୍କ ଜ୍ୟେଷ୍ଠପୁତ୍ର ସେ । ରଜନୀଭୂଷଣ କବିବରଙ୍କ ଦ୍ୱିତୀୟ ବା କନିଷ୍ଠ ପୁତ୍ର । ଦୁଇ ଭାଇ କଟକରେ ରହି ଶିକ୍ଷାଲାଭ କରିଥିଲେ । ଶଶୀଙ୍କ ଜନ୍ମର ଦୁଇବର୍ଷ ଆଗରୁ ରାଧାନାଥ ପ୍ରତ୍ୟହ ଏକ ସହସ୍ର 'ମଧୁସୂଦନ' ନାମ ଲେଖି ତାପରେ ନିତ୍ୟନୈମିତ୍ତିକ କାର୍ଯ୍ୟ ଆରମ୍ଭ କରୁଥିଲେ । ଜନ୍ମହେବା ପରେ ସେ ପୁତ୍ରର ନାମ ମଧୁସୂଦନ ରଖିଥିଲେ, 'ମଧୁ' ସମ୍ବୋଧନରେ ଚିଠିପତ୍ର ବି ଲେଖୁଥିଲେ । ଶଶିଭୂଷଣ ପିତୃପିତାମହ ଚନ୍ଦ୍ରନାଥ ରାୟଙ୍କ ପ୍ରଦତ୍ତ ନାମ—ସେହି ନାମରେ ହିଁ ସେ ସର୍ବତ୍ର ପରିଚିତ । ମଧୁସୂଦନ ଡାକନାମ ହୋଇ ରହିଗଲା ।

ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପାଠ ପଢ଼ିଲାବେଳେ ଶଶୀଙ୍କ ସାହିତ୍ୟିକ ଉଚ୍ଚାକାଂକ୍ଷା ପ୍ରକାଶ ପାଇଥିଲା । ସେ 'ରଚନା ପ୍ରତିଯୋଗିତା' ବୋଲି ଏକ ଅନୁଷ୍ଠାନ ପ୍ରତିଷ୍ଠା କରି ସ୍କୁଲରେ ପ୍ରବନ୍ଧ ପ୍ରତିଯୋଗିତା କରାଇଥିଲେ । ଯେ ପ୍ରଥମ ସ୍ଥାନ ଅଧିକାର କରୁଥିଲା, ସେ ଖଣ୍ଡିଏ ଇଂରାଜୀ ବା ଓଡ଼ିଆ ପୁସ୍ତକ ପୁରସ୍କାର ପାଉଥିଲା । ଶଶୀଙ୍କ ବନ୍ଧୁ ଗୋପାଳଚନ୍ଦ୍ର ପ୍ରହରାଜ ବହୁବାର ଏ ପୁରସ୍କାର ଲାଭ

ଚଢ଼ୁଥିଲେ । ତତ୍‌କାଳୀନ ମୁଦ୍ର ପାଠାଗାର ସମଗ୍ର ଖାଲି ହୋଇଥିବା ଅନୁଭବ କରି ରାଧାନାଥ ଅନୁତାପକୁ ପାଇଥିଲେ । ପ୍ରତିଯୋଗିତାରେ ଜନକ ହୋଇ କେତେକ ବାଳକ ଶିକ୍ଷକଙ୍କ ଆଗେ ସ୍ଥାନ ସୁଚୁଥିଲେ । ରାଧାନାଥ ତହିଁ ପୁତ୍ରକୁ ଯାଇ କମ୍ପ୍ର କରନ୍ତୁ ଅବଗତ ହେଲେ ଓ ତାହାର ବଦଳେ ସ୍ଥାୟୀ ପ୍ରତିଯୋଗିତାର ବାବସ୍ଥା କରିଦେଲେ ।

ପିତାପୁତ୍ରଙ୍କ ମଧ୍ୟରେ ଅଦ୍ଭୁତ ସ୍ନେହ ସମ୍ପର୍କ ଥିଲା; ରାଧାନାଥ ଶଶିଭୂଷଣଙ୍କୁ ଜୀବନର ଅଂଶ ମନେ କରୁଥିଲେ । ଶଶୀ ମଧ୍ୟ ନିମ୍ନ ଶ୍ଳୋକ ବାରମ୍ବାର ଆବୃତ୍ତି କରୁଥିଲେ—

"ପିତା ଧର୍ମଃ ପିତା ସ୍ୱର୍ଗଃ
ପିତା ହି ପରମଂ ତପଃ
ପିତରି ପ୍ରୀତିମାପନ୍ନେ
ପ୍ରୀୟନ୍ତେ ସର୍ବ ଦେବତାଃ ।"

ଶଶୀ ପିତାଙ୍କ ସୁଖ ଲାଗି ସବୁ ସୁଖରେ ଜଳାଞ୍ଜଳି ଦେବାକୁ ପ୍ରସ୍ତୁତ ଥିଲେ, ସେ 'ପାର୍ବତୀ' କାବ୍ୟର ନିମ୍ନ ପଦଟି ବେଳେ ବେଳେ ଆବୃତ୍ତି କରୁଥିଲେ—

"କେବା ହୋଇଥାନ୍ତା          ନର ପିତୃ ଯେବେ
ରଜାଙ୍କ ଔଷଧ ଲାଗି
ପାତକକୁ ଦୂରୁ          ଦେଖାଇ ଦିଅନ୍ତା
ସବୁ ଅଙ୍ଗେ ଏ ଅଭାଗୀ ।"

ଏଭଳି ପିତୃଭକ୍ତ ଏ ସଂସାରରେ ବିରଳ । ଶଶୀ ଅସୁସ୍ଥ ହେବାପରେ ରାଧାନାଥ ତ କହୁଥିଲେ—"ପରବର୍ତ୍ତିକାଳୀନ ହୋଇଥିଲେ ଏ ଦେଶକୁ ମୁଁ ଜଳ ଦେବାକୁ ଯେତ ଆସିଥାନ୍ତି ।"

ପିତାଙ୍କୁ ବୃଦ୍ଧି ପୁତ୍ର—ଔଷ ଗୁଣେ ତୋଳ
ତେଲୁଣି ଗୁଣେ ସବୁ ଚଳୁଛି ।

ରାଧାନାଥ ଜଳ ପରି ପୁଅକୁ ଗଢ଼ିବାକୁ ଚେଷ୍ଟା କରୁଥିଲେ । ସ୍ୱରବର୍ଣ୍ଣ ବୟସରେ କାଠଯୋଡ଼ି କୂଳକୁ ବୁଲାଇନେଇ ସେ ଦେବଦ୍ୱାର, ସପ୍ତଶଯ୍ୟା, ସର୍ପେଶ୍ୱର, ଜଗନ୍ନାଥ ପ୍ରଭୃତି ପର୍ବତ ଦେଖାଉଥିଲେ । ଶେଷରେ, କେତେବେଳେ ହସ୍ତୀପୃଷ୍ଠରେ ବସାଇ ଉଦ୍ୟାନରେ ପ୍ରାକୃତିକ ଦୃଶ୍ୟସବୁ ଦେଖାଉଥିଲେ ।

ରାଧାନାଥ ଶମ୍ଭୁନାଥଙ୍କୁ ଜନ୍ମ ଉପଦେଶ ସବୁ ଦେଇଥିଲେ—

(କ) ସାହିତ୍ୟସେବା ଓ ଗଣସେବା—ଏ ଉଭୟ ମଧ୍ୟରେ ଗଣସେବା ହିଁ ମହତ୍ତ୍ୱେମ୍ବ । ସାହିତ୍ୟସେବା କେବଳ ଶିକ୍ଷିତମାନଙ୍କ ସକାଶେ । ଗଣସେବା ଓ ଜନମାନେଙ୍କ ସେବାଦ୍ୱାରା ହୃଦୟ ପ୍ରଶସ୍ତ ହୋଇଥାଏ । ବିଧାତା ଭାଙ୍ଗିକ ଜନ୍ମ ଦେଇଛନ୍ତି ? କେବଳ ପରିବାର ପୋଷଣ, ସ୍ୱ ସ୍ତ୍ରୀ ଉଧାନ୍ ଜାଗି ନୁହେଁ ।

(ଖ) ମିତବ୍ୟୟିତା ପ୍ରକୃତପ୍ରି ସ୍ୱଭାବ ନାମାନ୍ତର ମାତ୍ର । ଅନେକ ସମୟରେ ଏହି ମିତବ୍ୟୟିତା ସ୍ୱାର୍ଥପରତାର ନାମାନ୍ତର ମାତ୍ର ।

(ଗ) କଣ୍ଟକର ପାନ ଦୋକାନ, ଦୁର୍ଗାପୂଜା, ତାଜିଆ, ଗଣେଶପୂଜାଗୁଡ଼ିକ ଉପଦ୍ରବପୂର୍ଣ୍ଣ ସ୍ଥାନ । ଏ ସମସ୍ତରୁ ଦୂରରେ ରହିବା ଆବଶ୍ୟକ ।

(ଘ) ଦୁଇଶ ଟଙ୍କାରୁ କମ୍ ଦ୍ରେଶ ହେଲେ ପୁଲିସ୍‌ରେ ଖବର ଦେବନାହିଁ ।

(ଙ) ମୃତ୍ୟୁ ଉତ୍ତାରୁ ଶ୍ରାଦ୍ଧରେ ବହୁବ୍ୟୟ କଦାପି କରିବ ନାହିଁ । ତାଦ୍ୱାରା ଆତ୍ମାର ସଦ୍‌ଗତ ହୁଏ ନାହିଁ । ଧର୍ମ ହିଁ ଏକମାତ୍ର ସୁହୃଦ, ସେ ମରଣରେ ସଙ୍ଗରେ ଯାଏ ।

(ଚ) ଆଜ ଯାହା କରିପାରିବ, କାଲକ ତାହା ପକାଇ ରଖିବ ନାହିଁ । ଯେଉଁ ଜିନିଷର ପ୍ରୟୋଜନ ନାହିଁ, ତାହା ଯେତେ ଶସ୍ତା ହେଲେ ବି କିଣିବ ନାହିଁ ।

(ଛ) କ୍ଷୁଧା ତୃଷା ଆମ୍ଭମାନଙ୍କୁ ଘୋର କଷ୍ଟ ଦେଇଥାଏ, ତା ଅପେକ୍ଷା ଅହଙ୍କାର ଅଧିକ ।

(ଜ) କମ୍ ଅହାର କଲି ବୋଲି କେବେ ଅନୁତାପ କରିବ ନାହିଁ । କ୍ରୋଧ ଜାତ ହେଲେ ୧୦ ଗଣନା କଲାପରେ କଥା କହିବ । ଅଧିକ କୋଧ ହେଲେ ଶହେ ଗଣନା କରି କଥା କହିବ ।

(ଝ) ସଭାସମିତିରେ ଯୋଗ ଦେବ ନାହିଁ । ସଭାସମିତିରେ ପ୍ରକୃତ କାର୍ଯ୍ୟ ହୁଏ ନାହିଁ, ବକ୍ତୃତା ମାତ୍ର ସାର ହୁଏ ।

ଥରେ ବଡ଼ପାଟିରେ ଶଣିବାକୁ କଥା କହୁଥିବାବେଳେ ରାଧାନାଥ କହିଲେ—
**Always try to speak in low key.**

ଖଣ୍ଡେ ଛିଣ୍ଡା କାଗଜ ପଡ଼ିଥିବାର ଦେଖି ରାଧାନାଥ ଗୋଟାଇ ଫିଙ୍ଗି ଦେଲେ । ସେହି ଦିନଠାରୁ ଲେଖାପଢ଼ା ସ୍ଥାନ ପରିଚ୍ଛନ୍ନ ରଖିବା ବିଷୟରେ ଶମ୍ଭୁଫଣ ସତର୍କ ହେଲେ ।

ସେ ପିତାଙ୍କୁ ପ୍ରତ୍ୟକ୍ଷ ଦେବତା ତୁଲ୍ୟ ମନେ କରୁଥିଲେ ଓ ତାଙ୍କ ଉପଦେଶ-ସବୁ ଯଥାସମ୍ଭବ ପାଳନ କରିବାକୁ ଚେଷ୍ଟିତ ହୋଇଥିଲେ ।

୧୮୯୧ ରେ ଶଶିଭୂଷଣ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ତାର ବର୍ଷକ ଆଗରୁ ତାଙ୍କୁ ଅପସ୍ମାର ରୋଗ ଆକ୍ରମଣ କରିଥିଲା । ସେଇ ଅବସ୍ଥାରେ ସେ କଲେଜରେ ନାମ ଲେଖାଇଲେ । ସେ ତାଙ୍କ କଲେଜ ଅନୁଭୂତ 'ଜୀବନ ସ୍ମୃତି'ରେ ଲିପିବଦ୍ଧ କରିଯାଇଛନ୍ତି—

"ତା ପରେ କଲେଜକୁ ଏଫ୍. ଏ. ପଢ଼ିବାକୁ ଆସିଲି । ସେତେବେଳେ ଏଫ. ଏ. କ୍ଲାସରେ ୧୮।୧୯ ଜଣ ଛାତ୍ର । ଏହି ଅନୁସାରେ ବି. ଏ. କ୍ଲାସରେ ୪।୫ ଜଣ ଛାତ୍ର ଥାନ୍ତି, କଲେଜରେ ପ୍ରିନ୍ସିପାଲ (S. Ager) ଏସ୍. ଏଗେର ସାହେବଙ୍କୁ ମିଶାଇ ୪।୫ ଜଣ ଅଧ୍ୟାପକ ।

ସେତେବେଳେ ଏଫ୍. ଏ. ରେ ମିଲ୍‌ଟନଙ୍କ 'Paradise Lost', ସଂସ୍କୃତ ଦଶକୁମାର ଚରିତ, ରଘୁବଂଶ, ସାହିତ୍ୟ, ତ୍ରିକୋଣମିତି, ଜ୍ୟାମିତି, ଗଣିତ, ଇତିହାସ, ଆଲୋକ ବିଷୟକ ବିଜ୍ଞାନ ପଢ଼ା ହେଉଥିଲା । ସାହିତ୍ୟ ଓ ବିଜ୍ଞାନ ପରୀକ୍ଷା ଏ କାଳରେ ଆଇ. ଏ., ଆଇ. ଏସ୍‌ସି. ପୃଥକ୍ ନାମ ଧାରଣ କରିଅଛି । ସେ କାଳରେ ଗୋଟିଏ ପରୀକ୍ଷା ପାଇଁ ଇଂରାଜୀ ସାହିତ୍ୟ, ସଂସ୍କୃତ ସାହିତ୍ୟ, ଇତିହାସ, ଗଣିତ ଓ ବିଜ୍ଞାନ ପ୍ରଭୃତି ଅଧୀତ ହେଉଥିଲା ।

ପରେ କଲେଜରୁ ଫେରିବାବେଳେ ମାର୍ଗରେ ଅପସ୍ମାର ରୋଗ ଆକ୍ରମଣ କଲା । ସେଥିରେ ମୋର ହାତ ଓ ଗୋଡ଼ର କେତେକାଂଶରେ ଆଘାତ ହେଲା । ସ୍ଥାନବିଶେଷରେ ଚିତ୍ତପାତ ହେବାରୁ ମୋତେ ସମସ୍ତେ କଲେଜ ଛାଡ଼ିବାକୁ କହିଲେ । ସେହି ଦିନଠାରୁ କଲେଜରେ ମୋର ପାଠପଢ଼ା ବନ୍ଦ ହେଲା ।

'ମୋହର ଜୀବନସ୍ମୃତି, ସତ୍ୟବାଦୀ, ୧୯୫୦'

ଶଶୀଙ୍କ ଶରୀରରେ ପ୍ରତ୍ୟହ ୪ ଜଣ ଲୋକ କବିରାଜୀ ମଧ୍ୟ ନାରାୟଣ ତୈଳ ଅର୍ଦ୍ଧସେର ଲେପନ କରୁଥିଲେ । ଗ୍ରହ ଶାନ୍ତି ଲାଗି ଯାଗଯଜ୍ଞ ଓ ପୂଜାଧୂଜାଦି କ୍ରିୟା କରାଯାଉଥିଲା । ଏଥିରେ ରୋଗର ଉପଶମ ନ ହେବାରୁ ସେ କଲିକତା ଯାଇ ଡାକ୍ତରୀ ଚିକିତ୍ସା କଲେ । ୧୮୯୬ ରେ ଚିକିତ୍ସା ପରେ ଫେରିବାକୁ ବଳଦଗାଡ଼ିରେ ବାଲେଶ୍ୱରରୁ କଟକ ଛ'ଦିନ ଲାଗିଲା । ରାଧାନାଥ ବଳଦଗାଡ଼ିରେ 'ମହାଯାତ୍ରା'ର ସପ୍ତମ ସର୍ଗ ଲେଖା ଶେଷ କଲେ ।

ଏହି ବ୍ୟାଧିଜନିତ ଦୁଃଖରେ 'ପାର୍ବତୀ' କାବ୍ୟ ଅପୂର୍ଣ୍ଣ ରହିଲା, ଚନ୍ଦ୍ରିକା କାବ୍ୟ ଦୁଃଖାନ୍ତ ହୋଇଗଲା । ରାଧାନାଥଙ୍କ ସାହିତ୍ୟିକ ଅନ୍ତରଗତ ବ୍ୟାହତ ହୋଇଥିଲା ।

୧୮୯୧ ରେ ଏକ ଅତି ଦୁଃଖାତ୍ମକ ସାହିତ୍ୟିକ ଦୁର୍ଘଟଣା ଘଟିଲା । ଓଡ଼ିଆ ସାହିତ୍ୟ ପ୍ରତି ଏହା ଚରମଭାବେ କ୍ଷତିକାରକ ହୋଇଥିଲା । ରାଧାନାଥଙ୍କ ଦ୍ୱାରା ବହୁଭାବେ ଉପକୃତ କୌଣସି ବନ୍ଧୁ ମହାଯାତ୍ରାରେ ଆପତ୍ତିଜନକ ଅଂଶ ଅଛି ବୋଲି ବ୍ରିଟିଶ୍ ସରକାରଙ୍କୁ ଜଣାଇଥିଲେ । ରାଧାନାଥ ଏଥିରେ କ୍ଷୁବ୍ଧ ହୋଇ ମହାଯାତ୍ରାର ପାଞ୍ଚ ସର୍ଗର ଲିଖିତାଂଶ ଓ ଅବଶିଷ୍ଟ ଅଠର ସର୍ଗର ଖସଡ଼ା ଅଗ୍ନିରେ ଦଗ୍ଧ କରିଥିଲେ । ପୈଶାଚୀ ଭାଷାରେ ଲିଖିତ 'ବୃହତ୍ କଥା'ର ପାଣ୍ଡୁଲିପି ଦାହପରି ମହାଯାତ୍ରାର ଦାହ ଏକ ଅତି ଶୋଚନୀୟ ଘଟଣା ହୋଇଥିଲା, ଶଶିଭୂଷଣଙ୍କ ବିନୀତ ପ୍ରାର୍ଥନା ଏଥିରୁ ତାଙ୍କୁ ନିବୃତ୍ତ କରିପାରି ନ ଥିଲା । ଏହିପ୍ରକାରେ ଉତ୍କଳର ଏକ ଶ୍ରେଷ୍ଠ କାବ୍ୟିକ କୃତିତ୍ୱ ଭସ୍ମୀଭୂତ ହୋଇଗଲା ।

ଭ୍ରମଣ ଓ ପ୍ରକୃତି ଦର୍ଶନ ହିଁ ଅପସ୍ମାରର ଚିକିତ୍ସାରୂପେ ନିର୍ଦ୍ଧାରିତ ହୋଇଥିଲା । ଡାକ୍ତରଙ୍କ ଉପଦେଶ ଅନୁସାରେ ଶଶିଭୂଷଣ ଦାକ୍ଷିଣାତ୍ୟ ଯାତ୍ରା କଲେ । ପ୍ରକୃତି ହୋଇଥିଲା ତାଙ୍କର ସହଯାତ୍ରିଣୀ ଧାତ୍ରୀ । ଏହି ପ୍ରକାରେ ଆରୋଗ୍ୟ ଲାଭ ପରେ ପ୍ରକୃତି ହେଲା ତାଙ୍କର ମାଆ । ତା'ର କୋଳରେ ହିଁ ସେ ଚରମ ଶାନ୍ତି ଲାଭ କଲେ । ପ୍ରକୃତିର ମୁହାଁମୁହିଁ ହୋଇ ରହିବାକୁ ସର୍ବଦା ଚେଷ୍ଟିତ ହେଲେ । 'ଉତ୍କଳର ଋତୁଚକ୍ର' ଓ 'ଉତ୍କଳ ପ୍ରକୃତି' ପ୍ରଭୃତି ଗଦ୍ୟ କାବ୍ୟ ଲେଖିବାକୁ ସମର୍ଥ ହେଲେ । ସେ ହେଲେ ଉତ୍କଳର ଶ୍ରେଷ୍ଠ ଯାଯାବର—ଏକ ବାଉଳା, ଯେ ଘର ଅପେକ୍ଷା ବାହାରେ ରହିବାକୁ ଭଲପାଏ, ଯେ ଫୁଲ ସହିତ ମନ ଫୁଟାଏ, ଝରଣା ସହିତ ପ୍ରାଣକୁ ପ୍ରବାହିତ କରେ, ସାଗର ସହିତ ପ୍ରାଣକୁ ହିଲ୍ଲୋଳେ ହିଲ୍ଲୋଳେ ଉଚ୍ଛ୍ୱସିତ କରେ ।

ସେ ଜୀବନରେ ଚାକିରି କରି ନ ଥିଲେ, ପିତୃଦତ୍ତ ଯତ୍‌ସାମାନ୍ୟ ଅର୍ଥରେ ଜୀବନ ନିର୍ବାହ କରିଥିଲେ । ସନ୍ନ୍ୟାସୀ ପରି ଚଳିଲେ, କିନ୍ତୁ ସାହିତ୍ୟିକ ତପସ୍ୟା ହୋଇଥିଲା ଏକାନ୍ତ ଏକାଗ୍ର, ସାହିତ୍ୟର ସଙ୍କଳ୍ପରେ ତାଙ୍କ ଜୀବନ ଏକ ମୂର୍ତ୍ତିମନ୍ତ । ଏହାର ତୁଳନା ନାହିଁ, ଯେଉଁମାନେ 'ଅକାଳେ ମାଇଲି ଯାଏ, ଗଲା ଶିରିବଣ ଯାଏ' ନ୍ୟାୟରେ ସାହିତ୍ୟ ରଚନା କରନ୍ତି, ସେମାନେ ଏହା କଳନା କରିପାରିବେ ନାହିଁ ।

ଶଶିଭୂଷଣ ଜୀବ ମଧ୍ୟରେ ଶିବ ଦେଖୁଥିଲେ । ସବୁ ଜୀବର ସେବା ତାଙ୍କ ନିତ୍ୟ ନୈମିତ୍ତିକ କାର୍ଯ୍ୟର ଅନ୍ତର୍ଭୁକ୍ତ ଥିଲା । ମନୁଷ୍ୟ, ମେଷ, ଛାଗଳ, ଶ୍ୱାନ ପ୍ରଭୃତି ଇତର ଜୀବ ସେଇ ସେବା ପରିସର ମଧ୍ୟରେ ଥିଲେ ।

କାଠ ଓ ପଥର ଶକାଳୀ ଶଅରମାନେ କାଠଯୋଡ଼ିର ତପ୍ତ ବାଲୁକାରେ ତୃଣ ଗୁଳ୍ମ କଣ୍ଟକ ଅସୁ ଆସୁ ସେମାନଙ୍କ ପଦ ପ୍ରାୟ ଦଗ୍ଧ ହେଉଥିଲା । ଏ ଦୁଃଖରେ ବ୍ୟଥିତ ଶଶିଭୂଷଣ ସେମାନଙ୍କ ଲାଗି ପଥେ ପଥେ ଶ୍ରାନ୍ତିମଣ୍ଡପ ନିର୍ମାଣ କରାଇଥିଲେ ଓ ଶହେଯୋଡ଼ା ଯୋତା ବିତରଣ କରିଥିଲେ ।

ସେ ପିମ୍ପୁଡ଼ି ଧାର ଦେଖି ଚିନି ପକାଉଥିଲେ; ତ୍ରୈତାନ୍ତ୍ରିକ ସତ୍ୟନାରାୟଣ ରାଜଗୁରୁ ଦିନେ ଏଦୃଶ୍ୟ ଦେଖି କହିଲେ—ଏହା ଫଳରେ ଚିରକର୍ମଠ ପିମ୍ପୁଡ଼ିଗୁଡ଼ିକ ଅଳସ ଓ ଅକର୍ମଣ୍ୟ ହୋଇଯିବେ । ଏହି ଦୟା ସେମାନଙ୍କ ଖାଦ୍ୟ ସମସ୍ୟାର ସମାଧାନ କରି ପାରିବ ନାହିଁ । ଯେଉଁଦିନ ଏ ଦାନ ବନ୍ଦ ହେବ, ସେହିଦିନ ଏପରି ନିର୍ଭରଶୀଳ ପ୍ରାଣୀମାନେ ପ୍ରାଣତ୍ୟାଗ କରିବେ ।

ଶଶିଭୂଷଣ ଜୀବନରେ ୪୦ରୁ ୫୦ ହଜାର ପୁସ୍ତକ ଗରିବ ଛାତ୍ରମାନଙ୍କୁ ବା ପାଠାଗାରମାନଙ୍କୁ ଦାନ କରିଥିଲେ । ସେ ୩୬ ଟି କୂପ ଖନନ କରାଇଥିଲେ, ଦୁଇଗୋଟି ପୁଷ୍କରିଣୀର ଜୀର୍ଣ୍ଣ ସଂସ୍କାର କାର୍ଯ୍ୟ କରିଥିଲେ ।

ତାଙ୍କର ବଡ଼ ସାନ ବାଛ ବିଚାର ନ ଥିଲା । ସେ ନିଜେ ଯାହା ଖାଉଥିଲେ, ପିନ୍ଧୁଥିଲେ, ଭୃତ୍ୟକୁ ତାହା ଖୁଆଉଥିଲେ ବା ପିନ୍ଧାଉଥିଲେ । ରାଧାନାଥଙ୍କ ଅମଳରୁ ଏଇ ପରମ୍ପରା ଚାଲି ଆସୁଥିଲା । ଘରେ ମୋଟା, ସରୁ ଦୁଇ ପ୍ରକାର ଚାଉଳ ରନ୍ଧାହେବାର ଦେଖିଲେ ରାଧାନାଥ କହିଲେ—ମୁଁ ମୋଟା ଖାଇବି—ଶଶିଭୂଷଣ ସର୍ବସାଧାରଣଙ୍କ ସଙ୍ଗେ ମିଶିପାରିବେ, ଏଇ ବିଚାରରେ ଗେରୁଆବସ୍ତ୍ର ପିନ୍ଧୁଥିଲେ ।

୧୯୧୪ ରୁ ୧୯୩୯—ଶଶିଭୂଷଣ ଉତ୍କଳସାହିତ୍ୟ ସମାଜର ସମ୍ପାଦକ ଥିଲେ । ତାଙ୍କର ସମୟରେ ଶ୍ରୀରାମଚନ୍ଦ୍ର ଭବନ ନିର୍ମିତ ହେଲା ଓ ଏହା ସହିତ ଗୋଟିଏ ପାଠାଗାର ସଂଯୁକ୍ତ ହେଲା । ଶଶିଭୂଷଣ ଜଣେ ଅକ୍ଳାନ୍ତ କର୍ମୀ । ସାହିତ୍ୟ ପରି ସାହିତ୍ୟିକ ଅନୁଷ୍ଠାନ ପ୍ରତି ତାଙ୍କର ଅନୁରକ୍ତି ପ୍ରବଳ ।

ରାଧାନାଥ ମନସ୍ତାପ କାଳରେ ଜୀବନର ଶେଷାଂଶ ଶଶିଭୂଷଣଙ୍କ ସହିତ ଉତ୍କଳର ପାର୍ବତ୍ୟ ଅଞ୍ଚଳରେ କଟାଇଥିଲେ । ସେ ଦେଢ଼ମାସ ତାଳଚେରର ରାଜା କିଶୋରଚନ୍ଦ୍ରଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ହସ୍ତୀ ପୃଷ୍ଠରେ ଗମନ, ବ୍ରାହ୍ମୀ ସ୍ନାନ, ଦରିଦ୍ରମାନଙ୍କୁ ଧନ ବିତରଣ, ସାହିତ୍ୟଚର୍ଚ୍ଚା, ଧର୍ମାଲୋଚନା ନିତ୍ୟନୈମିତ୍ତିକ କାର୍ଯ୍ୟ ଥିଲା ।

୧୯୧୦ ଖ୍ରୀଷ୍ଟାବ୍ଦରେ ଶ୍ରୀପଞ୍ଚମୀ ଦିନ ଶଶିଭୂଷଣ ସ୍ୱ ବ୍ୟୟରେ ସପ୍ତଚଉରାରେ ସମାଧି ମନ୍ଦିର ନିର୍ମାଣ କରାଇଥିଲେ । ଭକ୍ତକବି ମଧୁସୂଦନ ଏହା ଉଦ୍‌ଘାଟନ କରିଥିଲେ । ଗୌରୀଶଙ୍କର ପାର୍କରେ ମଧ୍ୟ ସେ ପିତୃଦେବଙ୍କର ଗୋଟିଏ ମୂର୍ତ୍ତି ନିର୍ମାଣ କରାଇଥିଲେ ।

ଶଶିଭୂଷଣଙ୍କ ସହଧର୍ମିଣୀଙ୍କ ନାମ ବିନୋଦିନୀ । ସେ ଏକାନ୍ତ ଧର୍ମପ୍ରାଣା । ସେ ପ୍ରତିଦିନ ଶ୍ୱଶୁରଙ୍କ କାଷ୍ଠପାଦୁକା ଓ ଶାଶୂ ଶ୍ୱଶୁରଙ୍କର ପ୍ରତିକୃତି ପୂଜା କରୁଥିଲେ । ଅଧିକାଂଶ ଓଷାବ୍ରତ ପାଳନ କରୁଥିଲେ ।

ଶଶିଭୂଷଣଙ୍କର ପୁତ୍ର ସନ୍ତାନ ନ ଥିଲା, ସୁନୀତି, ସୁମତି, ସୁରୁଚି ନାମରେ ତିନିଗୋଟି କନ୍ୟା ମାତ୍ର । ସେ ସେମାନଙ୍କୁ ସତ୍‌ପାତ୍ରରେ ଦାନ କରିଥିଲେ ।

ସେ ଚୌକି, ଟେବୁଲ୍ ବ୍ୟବହାର କରୁ ନ ଥିଲେ । ଗୋଟିଏ ସରୁପ ମଶିଣାରେ ବସି ବାକ୍‌ସ ଉପରେ କାଗଜ ପକାଇ ଲେଖୁଥିଲେ । ଅକ୍ଲାନ୍ତ ତାଙ୍କର ଲେଖନୀ ଅବାରିତ ଧାରାରେ ଚାଲିଥିଲା । କୌଣସି ସମ୍ପାଦକଙ୍କ ଅନୁରୋଧ ବ୍ୟର୍ଥ ହେଉ ନ ଥିଲା । ସେ ସଙ୍ଗେ ସଙ୍ଗେ ପ୍ରବନ୍ଧଟିଏ ଲେଖି ପଠାଇ ଦେଉଥିଲେ । ଶାରୀରିକ ଭାବରେ ଅକ୍ଷମ ନ ହେବା ପର୍ଯ୍ୟନ୍ତ ତାଙ୍କର ଏହି ଗତି ଅକ୍ଷୁଣ୍ଣ ଥିଲା ।

୪ । ୯ । ୧୯୫୩ ରେ ଶଶିଭୂଷଣଙ୍କ ମୃତ୍ୟୁ ହେଲା ଓ ତା ସଙ୍ଗେ ସଙ୍ଗେ ଏକ ଗଦ୍ୟ ଧୁରୀଣତାରଙ୍କ ଅବସାନ ଘଟିଲା ।

**ନିଭୃତ ନିଳୟ :**

କବିବର ରାଧାନାଥ ଜଟିଆ ପାହାଡ଼ର ନିର୍ଜନ ପାଦ ଦେଶରେ ଗୋଟିଏ କୁଟୀର ନିର୍ମାଣ କରି ଶେଷଜୀବନ ଯାପନ କରିବେ ବୋଲି କଳ୍ପନା କରିଥିଲେ; ଶଶିଭୂଷଣ ତାଙ୍କର ଏ କଳ୍ପନାକୁ ସତ୍ୟରେ ପରିଣତ କରିଥିଲେ, ଜଟିଆରେ ନୁହେଁ, ଧବଳେଶ୍ୱର ପାହାଡ଼ରେ । 'ନିଭୃତ ନିଳୟ' ଶଶିଭୂଷଣଙ୍କ ପ୍ରକୃତି-ପ୍ରେମିକତା ଓ ରସିକତାର ଏକ ଅପୂର୍ବ ନିଦର୍ଶନ । ସେ ଏହାକୁ ଏକ ସାଧନା ମନ୍ଦିର କରିଥିଲେ ଓ ଯାବତୀୟ ପ୍ରବନ୍ଧ ଏହି ନିଳୟରେ ବସି ଲେଖିଥିଲେ ।

ଧବଳେଶ୍ୱର ଏକ ଅଗମ୍ୟ ଅରଣ୍ୟ ଥିଲା, କାର୍ତ୍ତିକ ମାସରେ ମନ୍ଦିର ଲଗାଏତ୍ କିଛି ଅଂଶ ନିର୍ମଳ କରାଯାଉଥିଲା; ସେତେବେଳେ ବହୁ ଯାତ୍ରୀ ସମାଗମ ହେଉଥିଲା, ବଡ଼ଓଷା ପରେ କ୍ୱଚିତ୍ ଧବଳେଶ୍ୱର ଦର୍ଶନାର୍ଥୀ ଆସୁଥିଲେ । ମହାନଦୀରେ ଏ

ପାହାଡ଼ର ଅପୂର୍ବ ଶ୍ରୀ ଶଶିଭୂଷଣଙ୍କୁ ମୁଗ୍ଧ କରିଥିଲା, ବହୁ ଉଷା ଓ ପ୍ରଦୋଷ ଶ୍ରୀ, ଘନ ଅନ୍ଧକାରର ତାରକିତ ଆକାଶ ଓ ଜୋତ୍ସ୍ନାପ୍ଲୁତ ମହାନଦୀର ସୌନ୍ଦର୍ଯ୍ୟ ଉପଭୋଗ କରିଥିଲେ ।

ରାଧାନାଥ ଦ୍ୱୀପକୂଳରେ ଥିବା ସମୟରେ ନିଭୃତ ନିଳୟ ନିର୍ମିତ ହେଲା । ରାଧାନାଥ ଦିନେ ଏହି ଦ୍ୱୀପରେ ଉପସ୍ଥିତ ହୋଇ ଏହି ନିଳୟଟି ଦେଖି କହିଲେ— ଏ ସ୍ୱପ୍ନାତିତ ରାଜ୍ୟରେ ଯେ ଏହି ଘରଟି ତିଆରି କରିଛୁ, ତାହାର ପ୍ରକୃତ ପସନ୍ଦ ଅଛି ।

ଶଶୀବାବୁ ଏଇ ନିର୍ମାତା ବୋଲି ଜାଣିଲା ପରେ କହିଲେ—ଏତେ ଦିନକେ ରୁ ମୋହର ମନ ଅନୁସାରେ ପସନ୍ଦର କାର୍ଯ୍ୟ କରିଅଛୁ । ଅବଶିଷ୍ଟ ଜୀବନ ମୁଁ ଏହିଠାରେ କଟାଇବି । କବିବର ଏହି ନିଳୟରେ ବସି ରଚନା କଲେ—ଧବଳେଶ୍ୱର ସ୍ତୋତ୍ରମ୍—ଜୟ ଧବଳେଶ୍ୱର ଜୟ ଧବଳେଶ୍ୱର ଜୟ ଧବଳେଶ୍ୱର ଶମ୍ଭୋ ।

ନିଳୟ ନିର୍ମିତ ହେବା ପରେ ଦ୍ୱୀପର ଅଶେଷ ଉନ୍ନତି ଘଟିଥିଲା । ଧର୍ମଶାଳା ଓ ଯାତ୍ରୀଗୃହ ସବୁ ନିର୍ମିତ ହୋଇଥିଲା । ସ୍ୱୟଂ ଶଶୀବାବୁ କେତୋଟି ସ୍ନାନଘାଟ ନିର୍ମାଣ କରାଇଥିଲେ । ଶଶୀବାବୁଙ୍କ ନିମନ୍ତ୍ରଣରେ ବହୁ କବି ଲେଖକଙ୍କ ସମାଗମ ହୋଇଥିଲା; ରାଜା, ରାଜ କର୍ମଚାରୀ, ଭ୍ରମଣକାରୀ ଏଠାରେ ପ୍ରକୃତି ଶ୍ରୀ ଉପଭୋଗ କରି ଇଂରାଜୀ, ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଫରାସୀ ଓ ଇଟାଲିଆନ୍ ଭାଷାରେ ନିଜ ନିଜର ମତ ବ୍ୟକ୍ତ କରି ଯାଇଥିଲେ । ପଣ୍ଡିତ ମୃତ୍ୟୁଞ୍ଜୟ ଲେଖିଥିଲେ—

‘ଧନ୍ୟ ଜନ୍ମ ତବ ହେ ଶଶିଭୂଷଣ
ପର ହିତ ବ୍ରତେ ଯାପିଲ ଜୀବନ
ଯାବତ ଥିବ ଏ ନିଭୃତ ନିଳୟ,
ଘୋଷୁଥିବ ତବ କୀରତି ଅକ୍ଷୟ ।’

ଚନ୍ଦ୍ରମୋହନ ମହାରଣା ଲେଖିଥିଲେ—

“ମୁଁ ଓଡ଼ିଶାର କୂପମଣ୍ଡୂକବିଶେଷ । ଏ ଦେଶର କୌଣସି ପଦାର୍ଥ ସହିତ ଅନ୍ୟ ପ୍ରଦେଶର ସମଶ୍ରେଣୀ ପଦାର୍ଥ ତୁଳନା କରିବାର ଅଧିକାର ମୋହର ନାହିଁ । ଏହି ପ୍ରଦେଶ ମଧ୍ୟରେ ଧବଳେଶ୍ୱରର ଶୋଭା ଅତୁଳନୀୟ । ଏହି ନୈସର୍ଗ ଶୋଭା ମଧ୍ୟରେ ନିଭୃତ ନିଳୟ ସୁନ୍ଦର ପ୍ରଶସ୍ତ ଲଲାଟରେ ଚନ୍ଦନବିନ୍ଦୁ ପରି । କବି ବ୍ୟତୀତ ଅପର ବ୍ୟକ୍ତି ପକ୍ଷରେ ଏହି ମାଧୁର୍ଯ୍ୟର ସମ୍ୟକ୍ ଅନୁଭବ ବା ବର୍ଣ୍ଣନ ସମ୍ଭବପର ନୁହେଁ । ମାନବ ହୃଦୟ ମଧ୍ୟରେ କବିତାର ବୀଜ ନିହିତ ଥିଲେ ତାହା ଏଠାରେ ଅଙ୍କୁରିତ

ହେବ ଓ ବଶିଷ୍ଟ ଭାବବଦ୍ଧାନ ଲୋକର ମନରେ ପ୍ରସାଦ ଓ ଶାନ୍ତ ଜନ୍ମିବ । ସଂଭାପତ୍ତ୍ର ବ୍ୟକ୍ତିର ଏଠାରେ ଆଗ୍ରମ ଅବଶ୍ୟମ୍ଭାବୀ ।

ଭୂତ ଓ ବର୍ତ୍ତମାନ ଧବଳେଶ୍ୱର ମଧ୍ୟରେ ମହତ୍ତ୍ୱ ପ୍ରଭେଦ ଜନ୍ମିଅଛି । ପୂର୍ବେ ଅହୋରାତ୍ର ଅତିବାହିତ କରି ଏଠାରେ ପ୍ରକୃତିର ପଞ୍ଚ ପରିବର୍ତ୍ତନ ନିରୀକ୍ଷଣ କରିବାର ସମ୍ଭାବନା ନ ଥିଲା । ବର୍ତ୍ତମାନ ଜଳସ୍ଥ ଏହି ଅଭାବ ପୂରଣକରି ଆଗନ୍ତୁକମାନଙ୍କ ଋଣୀ କରିଅଛି । ଯୁଗେ ଯୁଗେ ଏହି ଜଳସ୍ଥ ବରକୁଆଡ଼ ଏବଂ ଶ୍ରଦ୍ଧାଳୁ ଏହାର ଅଧିକାରୀଙ୍କର ଏହି ସୁରୁଚି ଈଶ୍ୱରେଚ୍ଛାର ବର୍ଦ୍ଧିତ ହେଉ । ୨୭ । ୭ । ୧୯୦୩ ।

କବିର ଖିଆଲରେ ନିର୍ମିତ ସେହି ସ୍ୱପ୍ନସୌଧ ଅଯତ୍ନ ଓ ଅବହେଳାରେ ଏବେ ଭୂଲୁଣ୍ଠିତ, ସ୍ୱର୍ଗରେ ପ୍ରକୃତିର ରୂପପିପାସୁ ଶଶିଭୂଷଣଙ୍କ ଆତ୍ମା ବିଳାପ କରୁଥିବ, ନିଶ୍ଚୟ । ଲେଖକ, କଳାକାର ଓ ଭାସ୍କରର ଖିଆଲକୁ ସମ୍ଭାଳିବା ଭଳି ସାମାଜିକ ଓ ସାଂସ୍କୃତିକ ରୁଚି ଏ ପ୍ରଦେଶରେ ତିଆରି ହୋଇ ନାହିଁ ପରି !

**ଦାକ୍ଷିଣାତ୍ୟ ଭ୍ରମଣ :**

୧୮୯୪ ଖ୍ରୀଷ୍ଟାବ୍ଦରେ ଶଶିଭୂଷଣ କଟକରୁ ଶଗଡ଼ ଗାଡ଼ିରେ ବାହାରି ରମ୍ଭା ଓ ସେଠାରୁ ରେଳଗାଡ଼ିରେ ଦକ୍ଷିଣ-ଭାରତ ଯାତ୍ରା କଲେ । ସେତେବେଳକୁ କଟକରୁ ରମ୍ଭା ରେଲଲାଇନ୍ ପଡ଼ି ନ ଥିଲା ।

ଲେଖକଙ୍କ ମତରେ ଜ୍ଞାନାର୍ଜନ ଦେଶାଟନର ଉଦ୍ଦେଶ୍ୟ । ଅଧିକାଂଶ ଭ୍ରମଣକାରୀ କିନ୍ତୁ ବଣିକ; ଅର୍ଥ ଲିପ୍ସା, ଜ୍ଞାନାର୍ଜନ ଓ ପ୍ରକୃତି ଶ୍ରୀ ଉପଭୋଗର ଅନ୍ତରାୟ ।

୧୮୯୭ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟ ଭ୍ରମଣ ପୁସ୍ତକାକାରରେ ପ୍ରକାଶ ପାଇଲା; ଏହା ଓଡ଼ିଶାର ପ୍ରଥମ ଭ୍ରମଣ କାହାଣୀ; ଶଶିଭୂଷଣ ମନ ଖିଆଲରେ ଦକ୍ଷିଣ-ଭାରତୀୟ ପ୍ରକୃତିର ଆଲେଖ୍ୟ ଅଙ୍କନ କରିଛନ୍ତି, ଭୌଗୋଳିକ, ଐତିହାସିକ, ସାମାଜିକ, ଧାର୍ମିକ ତଥ୍ୟ ପରିବେଷଣ କରିଛନ୍ତି ।

୨୦ । ୨ । ୯୭ ରେ ଖଣ୍ଡି ଏ ପତ୍ରରେ ଦାକ୍ଷିଣାତ୍ୟ ଭ୍ରମଣର ସମାଲୋଚନା 'ଉତ୍କଳସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଅଛି—

"ଦାକ୍ଷିଣାତ୍ୟ ଭ୍ରମଣ'ରେ ଦାକ୍ଷିଣାତ୍ୟର ସାମାଜିକ ରୀତି ନୀତିମାନ ହୋଇଅଛି, ପୁଣି ପ୍ରାକୃତିକ ଦୃଶ୍ୟର ସରସ ସୌନ୍ଦର୍ଯ୍ୟ ସହିତ ଜଗତ୍ରୁ ଧର୍ମଭାବମାନ

ସଂଯୋଜିତ ହୋଇଥିବାରୁ ଦାକ୍ଷିଣାତ୍ୟ ଭ୍ରମଣର ମାଧୁର୍ଯ୍ୟ ଓ ମୂଲ୍ୟ ଅଧିକତର ବର୍ଦ୍ଧିତ ହୋଇଅଛି ।"

"ଦାକ୍ଷିଣାତ୍ୟ ଭ୍ରମଣର ଅନ୍ୟ କିଛି ମୂଲ୍ୟ ଥାଉ ନ ଥାଉ, ସେ ଅନ୍ୟ କଥା । କିନ୍ତୁ ସେଥିରେ ଯେ ପ୍ରାକୃତିକ ଦୃଶ୍ୟ ସୁନ୍ଦର ଓ ମଧୁରଭାବେ ବର୍ଣ୍ଣିତ ହୋଇଅଛି, ତାହା ମୋ ପକ୍ଷରେ ପରଶମଣି ।"

"ଆପଣ ମଦୁରା ନଗରୀର ବିଭିନ୍ନ ସୌନ୍ଦର୍ଯ୍ୟରାଶି, ଟିପ୍‌ପୋକଲମ୍ ପୁଷ୍କରିଣୀ, ଉଦ୍ଭିଦ ଉଦ୍ୟାନ ପ୍ରବଳ ପରାକ୍ରାନ୍ତ ତିରୁମଲ୍ଲଙ୍କ ରମ୍ୟ ଭବନ ଓ ମୀନାକ୍ଷି ଦେବୀଙ୍କ ମନ୍ଦିର ଦର୍ଶନ କରୁ କରୁ ବିମୋହିତ ହୋଇ ପରିଶେଷରେ ଏକ ନିର୍ଜନ ପ୍ରାନ୍ତରରେ ଉପସ୍ଥିତ ହେଲେ । ପ୍ରାନ୍ତରରେ ଗୋଟିଏ ଶବଦାହ ଦର୍ଶନ କରି ଯେ ଚିତ୍ର ଅଙ୍କିତ କରିଅଛନ୍ତି, ତାହା ପ୍ରକୃତ ଠିକ୍ ।"

"ଦାକ୍ଷିଣାତ୍ୟ ଭ୍ରମଣର ପ୍ରଥମ ଅଂଶରେ ଯେ କେତେକ ଦୃଶ୍ୟ ବର୍ଣ୍ଣିତ ହୋଇଅଛି, ତାହା କିଞ୍ଚିତ୍ ବାହୁଲ୍ୟ ହୋଇଅଛି ଓ ପାଠକର ବିରକ୍ତିକର ହୋଇପାରେ । ମାତ୍ର ପରବର୍ତ୍ତୀ ଅଂଶମାନ ପାଠ କଲେ ସେ ବିରକ୍ତି ଅପସାରିତ ହୁଏ । ପରବର୍ତ୍ତୀ ଅଂଶର ମାଧୁର୍ଯ୍ୟ ଦ୍ୱାରା ପୂର୍ବବର୍ତ୍ତୀ ଅଂଶର ବିରକ୍ତି କ୍ରମଶଃ ଲୁପ୍ତ ହୋଇଯାଏ ।"

"ଦାକ୍ଷିଣାତ୍ୟରୁ (୧୯୦୩ ଖ୍ରୀଷ୍ଟାବ୍ଦରେ ଭାରତରେ ପ୍ରଥମେ ବମ୍ବାଇ ରେଲୱେ) ଓଡ଼ିଶାକୁ ପ୍ରଥମେ ରେଲବର୍ତ୍ମ ଫିଟିଲା । ଉତ୍କଳବାସୀଙ୍କର ଦାକ୍ଷିଣାତ୍ୟ ଓ ଭାରତର ଅପରାପର ଅଂଶ ଦର୍ଶନ କରିବାର ଦ୍ୱାର ଉନ୍ମୁକ୍ତ ହେଲା ।"

"ଆପଣ ପ୍ରଥମରେ ଉକ୍ତ ରେଲମାର୍ଗରେ ଭ୍ରମଣ କରି ତହିଁର ସୁବିଧା-ଅସୁବିଧା ଏକାଧାରରେ ଲିପିବଦ୍ଧ କରି ଉତ୍କଳବାସୀଙ୍କର ମହୋପକାର ସାଧନ କରିଅଛନ୍ତି ।"

ଆର୍ଯ୍ୟାବର୍ତ୍ତ ଦର୍ଶନ :

୧୯୧୧ ରେ ଶଶୀବାବୁ ବାରାଣସୀ, ବୈଦ୍ୟନାଥ, ଆଗ୍ରା, ଦିଲ୍ଲୀ, ଅଯୋଧ୍ୟା, ଲକ୍ଷ୍ନୌ, ହରିଦ୍ୱାର, ମଥୁରା, ବୃନ୍ଦାବନ, ଦାର୍ଜିଲିଂ ପ୍ରଭୃତି ସ୍ଥାନ ଭ୍ରମଣ କରି ଏକ ଚିତ୍ତାକର୍ଷକ ବିବରଣୀ ଲିପିବଦ୍ଧ କରିଥିଲେ ।

'କି ଉତ୍ତରାଖଣ୍ଡ କି ଦକ୍ଷିଣାପଥ
ବୁଲିଲି ମୁଁ ଭାଗ୍ୟବଶେ ଚକ୍ରବତ ।'

କବିବର ରାଧାନାଥଙ୍କର ଏହି ଉକ୍ତି ତାଙ୍କ ଜୀବନରେ ମଧ୍ୟ ଏକ ସତ୍ୟରେ ପରିଣତ ହୋଇଥିଲା ।

**କନକା ଦର୍ଶନ :**

ଏହା ଏକ ପୁସ୍ତିକା; ଆଳି, କନକା ପ୍ରଭୃତି ରାଜ୍ୟର ପ୍ରାକୃତିକ ଚିତ୍ର ଓ ରାଜବଂଶର ସଂକ୍ଷିପ୍ତ ସୂଚନା ଏଥିରେ ଦିଆ ହୋଇଅଛି ।

**ଉତ୍କଳର ଋତୁଚକ୍ର (୧୯୧୩) :**

କାଳିଦାସଙ୍କ 'ଋତୁସଂହାରମ୍' ପରି ଏହା ଖଣ୍ଡିଏ ଗଦ୍ୟକାବ୍ୟ । ଓଡ଼ିଶାର ନଦୀ ସରୋବର, ବନପାହାଡ଼, ପଲ୍ଲୀର ବିବିଧ ଦୃଶ୍ୟାବଳୀ ଓ ପର୍ବାପର୍ବାଣି ଏଥିରେ ବର୍ଣ୍ଣିତ; କବିଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟିର କେତେକ ଚମତ୍କାର ଦୃଷ୍ଟାନ୍ତ ନିମ୍ନରେ ଉଦ୍ଧୃତ ହେଲ—

"ସୃଷ୍ଟି ରହସ୍ୟର ଗାମ୍ଭୀର୍ଯ୍ୟର ପରିଚୟ ଯଥାର୍ଥ ରୂପେ ତମୋମୟୀ ରଜନୀ । ପ୍ରକୃତି ରାଜ୍ୟର ସ୍ରଷ୍ଟା ଅନନ୍ତ ନକ୍ଷତ୍ର ରୂପ ଜ୍ୟୋତିର୍ମୟ ଜ୍ୱଳନ୍ତ ଅକ୍ଷରାବଳୀରେ ଭ୍ରାନ୍ତ ପାର୍ଥିବ କ୍ଳେଦକ୍ଲିଷ୍ଟ ମାନବ ନିମିତ୍ତ ଅନନ୍ତ ଜୀବନର ଆଶା ଲେଖି ରଖିଅଛନ୍ତି, ଏହି ଜ୍ଞାନ ସ୍ୱଭାବତଃ ମନୁଷ୍ୟ ହୃଦୟରେ ପ୍ରସ୍ଫୁଟିତ ହୋଇଥାଏ ।" —ବସନ୍ତ

"ଜ୍ୟୋତ୍ସ୍ନା ରାତିରେ କୋକିଳ, ଟିଟିଭ ଏବଂ ରାତିଶେଷରେ କଜ୍ଜଳପକ୍ଷୀ କ୍ରମାନ୍ୱୟରେ ଅବା ଏକତ୍ରରେ ରାବ ଦେଉଅଛନ୍ତି । ଚନ୍ଦ୍ର ଅନେକ ଉର୍ଦ୍ଧ୍ୱକୁ ଉଠି ସୂକ୍ଷ୍ମ କୁହେଳୀରେ ଆବୃତ । ରାତିର ଜ୍ୟୋତ୍ସ୍ନା ମଳିନ ବୋଧ ହେଉଅଛି । ଦୂରସ୍ଥିତ ପର୍ବତାବଳୀର ରେଖା ଅସ୍ପଷ୍ଟ ଧୂମିତ ପ୍ରତୀୟମାନ ।" —ଗ୍ରୀଷ୍ମ

"କଣ୍ଟାଫିରିକି, ଏତେ ଗୁଣ ବୋଲି ଜାଣିଥିଲି କି ?" ମଧ୍ୟେ ମଧ୍ୟେ ଶରତ୍ ଦେଖାଦେଲଣି ଏବଂ ସୁଶୀତଳ ଉତ୍ତର ପବନ ବହିଲଣି । କେଉଁ କେଉଁ ରାତି ଉଜ୍ଜ୍ୱଳ ଏବଂ ନିର୍ମଳ ତାରକାପୁଞ୍ଜରେ ସୁଶୋଭିତ ହେଉଅଛି । ରାତିରେ ତରୁଲତାରେ ଖଦ୍ୟୋତମଣ୍ଡଳୀର ଶୋଭା ଅତ୍ୟନ୍ତ ମନୋହର ବୋଧ ହେଉଅଛି, ଚନ୍ଦ୍ର ଓ ତାରାକୁ ଆଚ୍ଛାଦନ କରି ସ୍ୱଚ୍ଛ ମେଘ ଉତ୍ତରରୁ ଦକ୍ଷିଣକୁ, ଦକ୍ଷିଣରୁ ଉତ୍ତରକୁ ଗତି କରୁଅଛି । ମେଘରେ ଚନ୍ଦ୍ର ଓ ତାରା ଲୁଚକାଳି ଖେଳୁଅଛନ୍ତି ।" —ବର୍ଷା

"ନୟନାନନ୍ଦଦାୟିନୀ, ରୂପଲାବଣ୍ୟା, ଲାବଣ୍ୟଭୂଷଣା, ଶରତ୍ ନବବଧୂ ମହୀ-ମଣ୍ଡଳରେ ଉପସ୍ଥିତ ହେଲ । ହାର ସ୍ନିଗ୍ଧ ମାଧୁରୀ ସଂସ୍ପର୍ଶରେ କ୍ଷୀରନିକାଶ କାଶ-

କୁସୁମ, ଦଧିସରବର୍ଣ୍ଣ ସପ୍ତପର୍ଣ୍ଣୀ, ନବନୀତ ସଦୃଶ ଶଶିଧର ଏବଂ ତତ୍‌ପ୍ରଭ ଜ୍ୟୋତ୍ସ୍ନା ସମାଗତ ହେଲେ ଧରଣୀରେ ଯଥାର୍ଥ ସୌନ୍ଦର୍ଯ୍ୟ ରସର ସାଗର ସମୁତ୍ପନ୍ନ ହୁଏ ।"

—ଶରତ

"ନିଶାବସାନରେ ନୀଳପଙ୍କାମୁରବୃତ ଆକାଶରେ ସିନ୍ଦୂରାରୁଣ କାନ୍ତ ଦିବାକରବ୍ୟୂହ ଦେଖି ଦେଖି ଶ୍ୱେତଚମ୍ପକ କିରଣରେ ପରିଣତ ହେଉଅଛୁ, କମଳୋତ୍ପଳକହ୍ଲାର ସୌରଭଯୁକ୍ତପବନରେ କମ୍ପିତ ତରୁ ପତ୍ରାନ୍ତରେ ଏବଂ ଭୂମି ଶୋଭନୀକରଣ ଘନଶ୍ୟାମ ଦୂର୍ବାଦଳରେ ରଜନୀରେ ସିଞ୍ଚିତ ଶିଶିର ହୀରକ ଭଳି ପ୍ରଦୀପ୍ତ ହେଉଁ ହେଉଁ ମିଳାଇ ଯାଉଅଛୁ । —ହେମନ୍ତ

ଉତ୍କଳର ଋତୁଚକ୍ର ଋତୁସହାରର ଋତୁକ୍ରମ ରକ୍ଷା କରିଅଛୁ । ପକ୍ଷୀର ସଙ୍ଗସଙ୍ଗିଣୀ ସବୁ ଏଥିରେ ସନ୍ନିବିଷ୍ଟ ଭାବେ ସୂଚିତ; ଏହା ଏହି ପୁସ୍ତକର ଏକ ବିଶେଷତ୍ୱ; ସେ ଦଅଣୀ, ଭୃଙ୍ଗ, ଚନ୍ଦ୍ରଦୀପ, ଶୂନ୍ୟଚକ୍ର, ଭୂଇଁଚକ୍ର, ନାକକଣ୍ଠା, ଚନ୍ଦ୍ରଉଦୟା, ଅଞ୍ଜନବସ୍ତ୍ର, ନନ୍ଦଘୋଷ, ମେଷଯୁଦ୍ଧ, ଜମ୍ବୁଦ୍ୱୀପର, ଲଭିଲଗା, ପୁରେନ୍ଦ୍ରଗିର ଚଡ଼କଚମ୍ପକ, ମନ୍ଦ୍ରା ମେଘନାଦ, ବିଜୟନୃସିଂହ, ଘଡ଼କ, ଡାହାଣ ବାହାଣ, ହରଚଣ୍ଡୀପ୍ରସାଦ, ସିଦ୍ଧେଶ୍ୱର ପ୍ରସାଦ, ହନୁମାନ୍ ପ୍ରସାଦ, କାଳିକାପ୍ରସାଦ ପ୍ରଭୃତି ବାଣରେ ନାମ ଉଲ୍ଲେଖ କରିଛନ୍ତି । ଏଥିମଧ୍ୟରୁ କେତେକ ପ୍ରାଚୀନ ଓଡ଼ିଶାରେ ପ୍ରଚଳିତ ତୋପର ନାମ । ତୋପର ସ୍ମୃତି ଏବେ ବାଣରେ ସଂରକ୍ଷିତ ହୋଇଅଛୁ ।

ସଂସ୍କୃତ ଶବ୍ଦର ବହୁଳ ପ୍ରୟୋଗ ଯୋଗୁଁ ଭାଷା ସ୍ଥାନେ ସ୍ଥାନେ କ୍ଲିଷ୍ଟ ହୋଇଅଛୁ । ଗୁରୁଚଣ୍ଡାଳ ଦୋଷ ମଧ୍ୟ ପରିଲକ୍ଷିତ ହୁଏ ।

**ଉତ୍କଳ ପ୍ରକୃତି :**

୧୯୧୭ ରେ ପ୍ରକାଶିତ । ଏହା ଏକ ଅପୂର୍ବ ସୃଷ୍ଟି, ଶଶିଭୂଷଣଙ୍କ ମୂଳପୂର ନିଜସ୍ୱ; ପ୍ରକୃତିପ୍ରୀତି ଅତୁଳନୀୟ ରୂପରେ ଏଥିରେ ରୂପାୟିତ । ଲେଖକଙ୍କ ଦିବ୍ୟଦୃଷ୍ଟି ଫିଟିଯାଇଛୁ । କବିତ୍ୱର ଧାରା ଗଦ୍ୟ ରୂପରେ ବୋହିଗଲା ପରି ଲାଗେ । ଓଡ଼ିଶାର ପ୍ରସିଦ୍ଧ ସ୍ଥଳୀମାନଙ୍କରେ ଉଷା, ସନ୍ଧ୍ୟା, ଜ୍ୟୋତ୍ସ୍ନାରଜନୀ ଲେଖକଙ୍କୁ ଭାବରେ ବିହ୍ୱଳ କରିଛୁ ।

ପୁସ୍ତକାକାରେ ଅପ୍ରକାଶିତ ପ୍ରବନ୍ଧ ମଧ୍ୟରେ 'ପଞ୍ଚଧାରାରେ ବସନ୍ତୋତ୍ସବ', କୁମୁଡ଼ା ପାହାଡ଼ରେ ଅପରାହ୍ଣ, 'ନରସିଂହପୁର ଓ ହିନ୍ଦୋଳ, ଚକଟିରେ କୃଷିଦନ', 'ଲୁଣାବରର ଆତ୍ମକଥା', 'ଅଣ୍ଡିଆରେ ଶରତ୍ ସନ୍ଧ୍ୟା', 'ଝଣ୍ଡପଡ଼ା ଓ ଦଣ୍ଡପଲ୍ଲୀର ଅନୁଭୂତି', 'ଲଡ଼ୁକେଶ୍ୱରଙ୍କର ଶିବରାତି' ପ୍ରଭୃତି ପ୍ରାୟ ଗୋଟିଏ ଗ୍ରନ୍ଥରେ ଚଳା ରମ୍ୟରଚନା ସବୁ ।

'ନକ୍ଷତ୍ର ନାଳୟରେ ଶ୍ରାବଣ ସନ୍ଧ୍ୟା' ଏକ ଗଦ୍ୟ କାବ୍ୟ । ବର୍ଣ୍ଣନା ଏକାନ୍ତ ପ୍ରାଣସ୍ପର୍ଶୀ । 'କୃଶାବରର ଆତ୍ମକଥା' ଏକ ନୂତନ ସୃଷ୍ଟି । ଲେଖକ କାଠଯୋଡ଼ି କୂଳର ଏକ ବୃଦ୍ଧ ବଟବୃକ୍ଷ ମୂଳରେ ବସି ଅନ୍ତରର ଭାବରାଶି ପ୍ରକାଶ କରିଛନ୍ତି । ମୁଖ୍ୟତଃ ଏହା ସୌନ୍ଦର୍ଯ୍ୟାନୁଭୂତ ।

ରାଜକବି ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଏସବୁ ରଚନା ଉପରେ ମତ ଦେଇ ଲେଖିଛନ୍ତି—"କବିତାର ଛଟା ଗଦ୍ୟରେ ରଖିବା ଏଇ ପ୍ରଥମ ଦେଖିଲି । ଲେଖାର ପାରିପାଟ୍ୟ ଏ ପ୍ରକାର ପ୍ରାଞ୍ଜଳ ଓ ସ୍ୱାଭାବିକ ଯେ ଚକ୍ଷୁକର ତୂଳି ନେଇ ବର୍ଣ୍ଣର ସ୍ଥଳ ଅନାୟାସରେ ପଟରେ ରଞ୍ଜିତ କରିପାରିବ ।"

## ପ୍ରବନ୍ଧ ପ୍ରବାହ (୧୯୪୪):

୩୨ ଟି ପ୍ରବନ୍ଧ ଏହି ସଙ୍କଳନର ଅନ୍ତର୍ଭୁକ୍ତ ହୋଇଥିଲା ।—ସାହିତ୍ୟ, କଥା ସାହିତ୍ୟ, ଲଘୁ ସାହିତ୍ୟ, ସହଜ ସାହିତ୍ୟ, ସର୍ପ ଓ ସଙ୍ଗୀତାନ, ସେବାଧର୍ମ, ସସ୍କୃତ ଶିକ୍ଷା, ବିଦ୍ୟାବିତ୍ତ ଓ ଧନବିତ୍ତ, ଋଷି ଟଲଷ୍ଟୟ, ଆର୍ଯ୍ୟ ଶାସ୍ତ୍ରରେ ସତ୍ୟ ମହିମା, ଜାତୀୟ ଭାଷା, ଏମାର୍ସନ, ପ୍ରକୃତିର ନୈତିକ ପ୍ରଭାବ, କବିତା, ଶିକ୍ଷା ବିଭ୍ରାଟ, ଶ୍ରୀରାମ ଚନ୍ଦ୍ର ସ୍ମୃତି, ବିକାଶ, ସାହିତ୍ୟିକ ଭାଷା ଓ ପ୍ରଚଳିତ କଥା, ପ୍ରକୃବିଦ୍ୟା, ଅଶୋକ ଅନୁଶାସନ, ସଙ୍ଗୀତର ଲଳିତ କଳା, ମହମ୍ମଦ ଓ ତାଙ୍କର ଧର୍ମ, ଈଶ୍ୱର ରାମ ଚରିତ, ଧର୍ମ, ସର୍ବେଶ୍ୱରସୁନ୍ଦର, ଚିରୁ ସହାର, ଶାନ୍ତିର ଗତି, ଦଶକୁମାର ଚରିତ, ପ୍ରେମ, ସୌନ୍ଦର୍ଯ୍ୟ ଓ ପ୍ରେମ, ପ୍ରାଚ୍ୟ ପ୍ରସାଧନ କଳା, ନିମନ୍ତ୍ରଣ ପତ୍ର ।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଏହାର ମୁଖବନ୍ଧ ଲେଖିଥିଲେ । ଦୀର୍ଘ କାଳ ଏହା ଆଇ· ଏ· ଶ୍ରେଣୀର ପାଠ୍ୟଭାବେ ପ୍ରଚଳିତ ଥିଲା । ପରବର୍ତ୍ତୀ ସଂସ୍କରଣରେ ପ୍ରବନ୍ଧ ସଂଖ୍ୟା ମାତ୍ର ବାଇଶଟି ଥିଲା; ଓଡ଼ିଆ ସାହିତ୍ୟର ପ୍ରକୃତି, ଜାତୀୟ ଭାଷା, କାନବାଟେ କଥା ଶୁଣେ, ସମାଲୋଚନା ପଦ୍ଧତି ପ୍ରଭୃତି କେତୋଟି ନୂତନ ପ୍ରବନ୍ଧ ସଂଯୁକ୍ତ ହୋଇଥିଲା ।

## ପ୍ରବନ୍ଧ ପ୍ରସୂନ :

ଭାରତୀୟ ସମବାୟ, ବର୍ଣ୍ଣାଶ୍ରମ ଧର୍ମ, ହରିଜନ, ଉତ୍କଳ ସାହିତ୍ୟ ସମାଜର ଅତୀତ, ବର୍ତ୍ତମାନ, କଳିର ଯୁଗ, ଜାତିର ଶ୍ରେଷ୍ଠତ୍ୱ, ପଶୁର ଦଣ୍ଡବିଧି, ଖ୍ରୀଷ୍ଟର ଆଦିମ ଯୁଗ, ପ୍ରାଚୀନ ଯୁଗର ଗ୍ରୀକ୍ ସାହିତ୍ୟ, ଜାତୀୟତା, ଅନୁଭୂତି, ଯୁଗଧର୍ମ, ନାରୀ ପ୍ରଗତି, ବିବାହ ବିଚ୍ଛେଦ, ମଧ୍ୟବିତ୍ତର ବିପଦ, ଗୋମଙ୍ଗଳ, ହରିହର ଛତ୍ରମେଳା, ରବୀନ୍ଦ୍ରଙ୍କ

ଛନ୍ଦସମିତ, ମଦନମ୍, ସମାଲୋଚନା ପଦ୍ଧତି, ଭାବର ପ୍ରଭାବ ପ୍ରଭୃତି ପ୍ରବନ୍ଧ ଏହି ସଙ୍କଳନର ଅନ୍ତର୍ଭୁକ୍ତ ।

**ପିତୃସ୍ମୃତି :**

୧୫ ପୃଷ୍ଠାର ଏକ ପୁସ୍ତିକା; କବିବର ରାଧାନାଥଙ୍କ କେତୋଟି ସଦୁପଦେଶ, ସତ୍‌କାର୍ଯ୍ୟ, ଚାତୁରକତା, ଉଦାରତା, ପରଦୁଃଖକାତରତା, ଆଶ୍ରିତ ବତ୍ସଳତା, ନମ୍ରତା, ବଦାନ୍ୟତା, ଭାବୁକତା, ଦେଶାନୁରାଗିତା ଓ ଅନ୍ୟାନ୍ୟ ସଦ୍‌ଗୁଣାବଳୀ ଏଥିରେ ରୂପାୟିତ ।

**ପଲ୍ଲୀ :**

ପଲ୍ଲୀ ପ୍ରକୃତିର ସୌନ୍ଦର୍ଯ୍ୟ, ପଲ୍ଲୀର ବିଭିନ୍ନ ସମସ୍ୟା, ଦୈନନ୍ଦିନ ଜୀବନର ସୁଖ ଦୁଃଖ, ପଲ୍ଲୀଲୋକଙ୍କ ଆନ୍ତରିକତା, ଆତ୍ମୀୟତା, ଅତିଥିପରାୟଣତା, ସେବାଭାବ, ଈଶ୍ୱର ବିଶ୍ୱାସ, ପଲ୍ଲୀରେ ପ୍ରଚଳିତ ବିଭିନ୍ନ ପର୍ବପର୍ବାଣି, ପଲ୍ଲୀର ସଂଗଠନ ଓ ଉନ୍ନୟନ, କୃଷି, ଶିଳ୍ପ ଓ ଗୋପାଳନର ଉନ୍ନତି ଇତ୍ୟାଦି ବହୁ ବିଷୟ ଏହି ପୁସ୍ତକରେ ଆଲୋଚିତ । ଶଶିଭୂଷଣଙ୍କ ମତରେ ପଲ୍ଲୀ ଭାରତୀୟ ସଂସ୍କୃତିର ପ୍ରାଣକେନ୍ଦ୍ର; ତାର ଇତିବୃତ୍ତ ସନ୍ଧାନ ଗବେଷକମାନଙ୍କ ଧ୍ୟେୟ ହେବା ବାଞ୍ଛନୀୟ । 'ପଲ୍ଲୀ ପରିଷଦ', 'ପ୍ରାଦେଶିକ ପଲ୍ଲୀ ସଂଗଠନ ମଣ୍ଡଳ' ଆଦି ଅନୁଷ୍ଠାନ ଦ୍ୱାରା ପଲ୍ଲୀର ସର୍ବାଙ୍ଗୀନ ଉନ୍ନତି ଚିନ୍ତା ତାଙ୍କ ପଲ୍ଲୀପ୍ରାଣତା ଓ ଦୂରଦୃଷ୍ଟିର ପରିଚୟ ଦିଏ ।

'ପଲ୍ଲୀକୁ ଫେରିଯାଅ', ଏ ଥିଲା ଶଶୀବାବୁଙ୍କର ଧ୍ୱନି ।

**ଶିକ୍ଷା :**

ଶିକ୍ଷାର ବିଭିନ୍ନ ସମସ୍ୟା ଏହି ପ୍ରବନ୍ଧରେ ଆଲୋଚନା କରି ସେ ସ୍ୱାଧୀନ ମତ ବ୍ୟକ୍ତ କରିଛନ୍ତି । ତାଙ୍କ ମତରେ ପ୍ରକୃତ ପ୍ରତିଭାଶାଳୀ ବ୍ୟକ୍ତି ଶିକ୍ଷାବିଭାଗରେ ଯୋଗ ଦେଉ ନାହାନ୍ତି, ଯଥାର୍ଥ ଶିକ୍ଷା ଅଭାବରୁ ଅମନୁଷ୍ୟତା ବ୍ୟାପି ଯାଉଛି । ସ୍ତ୍ରୀକୁ ପୁରୁଷ ସହିତ ପ୍ରତିଯୋଗିତାକୁ ଟାଣି ଆଣିବା ଯଥାର୍ଥ ନୁହେ ।

**ସମାଜ ବ୍ୟଥା :**

ଏହି ପ୍ରବନ୍ଧରେ ଶଶିଭୂଷଣ ସମାଜର ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରିଛନ୍ତି—ଯୌତୁକ ପ୍ରଥା, ଏକାନ୍ନବର୍ତ୍ତୀ ପରିବାରର ଦୃଢ଼ତା ବିଚ୍ୟୁତି, ବୈଧବ୍ୟ, ଅବାଧ ସ୍ତ୍ରୀ ସ୍ୱାଧୀନତା ଓ ଉଚ୍ଛୃଙ୍ଖଳତା, ପାଶ୍ଚାତ୍ୟ ଶିକ୍ଷାର ମନ୍ଦ ପ୍ରଭାବ, ଲକ୍ଷ୍ମୀ

ସମସ୍ୟା, ଆଧୁନିକ ଶିକ୍ଷାର ବିଷମ ଫଳ, ବିଭିନ୍ନ ସାମାଜିକ ବ୍ୟାଧି ଦୂର ନ ହେବା ପର୍ଯ୍ୟନ୍ତ ସାମାଜିକ ସାମ୍ୟ ପ୍ରତିଷ୍ଠା ଏକ ସ୍ୱପ୍ନ ।

**ବିକ୍ଷିପ୍ତ ଚିନ୍ତା :**

ଶଶିଭୂଷଣ 'ବିକ୍ଷିପ୍ତ ଚିନ୍ତା' ଲେଖି ଏକାଦିକ୍ରମେ ୨୫ ବର୍ଷ କାଳ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶ କରିଛନ୍ତି । ସାହିତ୍ୟ ପ୍ରତି ଏପରି ଏକନିଷ୍ଠତାର ଦୃଷ୍ଟାନ୍ତ ବିରଳ । ଏହାର ଉପଜୀବ୍ୟ ଯାବତୀୟ ବିଷୟ—ଉପହାରର ଦାତା, ଉପହାରର ଗ୍ରହୀତା, କ୍ଷୁଦ୍ର ପ୍ରତି ଉପହାସ, ଅଭିସମ୍ପାତ ବା ଅଭିଶାପ, ଗଳ୍ପ କଥକକଥିକା, ସତ୍ୟ, ସମାଲୋଚନା, ପ୍ରବୀଣ ନବୀନ ସଂଘର୍ଷ, ମହାପୁରୁଷ ଜୀବନ ଚରିତ, ଆତ୍ମଶକ୍ତି, ତୋଷାମଦ, ସମସ୍ତ ମୁସଲମାନ ଭାଇ-ଭାଇ, ବିଦେଶ ଭ୍ରମଣରୁ ଧନିକମାନଙ୍କର ଜ୍ଞାନ ଲାଭ, ସାମ୍ୟଧର୍ମ, ସାହିତ୍ୟର ପ୍ରଧାନ କାର୍ଯ୍ୟ, ସୌନ୍ଦର୍ଯ୍ୟ ଦୃଷ୍ଟି, ରସୋଦ୍‌ବୋଧନ ଓ ଭାବର ସଞ୍ଚାର, ଜଗତର ଶ୍ରେଷ୍ଠ ଲେଖକ ଓ ଶ୍ରେଷ୍ଠ କବିଗଣ ଓ ସେମାନଙ୍କ ଧ୍ୟାନ ଦୃଷ୍ଟିରେ ମନୁଷ୍ୟତ୍ୱର ଓ ଦେବତ୍ୱର ଉଚ୍ଚ ଆଦର୍ଶ ଦର୍ଶନ, କବି ଓ ଔପନ୍ୟାସିକ, ବାନପ୍ରସ୍ଥାଶ୍ରମ, ସାହିତ୍ୟଚର୍ଚ୍ଚା, ସାହିତ୍ୟର ଉନ୍ନତି, ଆତ୍ମାର ଉନ୍ନତି, ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର, ଉଚ୍ଚ ଶିକ୍ଷା ଲାଗି ବ୍ୟୟ, ଦୁଃଖ ବେଦନାର କବିତା, ଶିଳ୍ପ, ଶୀତପ୍ରାତଃ, ଶରତ୍ ପ୍ରତ୍ୟୂଷ, ବିବେକ ବୁଦ୍ଧି, ସମୁଦ୍ରରେ ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ, ନିଷ୍କର୍ମୀ ସମସ୍ୟା, ଭୌତିକ ଭୋଗ, ବଡ଼ ଲୋକଙ୍କ ବଡ଼ ଆଖି ( ଯେଉଁ ଆଖି ନିଜର ସ୍ୱାର୍ଥ ସକାଶେ ପ୍ରଯୁକ୍ତ ହୁଏ ), ବାହ୍ୟ ଭଦ୍ରତା, ଉତ୍କଳ ଜାତୀୟତା, (କେବଳ ବାକ୍ୟରେ ପରିସ୍ଫୁଟ, କାର୍ଯ୍ୟରେ ବଡ଼ କମ୍ ଅନୁଭୂତ ହୋଇଥାଏ ) ଇତ୍ୟାଦି ।

ଏହା ପ୍ରକାଶିତ ହେଲେ ଓଡ଼ିଆ ଗଦ୍ୟ ସାହିତ୍ୟର ଏକ ଅକ୍ଷୟ ସମ୍ପଦ ହେବ । ବିକ୍ଷିପ୍ତ ଚିନ୍ତାର କେତୋଟି ଉଦ୍ଧୃତି ଦିଆଗଲା ।

**ହାକିମଙ୍କ ସାହିତ୍ୟ ଚର୍ଚ୍ଚା :**

"ଉଚ୍ଚ ଶିକ୍ଷିତ ହାକିମବୃନ୍ଦ ଏବଂ ଅଭିଜାତ ସମ୍ପ୍ରଦାୟ ମୁହିଁରେ ଓଡ଼ିଆ ବୋଲି ସର୍ବଦା ପରିଚୟ ଦେବାକୁ ଗର୍ବ ଅନୁଭବ କରନ୍ତି, ମାତ୍ର ଓଡ଼ିଆ ସମ୍ବାଦ ପତ୍ର କିମ୍ବା ଓଡ଼ିଆ ପୁସ୍ତକ ପାଠ କରିବାକୁ ଗଳଦ୍‌ଘର୍ମ ହୁଅନ୍ତି କିମ୍ବା ବହୁ ସ୍ଥଳରେ ସେଗୁଡ଼ାକର ସ୍ପର୍ଶ ସୁଦ୍ଧା କରନ୍ତି ନାହିଁ, ଏହା ସର୍ବାଂଶରେ ସତ୍ୟ । ସୁତରାଂ ଓଡ଼ିଆ ସାହିତ୍ୟର ମର୍ଯ୍ୟାଦା ବା ଗ୍ରାହକତା ଏ ସ୍ତରରେ ନାହିଁ ।"

**ସବୁଠାରୁ ବଡ଼ ହିସାବ :**

"ଯେଉଁ ମନ ଯେଉଁ କାର୍ଯ୍ୟାରମ୍ଭ କରିଥିଲି, ବର୍ତ୍ତମାନ ସେହି ମନର ଅବସ୍ଥା କିପରି ? ଏହାର ହିସାବ ରଖିବା କଣ ନିଷ୍ପ୍ରୟୋଜନ ?

ମୋ ଅଧରରୁ କେତେ କୁକଥା, କେତେ ରୂଢ଼ କଥା ବାହାରିଅଛି । ମାତ୍ର ମୁଁ କେତେ ସହ୍ୟ କରିଅଛି, କେଉଁ ପରିମାଣରେ ଧୈର୍ଯ୍ୟ ଧାରଣ କରିଅଛି, କେତେ ପୀଡ଼ନ କରିଅଛି, କେତେ ମାର୍ଜନା କରିଅଛି, କାହାକୁ ଆଘାତ କରିଅଛି, କାହା-ପାଖରୁ ଆଘାତ ପାଇଅଛି, କାହା ସହିତ ବନ୍ଧୁତ୍ୱ ଛିଡ଼ିଯାଇଅଛି, କେଉଁ ଅଜଣା ଲୋକକୁ ହୃଦୟ ଅଡ଼କୁ ଓଟାରି ଆଣିଅଛି, କେଉଁ ବନ୍ଧୁକୁ ଶତ୍ରୁ କରିଅଛି, କାହାକୁ ଗୃହରୁ ଓଟାରି ଆଣି ଗଛ ମୂଳରେ ଛିଡ଼ା କରିଅଛି, କେଉଁ ନିରାଶ୍ରୟକୁ ଆଶ୍ରୟ ଦେଇଅଛି, କାହାକୁ ବଞ୍ଚିତ କରିଅଛି—ଏଗୁଡ଼ିକର ହିସାବ ସବୁଠାରୁ ବଡ଼ ହିସାବ ।''

## ଧର୍ମ ପ୍ରବର୍ତ୍ତକର ପ୍ରଭାବ :

''ମାନବୀୟ ଶକ୍ତି ମଧ୍ୟରେ ଧର୍ମପ୍ରବର୍ତ୍ତକମାନଙ୍କର ଶକ୍ତି ଯେରୂପ ପ୍ରବଳ, ସ୍ଥାୟୀ, ଗଭୀର ଏବଂ ବ୍ୟାପକ, ଆଉ କାହାର ଶକ୍ତି ସେପରି ନୁହେ । ଧର୍ମପ୍ରବର୍ତ୍ତକ-ମାନଙ୍କ ମଧ୍ୟରୁ ଯେଉଁମାନେ ବିଶେଷରୂପେ ମାନବ ଏବଂ ଅନ୍ୟ ଜୀବ ମଧ୍ୟରେ ପ୍ରୀତି ପ୍ରଚାର କରିଅଛନ୍ତି, ସେମାନଙ୍କ ପ୍ରଭାବ ସର୍ବାପେକ୍ଷା ଅଧିକ ।''

## ପରବୁଦ୍ଧି ପ୍ରଳୟ :

''ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି—ନିଜ ବୁଦ୍ଧିରେ ଘାସ କାଟିବ, ପର ବୁଦ୍ଧିରେ ଘୋଡ଼ା ଚଢ଼ିବ ନାହିଁ । ଏହା ଖାଣ୍ଟି ସତ୍ୟ । ସଂସାରର ବହୁ କ୍ଷେତ୍ରରେ ଏହାର ଯାଥାର୍ଥ୍ୟ ଉପଲବ୍ଧି କରି ସୁଦ୍ଧା ମନୁଷ୍ୟ ଏପରି ବିବେକହୀନ ଯେ ଏ ପ୍ରବାଦକୁ ତାଚ୍ଛଲ୍ୟ କରିଥାଏ । କ୍ଷମତାଦୃପ୍ତ ଧନିକମାନଙ୍କର ଏ ପ୍ରବାଦ ପ୍ରତି ଅନାସ୍ଥା ଦେଖି ସମୟ ସମୟରେ ନିରାଶ ହେବାକୁ ହୁଏ ।''

## କହିଲେ ଏ ଘରେ ରହିବ ନାହିଁ :

''ବର୍ଣ୍ଣବୋଧ ପୁସ୍ତକରେ ଗୋଟିଏ କଥା ଅଛି ଯେ ସତ୍ୟ କଥା କହିବ, ଶିଶୁମାନେ ଏହା ଶିକ୍ଷା କଲେ ସତ୍ୟବାଦୀ ହୋଇ ପାରିବେ । ଏହି ଉଦ୍ଦେଶ୍ୟରେ ଏ ଧାଡ଼ିଟି ଲିଖିତ । ମାତ୍ର ବର୍ଣ୍ଣବୋଧ ଉପରକୁ ସତ୍ୟର ସ୍ଥାନ ନିର୍ଦ୍ଦେଶ କରିବା ବୋଧହୁଏ ଏ ସଂସାରରେ ସୁକଠିନ । କାରଣ ସଂସାରର ପ୍ରାୟ ଅଧିକାଂଶ କଥା ଗୁଡ଼ିକ—''କହିବ ନାହିଁ, କହିଲେ ଏ ଘରେ ରହିବ ନାହିଁ—ଏହି ପ୍ରବାଦର ଅନ୍ତର୍ଗତ ନୁହେ କି ?

## ଶକ୍ତିର ସତ୍ୟ ପରୀକ୍ଷା :

''ସାହିତ୍ୟ ରାଜ୍ୟରେ ଏକ ଏକ ପ୍ରକାର ବିରାଟ ପ୍ରତିଭା ତାହାର ସନ୍ନିହିତ କାଳ ଉପରେ ଡିକ୍ଟେଟର ଅଥବା ଏକାଧିପତ୍ୟ ପ୍ରାପ୍ତ ବ୍ୟକ୍ତି ଭଳି ରାଜତ୍ୱ କରିଥାନ୍ତି ।

ସେମାନେ ଆଗାମୀ ଦୀର୍ଘକାଳର ଲେଖକସାଧାରଣଙ୍କର ଶତ୍ରୁ । ସେମାନଙ୍କର ପ୍ରସ୍ତାବ ଅତିକ୍ରମ କରି ସେମାନଙ୍କ ଅପରମାନେ ବହୁ ସ୍ଥଳରେ ପରାସ୍ତ କରି ପାରିବେ, ଏହା ସହଜ ନୁହେ । ଏହାର ମୂଳ କଥା, ଲେଖକମାନଙ୍କର କପିରାଇଟ୍ ଶକ୍ତିର ଅଭାବ । କାରଣ ଏକଚେଟିଆ କାରବାର ପଣ୍ୟଦ୍ରବ୍ୟ ସେନ ଚଳିପାରେ; ମାତ୍ର ତାହା ସାହିତ୍ୟବଜାରର ବସ୍ତୁ ନୁହେଁ, ତାହାକୁ ଜଣକର କବ୍ଜାସ୍ଥ କରିବା ଅସମ୍ଭବ । ମସ୍ତିଷ୍କ ଓ ମନନଶୀଳତାର ରାଜ୍ୟରେ କେବଳ ମାତ୍ର କୌଶଳ କିମ୍ବା ଦେହର ଶକ୍ତି ଖଟିବ ନାହିଁ । ସେଠାରେ ଶକ୍ତିର ସତ୍ୟ ପରୀକ୍ଷା ହିଁ ପ୍ରୟୋଜନ ଏବଂ ସେହି ଶକ୍ତି ଯେଉଁମାନଙ୍କର ନାହିଁ, ସେମାନେ ଅଧିକାର ଲଭର ଦାବୀ କରିପାରିବେଟିକି ?"

ଶଶୀବାବୁଙ୍କ ଆତ୍ମଚରିତର କିୟଦଂଶ 'ସତ୍ୟବାଦୀ' (୧୯୬୦) ପତ୍ରିକାରେ ପ୍ରକାଶ ପାଇଥିଲା; ସାହିତ୍ୟସଭାର ବିଭିନ୍ନ ଅଭିଭାଷଣ ମଧ୍ୟ ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଅଛି । ପ୍ରହସନ, ଶିଶୁମାନଙ୍କ ଲାଗି କେତେକ ରଚନା ବ୍ୟତୀତ ସେ ୧୭ ଗୋଟି କବିତା ରଚନା କରିଛନ୍ତି । କବିତାରେ ତାଙ୍କର ମୌଳିକତା ପ୍ରକାଶ ପାଇନାହିଁ । ତଳେ ପଦଟିଏ ମାତ୍ର ଉଦ୍ଧୃତ ହେଲା—

**ସାହିତ୍ୟ-ତୀର୍ଥ ସତୀଚଉରା ଶ୍ମଶାନ :**

ଏହି ଶ୍ମଶାନର କୋଡ଼େ ପ୍ରଶାନ୍ତ ସନ୍ଧ୍ୟାରେ
କି ମହା ଗମ୍ଭୀର ଶୋକେ ଉଠେ ହରିଧ୍ୱନି
ମୃତ ନରନାରୀ ଦେହ ଶାୟିତ ଚିତାରେ
ଜୀବନର ଅଭିନୟେ ଏକାଙ୍କ ଏକ୍ଷଣି !
ଏଥି ଶେଷ ଅଶ୍ରୁ ସହ ଅନ୍ତିମ ଶଯ୍ୟାରେ
ଭଗିନୀ ଭ୍ରାତାର ସହ, ପିତା ପୁତ୍ର ସଙ୍ଗେ
ପତି ସହ ପତ୍ନୀ, ମାତା ଦୁହିତା ସାଥିରେ,
ଶତ୍ରୁ ସହ ମିତ୍ର ବନ୍ଧ ଶେଷ ଆଲିଙ୍ଗନେ
ଏ ଭଳି ସାମ୍ୟର ସ୍ଥାନ ବ୍ରହ୍ମାଣ୍ଡ ମଧ୍ୟରେ
କଳ୍ପନା ବଳାସେ ପ୍ରାଣୀ ନ ପାରେ ସରଜି ।



# ବାଣୀଭୂଷଣ ମୃତ୍ୟୁଞ୍ଜୟ ରଥ

---

"ସାରା ଜୀବନ ସାମାଜିକ ସାଧନା
ସାରା ଯାମିନୀ ବାଣୀ ସୁଆରାଧନା
ଦୀନ ପରିବାରେ ଜନ୍ମିତ ଜାମ
ଅର୍ଜିବା ଧନ ଯଶ ସାହିତ୍ୟେ ନାମ
ସବୁ ବନ୍ଧୁଙ୍କୁ ସଦା ସଖୀ କରୁଥିବା
ସ୍ମିତ ହାସ୍ୟେ ସଭିଙ୍କ ମନ ତୋଷିବା
ଅଗାଧ ଜ୍ଞାନ ସହ ସରଳ ଛବି
ଚିରକାଳକୁ ସିନା ଲୁଚିଲେ କବି ।"

—ନନ୍ଦକିଶୋର ବଳ

"ମୋର ସପାଣିକ ହାତଟି ଛିନ୍ନ ହୋଇଥିଲା, ବର୍ତ୍ତମାନ ସାମାଜିକ ଓ ସାହିତ୍ୟିକ ହାତଟି ଦେହ ବିମୁକ୍ତ ହେଲା ।"

"ପ୍ରତ୍ୟହ ସନ୍ଧ୍ୟାରେ ସାହିତ୍ୟିକ ବିଶ୍ରମ୍ଭାଳାପ, ଦର୍ଶନ ଓ ସମାଜ ସମସ୍ୟା ବିଷୟରେ ଉଭୟେ ତନ୍ମୟ ହେଉଥିଲୁଁ । ତୁମ୍ଭର ବିବିଧ ବିଷୟଗ୍ରାହିଣୀ ପ୍ରତିଭା ନାନା ବିଷୟରେ ପରିବ୍ୟାପ୍ତ ହୋଇ ମୁହିଁରୁ କେତେ କଥା ବାହାର କରି ଦେଉଥିଲା, ତାହା ଏହି କ୍ଷୁଦ୍ର ଲେଖନୀରୁ କିଣ କାଢ଼ିବି ? ତୁମ୍ଭର ସମାଲୋଚନାର ପଟାନ୍ତର ନାହିଁ । କେତେ ଖିତର ସମାଲୋଚନା, କେତେ ଜାତିର ସମାଲୋଚନା ! ଭାଷାକୁ ବ୍ୟାକରଣର ଦୁର୍ଭେଦ୍ୟ ନିଗଡ଼ରୁ ମୁକ୍ତ କରି ସ୍ୱାଧୀନ ଭାବରେ ପରିଚାଳିତ କରିବାର

ସମାଲୋଚନାରୁ ଆରମ୍ଭ କରି ପ୍ରତ୍ନତତ୍ତ୍ୱର ଅନ୍ଧକାରାଚ୍ଛନ୍ନ ଅନାବିଷ୍କୃତ ସମାଲୋଚନା ପର୍ଯ୍ୟନ୍ତ କେତେ ରହସ୍ୟ ଭେଦ ନ ଥିଲା !

ପଣ୍ଡିତେ ! ତୁମ୍ଭଙ୍କୁ ରହସ୍ୟ ଛଳରେ ବାରବୁଲା ପଣ୍ଡିତ ବୋଲି ଡାକୁଥିଲି । ତୁମ୍ଭେ ସର୍ବବ୍ୟାପକ ଭଳି ସବୁ ସ୍ଥାନରେ ଅପ୍ରତିହତ ଓ ଅବାଧ ଗତି ଦ୍ୱାରା ତୁମ୍ଭର ସୌନ୍ଦର୍ଯ୍ୟକଣା ଦୃଷ୍ଟି ଦେଉଥିଲ । ବିପଦ୍‌ଗ୍ରସ୍ତ ହୋଇ ଯେ କୌଣସି ସମୟରେ ଯେ ତୁମ୍ଭର ଶରଣ·ନେଇଅଛି, ତୁମ୍ଭେ ଶରଣ ସମ୍ଭାଳି ଅଛ । କେତେ ବ୍ୟକ୍ତିଗତ ଭାବରେ କେତେ ପ୍ରକାର ସାହାଯ୍ୟ ତୁମ୍ଭ ନିକଟରୁ ପାଇଅଛନ୍ତି କିଏ କଳନା କରିବ ? କିଏ ସ୍କୁଲ ପ୍ରବେଶର ପ୍ରାର୍ଥୀ, କିଏ ପଠନ ସାହାଯ୍ୟର ପ୍ରାର୍ଥୀ, କିଏ ଋଣ ଗ୍ରହଣର ପ୍ରାର୍ଥୀ, କିଏ କବିତା ସଂଶୋଧନର ପ୍ରାର୍ଥୀ, କାହାକୁ କୌଣସି ବିଷୟରେ ବିମୁଖ କରିନାହଁ ।

ପଣ୍ଡିତେ ! କବିଗୁରୁ ରାଧାନାଥଙ୍କର ବିସ୍ତୃତ ଓ ପରିପୂର୍ଣ୍ଣ ଜୀବନଚରିତ ଲେଖିବାକୁ ତୁମ୍ଭେ ବିଗତ ବାରବର୍ଷ ହେଲା ନାନା ଉପାଦାନ ସଂଗ୍ରହ କରୁଥିଲ, ଦୁଇ ତିନିଗୋଟି ଅଧ୍ୟାୟ ମଧ୍ୟ ଲେଖିଥିଲ । ସମଗ୍ର ଜୀବନଚରିତ ଛ' ସାତ ଶତ ପୃଷ୍ଠାବ୍ୟାପୀ ହୋଇଥାନ୍ତା, ମାତ୍ର ଆଉ ତାହା କାହାଠାରୁ ବାହାରିବ ନାହିଁ ପରି !

ଉତ୍କଳର ଭୂତପୂର୍ବ ସ୍କୁଲ ଇନ୍‌ସପେକ୍ଟର ହେଣ୍ଡରସନ୍ ସାହେବ ତୁମ୍ଭର ଲିଖନ ପରିପାଟୀର ସତ୍‌କଣ୍ଠର ଆସ୍ୱାଦ ପାଇ ତୁମ୍ଭଙ୍କୁ ସେଦିନ ଲେଖନୀଟିଏ ଉପହାର ଦେଇଥିଲେ ଏବଂ ସେଥିରେ ଉତ୍କଳ ସାହିତ୍ୟର ପ୍ରଭୂତ ଉନ୍ନତି କର ବୋଲି ଆଶୀର୍ବାଦ କରିଥିଲେ, ସେ ଦିନଟି ମୋର ସ୍ପଷ୍ଟ ସ୍ମରଣ ରହିଅଛି । ସେତିକିବେଳେ କହିଥିଲ, ପଣ୍ଡିତେ, ସାହେବଙ୍କ କଥା ମନେ ରହିଲ ?

ପଣ୍ଡିତେ ! ସଂସ୍କୃତ 'ମାଲତୀ ମାଧବ' ଅନୁବାଦ ବେଳେ ମୋହୋ ନିକଟରୁ ପ୍ରସିଦ୍ଧ ଚିତ୍ରକର ରବି ବର୍ମାଙ୍କର ଶିଳ୍ପକଳା ଜନିତା ମାଲତୀ ଚିତ୍ରଖଣ୍ଡିକ ମାଗିନେଇ କହିଲ, ''ଏହାକୁ ସମ୍ମୁଖରେ ରଖି 'ମାଲତୀ ମାଧବ' ନାଟକର ଅନୁବାଦ କରିବ ।'' ଛବି ଖଣ୍ଡିକ ଦେଲି, ମାତ୍ର ଏକବର୍ଷ ଉତ୍ତାରୁ ପ୍ରତ୍ୟର୍ପଣ କରିବାକୁ କହିବାରୁ ତୁମ୍ଭେ ଯେଉଁ ସ୍ନେହସୂଚକ ପ୍ରତ୍ୟାଖ୍ୟାନ କରିଥିଲ, ତହିଁରେ ମୁଁ ନିର୍ବାକ୍ ରହିଲି । ସେହି ଚିତ୍ରଖଣ୍ଡିକ ତୁମ୍ଭ ପାଠଗୃହରେ ମୋହୋର ଉପହାର ସ୍ୱରୂପ ପ୍ରଲମ୍ବିତ ଥିଲା, ସେତିକିରେ ହିଁ ମୁଁ କୃତାର୍ଥ ।

ପଣ୍ଡିତେ ! ତୁମ୍ଭେ ଅଳଙ୍କାରର ବୋଝ ଲଦି ଦେଇ ଭାଷାକୁ ଅସ୍ୱାଭାବିକ ଜଟିଳ କେବେହେଁ କରିନାହଁ । ତୁମ୍ଭ ହାତରେ ଉତ୍କଳ ଭାଷା ଅପୂର୍ବ କାରୁକାର୍ଯ୍ୟର

ନମୁନା ସ୍ୱରୂପ ରହିଥିଲ । ଐଶ୍ୱର୍ଯ୍ୟର ପ୍ରାପ୍ତି ଅପେକ୍ଷା ସୌଷ୍ଠବର ଗରିମା ଭାଷାରେ ପ୍ରୟୋଗ କରିବାକୁ ତୁମ୍ଭେ ସବୁବେଳେ ଚେଷ୍ଟା କରିଅଛ ଏବଂ ଏଥି ସକାଶେ ଯେଉଁ ସୁରୁଚି, ଯେଉଁ ସାମଞ୍ଜସ୍ୟ ଜ୍ଞାନ ଏବଂ ଯେତିକ ସଂଯମର ପ୍ରୟୋଜନ ହୋଇଥିଲା, ତାହା ତୁମ୍ଭେ ସମ୍ପୂର୍ଣ୍ଣ ଆୟତ୍ତ କରିଥିଲ ।

କବିତା ରଚନାରେ ଛନ୍ଦର ଆବଶ୍ୟକତା ରହିଅଛି । ମାତ୍ର ତୁମ୍ଭର ଗଦ୍ୟ ରଚନାରେ ସେହି ଛନ୍ଦର ଝଙ୍କାର ମୁଁ ଶୁଣିଅଛି । ଏହି ଛନ୍ଦ ଭାବ ସହିତ ମିଶିଯାଇ ଅପୂର୍ବ କଳାକୌଶଳ ଉତ୍ପାଦନ କରିଅଛି । ତୁମ୍ଭର ଭାଷାରେ ଯେଉଁ ସ୍ନିଗ୍ଧ, କୋମଳ, ପ୍ରଶାନ୍ତ ଲଳିତ୍ୟ ରହିଅଛି, ସେଥିରେ ଆଖି ଝଲକ ଉଠେନାହିଁ, କେବଳ ତୃପ୍ତି ଅନୁଭୂତ ହୋଇଥାଏ । ସେହି ତୃପ୍ତି କେବେ ମାତ୍ରା ଅତିକ୍ରମ କରି ପରିତୃପ୍ତିରେ ଛିଡ଼ା ହୋଇ ନ ଥାଏ ।

ତୁମ୍ଭ ଭାଷାରେ ସ୍ଥିରତା, ଦୃଢ଼ତା, ସ୍ୱଚ୍ଛ ପ୍ରାଞ୍ଜଳତା ଓ ସରସ କୋମଳତା ତୁମ୍ଭର ରଚନାଗୁଡ଼ିକୁ କାବ୍ୟର ସୀମାରେ ରଖି ଦେଇଅଛି କିନା !

ତୁମ୍ଭର ଦୁଇଜଣ ଭକ୍ତ ତୁମ୍ଭ ଋଣର ଯତ୍‌କିଞ୍ଚିତ୍ ପରିଶୋଧ କରିବାକୁ ଲାଳାୟିତ ହୋଇ ପ୍ରତିଜ୍ଞା କରିଛନ୍ତି, ଖଣ୍ଡସାହିର ଜମିଦାରବାବୁ ଗୋପବନ୍ଧୁ ମିଶ୍ର ଶ୍ମଶାନସ୍ଥ ତୁମ୍ଭର ଚିତା ଉପରେ ଗୋଟିଏ ସ୍ମାରକ ସମାଧି ନିର୍ମାଣ କରାଇବେ ଏବଂ ପୁରୁଣା ହାଟର ଜମିଦାର ବାବୁ ଚନ୍ଦ୍ରମଣି ଆଗ୍ରୱାଲ ତୁମ୍ଭର ଗୋଟିଏ ତୈଳଚିତ୍ର ସାହିତ୍ୟ ସମାଜ ଗୃହରେ ରଖିବେ । ✱

ପ୍ରକୃତରେ ତୁମ୍ଭେ ଆଧୁନିକ ବହୁ ସାହିତ୍ୟସେବୀଙ୍କର ଅନୁକରଣୀୟ ଆଦର୍ଶ ସ୍ଥଳ ଅଥବା ଶିକ୍ଷାସ୍ଥଳ ହୋଇ ରହିଅଛ ।"

ଶଶିଭୂଷଣ ରାୟ, ମୃତ୍ୟୁଞ୍ଜୟ ଶୋକସ୍ମୃତି
ଉ: ସା:, ୨୮ଶ ଭାଗ, ପ୍ରଥମ ସଂଖ୍ୟା, ବୈଶାଖ ୧୩୩୯

ମୃତ୍ୟୁଞ୍ଜୟଙ୍କ ବନ୍ଧୁବତ୍ସଳତା, ସାମାଜିକତା, ସାହିତ୍ୟ-ସାଧନାରେ ଅଧ୍ୟବସାୟ ଓ ଏକନିଷ୍ଠତା, ତାଙ୍କ ଗଦ୍ୟର କାବ୍ୟ ମାଦକତା ଓ ପ୍ରାଞ୍ଜଳତା ଉପରେ ନନ୍ଦକିଶୋର ବଳ ଓ ଶଶିଭୂଷଣ ରାୟ ଆଲୋକପାତ କରିଛନ୍ତି । ଗୁରୁଙ୍କ ହେଣ୍ଡ୍ରିସନ୍ ସାହେବଙ୍କ ପ୍ରଦତ୍ତ ଲେଟର୍‌ର ସଦୁପଯୋଗ ସେ କରିପାରିଛନ୍ତି । ପଣ୍ଡିତମହଲରେ

---

✱ ସତୀଚଉରାରେ ସମାଧି ମନ୍ଦିର ନିର୍ମିତ ହୋଇଛି, ମାତ୍ର ଏ ପର୍ଯ୍ୟନ୍ତ ମୃତ୍ୟୁଞ୍ଜୟଙ୍କ ପ୍ରତିକୃତିଟିଏ ଶ୍ରୀରାମଚନ୍ଦ୍ର ଭବନରେ ରକ୍ଷିତ ହୋଇନାହିଁ ।

ତାଙ୍କଠାରୁ ବଳିତର ବହୁ ବଂଶ ଥିଲେ, କିନ୍ତୁ ଅବଜ୍ଞ; ସେମାନେ ଅଳ୍ପଆୟୁରେ ଓଡ଼ିଆ ଭାଷାକୁ ବୃଦ୍ଧି କାହାନ୍ତି । ତାଙ୍କଠାରୁ ଅଧିକ ପ୍ରତିଭାଶାଳୀ ଇଂରେଜିପଢ଼ୁଆଙ୍କ ମଧ୍ୟରେ ଅନେକ ଥିଲେ; କିନ୍ତୁ 'ହାତ ଅଳସେ ଜଣ ବଳା' । ଯେ ଏତେ ଅଳସ, ଯେ ନିଜ ହିତ ନଜର ରଖି ପାରିଲେ ନାହିଁ, ସେ ନାନା ଦଗରେ ବ୍ୟାପୃତ ଥିବା ଜାତିର ମହତ୍ତ୍ୱକୁ ସମ୍ଭାଳିବ କିପରି ? କଳ୍ପକ୍ତ, ସାମ୍ପ୍ରତିକ ସ୍ଥିତି ଓ ଗତିକ ଚଳେ ଚଳେ ମାରୁ ମାରୁ ସେମାନେ ସଂସାରରୁ ନିଶ୍ଚିହ୍ନ ହୋଇଗଲେ । କିନ୍ତୁ ମୃତ୍ୟୁଞ୍ଜୟ ହୋଇଗଲେ ସତରେ ମୃତ୍ୟୁଞ୍ଜୟ; 'ପଣ୍ଡିତ' ଶବ୍ଦ ତାଙ୍କର ଅଳଙ୍କରଣ ମାତ୍ର ନ ଥିଲା, ସେ ଯଥାର୍ଥଭାବେ ପାଣ୍ଡିତ୍ୟ ହାସଲ କରିଥିଲେ ।

ପରିସ୍ଥିତି ପ୍ରତିକୂଳ, କିନ୍ତୁ ମନ ସଂକଳ୍ପବଦ୍ଧ; ଯଶ ଅର୍ଜନ ଲାଗି ଉଚ୍ଚାକାଂକ୍ଷା । ସେଥିଙ୍କ ହିଁ ତାଙ୍କୁ ଉପଯୁକ୍ତ ମାର୍ଗରେ ଚଳାଇନେଲା । ବହୁପାଠୀ ହେବାର ପ୍ରବଳ ବାସନା, କିନ୍ତୁ ପୁସ୍ତକ ବସ୍ତୁ ଲାଗି ସମ୍ବଳ ନାସ୍ତି । ମୃତ୍ୟୁଞ୍ଜୟ ମହତ୍ ବ୍ୟକ୍ତିମାନଙ୍କର ବିଶ୍ୱାସଭାଜନ ହୋଇଥିଲେ ଓ ସେମାନଙ୍କ ପାଠାଗାରର ଉପଯୁକ୍ତ ଉପଯୋଗ କରିଥିଲେ । ଲେଖା ଲାଗି ତାଙ୍କୁ ପ୍ରେରଣା ଦେଉଥିଲେ କବିବର ରାଧାନାଥ ରାୟ, ମଧୁସୂଦନ ରାଓ, ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ । 'ଚତୁଷ୍ପାଠୀ' ପ୍ରବନ୍ଧ ପାଠ କରି ଗୁଣଜ୍ଞ ରାଧାନାଥ ତାଙ୍କ ଦ୍ୱାରଦେହଲୀରେ ଉପସ୍ଥିତ ହୋଇଥିଲେ । ସେତେବେଳେ ଲେଖକ ଭାବରେ ଏହାଠାରୁ ବଡ଼ ସୌଭାଗ୍ୟ ଆଉ କଣ ହୋଇପାରେ ? ଲେଖକଭାବେ ନ ଗଢ଼ିଉଠି ତ ଏତେ, ପ୍ରକୃତ ଲେଖକପଦବାଚ୍ୟ ହେଲେ କେତେ କଣ ବା ନ ମିଳନ୍ତା ? ମୃତ୍ୟୁଞ୍ଜୟଙ୍କ ହାତର ଲେଖନୀ ଦୃଢ଼ତର ହେଲା, ବିଶ୍ରାମର ଘଣ୍ଟା ଧୀରେ ଧୀରେ କମିବାକୁ ଲାଗିଲା । ସେ ସେକାଳର ସକଳ ବିଦ୍ୟାର ପ୍ରାଙ୍ଗଣରେ ନିଃଶଙ୍କଭାବେ ବିଚରଣ କଲେ, କି ଗଦ୍ୟ କି ପଦ୍ୟ ସବୁ ଦଗରେ ଲେଖନୀ ଚଳାଇବାର ଅଧିକାର ତାଙ୍କର ଆସିଗଲା ।

ଦକ୍ଷିଣ ଗଡ଼ସ ଗ୍ରାମ ଆମ ଗାଁ ରେଳଷ୍ଟେସନରୁ କୋଶେ ଦୂରରେ । ସ୍ୱର୍ଗୀୟ ନନ୍ଦକୁଳ, ଆମ୍ବ, ପଣସ, ନଡ଼ିଆ, ପୋଲଙ୍ଗ ତୋଟା; ଗାଁ ମଝିରେ ଗୋପୀନାଥ, ଗାଁ ମୁଣ୍ଡ ନନ୍ଦବନ ଉଳକୁ ନାଗସୁଣୀ ଠାକୁରାଣୀ, ଏଠି ପ୍ରତିବର୍ଷ ଯାତ୍ରା ପାଳି ହୁଏ । ଏ ଗାଁ ଓ ପଡ଼ୋଶୀ ଗ୍ରାମ ଭଗବତୀପୁର ମଧ୍ୟରେ ବାଣମଗ୍ର ଭ୍ରାତୃଯୋଗିତା ହୁଏ । ଲୁମ୍ବ, ହାବେଲୀ ଆଉ କାଠରତି ବାଣ ପ୍ରସିଦ୍ଧ । ମୃତ୍ୟୁଞ୍ଜୟଙ୍କ ଯୋଗୁଁ ଏହି ଗାଁ ପ୍ରତି ମୋର ସ୍ୱତନ୍ତ୍ର ଆକର୍ଷଣ ଥିଲା । ଏହାର ଶିକ୍ଷାଗତ ଉନ୍ନତି ଓ ସମାଜସଂସ୍କାର ଦଗରେ ମୁଁ ଅଗ୍ରସର ହୋଇଥିଲି । ବର୍ଷେ ଦୁଇ ଚାରିଥର ଜନ୍ମସ୍ଥଳରେ ବ୍ରାହ୍ମଣମାନଙ୍କୁ

ପ୍ରବୃତ୍ତି କରାଇବା ମୋର ପ୍ରଧାନ କାର୍ଯ୍ୟ ଥିଲା । ଏଇ ଗ୍ରାମ ସମଗ୍ର ପୁରୀ ଜିଲାରେ ଏ ଦିଗରେ ନେତୃତ୍ୱ ନେଇଥିଲା ।

ଭୋଳାନାଥ ରଥଙ୍କ ସହିତ ସାକ୍ଷାତ ହୁଏ । ସେ ପିତାଙ୍କର ଉପଯୁକ୍ତ ପୁତ୍ର ହୋଇ ପାରି ନ ଥିଲେ; ଖଣ୍ଡିକ ପରେ ଖଣ୍ଡିଏ ଜମି ହାତରୁ ଖସି ଯାଉଥିଲା ।

ମୃତ୍ୟୁଞ୍ଜୟଙ୍କ ପ୍ରତିଭା ଗ୍ରାମବାସୀ ବିଶେଷ ହୃଦୟଙ୍ଗମ କରି ପାରି ନ ଥିଲେ । ହାଇସ୍କୁଲଟି ତାଙ୍କ ନାମରେ ନାମିତ ହୋଇ ପାରିଲା ନାହିଁ । ଉତ୍କଳସାହିତ୍ୟ ସମାଜର ସଭାପତି ଭାବେ ବହୁ ପତ୍ର ଲେଖାଲେଖି କରି ଗ୍ରାମବାସୀଙ୍କଠାରୁ ମୃତ୍ୟୁଞ୍ଜୟଙ୍କ ପ୍ରତିକୃତିଟିଏ ଆଦାୟ କରି ପାରିଲି ନାହିଁ । ଅନ୍ତରର ଗ୍ରାମୀଣ ଈର୍ଷାର ଊର୍ଦ୍ଧ୍ୱକୁ ହୁଏତ ଗ୍ରାମବାସୀ ଉଠିପାରିଲେ ନାହିଁ ।

ମୃତ୍ୟୁଞ୍ଜୟ ୧୮୮୨ ଖ୍ରୀଷ୍ଟାବ୍ଦରେ ମଇ ମାସ ୧୪ ତାରିଖ ଦିନ ଉକ୍ତ ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଦାମୋଦର ରଥ, ମାତାଙ୍କ ନାମ କମଳାଦେବୀ । ତାଙ୍କର ଗୋଟିଏ ଚକ୍ଷୁ ନଷ୍ଟ ହୋଇଯାଇଥିଲା । ତାଙ୍କ ଦାଦେଇଙ୍କ ନାମ ଗଦାଧର ରଥ । ସେ ଜଣେ ମାମଲତକାର; ଲୋକଙ୍କୁ ହାତମୁଠାରେ ରଖିବାର ମନୋବୃତ୍ତି; ୩ ବାଟି ଭଲ ଚାଷଜମି ତାଙ୍କର ଥିଲା । ଚଳାକି ଚତୁର ହୋଇଥିବାରୁ ସେ ଗୃହ ଓ ସଂସାରକୁ ଏକ ଚିପରେ ଚଳାଉଥିଲେ । ଭାଇକ ଗୃହିଁ ଭାଉଜ; ଭାଇ ପାଦେ ଆଗେଇଲେ ଭାଉଜ ଦିନ ପାଦ ଆଗେଇଯାନ୍ତି । ଦାମୋଦର ନକମା, ଲୁଆଁଣିଆ । ସେ ଭାଇନାଙ୍କ ଆଗେ ପ୍ରଧାସଲାଖ ଠିଆହୋଇ ପାରନ୍ତି ନାହିଁ; ପାଞ୍ଚ ପଦ ପଚାରିଲେ ପଦେ ଉତ୍ତର ମିଳେ ନାହିଁ । ବଡ଼ଭାଇ ଓ ଭାଉଜ ଏଇ ଦମ୍ପତି ପ୍ରତି ଯଥେଷ୍ଟ ଦୁର୍ବ୍ୟବହାର କରନ୍ତି । ଦାମୋଦର ନୀରବ ରହନ୍ତି । ତା ଫଳରେ ଗଦାଧରଙ୍କ ହାତର ଗଦା ଆହୁରି ଜୋରରେ ବୁଲେ ।

ମୃତ୍ୟୁଞ୍ଜୟଙ୍କ ମୁଣ୍ଡକୁ ହାତ ପାଇଲା ପରେ ପିତାମାତାଙ୍କ ଦୁର୍ଦ୍ଦଶା ଘୁଞ୍ଚିଲା; ସେ ଗୃହ ଚଳାଚଳ ଲାଗି ଯଥେଷ୍ଟ ଆର୍ଥିକ ସାହାଯ୍ୟ ଦେଉଥିବାରୁ ଗଦାଧରଙ୍କ ନିପୀଡ଼ନର ଉତ୍କଟତା ଆପେ ଆପେ ଊଣା ହୋଇଗଲା ।

ଗ୍ରାମର ପ୍ରାଥମିକ ସ୍କୁଲରେ ସେ ଖଡ଼ି ଛୁଇଁଲେ । ତା ପରେ ମାମୁଁଘର ଗାଁ ରୂପଦେଇପୁର ଯାଇ ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଲେ । ପଢ଼ାଇବାକୁ ଗଦାଧରଙ୍କ ପ୍ରବୃତ୍ତି ନ ଥିଲା । କିନ୍ତୁ ପର ଉପରେ ପଢ଼ା ଖର୍ଚ୍ଚ ଚଳିଯାଉଥିବାରୁ ସେ ଆପତ୍ତି ଉଠାଇଲେ ନାହିଁ । ଏହି ସ୍କୁଲରେ ୨ ବର୍ଷ ପଢ଼ି ସେ ମଧ୍ୟ ଭର୍ଣ୍ଣାକୁଲାର ପାସ୍ କଲେ ।

ଅର୍ଥାଭାବ ନ ଥିଲେ ବି ଦାରିଦ୍ର୍ୟର ତାଙ୍କୁ ଉଚ୍ଚ ଶିକ୍ଷା ଦିଗରେ ଉତ୍ସାହିତ କଲେ ନାହିଁ । ମାତ୍ର ଗୁରୁ ଟଙ୍କାର ସ୍କୁଲ ବୃତ୍ତି ଉପରେ ନିର୍ଭର କରି ମୃତ୍ୟୁଞ୍ଜୟ କଟକ ଟ୍ରେନିଂ ସ୍କୁଲରେ ପଢ଼ିବାକୁ ଲାଗିଲେ । ସେତେବେଳେ ରେଲଗାଡ଼ି ଚାଲୁ ନ ଥିଲା । ଗ୍ରାମରୁ ପ୍ରାୟ ୩୦ ମାଇଲ୍ ପଥ ମୃତ୍ୟୁଞ୍ଜୟଙ୍କୁ ଚାଲି ଚାଲି ଯିବାକୁ ହୋଇଥିଲା । ନାନା ଦୁଃଖକଷ୍ଟ ମଧ୍ୟରେ ଚାଲି ସେ କଷ୍ଟସହିଷ୍ଣୁତା ଗୁଣ ହାସଲ କରିଥିଲେ, କୌଣସି ଦୁଃଖକଷ୍ଟକୁ ଭ୍ରୂକ୍ଷେପ କରୁ ନ ଥିଲେ । ସେ ସୁଛାତ୍ର ଥିଲେ, ପ୍ରତ୍ୟେକ ଶ୍ରେଣୀରେ ଉଚ୍ଚ ସ୍ଥାନ ଅଧିକାର କରିଥିଲେ ।

ସେତେବେଳେ ଚନ୍ଦ୍ରମୋହନ ମହାରଣା, ମଧୁସୂଦନ ଦାଶ, ଗଦାଧର ବିଦ୍ୟାନିଧି ପ୍ରଭୃତି ସହକାରୀ ଶିକ୍ଷକ; ସ୍ୱୟଂ ଭକ୍ତକବି ମଧୁସୂଦନ ରାଓ ହେଡ୍ ମାଷ୍ଟର । ଏହି ମହାନ୍ ଶିକ୍ଷକମାନଙ୍କ ସଂସ୍ପର୍ଶରେ ଆସି ମୃତ୍ୟୁଞ୍ଜୟଙ୍କ ସାହିତ୍ୟପ୍ରୀତି ବୃଦ୍ଧି ପାଇବାକୁ ଲାଗିଲା ।

ଏହି ସ୍କୁଲରେ ଶିକ୍ଷକ ଓ ଛାତ୍ରଙ୍କୁ ନେଇ ଗୋଟିଏ ଆଲୋଚନା ସଭା ସଂଗଠିତ ହୋଇଥାଏ । ମୃତ୍ୟୁଞ୍ଜୟ କିଛିକାଳ ଏହାର ସମ୍ପାଦକ ହୋଇଥିଲେ । ଏହିଠାରୁ ପ୍ରବନ୍ଧ ଲେଖାର ପ୍ରବୃତ୍ତି ତାଙ୍କର ଜାଗ୍ରତ ହୋଇଥିଲା । ଏହି 'ଆଲୋଚନା ସଭା' ପରବର୍ତ୍ତୀ କାଳରେ ଉତ୍କଳସାହିତ୍ୟ ସମାଜ ନାମରେ ନାମିତ ହେଲା । ନିୟମିତ ଭାବରେ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ଏହି ସଭାରେ ଯୋଗ ଦେଉ-ଥିଲେ । ମୃତ୍ୟୁଞ୍ଜୟଙ୍କ ସଂପର୍କରେ ସେ ଲେଖିଛନ୍ତି—"ପ୍ରତି ଶନିବାରର 'ଆଲୋଚନା ସଭା' ସେମାନଙ୍କ ସାଧନା ଓ ଶକ୍ତି ଚାଳନାର କେନ୍ଦ୍ର ଥିଲା । ସେ ସମୟରେ ମୃତ୍ୟୁଞ୍ଜୟ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଅଧ୍ୟୟନରେ ଯେପରି ତୀକ୍ଷ୍ଣ ମେଧା, ଆଲୋଚନାରେ ସେହିପରି ସୂକ୍ଷ୍ମ ଦୃଷ୍ଟି ତାଙ୍କର ସୁବ୍ୟକ୍ତ ହୋଇ ଉଠିଥିଲା । ଅନ୍ୟ-ମାନେ କର୍ମକ୍ଷେତ୍ରରେ ପ୍ରବେଶ କରି କାଏ କେଉଁଠି ପ୍ରାୟ ଅଦୃଶ୍ୟ ହୋଇଗଲେ, ଏକା ମୃତ୍ୟୁଞ୍ଜୟ ଅଟଳ ସଂକଳ୍ପ ଓ ଦୃଢ଼ ଅଧ୍ୟବସାୟ ବଳରେ ସାଂସ୍କୃତିକ ଦିଗରୁ ଉଚ୍ଚରୁ ଉଚ୍ଚତମ ସ୍ତରକୁ ଆରୋହଣ କରି ପାରିଥିଲେ ।

ମୃତ୍ୟୁଂଜୟ ଅସାଧାରଣ ଶକ୍ତିଶାଳୀ ବା ଉଚ୍ଚ ପ୍ରତିଭାଶାଳୀ ପୁରୁଷ ନ ଥିଲେ । ମାତ୍ର ନିଷ୍ଠା ଓ ସାଧନା ବଳରେ ମନୁଷ୍ୟ କେତେ ଆଡ଼େ କୃତିତ୍ୱ ଲାଭ କରିପାରେ, ତାର ଜ୍ୱଳନ୍ତ ନିଦର୍ଶନ ସେ ଆମ୍ଭମାନଙ୍କୁ ଦେଖାଇ ଯାଇଛନ୍ତି ।"

ଉ : ସା : ୧୯୩୦, ସପ୍ତବିଂଶତି ବର୍ଷ ।

୧୯୦୦ ଖ୍ରୀଷ୍ଟାବ୍ଦରେ ମୃତ୍ୟୁଞ୍ଜୟ ଟ୍ରେନିଂ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଓ ପ୍ରଥମ ସ୍ଥାନ ଅଧିକାର କଲେ । ପ୍ରଥମେ ପ୍ୟାରୀମୋହନ ଏକାଡେମୀରେ ନିମ୍ନ ଶିକ୍ଷକ

ଭାବେ ନିଯୁକ୍ତ ହେଲେ । ଟାଉନ ଭକ୍ଟୋରିଆ ସ୍କୁଲ ହା : ସ୍କୁଲରେ ପଣ୍ଡିତ ହେଲା ପରେ ଭକ୍ତକବି ମଧୁସୂଦନ ତାଙ୍କୁ ସେଠି ପଣ୍ଡିତ ଭାବେ ନିଯୁକ୍ତ ଦେଲେ । ମଧୁସୂଦନ ଓ ବିଶ୍ୱନାଥଙ୍କ ନିକଟ ସମ୍ପର୍କରେ ଆସି ତାଙ୍କର ନୂତନ ଜୀବନର ସୂତ୍ରପାତ ହେଲା । ସେ ହେଲେ ଜଣେ ସାହିତ୍ୟିକ । ତାଙ୍କର ଧାରଣା ଜନ୍ମିଥିଲା ଯେ ସଂସ୍କୃତ ଛାଡ଼ି ବିନା ଖରଚରେ ସଂସ୍କୃତରେ ପ୍ରବେଶ ଲାଭ ଏକ ଅସମ୍ଭବ କଥା । ତେଣୁ ସେ ଘରେ ଘରେ ପଢ଼ି କାବ୍ୟରେ ଉପାଧି ଲାଭ ଲାଗି ଚେଷ୍ଟିତ ହେଲେ । ସେତେବେଳକୁ ଜଣେ ଲେଖକ ହିସାବରେ ତାଙ୍କ ଖ୍ୟାତି ବ୍ୟାପି ଯାଇଥିଲା । ସେ 'ଉତ୍କଳ ସାହିତ୍ୟ', 'ମୁକୁର' ଓ 'ପ୍ରଜାବନ୍ଧୁ'ରେ ଲେଖୁଥିଲେ ।

ମାତ୍ର ୨୨ ବର୍ଷ ବୟସ । ତାଙ୍କ ଲେଖାରେ ମୁଗ୍ଧ ହୋଇ କେତେକ ଶୁଭେଚ୍ଛୁ ତାଙ୍କୁ 'ବାଣୀଭୂଷଣ' ଉପାଧିରେ ଭୂଷିତ କରିବାଲାଗି ଚେଷ୍ଟିତ ହେଲେ; କେତେକ ବ୍ୟକ୍ତିଙ୍କ ମନରେ ଏହା ଈର୍ଷା ନଳ ଜାଳି ଦେଲା । ସେମାନେ ମୃତ୍ୟୁଞ୍ଜୟଙ୍କ ବିରୁଦ୍ଧରେ କୁତ୍ସା ପ୍ରଚାର କରିବାକୁ ଲାଗିଲେ । ଈର୍ଷୀ ପଣ୍ଡିତଙ୍କ ମଧ୍ୟରୁ ଜଣେ ଗୋଟିଏ ଶ୍ଳୋକ ରଚନା କରିଥିଲେ—

'ଅମଙ୍ଗଳସ୍ୟ ବାରସ୍ୟ ଯଥା ମଙ୍ଗଳ ବାରତା
ଅବାଣୀ ଭୂଷଣ ସ୍ୟାପି ବାଣୀ ଭୂଷଣତା ତଥା ।

ଗୋଟିଏ ବାରର ନାମ ମଙ୍ଗଳ, କିନ୍ତୁ ସେ ସବୁ ଅମଙ୍ଗଳର କାରଣ । ସେହିପରି ଏ 'ବାଣୀ ଭୂଷଣ' ଉପାଧି । ଯାହାର ବାକ୍‌ସ୍ଫୂର୍ତ୍ତି ହୋଇନାହିଁ, ତାକୁ ଏ ଉପାଧିରେ ଭୂଷିତ କରିବା ନିରର୍ଥକ ।

ସଂସ୍କୃତରେ ମୃତ୍ୟୁଂଜୟଙ୍କର ଉପାଧି ନ ଥିବାରୁ ଉପାଧିଧାରୀମାନଙ୍କର ତାଙ୍କ ପ୍ରତି ଏ ଶ୍ଳେଷ । ଏହାକୁ କେହି କେହି 'କାଠଯୋଡ଼ିକୂଳିଆ' ଉପାଧି ବୋଲି ବ୍ୟଙ୍ଗ କରୁଥିଲେ ।

ରାଧାନାଥ, ମଧୁସୂଦନ, ବିଶ୍ୱନାଥଙ୍କ ପ୍ରଚେଷ୍ଟାରେ ଜମିଦାର ଶ୍ରୀ ଲକ୍ଷ୍ମୀ ନାରାୟଣ ହରିଚନ୍ଦନଙ୍କ ପ୍ରାସାଦ ପ୍ରାଙ୍ଗଣରେ କଟକର ଶିକ୍ଷିତମଣ୍ଡଳୀ ମୃତ୍ୟୁଞ୍ଜୟଙ୍କୁ ସମାରୋହରେ 'ବାଣୀ ଭୂଷଣ' ଉପାଧିରେ ଭୂଷିତ କରିଥିଲେ ।

୧୯୦୭ରେ ମୃତ୍ୟୁଞ୍ଜୟ ସଂସ୍କୃତ କାବ୍ୟୋପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଓ ବିହାର, ଓଡ଼ିଶା, ଛୋଟନାଗପୁରର ସେ ବର୍ଷର ସମସ୍ତ ପରୀକ୍ଷାର୍ଥୀଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କଲେ ଓ ୪୦ ଟଙ୍କା ସରକାରୀ ପୁରସ୍କାର ଲାଭ କଲେ । ପରୀକ୍ଷାରେ ଏହି ଆଶାତୀତ ଫଳ ବିପକ୍ଷମାନଙ୍କ ମୁଖ ବନ୍ଦ କରି ଦେଇଥିଲା ।

ତାପରେ ସେ ମାତ୍ର ୧୫ ଟଙ୍କା ଦରମାରେ କଲକତା ସ୍କୁଲରେ ତୃତୀ ଶିକ୍ଷକ ହୋଇଥିଲେ । ସରକାରୀ ଚାକିରି ଲାଭ ଏକ ଗୌରବର ବିଷୟ ଥିଲା; ବେତନ ସ୍ୱଳ୍ପ ହେଲେ ହେଁ ମୃତ୍ୟୁଞ୍ଜୟ ଏଥିରେ ସୁଖୀ ହୋଇଥିଲେ । କାବ୍ୟୋପାଧି ଲାଭ ପରେ ସେ ଦ୍ୱିତୀୟ ପଣ୍ଡିତ ପଦକୁ ଉନ୍ନୀତ ହୋଇଥିଲେ, ୧୭ ବର୍ଷ କାଳ ସୁଖ୍ୟାତି ସହ କାର୍ଯ୍ୟ କରିଥିଲେ ଓ ଉପରସ୍ଥମାନଙ୍କ ବିଶ୍ୱାସଭାଜନ ହୋଇଥିଲେ ।

ତାଙ୍କର ଚିର ଶୁଭେଚ୍ଛୁ ହାଣ୍ଡରସନ୍ ସାହେବଙ୍କ ଯତ୍ନରେ ସେ ୧୯୧୯ରୁ କଟକ ଟ୍ରେନିଂ ସ୍କୁଲର ହେ: ପଣ୍ଡିତ ଭାବେ ନିଯୁକ୍ତି ଲାଭ କରିଥିଲେ । ବେତନ ବ୍ୟତୀତ ଟିଉସନ୍ କରି ସେ ମାସିକ କୋଡ଼ିଏ ପଚିଶ ଟଙ୍କା ପାଉଥିଲେ । ଟ୍ରେନିଂ ସ୍କୁଲର ହେ: ମା: ଙ୍କ ସହିତ ମନୋମାଳିନ୍ୟ ହେବାରୁ ସେ ପୁଣି କଲକତା ସ୍କୁଲର ଦ୍ୱିତୀୟ ପଣ୍ଡିତ ଭାବେ ପୂର୍ବ ଚାକିରିକୁ ଫେରି ଯାଇଥିଲେ ।

ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର କର୍ମକ୍ଷେତ୍ରରୁ ଅବସର ନେବା ପରେ ସେ ମାସିକ ୫୭ଟଙ୍କା ବେତନରେ ପୁରୀ ଜିଲା ସ୍କୁଲର ହେ: ପଣ୍ଡିତ ଭାବେ ନିଯୁକ୍ତ ହେଲେ ।

ସାହିତ୍ୟ ଚର୍ଚ୍ଚା ଲାଗି ମାନସିକ ସ୍ଥିରତା ଓ ଶାନ୍ତି ଆବଶ୍ୟକ । କିନ୍ତୁ ମୃତ୍ୟୁଞ୍ଜୟଙ୍କ ଧୈର୍ଯ୍ୟ ଅସାଧାରଣ; ସେ ଅସ୍ଥିରତା ଓ ଅଶାନ୍ତି ମଧ୍ୟରେ ରହି ସାହିତ୍ୟର ଲକ୍ଷ୍ୟରୁ ବିଚ୍ୟୁତ ହୋଇ ନ ଥିଲେ । ତାଙ୍କ ପାରିବାରିକ ଜୀବନ ଦୁଃଖମୟ ଥିଲା ।

ଟ୍ରେନିଂ ପଢ଼ୁଥିବାବେଳେ ସେ ବିଭା ହୋଇଥିଲେ ଓ ୧୬ ବର୍ଷ ସୁଖମୟ ଦାମ୍ପତ୍ୟ ଜୀବନ ଯାପନ କରିଥିଲେ । ୫ଗୋଟି ପୁତ୍ର ଓ ଗୋଟିଏ କନ୍ୟା ମୃତ୍ୟୁଞ୍ଜୟଙ୍କ କୋଳରେ ଦେଇ ସ୍ତ୍ରୀ ସଂସାର ତ୍ୟାଗ କଲେ; କନ୍ୟାର କାଳୁଦନ ପରେ ସଅଁଳା ପୁଅ ଦୁଇଟି ମଧ୍ୟ ପ୍ରାଣତ୍ୟାଗ କଲେ । ୧୯୧୬ ଖ୍ରୀଷ୍ଟାବ୍ଦରେ ତାଙ୍କ ସ୍ତ୍ରୀ ଓ ଜ୍ୟେଷ୍ଠପୁତ୍ର ବସନ୍ତ ରୋଗରେ ମୃତ୍ୟୁବରଣ କଲେ । ବନ୍ଧୁ ପଣ୍ଡିତ କୃପାମଣି ଦାଶଙ୍କୁ ସେତେବେଳେ ମୃତ୍ୟୁଞ୍ଜୟ ଶୋକରେ ଅଭିଭୂତ ହୋଇ ଲେଖିଥିଲେ—

ଭାଇ, ପୁତ୍ର ସହିତେ ପତ୍ନୀ ମଲା
ସର୍ବ ସମ୍ପଦ ମୋର ଗଲା ।

ମୋର ସଂସାରାଶ୍ରମ ସୁଖ ଆଜଠାରୁ ସରିଗଲା । କିଏ ବୋଲି ମୋତେ ଆଉ ସାନ୍ତ୍ୱନା ଦେବ ?

ତାଙ୍କ କନିଷ୍ଠ ଭ୍ରାତା କୃତ୍ତିବାସ ବୃଦ୍ଧ ପିତାମାତାଙ୍କୁ ଶୋକସାଗରରେ ଭସାଇ ମାତ୍ର ୨୦ ବର୍ଷ ବୟସରେ ପ୍ରାଣତ୍ୟାଗ କଲା । ମାତୃଶୂନ୍ୟ କନିଷ୍ଠ ଶିଶୁପୁତ୍ର ରାଧାନାଥ ମଧ୍ୟ ଅଗ୍ନିଦଗ୍ଧ ଅବସ୍ଥାରେ ପ୍ରାଣ ହରାଇଲା ।

ମୃତ୍ୟୁଞ୍ଜୟଙ୍କ ସଂସାର ଏହିପରି ଭାଙ୍ଗିଗଲା । ବୃଦ୍ଧ ପିତାମାତାଙ୍କ ଅନୁରୋଧରେ ସ୍ତ୍ରୀ ମୃତ୍ୟୁର ଦୁଇବର୍ଷ ପରେ ସେ ପୁନର୍ବିବାହ କଲେ, ୧୦ ବର୍ଷ ସୁଖରେ ସଂସାର କରିଥିଲେ । ଦ୍ୱିତୀୟ ସ୍ତ୍ରୀ ଗର୍ଭରୁ ଗୋଟିଏ ପୁତ୍ର ଓ ଦୁଇଗୋଟି କନ୍ୟା ଜନ୍ମ ହୋଇଥିଲେ ।

୧୯୨୧-୨୨ ରେ ମୃତ୍ୟୁଞ୍ଜୟଙ୍କ ପିତୃମାତୃ ବିୟୋଗ ଘଟିଲା । ସେ ଶୋକାକୁଳ ଅବସ୍ଥାରେ ଚତୁର୍ଥ ଭ୍ରାତା ସଦାଶିବ ଉପରେ ଗୃହର ଦାୟିତ୍ୱ ଦେଇ କଟକରେ ଏକାକୀ ଆସି ରହିଲେ ।

ଅଦମ୍ୟ ଜ୍ଞାନସ୍ପୃହା; ବଳବତୀ ଯଶୋଲିପ୍ସା ଓ ଅର୍ଥପିପାସା । ମୃତ୍ୟୁଞ୍ଜୟ ରାତି ବାରଟାରୁ ଉଠି ପ୍ରାୟ ରାତି ୧୨ଟା ପର୍ଯ୍ୟନ୍ତ ପରିଶ୍ରମ କରୁଥିଲେ । ପରିଶ୍ରମକୁ ବୃଦ୍ଧି ଉପଯୁକ୍ତ ଆହାର ନ ଥିଲା; ଦୁର୍ବଳ ଶରୀର ଉପରେ ଅତ୍ୟଧିକ ଚାପ ପଡ଼ୁଥିଲା । ଯେତେବେଳେ ସେ ଭାଙ୍ଗିଲେ ଏକାବେଳକେ ଭାଙ୍ଗି ପଡ଼ିଲେ ।

୪୨ ବର୍ଷ ବୟସରେ ମାରକ ଦଶା ଅଛି ବୋଲି ସେ ଗଣନା କରି ଜାଣିଥିଲେ — "୪୨ ବର୍ଷଟା ମୋ ପକ୍ଷରେ ଏକ ବିପଦପୂର୍ଣ୍ଣ ବର୍ଷ ବୋଲି ଆଗରୁ ଜାଣି ମୁଁ ସ୍ଥିର କରିଥିଲି ଯେ, ସେହି ବର୍ଷ ଆରମ୍ଭରେ ହୋମଦାନାଦି କରି ଗୋଟିଏ ରୁଦ୍ରପୂଜା କରାଇବି ; ମାତ୍ର ସେହି ବର୍ଷଟି ଅଲକ୍ଷିତଭାବରେ କେତେବେଳେ ଆସି ଶେଷ ହେବାକୁ ବସିଲା, ମୋତେ ଜଣାଗଲା ନାହିଁ । ଯେବେ ଅବଶିଷ୍ଟ ମାସଟି କଟିଯାଏ, ତେବେ ଅନେକ ଦିନ ପର୍ଯ୍ୟନ୍ତ ନିଶ୍ଚିନ୍ତ ରହିବି" ।

ଏହା ପ୍ରକାଶ କରିବାର ଦୁଇ ଚାରି ଦିନ ପରେ ତାଙ୍କୁ ହଠାତ୍ ଜ୍ୱର ଆକ୍ରମଣ କଲା । ତା ପରେ ସେ ଲଘୁ ଆହାର କଲେ । ଏପ୍ରିଲ ପହିଲାରୁ ୪ ତାରିଖ ଯାଏ ଜ୍ୱରର ପ୍ରକୋପ କମିଲା ନାହିଁ । ୫ ତାରିଖ ଦିନ ହଠାତ୍ ଜ୍ୱର ଓହ୍ଲାଇ ଗଲା, ମୃତ୍ୟୁଞ୍ଜୟ ସୁସ୍ଥ ଅନୁଭବ କଲେ । ପଣ୍ଡିତ କୁଳମଣି ଦାଶ ଏ ସମ୍ପର୍କରେ ଲେଖିଛନ୍ତି—

'ଅସମ୍ଭବଂ ହେମମୃଗସ୍ୟ ଜନ୍ମ<br>
ତଥାପି ରାମ ଲୁଲୁଭେ ମୃଗାୟ<br>
ପ୍ରାୟଃ ସମାପନ୍ନ ବିପତ୍ତି କାଲେ<br>
ଧିୟୋଽପି ପୁଂସା ମଳିନା ଭବନ୍ତି ।'

ବଡ଼ ବଡ଼ ଲୋକଙ୍କର ବୁଦ୍ଧି ବିପତ୍ତି କାଳରେ ବିପଯ୍ୟସ୍ତ ଭାବରେ ଗତି କରେ । ସ୍ୱୟଂ ଭଗବାନ ରାମଚନ୍ଦ୍ରଙ୍କର ବୁଦ୍ଧି ବିପଦରେ ଦାମ ହୋଇଥିଲା । ସୁବର୍ଣ୍ଣମୃଗ ଅସମ୍ଭବ ଜାଣିଲେ ବି ସେ ବିଶ୍ୱାସ କରିଥିଲେ ଓ ଶୋଚନୀୟ ଭାବେ ବିପନ୍ନ ହୋଇଥିଲେ । ଶେଷ କାଳରେ ସେହିପରି ମୃତ୍ୟୁଞ୍ଜୟଙ୍କ ବିବେକ ବୁଦ୍ଧି ଲୋପ ପାଇଥିଲା ।

ଏହି ଅଧରେ ତାଙ୍କୁ ରୋଗ ହେଲା, ମିଛ ରୋଗ । ସେ ଏହାର ତାତ୍ପର୍ଯ୍ୟ ହୃଦୟଙ୍ଗମ ନ କରି ପାଚକକୁ ଔଷଧ ରନ୍ଧନ କରାଇଲେ । ଭୋଜନ ପରେ ତାଙ୍କୁ ଜ୍ୱର ତୀବ୍ରଭାବରେ ଆକ୍ରମଣ କଲା । ତା ପରେ ସନ୍ନିପାତ । ଡାକ୍ତରୀ ଚିକିତ୍ସା ପରେ ସେ ଚୈତନ୍ୟ ଲାଭ କଲେ । ଆତ୍ମୀୟମାନଙ୍କୁ ଡକାଇ କାହାଠାରୁ କେତେ ପ୍ରାପ୍ୟ ଅଛି, ବା କେଉଁଠି ଦେୟ ଅଛି, ତାର ଏକ ତାଲିକା ପ୍ରସ୍ତୁତ କରାଇ ନେଲେ । ହିସାବ ନିକାଶ ନ ହେଉଣୁ ହଠାତ୍ ତାଙ୍କ କଣ୍ଠରୁଦ୍ଧ ହୋଇଗଲା, ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସତୀ ଚଉରାରେ ରାଧାନାଥ ଓ ମଧୁସୂଦନଙ୍କ ନିକଟରେ ତାଙ୍କ ସମାଧି ମନ୍ଦିର ନିର୍ମିତ ହେଲା ।"

ପଣ୍ଡିତ କୁଳମଣି ଦାଶ, 'ସ୍ୱର୍ଗତଃ ମୃତ୍ୟୁଞ୍ଜୟ'
ଅଷ୍ଟାବିଂଶ ବର୍ଷ ଉ : ସା :, ୧୯୩୨

୧୯୨୪, ଏପ୍ରିଲ୍ ଦଶ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

ସୁଲେଖକ କୃଷ୍ଣଚନ୍ଦ୍ର ସେନଗୁପ୍ତ ଲେଖିଛନ୍ତି—"ଯେତେବେଳେ ଯେଉଁ କାର୍ଯ୍ୟ କରିବେ ବୋଲି ସେ ପ୍ରତିଜ୍ଞା କରୁଥିଲେ, ତାହା ଯେ କୌଣସି ଉପାୟରେ ସେ ସମ୍ପାଦନ କରୁଥିଲେ । ତାଙ୍କର ଏହି ଗୁଣ ଦେଖି ମୁଁ ତାଙ୍କୁ 'ଗୁଣକ୍ୟ' ଆଖ୍ୟା ଦେଇଥିଲି ।"

"ଉତ୍କଳ ସାହିତ୍ୟ ସମାଜର ସହକାରୀ ସମ୍ପାଦକ ରୂପେ ବା ସଭ୍ୟ ରୂପେ ଯେଉଁମାନେ ମୃତ୍ୟୁଞ୍ଜୟବାବୁଙ୍କୁ ଦେଖିଛନ୍ତି, ସେମାନେ ତାଙ୍କୁ ଉତ୍କଳ ସାହିତ୍ୟ ସମାଜର ପ୍ରାଣ ଛଡ଼ା ଆଉ କଣ କହିବେ ?"

"ପରିତାପର ବିଷୟ ଏହି ଯେ ମୃତ୍ୟୁଞ୍ଜୟ ସମ୍ପୂର୍ଣ୍ଣ ଅର୍ଥଚିନ୍ତାଶୂନ୍ୟ ହୋଇ ବାକ୍‌ଦେବୀଙ୍କର ସେବା କରିପାରି ନାହାନ୍ତି । କିନ୍ତୁ ତାଙ୍କ ଭଳି ଶକ୍ତିଶାଳୀ ଲେଖକ ଯଦି ତାହା କରିପାରିଥାନ୍ତେ, ତେବେ ଉତ୍କଳ ସାହିତ୍ୟ ଭଣ୍ଡାରରେ ଅମୂଲ୍ୟ ରତ୍ନ-ରାଜି ସଞ୍ଚିତ ହୋଇ ପାରିଥାନ୍ତା ।"

"ଯୌବନ କାଳ ଅର୍ଥୋପାର୍ଜନର ଉତ୍କୃଷ୍ଟ ସମୟ ଜାଣି ସେ ଏହି ସମୟରେ ସମସ୍ତ ମନକୁ ତନ୍ନିମିତ୍ତ ନିୟୋଜିତ କରିଥିଲେ । ସୁତରାଂ ଧର୍ମଚିନ୍ତା ପାଇଁ ସେତେ ଅବସର ପାଇନାହାନ୍ତି । ତେଣୁ ମୃତ୍ୟୁଶଯ୍ୟାରେ ତାଙ୍କୁ ହରି ନାମ ଉଚ୍ଚାରଣ କରାଇବା ବେଳେ ସେ ତତ୍‌ସଙ୍ଗେ ଟଙ୍କା ପଇସାର ନାମ ମଧ୍ୟ ଉଚ୍ଚାରଣ କରୁଥିଲେ ।"

କୃଷ୍ଣଚନ୍ଦ୍ର ସେନଗୁପ୍ତ, ୨୮ଶ ଭାଗ,
ଉ : ସା, ୧ମ ସଂଖ୍ୟା, ବୈଶାଖ, ୧୩୩୧

ପଣ୍ଡିତ କୁଳମଣି ମୃତ୍ୟୁଞ୍ଜୟଙ୍କ ଅର୍ଥଲୋଲୁପତା କଥା ମଧ୍ୟ ଉଲ୍ଲେଖ କରିଛନ୍ତି । ସେ ତାଙ୍କର ପଡ଼ୋଶୀ ଗ୍ରାମବାସୀ, ସମବ୍ୟବସାୟୀ ସହଚର, ସାହିତ୍ୟିକ ବନ୍ଧୁ । କିନ୍ତୁ ସେକାଳରେ ରାଧାନାଥ, ମଧୁସୂଦନ, ଚନ୍ଦ୍ରମୋହନ ମଧ୍ୟ ପାଠ୍ୟ-ପୁସ୍ତକ ଲେଖି ଅର୍ଥ ଉପାର୍ଜନ କରିଛନ୍ତି । ମୃତ୍ୟୁଞ୍ଜୟଙ୍କ ପରିବାର ବିପୁଳ ଥିଲା । ଏହାର ଭରଣପୋଷଣ ଦାୟିତ୍ୱ ସେ ବହନ କରିଥିଲେ, ତାଙ୍କ ପ୍ରତି ଶତ୍ରୁତା ଆଚରଣ କରିଥିବା ଦେବେନ୍ଦ୍ରଙ୍କଠାରୁ ସେ ଭିନ୍ନ ହୋଇ ନ ଥିଲେ । ତେଣୁ ତାଙ୍କ ଅର୍ଥାର୍ଜନ ପ୍ରଚେଷ୍ଟା ଏକ ସ୍ୱାଭାବିକ କ୍ରିୟା ଥିଲା । ସେ ସମୟର ଅଧିକ ପାଠ୍ୟପୁସ୍ତକ ରଚନାରେ ମନଯୋଗ କରିଥିଲେ, ଉପାର୍ଜିତ ଅର୍ଥର ଅପବ୍ୟୟ କେବେ କରି ନ ଥିଲେ । ଗୋଟିଏ ଢଗ ସେ ବାରମ୍ବାର ବ୍ୟବହାର କରୁଥିଲେ—

ଖରଚ କରିବ ଲକ୍ଷେ ଟଙ୍କା
ପସନ୍ଦ ନ ଥିଲେ ସବୁ ବଙ୍କା ।

ବିଶ୍ୱନାଥ କର ଲେଖିଛନ୍ତି—"ଉତ୍କଳ ସାହିତ୍ୟ ସମାଜର ପ୍ରଥମାବସ୍ଥାରେ ସହକାରୀ ସମ୍ପାଦକ ରୂପେ ସେ ଯେପରି କାର୍ଯ୍ୟ କରି ଯାଇଛନ୍ତି, ତାହା ଉତ୍କଳୀୟ ଯୁବକମଣ୍ଡଳୀରେ ଦୁର୍ଲଭ । ସମାଜର ପ୍ରତିଷ୍ଠିତ ବିଷୟର କଳ୍ପନା ତାଙ୍କ ଉଦ୍ୟମର ଫଳ ଏବଂ ସେ କ୍ଷେତ୍ରରେ ଯାହା କିଛି ସାମାନ୍ୟ ହୋଇଅଛି, ତାହା ତାଙ୍କ ଉଦ୍ୟମର ଫଳ । 'ଉତ୍କଳ ସାହିତ୍ୟ' ପରିଚାଳନାରେ ଆମ୍ଭେମାନେ ଅନେକ ସମୟରେ ତାଙ୍କର ସହଯୋଗ, ସାହାଯ୍ୟ ପାଇଅଛୁ । ସେଥିପାଇଁ ମୃତ୍ୟୁଶଯ୍ୟା ନିକଟରେ ଉପସ୍ଥିତ ହୋଇ ମନେ ହୋଇଥିଲା, ଆଜି ଯେପରି ଗୋଟାଏ ବାହୁ ଛିନ୍ନ ହୋଇଗଲା ।"

"କେତେ ଲେଖକଙ୍କର କେତେ ଦାବି ତାଙ୍କୁ ମେଣ୍ଟାଇବାକୁ ହେଉଥିଲା, କାହାର ରଚନା ସଂଶୋଧନ କରିଦେବା, କାହାର ପ୍ରୁଫ୍ ଦେଖିଦେବା, କାହାପାଇଁ ସୁପାରିସ୍ ଦେଇ ଅନ୍ୟର ହାତରେ ଦେବା, କାହାର ଅନୁକୂଳରେ ସମ୍ପାଦପକ୍ଷାନ୍ତରେ କିଛି ଲେଖିଦେବା, କେଉଁଠି କେଉଁ ସଭା ପାଇଁ ଗୀତଟିଏ ଠିକ୍ କରିଦେବା ବା

ଲେଖିଦେବା, କେଉଁଠି ଗ୍ରନ୍ଥଗ୍ରନ୍ଥୀଙ୍କର ଆବୃତ୍ତି ପାଇଁ ପଦ୍ୟାଦି ନିର୍ବାଚନ କରିଦେବା ଇତ୍ୟାଦି ନାନା ବିଷୟରେ ତାଙ୍କର କେତେ ସମୟ ଯେ ବ୍ୟୟ ହେଉଥିଲା, ତାର ଇୟତ୍ତା ନାହିଁ । କାହାକୁ କୌଣସି ବିଷୟରେ ବିମୁଖ କରିବା ତାଙ୍କର ସ୍ୱଭାବ ବିରୁଦ୍ଧ ଥିଲା । ସୁନିପୁଣ ଅଧ୍ୟାପକ ଭାବେ ତାଙ୍କର ଖ୍ୟାତି ଥିଲା । ମାମୁଲି କର୍ତ୍ତବ୍ୟ ସମ୍ପାଦନ କରି ସେ କେବେ ତୃପ୍ତ ହେଉ ନ ଥିଲେ । ଗ୍ରନ୍ଥମାନଙ୍କ ପ୍ରାଣରେ ସାହିତ୍ୟାନୁରାଗ ଓ ନାନା ସଦ୍‌ଭାବର ଜାଗରଣ ପାଇଁ ସେ ସର୍ବଦା ସଚେଷ୍ଟ ଥିଲେ ।"

ମୃତ୍ୟୁଞ୍ଜୟଙ୍କ ରଚନାକୁ ମୁଖ୍ୟତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ— (କ) ପାଠ୍ୟପୁସ୍ତକ (ଖ) ପ୍ରତ୍ନତତ୍ତ୍ୱ (ଗ) ଜୀବନଚରିତ (ଘ) ଅନୁବାଦ (ଙ) ସାଧାରଣ ସାହିତ୍ୟ ।

(କ) ପ୍ରବନ୍ଧପାଠ—ପାଠ୍ୟପୁସ୍ତକ ଭାବେ ହା: ସ୍କୁଲର ନବମ ଶ୍ରେଣୀ ଲାଗି ଏହା ଉଦ୍ଦିଷ୍ଟ ଥିଲା । ଅଧିକାଂଶ ରଚନା ସଂଗୃହୀତ । ନିଜସ୍ୱ ଅଳ୍ପ ।

ସାହିତ୍ୟପାଠ—ମୃତ୍ୟୁଞ୍ଜୟ ଓ ଜଗନ୍ନାଥ ମହାପାତ୍ର ଦୁହେଁ ମିଶି ଏ ପୁସ୍ତକଟି ଲେଖିଥିଲେ । ମଧ୍ୟମ ଶ୍ରେଣୀ ଲାଗି ଏହା ଉଦ୍ଦିଷ୍ଟ ଥିଲା ।

ନାରୀଦର୍ପଣ—ବାଳିକାମାନଙ୍କ ପାଠ୍ୟ ଲାଗି ଦୁଇଟି ଭାଗରେ ରଚିତ ଏହି ପୁସ୍ତକ ଉଦ୍ଦିଷ୍ଟ ଥିଲା ; ଆଦର୍ଶ ନାରୀ ଜୀବନ ଚରିତ ରଚନାର ଓଡ଼ିଆରେ ଏଇ ପ୍ରଥମ ପ୍ରଚେଷ୍ଟା ।

ରସାବଳୀ—ଶିଶୁପାଠ୍ୟ ପଦ୍ୟାବଳୀ ।

ସରଳ ଓଡ଼ିଆ ଅଭିଧାନ, ସୁଖବୋଧ ବ୍ୟାକରଣ, ଓଡ଼ିଆ ରଚନା ଅନୁବାଦ ସ୍କୁଲ ଗ୍ରନ୍ଥଗ୍ରନ୍ଥୀମାନଙ୍କ ବ୍ୟବହାର ଲାଗି ଉଦ୍ଦିଷ୍ଟ ଥିଲା ।

(ଖ) ମୃତ୍ୟୁଞ୍ଜୟ ପ୍ରତ୍ନତତ୍ତ୍ୱବିତ୍ ଭାବରେ ପ୍ରସିଦ୍ଧି ଲାଭ କରିଥିଲେ । ଉତ୍କଳ ପତ୍ରିକା ଇଂରାଜୀ ରାଜତ୍ୱରେ ପ୍ରକାଶିତ ଓଡ଼ିଆ ପତ୍ରପତ୍ରିକାର ଏ ଧାରାବାହିକ ବିବରଣୀ । ଧ୍ୱନ୍ୟାତ୍ମକ ଭାଷା, ଭାଷାରହସ୍ୟ, ଓଡ଼ିଆ ଭାଷାର ମୂଳ ଓଡ଼ିଆ ପୋଥି, ଶବ୍ଦରହସ୍ୟ, ଓଡ଼ିଆ ବର୍ଣ୍ଣ ଓ ତାହାର ଉଚ୍ଚାରଣ, ନରସିଂହ ଦେବଙ୍କ ତାମ୍ରଶାସନ, ବୃଦ୍ଧେଶ୍ୱର ଶିଳାଲିପି, ପ୍ରାଚୀନ ଭୂଗୋଳ, ଜଗନ୍ନାଥ ଶିଳାଲିପି ପ୍ରଭୃତି ଗବେଷଣାମୂଳକ ରଚନା ।

(ଗ) କର୍ମଯୋଗୀ ଗୌରୀଶଙ୍କର ଏକ ଜୀବନୀମୂଳକ ପୁସ୍ତକ । ଅଚ୍ୟୁତାନନ୍ଦ ଦାସ, ଆଦିକବି ସାରଳା ଦାସ (ପରେ ସାରଳା ଚରିତ ନାମରେ ପ୍ରକାଶିତ) ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ବ୍ରଜଭୂଷଣ ମଧୁସୂଦନ, ଅଭିମନ୍ୟୁ ସାମନ୍ତସିଂହାର, ଦୀନକୃଷ୍ଣ ଦାସ ପ୍ରଭୃତି ପ୍ରବନ୍ଧ କବିମାନଙ୍କ ଜୀବନ ଓ କୃତି ଉପରେ ଆଲୋକପାତ କରିଅଛି ।

(ଘ) କୁମାରସମ୍ଭବ, ଅଜବିଳାପ, ରତିବିଳାପ ଆଦି କାବ୍ୟ ବା କାବ୍ୟାଂଶ, ମୃଚ୍ଛକଟିକ, ମୁଦ୍ରାରାକ୍ଷସ, ବିଚମୋର୍ବଶୀ, ମାଳତୀମାଧବ ପ୍ରଭୃତି ସଂସ୍କୃତ ନାଟକ ସେ ଓଡ଼ିଆରେ ଅନୁବାଦ କରିଛନ୍ତି । ଉତ୍ତରରାମଚରିତ ନାଟକ ଆଂଶିକଭାବେ ପଞ୍ଚମ ଅଙ୍କରୁ ଶେଷ ପର୍ଯ୍ୟନ୍ତ ତାଙ୍କର ଅନୁବାଦ । ଏହା ମଧୁସୂଦନ ଗ୍ରନ୍ଥାବଳୀରେ ସ୍ଥାନ ପାଇଅଛି ।

(ଙ) ମୃତ୍ୟୁଞ୍ଜୟ କବି; ତାଙ୍କ 'ନଗର' କାବ୍ୟ ପ୍ରସିଦ୍ଧ; ଏଥିରେ ସେ ରାଧାନାଥଙ୍କ ଅନୁସରଣ କରିଛନ୍ତି । ତାଙ୍କ ଶିଶୁକବିତା 'ମଶା ଓ ମହୁମାଛି', 'କୁନି', 'ବେଙ୍ଗରଜା' ପ୍ରଭୃତି ଶିଶୁକବିତା ପାଠକମହଲରେ ଆଦର ଲାଭ କରିଥିଲା ।

ମୃତ୍ୟୁଞ୍ଜୟଙ୍କ 'ଗୃହଶାଳୀ', 'ଚରିତ୍ରପାଠୀ' ପ୍ରଭୃତି ପ୍ରବନ୍ଧ, ପ୍ରାଚୀନ ଓଡ଼ିଆ ସାହିତ୍ୟ, କବିବର ରାଧାନାଥ ପ୍ରଭୃତି ସମାଲୋଚନା; ଶ୍ରୁତିଭୃତ୍ନ, ଚନ୍ଦ୍ରୋଦୟ, ମହାବିନାୟକ, ନଳଚଗିର, ଉଦୟଗିରି, ଚନ୍ଦ୍ରଗିରି ଆଦି ସଂପର୍କୀୟ ଟିପ୍ପଣୀ; 'ଅଦ୍ଭୁତ ପରିଣାମ' ଉପନ୍ୟାସ ପ୍ରଭୃତି ସାହିତ୍ୟିକ ବିବିଧ ଚେଷ୍ଟା ଦୃଷ୍ଟି ଆକର୍ଷଣ କରେ ।

ମୃତ୍ୟୁଞ୍ଜୟ ଜଣେ ହାଇସ୍କୁଲ ପଣ୍ଡିତ; ଶିକ୍ଷକଜୀବନର ବ୍ୟସ୍ତତା ଓ ଗୃହଜଞ୍ଜାଳ ମଧ୍ୟରେ ବୁଡ଼ିଯାଇ ସଂସ୍କୃତକୁ ଭୁଲିଯିବା ସାଧାରଣ କଥା । ସମସ୍ୟା-ଭାବର ଦ୍ୱାହି ସେ କେବେ ଦେଉ ନ ଥିଲେ । ଗୋପୀନାଥଙ୍କ ପରି ସେ ପଣ୍ଡିତ ମହଲରେ ଥିଲେ ନପାତନ । ପ୍ରତିକୂଳ ପରିସ୍ଥିତି ପ୍ରତି ଟିକାଏ ଭ୍ରୁକ୍ଷେପ ନ କରି ଚାଲିଥିଲା ତାଙ୍କର ଲେଖନୀ । ସେ ଓଡ଼ିଆ ସାହିତ୍ୟରେ ଯେଉଁ ବିଚକ୍ଷ ସାଧନା କରିଯାଇଛନ୍ତି, ଏହା ଇତିହାସରେ ବିରଳ । ଓଡ଼ିଆ ସାହିତ୍ୟର ଉନ୍ନତି ଲାଗି ଅକଳାନ୍ତୀ ତାଙ୍କର ପ୍ରାଣର ପିପାସା, ସଙ୍କୀର୍ଣ୍ଣ ପରିବେଶ ଓ ଅନାଟନ ମଧ୍ୟରେ ଅଗାଧ ତାଙ୍କର ସାଧନା । ସେ ଓଡ଼ିଆ ସାହିତ୍ୟକୁ ଦେଇଥିଲେ ଏକ ନିର୍ଭରଶୀଳ ଗତି, ଆତ୍ମସ୍ଥିତି ଲାଗି ଏକ ଦୃଢ଼ ଆସ୍ଥା ।

ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦ ପ୍ରଭୃତି ତାଙ୍କର ପୂର୍ବବର୍ତ୍ତୀ ଓ ସମସାମୟିକ ପ୍ରେରଣାଦାତା । ମୃତ୍ୟୁଞ୍ଜୟ ନାନା ଦିଗରେ ଗବେଷଣାର

ସୂତ୍ରପାତ କରିଥିଲେ, ଆବଦ୍ଧ ଦ୍ୱାର ଭବିଷ୍ୟତ ବଂଶଙ୍କ ଲାଗି ଉଦ୍‌ଘାଟନ କରି ଦେଇଥିଲେ । ତା'ପରେ ଦୃଷ୍ଟି ଓ ସମୀକ୍ଷା ସମାନ୍ତର ଭାବରେ ଗତିକରି ଚାଲିଲା । ତାଙ୍କ ଜୀବନଚରିତ ଓ ଗବେଷଣାମୂଳକ ପ୍ରବନ୍ଧସବୁ ପ୍ରଥମ ଅବସ୍ଥାରେ ସ୍ନାତକୋତ୍ତର ଛାତ୍ରମାନଙ୍କ ଲାଗି ଅବଶ୍ୟ ଅଧୀତବ୍ୟ ବିଷୟ ହୋଇଥିଲା । ମୃତ୍ୟୁଞ୍ଜୟ ସମୀକ୍ଷକ ଓ ଗବେଷକମାନଙ୍କର ଚିର ସ୍ମରଣୀୟ । ତାଙ୍କ ଜୀବନ ସ୍ମରଣ ମାତ୍ରେ ପଦଟିଏ କବିତା ମନରେ ଆସେ—

ଯେତେ ଅଶ୍ରୁଧାର
ଝରିଥିଲା ହୃଦୟର ହାର
କରି ସେ ପାରିଲା ନାହିଁ
ପଙ୍କିଳ ତ ସାଧନାର ପଥ
ଚାଲିଥିଲା ଗଡ଼ପରେ ଗଡ଼ଜୟୀ
ମୃତ୍ୟୁଞ୍ଜୟ ରଥ ।



# ଜଳନ୍ଧର ଦେବ

ଜନ୍ମ—୧୮୭୦

ମୃତ୍ୟୁ—୧୯୫୬

---

କର୍ମମୟ ଅଟେ ମନୁଷ୍ୟ ଜୀବନ
ତେଜ ବିଷାଦ ସୁପ୍ତି
ମା ମାତୃଭୂମି ପୂର୍ଣ୍ଣେ ଏ ପରାଣ
ସମର୍ପି ଦେଇ ପାଅ ମୁକ୍ତି ।

—ଜଳନ୍ଧର ଦେବ

ଉଦୟ ଈଶ୍ୱର ସୁଖୀ ଚରାଚର
ସଦା ମୋ ଅନ୍ତର ପୋଡ଼ୁଛି ମା
ବୟସ ସରିଲା ଆଶା ନ ପୂରିଲା
ଜୀବନ କାହିଁକି ରହୁଛି ମା ?

—ଜଳନ୍ଧର ଦେବ

ଜଳନ୍ଧର ଦେବ ଏକ ବହୁମୁଖୀ ବ୍ୟକ୍ତିତ୍ୱ । ସେକାଳ ଗଡ଼ଜାତରେ ତାଙ୍କର ଆବିର୍ଭାବ କଳ୍ପନା କରିହୁଏ ନାହିଁ । କବି, ନାଟ୍ୟକାର, ଗାଳ୍ପିକ, ପ୍ରାବନ୍ଧିକ ଓ ସମାଲୋଚକ; ଗବେଷକ, ମାନବିକତାବାଦୀ, ସଂସ୍କାରକ, ସମାଜର ଜଣେ ପ୍ରବକ୍ତା—ସାଂସ୍କୃତିକ ଦୃଷ୍ଟିରୁ ଏକ ସର୍ବାଙ୍ଗୀନ ବ୍ୟକ୍ତିତ୍ୱ । ବାମଣ୍ଡାର ସମୃଦ୍ଧ ପାଠାଗାର, କଇଁଦନ୍ତା ପାହାଡ଼, ପ୍ରଧାନପାଟ ପ୍ରପାତ ଓ ଘନ ଅରଣ୍ୟର ସବୁଜଶ୍ରୀ ଗଢ଼ିଥିଲା ଏହି ମନୀଷୀଙ୍କର ମନ ।

ଜାଜପୁର ଦେବ ଶିକ୍ଷିତ ଓ ବହୁଗ୍ରନ୍ଥ ମହଲରେ ସେ ଏକ ସୁପରିଚିତ ଓ ଶ୍ରଦ୍ଧାସ୍ପଦ ନାମ ଥିଲା । ସେ ଭାରତୀୟ ପାରମ୍ପରିକ ବହୁଗ୍ରନ୍ଥ ସଂସ୍କୃତର ପକ୍ଷ ପ୍ରେରିତ ଥିଲେ, 'ବେଦ ଓ ହିନ୍ଦୁଧର୍ମ' 'ଶକ୍ତି ସମନ୍ୱିତ ବସ୍ତୁ ସମଷ୍ଟି ନିତ୍ୟ', 'ମେଘଦୂତ', 'ରାମାୟଣ', 'ଭଗବଦ୍ ଗୀତା' 'ଆମ୍ଭମାନଙ୍କର ଜ୍ଞାନ ଓ ଅଜ୍ଞାନ', 'ଜ୍ୟୋତିର୍ବିଦ୍ୟାର ଜନ୍ମ', 'ଭାରତର ଇତିହାସ', 'ଲଘୁ ସାହିତ୍ୟ ଓ କଳାପ୍ତ ସାହିତ୍ୟ ସମ୍ବନ୍ଧେ ଦୁଇ ଚାରି କଥା', 'ଆର୍ଯ୍ୟ ସଂସ୍କୃତିର କ ଏହି ପରିଚୟ', 'ଜ୍ୟୋତିର୍ବିଦ୍ୟାର ଜନ୍ମ', 'ରାଜା ରାମମୋହନ', 'ସ୍ୱାଧୀନ ଚିନ୍ତା' 'ମୂଢ଼ ଧାର୍ମିକତା' ଆଦି ପ୍ରବନ୍ଧ ଲେଖି ଓଡ଼ିଆ ସାହିତ୍ୟର ଏହି ଦରିଦ୍ର ଦିଗଟିକୁ ବିଶେଷ ସମୃଦ୍ଧ କରିଥିଲେ; ଭାବୁକ, ବେଦବିତ୍, ବହୁ ଶାସ୍ତ୍ରଜ୍ଞ ବିଦ୍ୱାନ୍ ଭାବରେ ସେ ସର୍ବତ୍ର ସମ୍ମାନିତ ହେଉଥିଲେ ।

ଓଡ଼ିଆ ସାହିତ୍ୟର ସେ ଜଣେ ଚିନ୍ତାନାୟକ ଓ ମୁଖ୍ୟ ଦିଗ୍‌ଦର୍ଶକ ଥିଲେ । 'ଉତ୍କଳ ସାହିତ୍ୟ ସମାଜ' ଅଷ୍ଟାବିଂଶ ଅଧିବେଶନର (୧୯୩୭) ସଭାପତି ଭାବେ ସେହି ବାଗ୍ମୀପ୍ରବର ବହୁଗ୍ରନ୍ଥଜନୋଚିତ ଉଚ୍ଚକୋଟୀର ଭାଷଣ ଦେଇଥିଲେ । 'ରାଧାନାଥଙ୍କ କାବ୍ୟରେ ନାରୀର ସ୍ଥାନ', 'କଟକରେ ସାହିତ୍ୟ ଚର୍ଚ୍ଚା', 'ଭୂମିକମ୍ପ', 'ଶିକ୍ଷା ପଦ୍ଧତି' ପ୍ରଭୃତି ପ୍ରବନ୍ଧ ଲେଖି ସାହିତ୍ୟିକ ମହଲରେ ତାଙ୍କ ଦୃଢ଼ ଆସନକୁ ଦୃଢ଼ତର କରିଥିଲେ । କେହି କେହି ପଣ୍ଡିତ କହନ୍ତି—ତାଙ୍କ ପ୍ରବନ୍ଧର ଭାଷା କ୍ଲିଷ୍ଟ, ଏ ଯୁଗରେ ଅଚଳ । ଏହା ଯଥାର୍ଥ ନୁହେଁ; ବରଂ ତାଙ୍କ ଭାଷା ଉଚ୍ଚ ଭାବର ଏକ ଉଚିତ ପୋଷାକ, ସରସ ଓ ସାବଲୀଳ । ତଳ ଦୃଷ୍ଟାନ୍ତରୁ ଏହା ବୁଝାଯିବ ।

"ଯାହା ମନୁଷ୍ୟର ସମାଜକୁ ସ୍ନେହ, ସାମ୍ୟ, ମୈତ୍ରୀ ଆନୟନ କରେ, ତାହା ଧର୍ମ, ଧର୍ମର ନାମାନ୍ତର ସତ୍ୟ । ସତ୍ୟ ଉଦ୍‌ଘାଟନର ନାମ ଧର୍ମପାଳନ । ସତ୍ୟ ଉଦ୍‌ଘାଟିତ ହେଲେ ଅବିଶ୍ୱାସ ଦୂରକୁ ପଳାୟନ କରେ, ବିଶ୍ୱାସର ଆସନ ଦୃଢ଼ୀଭୂତ ହୁଏ । ଫଳତଃ ସ୍ନେହ, ସହାନୁଭୂତି ମନୁଷ୍ୟର ଅନ୍ତରରେ ରାଜତ୍ୱ କରେ ।"
(ବେଦ ଓ ହିନ୍ଦୁଧର୍ମ, ଉ: ସା: ଫାଲ୍‌ଗୁନ, ୧୯୩୯)

"ଅଗ୍ନି ପ୍ରଜ୍ୱଳିତ ହେଉଛି ଭସ୍ମୀଭୂତ ହୁଏ । ଭସ୍ମରାଶି ଆମ୍ଭମାନଙ୍କ ଚକ୍ଷୁର ବିଷୟୀଭୂତ ହୁଏ ନାହିଁ । ଇଷ୍ଟକ ଖଣ୍ଡ ଚୂର୍ଣ୍ଣୀଭୂତ ହୋଇ ଅଦୃଶ୍ୟ ହୁଏ, ଜଳରେ ଚିନି ମିଶ୍ରିତ ହେଲେ ମିଳାଇଯାଏ, ଜଳ ଶୁଖିଯାଏ ।

× × ×

ଆଜି ଇଷ୍ଟକ ଖଣ୍ଡର ଯେଉଁ ପରିଣାମ, କାଳକ୍ରମେ ପୃଥିବୀର ମଧ୍ୟ ସେହି ପରିଣାମ ହେବ । ଚନ୍ଦ୍ର, ଗ୍ରହ, ସୂର୍ଯ୍ୟ, ନକ୍ଷତ୍ର ସମସ୍ତେ କାଳକ୍ରମେ ଏହି ଇଷ୍ଟକର ଦଶାକୁ ପ୍ରାପ୍ତ ହେବେ ।

ସୂର୍ଯ୍ୟ ପ୍ରାତଃ କାଳରେ ଉଦିତ ହୋଇ ସନ୍ଧ୍ୟା ସମୟରେ ଅସ୍ତ ହେଉଅଛି । ନକ୍ଷତ୍ରଗଣ ପ୍ରତି ରାତ୍ରରେ ନୀଳାକାଶକୁ ସୁଶୋଭିତ କରୁଅଛନ୍ତି । ଆମ୍ଭେମାନେ ଏହି ବ୍ୟାପାର ଦେଖି ମନେ କରୁ ଯେ, ଏହି ପୃଥିବୀ ଚିରକାଳ ଏହିପରି ଥିଲା ।"

( ଶକ୍ତିସମନ୍ୱିତ ବସ୍ତୁ ସମଷ୍ଟି ନିତ୍ୟ, ମାଘ. ୧୯୬୯, ଉ: ସା: )

ଜଳନ୍ଧର ଦେବ ବାମଣ୍ଡା ରାଜବଂଶୀୟ । ସେ ୧୮୭୦ ଖ୍ରୀଷ୍ଟାବ୍ଦରେ ଦେଓଗଡ଼ ନିକଟବର୍ତ୍ତୀ ବଡେଇ କଲେଣ୍ଡା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ବାମଣ୍ଡାରେ ମହାରାଜା ସୁଚଳଦେବଙ୍କ ରାଜତ୍ୱ; ଏହି ରାଜ୍ୟ ବହୁ ବିଦ୍ୱାନ୍ ଓ ବିଦଗ୍ଧଙ୍କ ସମାବେଶ ଓ ବିଦ୍ୟାଚର୍ଚ୍ଚା ଯୋଗୁଁ 'ବୁଧ ହଂସକେଳି ସର' ନାମରେ ଅଖ୍ୟାତ ହୋଇଥିଲା ।

ସଚ୍ଚିଦାନନ୍ଦ ( ପରେ କବି ଓ ମହାରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ) ତାଙ୍କର ସହପାଠୀ ପରମ ବନ୍ଧୁ ଥିଲେ ଓ ପରବର୍ତ୍ତୀ କାଳରେ ଜଳନ୍ଧରଙ୍କର ଅଶେଷ ଉପକାର ସାଧନ କରିଥିଲେ । ଏଣ୍ଟ୍ରାନ୍ସ ପାସ୍ ପରେ ରାଜା ସଚ୍ଚିଦାନନ୍ଦଙ୍କ ରାଜତ୍ୱରେ ସେ ଦେବାନ୍ ଓ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ ହୋଇଥିଲେ ଓ ବାମଣ୍ଡାର ଅଶେଷ ଉନ୍ନତି ସାଧନ କରିଥିଲେ । ସାହିତ୍ୟ ପ୍ରତି ତାଙ୍କ ମନ ବିଶେଷ ଆକୃଷ୍ଟ ହୋଇଥିଲା । ଉତ୍କଳସାହିତ୍ୟ, ସମ୍ବଲପୁର ହିତୈଷିଣୀ, ଆଲୋଚନା, ସହକାର, ରସଚକ୍ର, ଭଞ୍ଜପ୍ରଦୀପ ଓ ଶଙ୍ଖରେ ତାଙ୍କର ବହୁ ଲେଖା ପ୍ରକାଶିତ ହୋଇଥିଲା । 'ଆଲୋଚନା' ଓ 'ଶଙ୍ଖ' ପ୍ରଭୃତି ସାହିତ୍ୟ ପତ୍ରିକାମାନଙ୍କର ସମ୍ପାଦନାରେ ସେ କୃତିତ୍ୱ ଦର୍ଶାଇଥିଲେ । 'ପ୍ରବାସୀ' ଓ 'ଭାରତବର୍ଷ'ରେ ତାଙ୍କ ବଙ୍ଗଳା ଲେଖା ସବୁ ପ୍ରକାଶିତ ହେଉଥିଲା । 'ତାଏଁଘର କସ୍ତୁଦଂଶ' ସିଂହଳର (ଶ୍ରୀଲଙ୍କା) ଏକ ଭ୍ରମଣ କାହାଣୀ । ଏହା କିଛି ବର୍ଷ ଆଇ. ଏ. ଶ୍ରେଣୀର ପାଠ୍ୟପୁସ୍ତକ ହୋଇଥିଲା । ଏହା ବ୍ୟତୀତ ତାଙ୍କର ସମସ୍ତ ଲେଖା ପାଣ୍ଡୁଲିପି ଅବସ୍ଥାରେ ଅଛି ବା ପତ୍ରପତ୍ରିକାମାନଙ୍କରେ ବିକ୍ଷିପ୍ତ ହୋଇ ରହିଅଛି ।

ସେ 'ହନ୍ତାନ ସ୍ନେହ', 'ପ୍ରକୃତିର ପ୍ରତିଶୋଧ', 'ମିଥ୍ୟା ଅଭିଯୋଗ', 'ଗୋଟିଏ କଥା', 'ଅତିଥି ସତ୍କାର', 'ଗୌରୀ ଓ କାହ୍ନୁ', 'ଆମ୍ଭ ନାରୁଣୀ', 'ଘନଶ୍ୟାମା ଷଷ୍ଠୋୟୀ', 'ମନ୍ତ୍ରମର ମୁକ୍ତି', 'ବିବାହ ଭୋଜ', 'ଭିନ୍ନଗତି ଭିନ୍ନମତି', 'ମୁକ୍ତିର ଇସାବ', 'ଅଶ୍ରୁଧାର', 'ଏହା କି ଆତ୍ମହତ୍ୟା ?', 'ଶବର ମୃତ୍ୟୁକାଳୀନ ଚିନ୍ତା', ଆଦି ବହୁ କ୍ଷୁଦ୍ର ଗଳ୍ପ ରଚନା କରିଛନ୍ତି । ଗଳ୍ପର ବିଷୟ ରୋଚକ ହେଲେ ହେଁ ଏହାର ଭାଷା ପ୍ରବନ୍ଧ ଭାଷା ପରି ହୋଇଅଛି । 'ପ୍ରକୃତିର ପ୍ରତିଶୋଧ'କୁ ଏକ

ଉଦାହରଣ ସ୍ୱରୂପ ନିଆ ଯାଇପାରେ । ଏହା'ର ପ୍ରଥମାଂଶ ଦୁର୍ଭିକ୍ଷ ସମ୍ବନ୍ଧୀୟ ଏକ ପ୍ରବନ୍ଧ—ବର୍ଣ୍ଣନା ପ୍ରଚୁର, ବ୍ୟଞ୍ଜନା ବିରଳ ।

"ସେ ବର୍ଷ ସେ ଅଞ୍ଚଳରେ ଦୁର୍ଭିକ୍ଷ ହୋଇଥିଲା । ଦୁଃଖ, ଯନ୍ତ୍ରଣା ଏବଂ ମୃତ୍ୟୁ ତୁଳନାରେ ଦୁର୍ଭିକ୍ଷ ଶବ୍ଦଟା ଅତି ମୃଦୁ । ଦୁର୍ଭିକ୍ଷ ଶବ୍ଦଦ୍ୱାରା ସେ ହୃଦୟବିଦାରକ ଯନ୍ତ୍ରଣାର, ସେ ଆର୍ତ୍ତନାଦର, ସେ ହତାଶାର, ସେ ବିଭୀଷିକାର ଚିତ୍ର ହୃଦୟରେ ଅଙ୍କିତ ହୋଇପାରେ ନାହିଁ । ସେ ବର୍ଣ୍ଣନାତୀତ ହାହାକାରଭିନୟବ୍ୟଞ୍ଜକ ଶବ୍ଦ କୌଣସି କୋଷରେ ନାହିଁ । ଏଣୁ ସମସ୍ତେ ଦୁର୍ଭିକ୍ଷ ଶବ୍ଦର ବ୍ୟବହାର କରନ୍ତି ।" *

(ଆଶ୍ୱିନ, ୧୩୪୦, ଉ: ସା:)

ଜଳନ୍ଧରଙ୍କ ଗଳ୍ପ ନୂତନ ଚିନ୍ତା ଉଦ୍ରେକ କରେ । 'ଗୋଟିଏ କଥା'ରେ ଅଧିକାଂଶ ସନ୍ନ୍ୟାସୀ କିପରି ସନ୍ନ୍ୟାସ ଲାଗି ଅଯୋଗ୍ୟ, ସଂସାର ଲାଗି ଅନୁପଯୋଗୀ, ଗଳ୍ପକାର ଦେଖାଇଛନ୍ତି । ସନ୍ନ୍ୟାସୀ ଅନୁତପ୍ତ ହୋଇ ନିଜର ଦୋଷ ସ୍ୱୀକାର କରିଛନ୍ତି—

"କାହାରି ଭରଣପୋଷଣ କରିବାକୁ ହେବନାହିଁ, ତଥାପି ଭିକ୍ଷା ଦ୍ୱାରା ଅର୍ଥ ଓ ପଦାର୍ଥ ସଂଗ୍ରହ କରିଛୁ । କ୍ରୋଧର ତ ସୀମା ନାହିଁ । ବୋଧହୁଏ, ଗୃହସ୍ଥ ମଧ୍ୟ ଏପରି କ୍ରୋଧୀ ନ ଥିବେ । ଆମ୍ଭମାନଙ୍କର ବୃଥା କ୍ରୋଧ, କେହି ଖାଇବାକୁ ନ ଦେଲେ କ୍ରୋଧ, ଅଭିଶାପ । ଯଦି କଥାର ମୂଲ୍ୟ ଥାନ୍ତା, ତା'ହେଲେ ମୋର କ୍ରୋଧରେ କେତେ ଲୋକ ନିର୍ବଂଶ ହୋଇଥାନ୍ତେ, କେତେ ଲୋକର ଗୃହ ଦାହ ହୋଇଥାନ୍ତା, ତାହା କହିପାରିବ ନାହିଁ । କେବଳ ତାହା ନୁହେଁ, ମୋର ଇଷ୍ଟ ଦେବତାଙ୍କୁ ମଧ୍ୟ କୁତ୍ସିତ ଗାଳି ଦେଇଛୁ ।"

"ଦୟା, ପ୍ରେମ ପ୍ରଭୃତି ପ୍ରାକୃତିକ ସଦ୍‌ଗୁଣନିଚୟ ହୃଦୟରୁ ବିସର୍ଜନ ଦେଇଅଛୁ । କର୍ତ୍ତବ୍ୟ କାର୍ଯ୍ୟରୁ ଭ୍ରଷ୍ଟ ହୋଇଅଛୁ । ସ୍ୱାର୍ଥପର ହୋଇ କାର୍ଯ୍ୟ କରୁଅଛୁ ।"

"ବାସ୍ନା" ଗଳ୍ପରେ ପୁରୁଷ ପ୍ରତି ଏକ ବିଗ୍ରହ, ସ୍ତ୍ରୀ ପ୍ରତି ଅନ୍ୟ ବିଗ୍ରହର ସମାଲୋଚନା କରାଯାଇଛି । 'ଗୌରୀ ଓ କାହ୍ନୁ' ଗଳ୍ପରେ ଗୋପାଳ ସହିତ

---

* ମୃତ୍ୟୁର ୨୪ ବର୍ଷ ପରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ୦୧୫।୩।୭୬ରେ ତାଙ୍କର ପ୍ରତିକୃତି ଉନ୍ମୋଚନ ଉପଲକ୍ଷ୍ୟେ ରଚିତ ।

ଭୂସ୍ବାମୀର ବିବାହ ହୋଇଅଛି, ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ବିବାଦକୁ ବିଲୋପ କରିବା ଲାଗି ଆହ୍ୱାନ ଦିଆଯାଇଛି । 'ଅତଥି ସତ୍କାର'ରେ ଆଦିବାସୀ ଜୀବନ ଚର୍ଯ୍ୟା ଜୀବନ୍ତ ହୋଇଅଛି—

"ମସଲା ନାହିଁ, ଘିଅ ନାହିଁ, ଲୁନ୍ଦାର ପରାମର୍ଶ ଅନୁସାରେ ଗୋଟିଏ ବାଉଁଶ ନଳରେ ମାଂସଗୁଡ଼ିକ ଭର୍ତ୍ତି କରିଦେଲେ; ସେ ନଳ ଉପରେ ମାଟି ଲେପନ କରିଦେଇ ମୁଖ ବନ୍ଦ କଲେ ଓ ନଳକୁ ଜ୍ୱଳନ୍ତ ଅଙ୍ଗାରରେ ରଖିଦେଲେ ।"

"ଯୁବକ—ତୁମର ବଡ଼ ଦେବତା କିଏ ?

ଲୁନ୍ଦା—ସିଂ ବୁଙ୍ଗା

ଯୁବକ—କେଉଁଠି ଥାଏ ?

ଲୁନ୍ଦା—ସବୁଠି ଅଛି, ସବୁ ଦେଖୁଛି ।

ଯୁବକ—ଆଉ କି କି ଦେବତା ଅଛନ୍ତି ?

ଲୁନ୍ଦା—ଆମର ଦେବତା କଥା କ'ଣ ପଚାରୁଛୁ ବାବୁ, କୋହ୍ଲ ଜାତିରେ ଗଛ ଗୋଟାକୁ ଦେବତା ଗୋଟାଏ, ପଥର ଗୋଟାକୁ ଦେବତାଟାଏ । ଗଳ୍ପକୁ ପ୍ରାକୃତିକ ରୂପ ଦେବାପାଇଁ ଲେଖକ ବହୁ ଢଗଢମାଳି ବ୍ୟବହାର କରିଛନ୍ତି—

(କ) ଗାଁ କନିଆଁ ସିଙ୍ଘାଣିନାକୀ

(ଖ) ନାଁ ପଣ୍ଡିତ ଗାଁ ପଣ୍ଡିତ
ପଣ୍ଡିତ ପାଖରେ ଥାଇ ପଣ୍ଡିତ ।

(ଗ) ବାୟାର କି ମନ୍ତ୍ରର ?
କଡ଼ାର କି କଳନ୍ତର ?

ସମାଜ ଓ ଜୀବନ ଚର୍ଯ୍ୟା ଦିଗରୁ ବିଚାର କଲେ ଜଳନ୍ଧରଙ୍କ କ୍ଷୁଦ୍ର ଗଳ୍ପର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି, ଏହା ନିଶ୍ଚିତ । ଜଳନ୍ଧର ଜଣେ ଜୀବନଶିଳ୍ପୀ, ସେ କୋଉଠୁ କିଛି ଧାର ଉଧାର କରି ନାହାଁନ୍ତି, ଜୀବନକୁ ଯେପରି ଦେଖିଛନ୍ତି ସେହିପରି ଚିତ୍ରିଛନ୍ତି, ସଂସ୍କାରକ ଦୃଷ୍ଟିରୁ ତା'ର ଗତିମୁଖ ବଦଳାଇବାକୁ ଚେଷ୍ଟା କରିଛନ୍ତି ।

ଜଳନ୍ଧର ବିଚ୍ଛେଦ, ରାଣା ସଙ୍ଗଙ୍କର ମହାପ୍ରୟାଣ, ଉଦୟ ସିଂହ, ଦେବଯାନୀ ପ୍ରଭୃତି ଏକାଙ୍କିକା ଓ ନାଟକ, ଅସ୍ପୃଶ୍ୟା ପ୍ରଭୃତି କବିତା ରଚନା କରିଛନ୍ତି । ସେ ଜଣେ ସାର୍ଥକ ଚିତ୍ରକର, ବହୁ ଚିତ୍ର ଅଙ୍କନ କରିଛନ୍ତି, ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀ ପ୍ରକାଶିତ ନ ହେବା ପର୍ଯ୍ୟନ୍ତ ଏହି ଯୋଗଜନ୍ମା ସାହିତ୍ୟିକଙ୍କ ବିଷୟରେ କିଛି ମତ ଦେବା ନିରାପଦ ନୁହେଁ ।

ରାଜବଂଶୀୟ ହେଲେ ବି ବିଳାସବ୍ୟସନ ତାଙ୍କୁ ସ୍ପର୍ଶ କରି ନ ଥିଲା । ତଳ ଶ୍ରେଣୀ ପ୍ରତି ତାଙ୍କର ଗଭୀର ସମବେଦନା ଥିଲା ଓ ତାହା କବିତା ଓ ଗଳ୍ପରେ ରୂପାୟିତ ହୋଇଥିଲା ।

ଚିନ୍ତାରେ ସେ ଆଦୌ ଗତାନୁଗତିକ ନ ଥିଲେ । ବିଧବା ବିବାହ, ବାଲ୍ୟ ବିବାହ, ବିବାହ ପଦ୍ଧତି ପ୍ରଭୃତି ପ୍ରବନ୍ଧରେ ତାଙ୍କର ସମାଜ ସଂସ୍କାର ପ୍ରୟାସ ପ୍ରକାଶିତ ହୋଇଅଛି ।

ସେ ଏକାନ୍ତ ସ୍ପଷ୍ଟବାଦୀ ଥିଲେ । ଯେତେ ସ୍ୱାର୍ଥହାନି ଘଟିଲେ ବି ସେ ଯଥାର୍ଥ କଥା କହିବାକୁ ଆଦୌ ପଶ୍ଚାତ୍‌ପଦ ହେଉ ନ ଥିଲେ । ୧୯୫୬ରେ ତାଙ୍କର ମୃତ୍ୟୁ ହେଲା । ଶେଷ ନିଃଶ୍ୱାସ ଛିବା ପର୍ଯ୍ୟନ୍ତ ତାଙ୍କ ସାହିତ୍ୟସାଧନା ଅବ୍ୟାହତ ଥିଲା ।



ଜମାଟ୍ରା ହାଇସ୍କୁଲରେ ପଣ୍ଡିତ ବାସୁଦେବଙ୍କର ଛାତ୍ର ଥିଲି । ସୁଦୀର୍ଘ-ପ୍ରାନ୍ତରେ ତାଙ୍କର ଶିକ୍ଷାଦାନ ସାଧନ ଓ ତାଙ୍କ ଚରିତ୍ର ମୋତେ ଅନୁପ୍ରାଣିତ କରିଥିଲା । ଶିକ୍ଷକ ସ୍ତରରେ ସେ ବରେଣ୍ୟ ଓ ଛାତ୍ରମାନଙ୍କର ଶ୍ରଦ୍ଧାଭାଜନ ଥିଲେ । କିନ୍ତୁ ଦାରିଦ୍ର୍ୟବଶରୁ ଅଥଚ ଏକ ଭଲ ପରିସ୍ଥିତିରେ ତାଙ୍କ ପ୍ରାଣ ସେପରି କି କଳବଳ ଛଟପଟ ହେଉଥିଲା । କୁଟୁମ୍ବ ପୋଷଣ ଲାଗି ବ୍ୟବସ୍ଥା କରିବାକୁ ସେ ବାଧ୍ୟ ହେଉଥିଲେ । ଜାତୀୟ ଆନ୍ଦୋଳନରେ ଯୋଗ ଦେବା ଲାଗି ପରିସ୍ଥିତି ତାଙ୍କର ନଥିଲା; ଅଧିକନ୍ତୁ ସ୍ୱତନ୍ତ୍ର ସାହିତ୍ୟ ସୃଷ୍ଟି ଲାଗି ମଧ୍ୟ ସେ ଅବକାଶ ପାଉ ନ ଥିଲେ । କେବଳ ସାହିତ୍ୟର ଗତାନୁଗତିକ ଶିକ୍ଷକ ନୁହନ୍ତି, ସାହିତ୍ୟର ସେ ପ୍ରକୃତ ଶିକ୍ଷକ ଥିଲେ । ମଣିଷ ଗଢ଼ିବା ତାଙ୍କ ସାହିତ୍ୟର ଉଦ୍ଦେଶ୍ୟ ଥିଲା, ତାଙ୍କ ନିତ୍ୟନୈମିତ୍ତିକ ଚଳଣିରେ, ଚଳପ୍ରପାତ୍ ବନ୍ଧୁ ତାଙ୍କ ପ୍ରାଣୋନ୍ମାଦକାରୀ ବକ୍ତୃତାରେ ଓ ତାଙ୍କ ରଚନାରେ ଶିକ୍ଷା-ଦାନ ପ୍ରବୃତ୍ତି ସ୍ଫୁରିତ ହେଉଥିଲା ।

୧୮୮୮ ଖ୍ରୀଷ୍ଟାବ୍ଦରେ ଅପ୍ରେଲ ୧୭ ତାରିଖରେ ବୀର ବଳଭଦ୍ର ପୁର ଶାସନ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସିଦ୍ଧେଶ୍ୱର ମହାପାତ୍ର, ମାତାଙ୍କ ନାମ ଛୁଞ୍ଚାଦେବୀ । ସିଦ୍ଧେଶ୍ୱରଙ୍କର ତିନି ଭାଇ ଥିଲେ । ସେମାନଙ୍କର କାହାରି ପୁତ୍ର ନ ଥିଲେ । ବାସୁଦେବ ଏହି ତିନି ଭାଇଙ୍କର ଆଖିର ତାରା ହୋଇ ଥିଲେ । ତାଙ୍କୁ ପାଞ୍ଚବର୍ଷ ବୟସ ହୋଇଥିବା ବେଳେ ପିତାଙ୍କର ମୃତ୍ୟୁ ହେଲା । ସେ ତେର ବର୍ଷ ବୟସ ହେଲାବେଳେ ମାତା ମଧ୍ୟ ସଂସାର ତ୍ୟାଗ କଲେ । ପିତାଙ୍କ ମୃତ୍ୟୁ ବେଳେ ତାଙ୍କର ଏକମାତ୍ର ଭଉଣୀଙ୍କୁ ଛ'ମାସ ମାତ୍ର ବୟସ ହୋଇଥିଲା ।

ବାସୁଦେବଙ୍କର ଘରେ ହେଲେ ସମ୍ପତ୍ତି ନ ଥିଲା । ଅପରନ୍ତୁ ବ୍ରାହ୍ମଣ ପରିବାର, କିଛି ସଞ୍ଚୟ କରିବାର ପ୍ରଥା ବା ପ୍ରବୃତ୍ତି ସେହି ପରିବାରରେ ନ ଥିଲା— ଆଜି ଯାହା ମିଳିବ ଆଜି ଖର୍ଚ୍ଚ ହେବ, କାଲିକି ଜମା ରହିବ ନାହିଁ । ସ୍ତ୍ରୀ ପୁରୁଷ ଧରି ଏହି ପ୍ରଥା ଚାଲୁ ଥିଲା; ସେତେବେଳେ ଲୋକେ ଧର୍ମପ୍ରାଣ ଥିଲେ, ଦିନେ ହେଲେ ଏହି ପରିବାରକୁ ଉପାସରେ ଶୋଇବାକୁ ହୋଇ ନ ଥିଲା । ସିଦ୍ଧେଶ୍ୱର ଓ ତାଙ୍କର ଭାଇମାନେ ବୁଢ଼ା ଲିଙ୍ଗଙ୍କର ଉପାସକ ଥିଲେ । କିଏ ଡାଲି, କିଏ ଚାଉଳ, କିଏ ପନିପରିବା ଦେଉଥିଲା; ସଂକ୍ରାନ୍ତି, ଅମାବାସ୍ୟା ବା ପୁଣ୍ୟପର୍ବ ଦିନମାନଙ୍କରେ ବୁଢ଼ା ଲିଙ୍ଗଙ୍କ ନିକଟକୁ ପୂଜା ବା ସଞ୍ଜା ଆସୁଥିଲା, ନାନା ଭୋଗରାଗ ମଧ୍ୟ ହେଉଥିଲା । ପରିବାର ଲାଗି ଯତ୍‌ସାମାନ୍ୟ ରଖି ସିଦ୍ଧେଶ୍ୱର ବାକିସବୁ ଦେବ ମନ୍ଦିରରେ ବିତରଣ କରି ଦେଉଥିଲେ । ଲୋକସେବା, ସତ୍ୟାନ୍ୱେଷଣ ଓ ଈଶ୍ୱରପୂଜା ଏହି ପରିବାରର କୌଳିକ ବ୍ରତ ଥିଲା ।

ବାସୁଦେବଙ୍କ ବଡ଼ଭାଇ ପଣ୍ଡିତ ଆନନ୍ଦ ମହାପାତ୍ର ବ୍ରହ୍ମପୁର ସମୀପବର୍ତ୍ତୀ ହରଡ଼ାଖଣ୍ଡି ମଠ ସଂସ୍କୃତ ସ୍କୋଲର ଶିକ୍ଷକ ଥିଲେ । ବଳଭଦ୍ରପୁର ଶାସନରେ ଦୁଇବର୍ଷ ପ୍ରାଥମିକ ଶିକ୍ଷା ପରେ ବାସୁଦେବ ହରଡ଼ାଖଣ୍ଡି ମଠରେ ଉଚ୍ଚ ସଂସ୍କୃତ ଶିକ୍ଷା କଲେ, ଢଅଙ୍କୁ ପାଣିଦେବା ଆୟରୁ, ଏକାଦଶୀ ସଞ୍ଚା ଆଦାୟରୁ ସେ ନିଜର ବ୍ୟୟ ନିର୍ବାହ କରୁଥିଲେ । ତେର ବର୍ଷ ବୟସରେ ସେ ଗ୍ରାମକୁ ଫେରି ଆସି ବୀର ନରସିଂହପୁର ଏମ୍. ଇ ସ୍କୁଲରେ ମାଇନର ପଢ଼ିଲେ; ସ୍କୁଲର ଶିକ୍ଷକ ପଣ୍ଡିତ ଅନ୍ତ୍ରିଯାଣ ଦାଶ ଏ ଦିଗରେ ତାଙ୍କର ସହାୟକ ହୋଇଥିଲେ; ବାସୁଦେବ ତାଙ୍କର ପୁଷ୍ୟାଶ୍ର ରୂପେ ରହି ନିଜର ଅନ୍ନସଂସ୍ଥାନ କରୁଥିଲେ । ତାଙ୍କ ବୋଉ ସୂତା କାଟି ପଇତା ବିକି ବଡ଼ କଷ୍ଟରେ ଚଳୁଥିଲେ । ଗୃହରୁ ସାହାଯ୍ୟ ଲାଭର କୌଣସି ଆଶା ନ ଥିଲା ।

ଏତେ ଦୁଃଖକଷ୍ଟରେ ପଡ଼ି ମଧ୍ୟ ବାସୁଦେବ ସକଳ ବିଷୟରେ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ମାଇନର ବୃତ୍ତି ଲାଭ (୧୯୦୫) ତାଙ୍କ ଅଧ୍ୟବସାୟ ଓ ଧୀମତ୍ତ୍ୱର ପରିଚୟ ଦିଏ । ଘୋର ଦାରିଦ୍ର୍ୟଭରା ନିରବଲମ୍ବ ଜୀବନ । ସ୍ଥଗ୍ର ବ୍ରାହ୍ମଣସମିତିର ଜଣେ କର୍ତ୍ତା ମୋକ୍ତାର ରାମଚନ୍ଦ୍ର ଦାଶ ତାଙ୍କୁ ଦେଖି ଅପାର ସ୍ନେହ ଓ ସହାନୁଭୂତି ଦେଖାଇଥିଲେ । ସେହି ସମୟର ସ୍ୱରାଜ୍ୟ ଆନ୍ଦୋଳନ ତାଙ୍କୁ ବିଶେଷ ଭାବେ ଉଦ୍‌ବୁଦ୍ଧ କରିଥିଲା ଓ ତାହାକୁ ଭିତ୍ତି କରି ସେ କେତେକ ଦେଶାତ୍ମବୋଧକ କବିତା ରଚନା କରିଥିଲେ—

"ବେଙ୍ଗୁଲି ନାନୀ ଲୋ ବେଙ୍ଗୁଲି ନାନୀ
ପାଣି ପଡ଼େ ଝର ଝର
ହସି ହସି କେତେ ଗୀତ ଗାଉଛୁ ଲୋ
ପୂରିଅଛୁ ତୋର ଘର ।
ପିଣ୍ଡା ଉପରେ ମୁଁ କେତେ ଡାକୁଛୁ ଲୋ
ଶୁଭୁ ନାହିଁ ମୋର କଥା,
କହ ବେଙ୍ଗ ନାନୀ ସୁଖୀ କି ଜାଣିଛୁ
ଦୁଃଖୀର ହୃଦୟ ବ୍ୟଥା ?
ପାଣି ଶୁଖିଗଲା ପଥର ଫାଟିଲା
ଠୋଓ ଠୋଓ ହେଲା ଟାଣ
ବେଙ୍ଗ ବେଙ୍ଗୁଲିଙ୍କ ସମ୍ପଦ ସରିଲା
ଆଶ୍ରୟ ମାତର ଗାତ ।

କେଉଁ ରାଇଜରୁ କାହିଁ ଆସି ଏବେ
ଦୁଷ୍ଟ ପାପ ହେଲା ରଜା
ଗୋଟି ଗୋଟି ସବୁ ଛୋଟି ଶରୀ ଦେଇ
ଗାତରେ ମାରୁଛି ମଜା ।
ଆହା ବେଙ୍ଗ ନାମ କେତେ କାନ୍ଦୁଛନ୍ତି
ହୋଇଣ ସାତ ଦୁଆର
ଛୋଟ ପର ସିନା ଦେଶ ରାଇମାନେ
ହେଉଛନ୍ତି ନାଚଖାର ।"

ସେ ସମୟରେ ଉତ୍କଳସମ୍ମିଳନୀର ଗୋଟିଏ ସଭାରେ ଗୋପବନ୍ଧୁଙ୍କ ବକ୍ତୃତା ଶୁଣି ବିଶେଷ ବିଚଳିତ ହୋଇ ସେ କାନ୍ଦ ପକାଉଥିଲେ । କୁଳବୃଦ୍ଧ ମଧୁସୂଦନ ସେହି ସଭାରେ ସଭାପତି ଥିଲେ । ସେ ଗୋପବନ୍ଧୁଙ୍କ ହୃଦୟବିଦାରକ ଦୁର୍ଭିକ୍ଷ ବର୍ଣ୍ଣନା ଶୁଣି ଶୁଣି କାନ୍ଦ କାନ୍ଦ ଅସ୍ଥିର ହୋଇ ପଡ଼ୁଥିଲେ । ପର ମୁହୂର୍ତ୍ତରେ ତାଙ୍କର ହାସ୍ୟୋଦ୍ଦୀପକ କଥା ଶୁଣି ଠୋ୍ଠୋ ଠୋ୍ଠୋ ହୋଇ ହସି ଉଠିଥିଲେ । ବାସୁଦେବ ଭାବୁଥିଲେ—ଏ କି ଅସମ୍ଭବ କଥା ! ଛାତି ଫାଟି ଚିତ୍କାରି ବୋହି ପଡ଼ୁଚି, ଅଥଚ ପାଞ୍ଚ ମିନଟ୍ ପରେ ଠୋ୍ଠୋ ଠୋ୍ଠୋ ହୋଇ ହସ । ଭାବାନ୍ତର ଆସିବା ଲାଗି ସମୟ ତ ଦରକାର । କିନ୍ତୁ ଗୋପବନ୍ଧୁଙ୍କ ବକ୍ତୃତାର ସେହିପରି ନାଟକୀୟ ବୈଶିଷ୍ଟ୍ୟ ଥିଲା, ଭାବାନ୍ତର ଆଣିବାକୁ ତାଙ୍କୁ ମୁହୂର୍ତ୍ତେ ମାତ୍ର ଲାଗୁଥିଲା ।

ସେ ସପ୍ତମ ଶ୍ରେଣୀରେ ପଢ଼ିଲାବେଳେ ବ୍ରାହ୍ମସମିତି ବୋର୍ଡ଼ିଂର ଗୋଟିଏ ସଭାରେ ଗୋପବନ୍ଧୁ ଉପାସନା ସମ୍ବନ୍ଧରେ ଗୋଟିଏ ବକ୍ତୃତା ଦେଇଥିଲେ । ରାତରେ ଉଜାଗର ରହି ବାସୁଦେବ ଅବିକଳ ସେ ବକ୍ତୃତା ଲେଖି ପକାଇଥିଲେ । ଗୋପବନ୍ଧୁ ତାହା ପଢ଼ି କହିଲେ—ହଇ ରେ, ତୁ ଅବିକଳ ଲେଖିଦେଲୁ ! ମୁଁ କ'ଣ ଏ ସବୁ କଥା କହିଥିଲି ? ହଉ, ତୋ ନାଆଁରେ ଏ ଲେଖାକୁ ମୁକୁରକୁ ପଠାଇ ଦେ ।

ସେତେବେଳେ (୧୯୧୦) ପୁରୀ ଜିଲା ସ୍କୁଲରେ ଶିବରାତ୍ରି ଉତ୍ସବ ବଡ଼ ଜାକଜମକରେ ଅନୁଷ୍ଠିତ ହେଉଥିଲା । ବହୁତ ଚାନ୍ଦା ସଂଗ୍ରହ କରି ଯାଉଥିଲା । ଥନ୍ତଲପେଟିଆ ମହନ୍ତ, ଜମିଦାର, ମକଦ୍ଦମ, ଅଫିସରମାନଙ୍କ ବ୍ୟତୀତ ସେଥିରେ ଦରିଦ୍ରନାରାୟଣଙ୍କର ଅଂଶ ନ ଥିଲା । ପଣ୍ଡିତ ଦୁଃଖରେ 'ନୀଳାଚଳ ମାଧୁରୀ'ରେ ସେ ଗୋଟିଏ ପ୍ରବନ୍ଧ ଲେଖିଥିଲେ, ତାର ସାରମର୍ମ ଥିଲା—"ଉପବାସରେ ଦରିଦ୍ର-ନାରାୟଣସେବା ସର୍ବଥା ବିଧେୟ । ତେଲିଆ ମୁଣ୍ଡରେ ତେଲ ନ ଦେଇ ଘୃତାନ୍ନ, ଘୃତସିକ୍ତ ବର୍ଷକେ ଥରେ ମାତ୍ର ଦରିଦ୍ରମାନଙ୍କ ମୁଖରେ ପଡ଼ୁ ।"

ଏ ଲେଖା ଶିବଗ୍ରାହି ପୂର୍ବତନ ସ୍କୁଲର ଶିକ୍ଷକ ଓ ଛାତ୍ରମହଲରେ ଚହଲ ପକାଇ ଦେଇଥିଲା । ହେ. ମା. ଶିକ୍ଷାବିନୋଦ ମଧୁସୂଦନ ଦାଶ ('ନୀଳାଚଳ' କାବ୍ୟର ଲେଖକ) କହିଲେ—ଗୋପବନ୍ଧୁ, ପିଲମାନଙ୍କର ଏ ଉତ୍ସବକୁ କାହିଁକି ମାଟି କରିଦେଲ ? ଗୋପବନ୍ଧୁ କଟେଗ୍ଧ ଫେରନ୍ତା ବାଟରେ ଏହିପରି ରୁକ୍ଷ ସମାଲୋଚନାମାନ ଶୁଣି କହିଲେ—'ମୁଁ ଲେଖିଥିଲେ ନାମ ଦେଇ ଲେଖିଥାନ୍ତି ।'

ମଧୁବାବୁ କହିଲେ—ତୁମ ବିନା ଆଉ ଏପରି ଓଡ଼ିଶାରେ କିଏ ଲେଖି ପାରିବ ?

ତାପରେ ପ୍ରକୃତ ଲେଖକର ନାମ ଜଣା ପଡ଼ିଥିଲା ଓ ବାସୁଦେବ ଜଣେ ଭଲ ଲେଖକ ଭାବରେ ପରିଚିତ ହୋଇ ଯାଇଥିଲେ ।

ଜଣେ ଉତ୍ତମ ଛାତ୍ର ଭାବରେ ବାସୁଦେବଙ୍କର ସୁନାମ ଥିଲା । ସେତେବେଳେ ହରିହର ପ୍ୟାରିମୋହନ ଏକାଡେମୀର ଶିକ୍ଷକ; ଦିନେ ସାକ୍ଷାତ୍ ହେବାରେ ସେ କହିଲେ— ବାସୁ, ତୁ ଏ ସ୍କୁଲରେ ନାମ ଲେଖା । ତଦନୁସାରେ ବାସୁଦେବ ସତ୍ୟବାଦୀ ଛାଡ଼ି ପ୍ୟାରିମୋହନ ଏକାଡେମୀରେ ନାମ ଲେଖାଇଲେ । ଯୋଗ ଦେବାର ପରଦିନ ତାଙ୍କର ଚନ୍ଦ୍ରାକର (ପତି) ବାବୁଙ୍କ ସଙ୍ଗେ ମିଳନ ହେଲା । ସେତେବେଳେ ସେ ଏକାଦଶ ଶ୍ରେଣୀର ସର୍ବଶ୍ରେଷ୍ଠ ଛାତ୍ର ଥିଲେ । ନିମାଇବାବୁ (ନିମାଇ ଚରଣ ଚ୍ୟାଟ୍ସ ପଟ୍ଟନାୟକ ସ୍କୁଲର ପ୍ରଧାନ ଶିକ୍ଷକ)ଙ୍କ ଦେବୋପମ ସୁନ୍ଦର ମୂର୍ତ୍ତି ତାଙ୍କ ମନରେ ଅପାର ଭକ୍ତି ସଞ୍ଚାର କରିଥିଲା । ତାଙ୍କୁ ନମସ୍କାର ଜଣାଇବା ପରେ ବାସୁଦେବଙ୍କର ପ୍ରଥମ ପ୍ରଶ୍ନ ଥିଲା—ଆପଣଙ୍କ ସ୍କୁଲରେ ପ୍ୟାରିମୋହନଙ୍କ ପୂଜା କିପରି ଏ ପର୍ଯ୍ୟନ୍ତ ହୋଇପାରି ନାହିଁ ?

ନିମାଇବାବୁ କହିଲେ—ବଡ଼ ଭୁଲ୍ ହୋଇଛି ମୋର, ଏହି ଦଶ ପନ୍ଦର ଦିନ ମଧ୍ୟରେ ତାଙ୍କର ଶ୍ରାଦ୍ଧୋତ୍ସବ କରିବା । ପ୍ରଧାନ ଶିକ୍ଷକ ମହୋଦୟ ତାଙ୍କ ଉକ୍ତି ଯଥାରୀତି ପାଳନ କଲେ; ବାଗ୍ମୀ ଓ ସାହିତ୍ୟିକ ବିଶ୍ୱନାଥ କର ସଭାପତି ନିର୍ବାଚିତ ହେଲେ । ଚନ୍ଦ୍ରାକର ପତିଙ୍କ ପ୍ୟାରିମୋହନ ଶୀର୍ଷକ ସଂସ୍କୃତ ପଦ୍ୟ ଶୁଣି ସେ କାନ୍ଦି ପକାଇଥିଲେ:—

"ସଜ୍ଜନସତ୍ତମ ବୀର ସନାତନ
　　　　ପ୍ୟାରିମୋହନ ସାଧୋ
ହେ ସୁର ମନ୍ଦିର ନିତ୍ୟ ନିବାସ
　　　　ଦୀନ ନିରାଶ୍ରୟ ବନ୍ଧୋ ।"

ସହରର ସଭାପତି, ଶତ ଶତ ଭଦ୍ରଲୋକ, ଛାତ୍ରମଣ୍ଡଳୀ ପ୍ୟାରୀମୋହନଙ୍କ ସେବାର ପ୍ରତିମୂର୍ତ୍ତି ସମ୍ମୁଖରେ ଦେଖି ଚକ୍ଷୁରୁ ଲୋତକ ଧାର ସମ୍ବରଣ କରିପାରି ନ ଥିଲେ ।

ତାପରେ ଦରିଦ୍ର ନାରାୟଣ ପାଣ୍ଠି, ଆଲୋଚନା ସଭା, ସେବା ମଣ୍ଡଳୀ ଗଠନ, ସବୁଥିରେ ହେଡ଼ମାଷ୍ଟରଙ୍କ ସହଯୋଗ ଛାତ୍ରମାନଙ୍କ ଗତିକୁ କ୍ଷିପ୍ରତର କରିଥିଲା । ସର୍ବୋପରି ନିମାଇଁଚରଣଙ୍କ ମହାପ୍ରାଣତାର ସ୍ପର୍ଶ ଛାତ୍ରମାନେ ପାଉଥିଲେ । ପି. ଏମ୍. ଏକାଡେମୀକୁ ଏକ ଆଦର୍ଶ ଅନୁଷ୍ଠାନ ରୂପେ ଗଢ଼ିବାକୁ ସେ ସମର୍ଥ ହୋଇଥିଲେ ।

ବାସୁଦେବ ସମ୍ପ୍ରତିରେ ରତ୍ନାକରଙ୍କୁ ଟପି ସ୍କୁଲରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ରତ୍ନାକର ଓ ବାସୁଦେବ ପରସ୍ପରର ବ୍ୟକ୍ତିତ୍ୱ ପ୍ରତି ଆକୃଷ୍ଟ ହୋଇଥିଲେ । ଚନ୍ଦ୍ରାଲୋକରେ କାଠଯୋଡ଼ି ବାଲିରେ ବସି ଦୁଇ ବନ୍ଧୁ ଭବିଷ୍ୟତର ସୁମୋହନ କଳ୍ପନାରେ ନିମଜ୍ଜିତ ହେଉଥିଲେ । କାଠଯୋଡ଼ି ବାଲି ହିଁ ସେମାନଙ୍କ ଜୀବନର ସକଳ କଳ୍ପନାର ପୂତ ପୀଠ ଥିଲା । କୈଶୋର କାଳର ଏହି ନିବିଡ଼ ବନ୍ଧୁତା ଅଧ୍ୟାପକ ରତ୍ନାକର ଶେଷ ନିଃଶ୍ୱାସ ତ୍ୟାଗକରିବା ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା ।

ଏଣ୍ଟ୍ରାନ୍ସ ପରୀକ୍ଷାରେ ବାସୁଦେବ ଭଲ କରିଥିଲେ, କିନ୍ତୁ ଅସୁସ୍ଥତା ଯୋଗୁଁ ଗୋଟିଏ ବିଷୟରେ ପରୀକ୍ଷା ଦେଇପାରି ନଥିଲେ । ତଥାପି ସେ ମେଧାବୃତ୍ତି (ମାସିକ ନ' ଟଙ୍କା) ଲାଭ କରିବାକୁ ସମର୍ଥ ହେଲେ । ମାଟ୍ରିକ୍ ପରୀକ୍ଷା ଦେଇସାରି ଗ୍ରୀଷ୍ମଛୁଟିରେ ଦୁଇମାସ ମାତ୍ର 'ଉତ୍କଳ ଦୀପିକା'ର ସମ୍ପାଦକ ଗୌରୀଶଙ୍କର ରାୟଙ୍କ ଘରେ ଗୃହ ଶିକ୍ଷକରୂପେ ତାଙ୍କର ଦୁଇଟି ନାତି ଓ ଗୋଟିଏ ନାତୁଣୀକି ପଢ଼ାଉଥିଲେ । ଗିରିଜାଶଙ୍କର ସେତେବେଳେ ଏକାଦଶ ଶ୍ରେଣୀର ଛାତ୍ର; ଦୁଇଘଣ୍ଟା କାଳ ଅପୂର୍ବ ଆଗ୍ରହରେ ସେ ବାସୁଦେବଙ୍କ ଶିକ୍ଷାଦାନ ରୀତି ପର୍ଯ୍ୟବେକ୍ଷଣ କରିଥିଲେ । ସେ ଗୌରୀଶଙ୍କରଙ୍କୁ ଯାଇ କହିଲେ—ଏଣ୍ଟ୍ରାନ୍ସ ପରୀକ୍ଷା ଦେଇ ଜଣେ ଛାତ୍ର ଏପରି ପଢ଼ାଇପାରେ, ମୁଁ କଳ୍ପନା କରିପାରୁ ନାହିଁ । ମୁଁ ବଡ଼ ବଡ଼ ପ୍ରଫେସରଙ୍କଠାରୁ ଶିକ୍ଷା ପାଇଛି, କିନ୍ତୁ ଏହା ଅସାଧାରଣ, ଆପଣ କାଲି ଆସି ଟିକିଏ ଦେଖିବେ । ପରଦିନ ବାସୁଦେବ ପଢ଼ାଇଲାବେଳକୁ ଗୌରୀଶଙ୍କର ଓ ଗିରିଜା ଆସି ଉପସ୍ଥିତ ହେଲେ । ବିଷୟ ଥିଲା ମଧୁସୂଦନଙ୍କ 'ନକ୍ଷତ୍ର ଚକ୍ର' । ପରଦାର ଅନ୍ତରାଳରେ ରହି ଅଭିଭୂତ ହୋଇ ଉଭୟେ ଶୁଣୁଥିଲେ ଓ ଗୌରୀଶଙ୍କରଙ୍କ ପାଟିରୁ 'ବାଃ, ବାଃ' ଶବ୍ଦ ବାହାରୁଥିଲା; ପଢ଼ା ଶେଷହେଲା ପରେ ସେ ଡାକି କହିଲେ—ବାସୁଦେବ, ମୁଁ ମଧୁଙ୍କ ସେ ଲେଖାଗୁଡ଼ାକୁ ଆବର୍ଜନା, ପାଗଳର ପ୍ରଳାପ ବୋଲି ଆଡ଼େଇ ଦେଇଥିଲି । ତୁ ତା ଭିତରୁ ଅମୃତ କାଢ଼ି ଆଣି ମୋତେ ଚଖାଇଲୁ । ଏହା ଜାଣିନଥିବେ ନେଦେ

କ୍ଷମାପାଇବ ନାହିଁ । ତୋର ସେହି ବୁଦ୍ଧି ନ’ ହେଲା ମାତ୍ର । ଏଥିରେ ତ ପାଠପଢ଼ା ହୁଏନା ! ତୁ ମୋଠାରୁ ମାଡ଼କୁ ମାଗି ଅଠର ହେଲା ନେଇଯିବୁ ।

ବାସୁଦେବ ସାନନ୍ଦ ଚକ୍ଷୁରେ କହିଥିଲେ—ପାଠକମ ମହାଶୟ ! ଆପଣଙ୍କ ପବିତ୍ର ଦେହ ମୁଁ ଆଘାତ କରି କ୍ଷମାପାଇବ ନାହିଁ ।

“ତୋତେ ତା ବଦଳରେ କିଛି ଦେବାକୁ ହେବ !”

“ମୁଁ କଣ ଦେବ ? ଦେଇ ପାରିବ ?”

“ତୋତେ ୪୦ ବର୍ଷ ଏଇ ବନ ସ୍କୁଲରେ ଶିକ୍ଷକତା କରିବାକୁ ହେବ !”

ଶିକ୍ଷକର ଜୀବନ କଠୋର, ଦୁଃସହ । ସମାଜରେ ତାର ବୈଶିଷ୍ଟ୍ୟ ଅସ୍ୱୀକୃତ । ସରକାରରେ ତାର ମହତ୍ତ୍ୱ ଉଲ୍ଲେଖଯୋଗ୍ୟ ବିବେଚିତ ହୁଏ ନାହିଁ । ବରଂ ତାର ବେତନଧାରୀ ମାତ୍ର; ଏବଂ ବାର୍ଦ୍ଧକ୍ୟ ତାର ସାଫଲ୍ୟ ବୋଲି ପରିଗଣିତ ହୁଏ । ତଥାପି ବାସୁଦେବ ଶିକ୍ଷକତାର ସେହି ଅସିଧାର ବ୍ରତ ଗ୍ରହଣ କରିଥିଲେ ଓ ତାଙ୍କୁ ବହୁ ଅନୁଷ୍ଠାନରେ ଜୀବନ କଟାଇବାକୁ ପଡ଼ିଥିଲା ।

ଏଫ୍. ଏ. ପାସ୍ ପରେ ରେଭେନ୍‌ସା କଲେଜ ଛାଡ଼ି ସେ ସତ୍ୟବାଦୀ ବନ ବିଦ୍ୟାଳୟରେ ଶିକ୍ଷକରୂପେ ଯୋଗ ଦେଲେ । ୧୯୧୮—୨୨ ଏଇ ଚାରିବର୍ଷ ସେ ସତ୍ୟବାଦୀରେ କଟାଇଥିଲେ । ଶ୍ରୀ ଚନ୍ଦ୍ରଶେଖର ମିଶ୍ର ‘ସତ୍ୟବାଦୀରେ ସାତବର୍ଷ’ ପୁସ୍ତକରେ ତାଙ୍କ ବିଷୟରେ ଯାହା ଉଲ୍ଲେଖ କରିଛନ୍ତି, ତାହା ଅବିକଳ ଉଦ୍ଧୃତ ହେଲା ।

“ଆମ୍ଭେମାନେ ବାସୁଦେବବାବୁଙ୍କଠାରୁ ଓଡ଼ିଆ ଶ୍ରେଣୀରେ ଗୋପବନ୍ଧୁଙ୍କ ଚରିତ ଶୁଣିଥିଲୁ । ସେ ସବୁରୁ ଗୋପବନ୍ଧୁଙ୍କୁ ଦେବଦୂତ, ଅସାମାନ୍ୟ, ସର୍ବକର୍ମକ୍ଷମ ବୋଲି ଧାରଣା ରଖିଥିଲୁ ।”

“ବାସୁଦେବ ମହାପାତ୍ର ସେ କାଳରେ ଆମ୍ଭମାନଙ୍କ ପ୍ରତି ଆନ୍ତରିକପର ଥିଲେ । ସେ ଉପର ଶ୍ରେଣୀରେ ଅଙ୍କ ଓ ସାହିତ୍ୟ ପଢ଼ାନ୍ତି, ସତ୍ୟବାଦୀ ସ୍କୁଲର ଶିକ୍ଷକ ହୋଇଥିବାରୁ ସେ ଆନନ୍ଦରେ ଉତ୍ଫୁଲ୍ଲ ଥିଲେ ଓ ଗୋପବନ୍ଧୁ ନୀଳକଣ୍ଠଙ୍କ ପରି ସର୍ବବିଧ କର୍ମସ୍ରୋତରେ ଛାତ୍ରମାନେ ରହିବାକୁ ସର୍ବଦା ଭଲ ପାଉଥିଲେ । ସେ ପ୍ରଥମେ ସକାଳୁଆ ବ୍ୟାୟାମ ଆରମ୍ଭ କରିଥିଲେ । ମାତ୍ର କର୍ମସଙ୍ଘର୍ଷରେ ମୁହୂର୍ତ୍ତେ ବିଶ୍ରାମ ନ ଥିଲା । ତେଣୁ ସ୍ୱେଚ୍ଛାକ୍ରମେ ତାଙ୍କ ସଙ୍ଗେ ମିଶି ବ୍ୟାୟାମ କରୁଥିବା ବାଳକମାନେ ଯୋଗ ଦେଇପାରୁ ନଥିଲେ । ତାହା ବନ୍ଦ ହୋଇ ବିଧିବଦ୍ଧ ଭାବରେ ସମସ୍ତଙ୍କ ପାଇଁ ବ୍ୟାୟାମ ବାଧ୍ୟତାମୂଳକ ହୋଇଥିଲା । ସେ ବ୍ୟାୟାମ କରାଇବାରେ ଓ କରିବାରେ

ସେ ପୂର୍ଣ୍ଣପ୍ରାଣ ଥିଲେ । ପଢ଼ାଇବା ବେଳେ ସେ ନିଜକୁ ଭୁଲି ଯାଉଥିଲେ । ସ୍କୁଲକାର୍ଯ୍ୟ ଓ ବ୍ୟାୟାମ ଶେଷରେ ସେ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ସଙ୍ଗେ ଶାସ୍ତ୍ରାଲୋଚନାରେ ଯୋଗ ଦେଉଥିଲେ; ଗୋପବନ୍ଧୁ ଓ ନୀଳକଣ୍ଠଙ୍କୁ ଲେଖାରେ ସାହାଯ୍ୟ କରୁଥିଲେ । ଅର୍ଥାତ୍ ସେ ଦୁହେଁ ଡାକନ୍ତି, ବାପୁବାବୁ ଲେଖନ୍ତି । ପିଲାଙ୍କ ଉପରେ ବୋର୍ଡିଂ ପରିଚାଳନା ଭାର ଦେବା ଦିନୁ ନୀଳକଣ୍ଠଙ୍କ କୋଠରୀଟି ଗୋଟିଏ କ୍ଲବଘର ପରି ହୋଇଥିଲା । ଶାସ୍ତ୍ରଚର୍ଚ୍ଚା ଓ ଦେଶର ଅନ୍ୟାନ୍ୟ ବିଷୟକ ଆଲୋଚନାରେ ସେ ସହଯୋଗ କରୁଥିଲେ ।

ଅନ୍ୟାନ୍ୟ ଉଚ୍ଚକୋଟୀର ଶିକ୍ଷକମାନଙ୍କର ଯେପରି ଛାତ୍ରମାନଙ୍କ ପ୍ରତି ସ୍ନେହ-ସହାନୁଭୂତି ଥିଲା, ତାଙ୍କର ମଧ୍ୟ ସେହିପରି ଥିଲା । ସେ ନିଜେ ସୁଲେଖକ, ତାଙ୍କ ପ୍ରଣୀତ ପୁସ୍ତକଗୁଡ଼ିକ ନୀତିଶିକ୍ଷା ସମନ୍ୱିତ । ତେଣୁ ସେ ଆମ୍ଭମାନଙ୍କ ମେଳରେ ବୋର୍ଡିଂରେ ସ୍ୱରଚିତ କବିତା ବା ପ୍ରବନ୍ଧ ପଢ଼ୁଥିଲେ—ଚର୍ଚ୍ଚା କରୁଥିଲେ ।

ଛାତ୍ରମାନଙ୍କ ମଧ୍ୟରେ ଯେଉଁମାନେ ଉନ୍ନତ ଥିଲେ, ସାହିତ୍ୟ ସାଧନାର ପନ୍ଥା ସେ ସେମାନଙ୍କୁ ସ୍କୁଲ ସମୟ ଛଡ଼ା ଅନ୍ୟ ସମୟରେ କହୁଥିଲେ, ପିଲାମାନଙ୍କ ନୈତିକ ଚରିତ୍ର ବଢ଼ାଇବାଲାଗି ସେ ପ୍ରତ୍ୟକ୍ଷରେ ଉପଦେଶ ଦେଉଥିଲେ । ସେହି ଧର୍ମକର୍ମୀୟ ପୁସ୍ତକମାନ ପଢ଼ିବା ଲାଗି ଆମ୍ଭମାନଙ୍କୁ ଉଦ୍ବୁଦ୍ଧ କରୁଥିଲେ ।"

"ମାଇନର ପ୍ରଥମ ଶ୍ରେଣୀରେ ଥିଲାବେଳେ ସେ ମୋତେ ଓ ମୋର ସହପାଠୀମାନଙ୍କୁ ଗୀତାପାଠ କରିବାଲାଗି ଉପଦେଶ ଦେଉଥିଲେ । ନିଜେ ଦିନ ଗୀତାର ଅର୍ଥ କରିଥିଲେ । ଦଶମ ଓ ଏକାଦଶ ଅଧ୍ୟାୟ ବୁଝାଉଥିବା ବେଳେ ସେ ଆମ୍ଭମାନଙ୍କ ପାଖରେ ଭାବବିହ୍ୱଳ ହୋଇ ଅଶ୍ରୁ ତା ହରାଉଥିଲେ । ତାହା ଦେଖି ଏବଂ ପ୍ରାଣରେ ଗୀତାବାଣୀର ପ୍ରଭାବ ଅନୁଭବ କରି ଆମେ କେତେଜଣ ଛାତ୍ର ଗୀତା ପ୍ରତି ଆକୃଷ୍ଟ ହୋଇଥିଲୁ । ମୋର ପଇସା ନ ଥିବାରୁ ସେ ଖଣ୍ଡିଏ ବଙ୍ଗଳା ଗୀତା ମୋତେ ଦେଇଥିଲେ ।"

"ପ୍ରାତଃସ୍ନାନ, ଉପାସନା, ଈଶ୍ୱରଭକ୍ତି, ଦୈନିକ ପୂଜା, ବିଦ୍ୟାଳୟ କାର୍ଯ୍ୟରେ ପୂର୍ଣ୍ଣପ୍ରାଣତା ସହ ମନୋନିବେଶ, ଅନ୍ୟାନ୍ୟ କର୍ମସୂଚୀରେ ତନ୍ମୟତା ଇତ୍ୟାଦି ତାଙ୍କ ବଳିଷ୍ଠ ଶରୀର ଏବଂ କୋମଳ ମନରେ ଦେଖି, ମୁଁ ତାଙ୍କୁ ଅନ୍ତରରେ ପୂଜା କରୁଥିଲେ ହେଁ କଥାରେ ପ୍ରକାଶ କରିପାରୁ ନ ଥିଲି । ମୋତେ ପ୍ରବନ୍ଧ ରଚନା କରିବାର ବାଟ ସେ ବତାଇ ଦେଇଥିଲେ ।"

"ଓଡ଼ିଆ ପଢ଼ାଉଥିଲା ବେଳେ ସେ କ୍ଲାସରେ ପଢ଼ାଉଛନ୍ତି ବୋଲି ବୋଧହୁଏ ମନେ ରଖି ନ ଥାନ୍ତି । ଥରେ ସେ 'ଛନ୍ଦମାଳା' ଆମ ଶ୍ରେଣୀରେ ଆରମ୍ଭ କରିଥିଲେ ।

ଆମ୍ଭେମାନେ ସେଥିରୁ 'ଧ୍ୱନି' ପ୍ରଭୃତି କେତେକ କବିତା ଆଗରୁ ପଢ଼ିଥିଲୁ । ମନ୍ତ୍ର ଯେତେବେଳେ ବିଷୟଗୁଡ଼ିକର ତତ୍ତ୍ୱ ଆତ୍ମବିସ୍ମୃତ ହୋଇ ସେ ବୁଝାଉଥିଲେ, ଆମ୍ଭେମାନେ ତନ୍ମୟ ହୋଇଯାଉଥିଲୁ । ତାଙ୍କ ଉପସ୍ଥିତି ଆମ୍ଭମାନଙ୍କ ପ୍ରତି ଆନନ୍ଦ ଓ ଉତ୍ସାହଦାୟକ ହୋଇଥିଲା ।"

"ସେ ଅତି ଉଚ୍ଚଦରର ଶିକ୍ଷକ, ବିଦ୍ୟାଳୟର ବହୁ କାର୍ଯ୍ୟରେ ସହାୟକ ଓ ଭଲ ବକ୍ତା ଥିଲେ । ସେ ସବୁ ବାଳକଙ୍କୁ ଭିଜାବୁଟ ଓ ଗଜାମୁଗ ଖାଇବାକୁ ଉପଦେଶ ଦେଉଥିଲେ ।"

"ସେ ଗରିବ ଥିଲେ; ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ପ୍ରତି ତାଙ୍କର ଅପାର ଭକ୍ତି ଥିଲା । ଅତି ଉତ୍ତମ ଛାତ୍ର ଥାଇ ସେ କୃଚ୍ଛ୍ର ସହିତ ଛାତ୍ରଜୀବନ କଟାଇଥିଲେ । ବିଶ୍ୱାସ ଥିଲେ, ନିଜ ପରିଶ୍ରମ ବଳରେ ନିଜେ ପଢ଼ି ପାରିଥାନ୍ତେ ଏବଂ ଡିଗ୍ରୀ ମଧ୍ୟ ପାଇ ପାରିଥାନ୍ତେ । ମାତ୍ର ସତ୍ୟବାଦୀର ବିଦ୍ୟାପୀଠ ଦେଶଭକ୍ତ ଉଦୀୟମାନ ଯୁବକମାନଙ୍କର ଦେଶସେବାର କେନ୍ଦ୍ରସ୍ଥଳ ଥିବା ମନେକରି ସେ ମଧ୍ୟ ପ୍ରଫୁଲ୍ଲମନରେ ଜୀବନ ବଳି ଦେଲେ । ସେ ଅଳ୍ପ ମାତ୍ର ବେତନରେ ଯୋଗ ଦେଇଥିଲେ ।"

ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ଭାଙ୍ଗିଗଲା ପରେ ଜଣେ ସହକାରୀ ଶିକ୍ଷକ ଭାବରେ ସେ ଢେଙ୍କାନାଳ ହାଇସ୍କୁଲରେ ଯୋଗ ଦେଲେ । ରାଜେନ୍ଦ୍ର ଦତ୍ତ ସେତେବେଳେ ସ୍କୁଲର ପ୍ରଧାନଶିକ୍ଷକ । ବାସୁଦେବଙ୍କର ଏକାନ୍ତ ଅଧ୍ୟାପନାତପସ୍ୟା ଓ ଅଧ୍ୟବସାୟ ଦେଖି ଦିନେ ସେ କହିଲେ—ତୁମେ ତ ପାଞ୍ଚଘଣ୍ଟା ଖଟିବା ଲାଗି ଆସିଛ, ଅଠର ଘଣ୍ଟା ଖଟୁଛ କାହିଁକି ? ପିଲାମାନଙ୍କ ଲାଗି ସବୁ ସମୟ ନଷ୍ଟ ନ କରି ବରଂ ତାକ, ଜଣେ ସହକାରୀ ଶିକ୍ଷକ ଲେଖିଲୁ । ତାଙ୍କର ଅନୁପମ ଉତ୍ସାହ ବଳରେ ବାସୁଦେବ ଶକୁନ୍ତଳା, ଦମୟନ୍ତୀ, ଅହଲ୍ୟାବାଈ, ଦ୍ରୌପଦୀ, ଆବ୍ରାହାମ୍ ଲିଙ୍କନ, ଓ୍ୱାସିଂଟନ୍, କର୍ଣ୍ଣ, ହରିଶ୍ଚନ୍ଦ୍ର, ବିଶ୍ୱାମିତ୍ର, ବାଳଗଙ୍ଗାଧର ତିଳକ ପ୍ରଭୃତି କିଶୋର କିଶୋରୀଙ୍କ ଉପଯୋଗୀ ସାହିତ୍ୟ ଡାକ ଯାଇଥିଲେ ଓ ସେସବୁ 'ଟ୍ରେଡ଼ିଂ କମ୍ପାନୀ' ଓ 'ଷ୍ଟୁଡେଣ୍ଟସ୍ ଷ୍ଟୋର' ଛପାଇଥିଲେ । ସେସବୁ ସେକାଳରେ ଗୋଟିଏ ବଡ଼ ଅଭାବ ଦୂର କରିଥିଲା । ତାଙ୍କ ଭାଷା କିପରି ଜୀବନ୍ତ ଓ ମର୍ମସ୍ପର୍ଶୀ ଓ ଭାବ କିପରି ଶିକ୍ଷଣୀୟ ଥିଲା, ନିମ୍ନ ଦୃଷ୍ଟାନ୍ତରୁ ତାର ସ୍ଥୂଳ ଧାରଣା ମିଳିବ ।

"ଅହଲ୍ୟାଙ୍କ ପିତାମାତା ଗରିବ ହେଲେ, କିନ୍ତୁ ଧର୍ମରେ, ନ୍ୟାୟରେ ସବୁବେଳେ ତାଙ୍କର ମନ ଥାଏ । ଅତିଥି ଅଭ୍ୟାଗତ ଆସି ପହଞ୍ଚିଗଲେ ଦ୍ୱାରରୁ କେବେ ଫେରିଯିବେ ନାହିଁ । ଲୋକଙ୍କୁ ଅସମୟରେ ସାହା ହେବା, ବିପଦ ଆପଦରେ ସହାନୁଭୂତି

ଦେଖାଇବା, ଆନନ୍ଦ ଗର୍ବ ଓ ତାଙ୍କ ପତ୍ନୀଙ୍କର ନିତ୍ୟକର୍ମ ଥିଲା । ପାଞ୍ଚସାତ ଗାଆଁରେ କିଁ। ଭିଁ। ଏପରି ଗୋଟିଏ ପରିବାର ଦେଖାଯାନ୍ତି । ଏମାନଙ୍କ ଅଘୋର ବ୍ୟବହାର, ଘାତକାତରେ ଗାଆଁ ହସିଉଠେ।"

ସେ ସମୟରେ 'ବୀର ଭାରତ' ଓ 'ଶାନ୍ତିଧାରା' ପ୍ରଭୃତି ପୁସ୍ତକ ପ୍ରକାଶ ପାଇଥିଲା। ସେସବୁ ଆଇ. ଏ. ଓ ବି. ଏ. ଶ୍ରେଣୀର ପାଠ୍ୟପୁସ୍ତକ ହେବାରେ ଲେଖକ ଭାବରେ ବାସୁଦେବଙ୍କ ସୁନାମ ପ୍ରସାରିତ ହୋଇଥିଲା ।

୧୯୩୦ ରେ ବାସୁଦେବ ଲୁଣମାରା ଅନ୍ଦୋଳନରେ ଯୋଗ ଦେଇଥିଲେ; କିନ୍ତୁ ଏ ଦିଗରେ ସେ ଦୁଃସାହସ ଦେଖାଇ ନାହାନ୍ତି ବରଂ ଜାଣିଶୁଣି ପୃଷ୍ଠପଟରେ ରହିଯାଇଛନ୍ତି । ପିଲା କୁଟୁମ୍ବଙ୍କୁ ଉପାସ ଭୋକରେ ରଖି ସେ ଦେଶସେବାର କଳ୍ପନା କରିପାରି ନାହାନ୍ତି; ତାଙ୍କୁ ଜେଲ୍ ଯିବାକୁ ପଡ଼ିନାହିଁ । ତାପରେ—

୧୯୩୧ ଖ୍ରୀଷ୍ଟାବ୍ଦରେ ସେ ବାମଣ୍ଡା ଦେବଗଡ଼ ହାଇସ୍କୁଲରେ ଯୋଗ ଦେଲେ । ସେ ଦେବଗଡ଼ରେ ଦେଢ଼ବର୍ଷ ମାତ୍ର ଥିଲେ । ସେଠା ଜଳବାୟୁ ତାଙ୍କ ଦେହରେ ନ ଯିବାରୁ ସେ ୧୯୩୩ ରେ ନିମାପଡ଼ା କ୍ଲବଲ ହାଇସ୍କୁଲରେ ଯୋଗ ଦେଲେ । କୃଷ୍ଣଜନ୍ମ ଦିନ ଗ୍ରାମ୍ୟମାନେ ତାଙ୍କ ଇଚ୍ଛା ବିରୁଦ୍ଧରେ ମାଂସ ଭୋଜି କରିବାର ଦେଖି ସେ ନିମାପଡ଼ା ଛାଡ଼ି ବାରିପଦା ଚାଲିଗଲେ । ସେଠି ଛ'ବର୍ଷ ଚାକିରି କଲାପରେ ସେ ପୁଣି ସତ୍ୟବାଦୀ ଫେରିଆସିଲେ । ବନବିଦ୍ୟାଳୟ ଅବଲୁପ୍ତ ହୋଇଥିଲେ ହେଁ ସେ କୌଣସିମତେ ଜୀବନଧାରଣ ଲାଗି ଓ ନିଜ ପିଲାମାନଙ୍କୁ ପଢ଼ାଇବା ଲାଗି ଚାକିରିଟିଏ କଲେ । ତାପରେ ଓଡ଼ିଶା ସରକାରଙ୍କ ପ୍ରୌଢ଼ଶିକ୍ଷା ସଂଗଠକ ଭାବେ ସେ ନିଯୁକ୍ତ ହେଲେ ଓ ଅନେକ ସଂଗଠନ ଶକ୍ତିର ପରିଚୟ ଦେଇଥିଲେ । କିନ୍ତୁ ସରକାରଙ୍କ ସଙ୍ଗେ ମତଦ୍ୱୈଧ ହେବାରୁ ସେ ସରକାରୀ ଚାକିରି ତ୍ୟାଗ କଲେ । ତାପରେ ସୁଦୀର୍ଘ ଅବସରକାଳରେ ସେ ଆତ୍ମଜୀବନ ଚରିତ ଓ 'ଝରେ ଝୋଲା' ପ୍ରଭୃତି ପୁସ୍ତକ ରଚନା କଲେ ।

**ବୀର ଭାରତ :**

ବାସୁଦେବ ଥିଲେ ଆଦର୍ଶବାଦୀ; ସମାଜ ସମ୍ମୁଖରେ ଆଦର୍ଶ ଚରିତ୍ର ଉପସ୍ଥାପନ କରି ଭାରତୀୟ ପ୍ରାଚୀନ ସଂସ୍କୃତି ଓ ସଭ୍ୟତାର ପୁନରାବର୍ତ୍ତନ ସେ ଚାହୁଁଥିଲେ । ପଞ୍ଜାବ, ମହାରାଷ୍ଟ୍ର ଓ ରାଜପୁତାନାର ବୀରତ୍ୱ, ପ୍ରେମ ଓ ଆତ୍ମତ୍ୟାଗର କାହାଣୀ ସେ ସେହି ଉଦ୍ଦେଶ୍ୟରେ ହିଁ ଉଚ୍ଛ୍ୱାସମୟ ଭାଷାରେ ଲିପିବଦ୍ଧ କରିଥିଲେ । ସେ ଉକ୍ତ ପୁସ୍ତକର ମୁଖବନ୍ଧରେ ତାଙ୍କ ଲକ୍ଷ୍ୟ ଉଲ୍ଲେଖ କରିଛନ୍ତି ।

"ଅତୀତ ଭାରତ ଆରତ୍ୱର ଉଜ୍ଜ୍ୱଳ ଜ୍ୟୋତରେ ଉଦ୍ଭାସିତ । ଆରତ୍ୱର ସେ ସବୁ ଗୌରବମୟ କାହାଣୀ ଜାତର ସମ୍ପଦ । ମୃତପ୍ରାଣ ମଧ୍ୟ ସେସବୁରୁ ନବ ଉଦ୍‌ବୋଧନା, ନବଶକ୍ତି ପାଇ ଜାଗ୍ରତ ହୋଇପାରେ । ବଙ୍ଗଳା ସାହିତ୍ୟ ଆଜି ଉଦାର ସୁନ୍ଦର ବିଭବବାନ୍ । ବଙ୍ଗଳାର ଅତି ନିକଟରେ ଥାଇ ମଧ୍ୟ ଉତ୍କଳ ଅନ୍ୟାନ୍ୟ ବିଷୟ ପରି ଏଥିରେ ମଧ୍ୟ ସମ୍ପୂର୍ଣ୍ଣ ଉଦାସୀନ । ଉତ୍କଳର ଦୁଃସ୍ଥ ଅବସ୍ଥା ଏ ଉଦାସୀନତାରେ ବହୁତ ଯୋଗ କରୁଅଛି । ଏଠାରେ ପାଠକ ସଂଖ୍ୟା ଅତି କମ୍ । ପୁଣି 'ରାଜସ୍ଥାନ', 'ମହାରାଷ୍ଟ୍ର ଜୀବନ' ପ୍ରଭୃତି ବଡ଼ ବଡ଼ ପୁସ୍ତକମାନ ସାହିତ୍ୟ ରସିକତାରେ କିଣି ସମ୍ପାଦ ରଖିବାର ଅଭ୍ୟାସ ଏ ଦେଶରେ ଆଦୌ ନାହିଁ । ଏପରି ଅବସ୍ଥାରେ ବଡ଼ ବଡ଼ ପୁସ୍ତକ ଲେଖିବାକୁ ଗଲେ ଛପାଖର୍ଚ୍ଚ ମଧ୍ୟ ବହୁ ବର୍ଷରେ ଉଠିବା କଷ୍ଟ । 'ରାଣା ପ୍ରତାପ', 'ପଦ୍ମିନୀ' ପ୍ରଭୃତି ଯେ କେତେଖଣ୍ଡି ବହି ବାହାରିଛି, ତାହା ବହୁ ସନ୍ତର୍ପଣରେ ଓ ସଂକ୍ଷିପ୍ତ ଆକାରରେ । ସେହି ହେତୁରୁ ଜୀବନ କଥା ଆମୂଳଚୂଳ ନ ଲେଖି ହୃଦୟସ୍ପର୍ଶୀ ବିଶେଷ ବିଶେଷ ଅଂଶ ଗଳ୍ପ ଆକାରରେ ଲିପିବଦ୍ଧ କଲେ ବିଶେଷ ଉପକାର ହୋଇପାରନ୍ତା ଭାବି ମୁଁ ପ୍ରଥମେ ଏ ଗଳ୍ପ ଲେଖା ଆରମ୍ଭ କରେ । 'ପ୍ରଦୀପ' ଓ 'ସତ୍ୟବାଦୀ'ର ସମ୍ପାଦକ ଦୁହେଁ ସେଗୁଡ଼ିକ ଆଦରରେ ପ୍ରକାଶ କରି ମୋତେ ଉତ୍ସାହିତ କରନ୍ତି ।" ପୃଥ୍ୱୀରାଜ, ତେଜବାହାଦୁର, ପାନ୍ନା, ଚଣ୍ଡଙ୍କ ପ୍ରତିଜ୍ଞା, କୁସୁମକୁମାରୀ ପ୍ରଭୃତି ଇତିହାସର ଗୌରବମୟ ପ୍ରାଣସଙ୍କେତ । ବିଚିତ୍ର ବାର୍ତ୍ତାନିନ୍ଦ (ଶିବାଜୀ) ଅନୁବାଦ, ଯୁଦ୍ଧଯାଗ (ଉଡ଼ିଶା ସହିତ ବାର୍ଙ୍ଗୀର ଯୁଦ୍ଧ, ଧନୁର୍ଦ୍ଧରଙ୍କ ରଣକୌଶଳ ଓ ଆତ୍ମତ୍ୟାଗ) ଗୋଟିଏ ଗୌରବମୟ ଉତ୍କଳୀୟ କାହାଣୀ ଉପରେ ପ୍ରତିଷ୍ଠିତ । ବାର୍ଙ୍ଗୀରାଜା ପ୍ରତାପଙ୍କ ଓଡ଼ିଶା ଅନ୍ତର୍ଗତ ଅଂଶୁପା ହ୍ରଦ ଅଧିକାର, ଲୋକକ୍ଷୟ ଭୟରେ ଓଡ଼ିଶାର ଖୁର୍ଦ୍ଧା ପ୍ରବଳରାଜଙ୍କ ଉଦାସୀନତା, 'ବିନା ଯୁଦ୍ଧରେ ମୂଚ୍ୟଗ୍ର ପରିମିତ ଜମି ଶତ୍ରୁକୁ ଛାଡ଼ିଦେବା କାପୁରୁଷତା' ବିଚାରରେ ବୃଦ୍ଧ ରାଜା ଧନୁର୍ଦ୍ଧରଙ୍କ ରଣସଜ୍ଜା, ସରଣ୍ଡା ଘାଟିରେ ଡିଙ୍ଗି ସଜାଇ ବିପକ୍ଷ ମନରେ ତୋପସଜ୍ଜାର ଭ୍ରମ ଜନ୍ମାଇବା ଓ ଶର ପ୍ରହାରରେ ଅଗଣିତ ଶତ୍ରୁସୈନ୍ୟଙ୍କ ବିନାଶ ଘଟାଇବା, ଗୋଟିଏ ଗୋଳକରେ ପଶି ଗଡ଼ି ଗଡ଼ି ଯାଇ ଧନୁର୍ଦ୍ଧର ଶତ୍ରୁ ଶିବିରରେ ବିପ୍ଳବ ଘଟାଇବା, ଶେଷରେ ପ୍ରାଣବଳି ଦେବା ପ୍ରଭୃତି ଅପୂର୍ବ ଆତ୍ମୋତ୍ସର୍ଗର ଚିତ୍ର ଏଥିରେ ଅଙ୍କିତ ହୋଇଅଛି ।

**ଭବେ ଭୋଳା :**

ଆତ୍ମଚରିତରେ ଲେଖକ ଉଲ୍ଲେଖ କରିଛନ୍ତି—"ପଚିଶି ବର୍ଷର ଦୀର୍ଘ ଶିକ୍ଷକତା ପରେ ବୃଦ୍ଧତ୍ୱର ନିବିଡ଼ ଅନୁଭୂତି ନେଇ ଭବେ ଭୋଳା ଲେଖିବାକୁ ଯାଇଅଛି । ଏଥିରେ ଆର ଭାରତର ଉଦାମ ବାଉଳ୍ ର 'ଶାନ୍ତିଧାରା'ର ଦାର୍ଶନିକ

ଜଟିଳ ମୁକ୍ତିକାଳ ପାଇବେ ନାହିଁ । ପଥହରାର ବ୍ୟାକୁଳ କ୍ରନ୍ଦନ, ଭକ୍ତ ବିଶ୍ୱାସର ଉନ୍ମାଦନାମୟ ବହୁ-ନିର୍ଭରତା, ସନ୍ନ୍ୟାସର ଅମୃତମୟ ନୈଷ୍କର୍ମ୍ୟ, ଜନ୍ମସ୍ଥାନର ପବିତ୍ର ଶାନ୍ତିସୁଧା ଫୁଟାଇବା ପାଇଁ ଏଥିରେ ସିଦ୍ଧ ସାଧକ ଭକ୍ତମାନଙ୍କର ବୈଚିତ୍ର୍ୟମୟ ଜୀବନର ଆଶ୍ରୟ ନିଆଯାଇଛି । ଏ ପିପାସା ଭଗବତ ପ୍ରାଣ ଉଜ୍ଜ୍ୱଳମଣି ଗୋପବନ୍ଧୁଙ୍କ-ସାଧୁତାର ପ୍ରଭାବରେ ସତ୍ୟବାଦୀର ବକୁଳ ବନରେ ହିଁ ପ୍ରାଣରେ ପ୍ରଥମେ ଦେଖା-ଦେଇଥିଲା । ମଧ୍ୟରେ ସ୍ୱରାଜଲାଭ ପାଇଁ ଦେଶବ୍ୟାପୀ ଘୋର ସଂଗ୍ରାମ, ଉଦର ଅନ୍ନ-ବସ୍ତ୍ରର ପାବକ ପ୍ରଭାବରେ ଗୁପ୍ତ ହେଲେ ମଧ୍ୟ ଏହା କମବର୍ଦ୍ଧିତ ହେଉଥିଲା । ଆଜି ଦେଶପ୍ରାଣରୁ ସେ ଶ୍ରେଷ୍ଠ ପ୍ରବଳ ନିଶା ଛୁଟିଯାଇଅଛି । ଦେଶର ଚତୁର୍ଦ୍ଦିଗରେ କି ବ୍ୟକ୍ତି, କି ସମଷ୍ଟି ସକଳ ଜୀବନରେ ସହସ୍ର ତ୍ରୁଟି, ନାନା ଅକ୍ଷମଣୀୟ ପ୍ରମାଦ ଦେଖା ଦେଉଅଛି ।

ତ୍ୟାଗ, ପ୍ରୀତି, ପରତନ୍ତ୍ରବଶତା, ସ୍ନେହ, ସେବାଭାବ, ସନ୍ତୋଷଶ ବଳିଷ୍ଠ କର୍ମମୟ ଆଧ୍ୟାତ୍ମିକ ବଳ, ଭଗବତ୍ ନିର୍ଭରତା, ଦେଶରୁ କ୍ରମେ ଅନ୍ତର୍ହିତ ହୋଇ ଭବିଷ୍ୟତ ସର୍ବଧ୍ୱଂସର ସୂଚନା ସ୍ପଷ୍ଟ ହେଲଣି । ଏ ଆଉ ସ୍ଥିର ହୋଇ ବସି ରହିବାର ସମୟ ନୁହେ । ବିଭୀଷିକାମୟ ଏ ଘୋର ବିପତ୍ତି ବେଳେ ସନାତନ ସମ୍ପ୍ରଦର ଆଶଙ୍କାମୟ ସନ୍ଧିସ୍ଥଳରେ ଭଗବାନ୍ ହିଁ ଭରସା ।

ସର୍ବେ ହୋଇବା ଏକମୁଖ
ଡାକିବା ନାରାୟଣ ରଖ ।

'ବିପତ୍ତୌ ମଧୁସୂଦନ ।' ଏ ଦିଗରେ ବ୍ୟକ୍ତିଗତ, ଦଳଗତ ସକାଳ ପ୍ରକାର ଉଦ୍ୟମ ଶୀଘ୍ର ଆରମ୍ଭ ହେବା ଆବଶ୍ୟକ ।"

"ସକଳ ଅପରାଧ, ଅନାଚାର ଘୁଞ୍ଚାଇ ମହାମହା ଅଭାବ ଅନ୍ତରାୟ ଅପସାରିତ କରି ଦେଶକୁ ଚରମ ଆକାଂକ୍ଷାର ପରମ ପରିତୃପ୍ତି ପଥରେ ସୁଦୃଢ଼ ଅଗ୍ରଗତି ଦେବାପାଇଁ ଜନପ୍ରାଣରେ ପ୍ରବଳ ଭଗବତ୍ ଭକ୍ତି, ଅଟୁଟ ଧର୍ମବିଶ୍ୱାସ ଫୁଟାଇବା ଯେ ଏକମାତ୍ର ଉପାୟ, ଏହା କେହି ଅସ୍ୱୀକାର କରି ନ ପାରେ । ଭଗବତ କହେ—

ଅଣିମା ଆଦି ସିଦ୍ଧି ଯେତେ
ଗୋ ଭକ୍ତ ଲଭନ୍ତି କଷ୍ଟେତେ ।

ପ୍ରାଣରେ ଏ ମହାପ୍ରେରଣା, ବହୁପ୍ରାଣତା ଉଦ୍‌ବୋଧନ ପାଇଁ ଜନସାହିତ୍ୟ ଲେଖିବାର ସମୟ ଉପସ୍ଥିତ । ଏ ଦିଗରେ ଏ ଦୁଇସ୍ତରଖଣ୍ଡି ପୁସ୍ତକ କିଛି ନୁହେ ।

କବି ଓ ଲେଖକମାନେ ଏ ଦିଗରେ ନିଜ ନିଜର ସବଳ ଲେଖନୀ ଚାଳନା କରନ୍ତୁ, ଏହା ହିଁ ପ୍ରାଣର ବ୍ୟାକୁଳ ଆକାଂକ୍ଷା ।"

'ଭବେ ଭୋଳା' ୧୯୫୩ ରୁ ୧୯୭୭ ମଧ୍ୟରେ ପାଞ୍ଚଖଣ୍ଡରେ ପ୍ରକାଶିତ । ଏହାକୁ ଆଧୁନିକ 'ଦାର୍ଶନିକତା ଭକ୍ତି' ଆଖ୍ୟା ଦିଆଯାଇପାରେ । ଏସବୁ ଭକ୍ତିରସାତ୍ମକ ଗୀତାଗୀତିକା ସରଳ ପଦ୍ୟରେ ରଚିତ । ସମାଜରେ ପବିତ୍ରତାର ବାତାବରଣ ଆଣିବା ଲାଗି ଏସବୁ ଉଦ୍ଦିଷ୍ଟ ।

### ପବିତ୍ରୀ ସୁନ୍ଦରୀ :

ଆଦର୍ଶ ଭାରତୀୟ ନାରୀଚରିତ୍ରକୁ ଭିତ୍ତି କରି ଏହି କାବ୍ୟ ଖଣ୍ଡି ରଚିତ ଓ ୧୯୬୮ରେ ପ୍ରକାଶିତ । କବି ବାସୁଦେବ ଗ୍ରନ୍ଥାରମ୍ଭରେ ଲେଖିଛନ୍ତି—

'ମାଆ ଭଉଣୀ ଗୋ ପାହିଲାଣି ବିଭାବରୀ
ଦେଖ ଦେଖ ଜ୍ୟୋତି ହସେ ପବିତ୍ରୀ ସୁନ୍ଦରୀ
ତବ ଶ୍ରୁତି ଆଦରଣେ ମଣ୍ଡି ତନୁ ହିରି
ବିଶ୍ୱ ପୂଜା ପାଇଁ ପରି ପଡ଼ିଛୁ ଉଜରି ।'

ସୀତା, ଅହଲ୍ୟା, କୈକେୟୀ ପ୍ରଭୃତିଙ୍କ ସାଧନାମୟ ଜୀବନ, ତ୍ୟାଗ ଓ ସଂଯମ ଏଥିରେ ଚିତ୍ରିତ । ଜାତୀୟ ନାରୀର ଦୃଢ଼ ନୈତିକ ଭିତ୍ତି ସଂଗଠନ ଲାଗି ଏହା ଉଦ୍ଦିଷ୍ଟ । ସତ୍ୟବାଦୀର ଉନ୍ନତ ମନୁଷ୍ୟ ଚରିତ୍ର ଗଠନ ଆଦର୍ଶ ସେ ପ୍ରାୟ ତାଙ୍କର ସମସ୍ତ ରଚିତ ପୁସ୍ତକରେ ପ୍ରକଟନ କରିଯାଇଛନ୍ତି । ବାସୁଦେବ ଜୀବନଶିଳ୍ପୀ, କେବଳ ଶିକ୍ଷିତ ଶିଷ୍ୟ ନୁହେଁ, ଉତ୍କୃଷ୍ଟ ମନୁଷ୍ୟ ଚରିତ୍ର ଗଠନ ତାଙ୍କ ଜୀବନ ତଥା ସାହିତ୍ୟ ରଚନାର ମହନୀୟ ଆଦର୍ଶ ।

"ମାତୃ ଧର୍ମ, ସତୀଧର୍ମ, ପରି ପ୍ରୀତି ବଳେ
ନାରୀର ଚିର ପ୍ରତିଷ୍ଠା ଭାରତ ମଣ୍ଡଳେ ।
ଆପାତ ମୋହନ ରୂପ ଛଟା ବରି ବଳ
ନାରୀ ସେ ପ୍ରତିଷ୍ଠା ଭଙ୍ଗେ, ଗମେ ରସାତଳ ।"

ବିଭିନ୍ନ ସଂଳାପ ମଧ୍ୟରେ ପୁରାଣଗତ ଉକ୍ତ ଚରିତ୍ରମାନଙ୍କର ମହନୀୟତା ଚିତ୍ରିତ ହୋଇଅଛି । ଅଧ୍ୟାପକ ଜୟକୃଷ୍ଣ ମିଶ୍ର ମୁଖବନ୍ଧରେ ଲେଖିଛନ୍ତି—

"ଭାଷା, ଛନ୍ଦ ଯୋଜନା, ଉନ୍ନତ କଳ୍ପନାବିଳାସ ଓ ଭାବଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ଗ୍ରନ୍ଥଟି ଉପାଦେୟ । ରଚନାର ସ୍ୱାଚ୍ଛନ୍ଦ୍ୟ, ସରସ ଆବେଗମୟ ପ୍ରବାହ

ପରିକଳ୍ପିତ ପ୍ରସଙ୍ଗଗୁଡ଼ିକର ସୌନ୍ଦର୍ଯ୍ୟ ବର୍ଣ୍ଣନ କରିଛୁ, ଭାବାବେଗର ଅପୂର୍ବ ପରିବେଶରେ ।''

ଶାନ୍ତିଧାରା :

ଏହା ଖଣ୍ଡିଏ ଉଚ୍ଚ ଧରଣର ଚିନ୍ତାଶୀଳ ପ୍ରବନ୍ଧ ଗ୍ରନ୍ଥ; ବାସୁଦେବଙ୍କର ଶ୍ରେଷ୍ଠ ମୌଳିକ ରଚନା । 'ଈଶ୍ୱରଯୋଗ', 'ଅନ୍ତରର ବଳ', 'ପରିତୋଷ', 'ବିଶ୍ୱବୈଭବ', 'ବୈଷୟିକତା', 'ଆକାଶ', 'ପ୍ରାଣପ୍ରାଚୁର୍ଯ୍ୟ', 'ଚତୁରତା', 'ମିଳନ', 'ଆଶାପନ୍ଥା' ପ୍ରଭୃତି ୧୧ଟି ପ୍ରବନ୍ଧ ଏହା'ର ଅନ୍ତର୍ଗତ । ଗୀତା, ଭାଗବତ, ଉପନିଷଦ ଓ ବିଭିନ୍ନ ଧର୍ମ ଓ ନୀତିଶାସ୍ତ୍ରର ପ୍ରଭାବ ଏହା ଉପରେ ସୁସ୍ପଷ୍ଟ । ମୁଖବନ୍ଧରେ ବାସୁଦେବ ଲେଖିଛନ୍ତି—

''ଉତ୍କଳ ସାହିତ୍ୟରେ ଚିନ୍ତାପୂର୍ଣ୍ଣ ଗଦ୍ୟ ଗ୍ରନ୍ଥର ନିତାନ୍ତ ଅଭାବ । ମୁଁ ଗତ ପନ୍ଦର ବର୍ଷ ଧରି ଉଚ୍ଚ ସ୍କୁଲର ଉପର ଶ୍ରେଣୀମାନଙ୍କରେ ସାହିତ୍ୟ ପଢ଼ାଇ ଏ ଅଭାବ ତୀବ୍ର ଭାବରେ ଅନୁଭବ କରିଆସିଛୁ । ଚିନ୍ତା ସାହିତ୍ୟର ପ୍ରାଣ, ଭାଷା ତାର ବହିରଙ୍ଗ ମାତ୍ର । ଏ ଜ୍ଞାନ ସେମାନେ ଛାତ୍ରମାନଙ୍କ ପାଇଁ ବହି ଲେଖା ହେବା ସର୍ବଥା ଆବଶ୍ୟକ ।

ବାସୁଦେବ ଏହି ପୁସ୍ତକରେ ଆମୂଳଚୂଳ ଶିକ୍ଷକ, ନାନା ସଦୁପଦେଶ ଓ ନୀତି ଶିକ୍ଷା ପ୍ରଦାନ କରିଛନ୍ତି । ଜୀବନର ବଳାଣିରେ; ତାଙ୍କ ରଚିତ ସାହିତ୍ୟ ଜୀବନର ସେବକ ମାତ୍ର । ତଳେ ତାଙ୍କର କେତୋଟି ମହତ୍ତ୍ୱପୂର୍ଣ୍ଣ ଉକ୍ତି ଉଦ୍ଧୃତ ହେଲା —

''ଆଳସ୍ୟ ହିଁ ଅପବିତ୍ରତାର ପ୍ରମୂର୍ତ୍ତି; ଯୁଗେ ଯୁଗେ ଆଳସ୍ୟପରାୟଣ ଧନୀକର ଲାଳସା କୃଷକର କର୍ମନିରତ ରକ୍ତରେ ଏ ଧରାକୁ ରଞ୍ଜିତ କରିଅଛି ।''

''କର୍ମହୀନ ବୃଦ୍ଧ କର୍ମନିରତ ଶିଶୁଠାରୁ ଅଧିକତର ଶିଶୁ । ସେଥିପାଇଁ ବଡ଼ ବଡ଼ ଋଷିମାନେ ବର୍ଷୀୟାନ ଜନରେ ଧ୍ରୁବଙ୍କୁ ପ୍ରଣିପାତ କରିଥିଲେ । କର୍ମ ମାନବର ମାନବତ୍ୱ, କର୍ମ ହିଁ ଜୀବନ ।''

ଆତ୍ମଶକ୍ତିରେ ଯାହାର ବିଶ୍ୱାସ ଅଛି, ତା ପ୍ରତି କର୍ମ କେବେ ଦୁରୂହ ହେବ ନାହିଁ ।''

''ଅଧ୍ୟବସାୟ ଓ ନିରବଚ୍ଛିନ୍ନ ଯତ୍ନରେ କର୍ମର ଧାରା ଜଗେଇ ରଖିଲେ ସିଦ୍ଧି ଅସିଦ୍ଧି ସେଥିରେ ଭାସିଯିବ ।''

''ଲୋକ ଭୁଲ୍ କରି ଯେତେ ଶିଖେ, ଭଲ କରି ତେତେ ଶିଖେ ନାହିଁ ।''

"ନିତ୍ୟ ନିସ୍ପୃହ ଉଦ୍‌ଯୋଗ ବଡ଼ ବଡ଼ ଜୀବନର ବିଶେଷତ୍ୱ । ପ୍ରଥମ ଜୀବନର ମାଧୁର୍ଯ୍ୟ ଦୃଷ୍ଟିରେ ସମସ୍ତ ଏତ ସାବସ୍ତ ସାଧନା ଆରମ୍ଭ କରିଥାନ୍ତି । କ୍ରମେ ସେହି ସାଧନାକୁ ଅନୁଚିନ୍ତିତ ସ୍ୱାଦ ପୂର୍ବର ନବୀନତା ଧୀରେ ବିଚ୍ୟୁତ ଘଟେ । ପ୍ରତ୍ୟେକ ସ୍ଥଳରେ ଉଦ୍ଦୀପନା କମି ଯାଏ । ସର୍ବତ୍ର ଶକ୍ତି ସାଧନାରେ ନୈଷ୍ଠିକତା ହୋଇଥାଏ ।"

"ଆଳସ୍ୟ ବିଶ୍ରାମ ନୁହେଁ । ବିଶ୍ରାମ କର୍ମପାଇଁ ପ୍ରସ୍ତୁତ କରେ । ଅବସନ୍ନ ଶକ୍ତି-ଗୁଡ଼ିକ ସେଥିରେ ପ୍ରସନ୍ନ ଓ କର୍ମକ୍ଷମ ହୋଇଉଠେ । ଆଳସ୍ୟ ଶକ୍ତି ନ ଆଣି କ୍ଳାନ୍ତି ଆଣେ—ପ୍ରସାଦ ନ ଦେଇ ବିଷାଦ ଦିଏ ।"

"ଦୁଃଖ ବିପଦ ପ୍ରବଳର ଭୃତ୍ୟ, ଦୁର୍ବଳର ବିନାଶକାରୀ ।"

"ଦେବା ପାଇଁ ଏ ଦେହ, ଏ ଜୀବନ । ତୁମେ ନ ଦେବାକୁ ବସିଲେ ପ୍ରକୃତି ତୁମକୁ ବାଧ୍ୟ କରିବ । ଦିନେ ନା ଦିନେ ସର୍ବସ୍ୱ ଛାଡ଼ିଯିବାକୁ ହେବ—ତେବେ ଆଗରୁ ସେ ଅଭ୍ୟାସ କରିବ ନାହିଁ କାହିଁକି ?"

"ଶାନ୍ତିଧାରା'ର କଣ୍ଠରୁ ଉପଦେଶ ପାଳନରେ ଜୀବନରେ ଶାନ୍ତି ବିରାଜମାନ କରିବ । ବାସୁଦେବଙ୍କ ଉପଦେଶ ନାନା ଉକ୍ତିରେ ସରସ ହୋଇଅଛି । କିନ୍ତୁ ଚିନ୍ତାର ସମାନ୍ତରାଳ ଅଥବା ଏ ସବୁ ହୃଦୟର ଏକ ସୃଷ୍ଟି । ତାଙ୍କ ନିଷ୍କୃଷ୍ଟ ଚିନ୍ତାଧାରା ଏକ ପବିତ୍ର ତୀର୍ଥଧାରା, ଜୀବନର ଏକ ସଞ୍ଜୀବନୀ ମନ୍ତ୍ର ।

ବାସୁଦେବ ପଦ୍ୟକାର, ଜଣେ କବି ଭାବରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନର ଅଧିକାରୀ ନ ହୋଇ ପାରନ୍ତି, କିନ୍ତୁ ଜଣେ ଉତ୍କୃଷ୍ଟ କିଶୋର ସାହିତ୍ୟ ରଚୟିତା ଓ ଚିନ୍ତାଶୀଳ ପ୍ରାବନ୍ଧିକ ଭାବରେ ତାଙ୍କ ନାମ ଅମର ରହିବ, ଏହା ନିଃସନ୍ଦେହ ।

୧।୨।୭୭ ରେ ପ୍ରାୟ ୯୦ ବର୍ଷ ବୟସରେ ପୁରୀ ଡାକ୍ତରଖାନାରେ ତାଙ୍କର ମୃତ୍ୟୁ ହେଲା ।



# ଗୋବିନ୍ଦ ଚନ୍ଦ୍ର ଶୂରଦେଓ

ଜନ୍ମ—୧୮୮୪, ଅପ୍ରେଲ ୧୬ ତାରିଖ

ମୃତ୍ୟୁ—୧୯୩୯, ଜୁନ୍ ୧୫ ତାରିଖ

---

ତୁମେ ପ୍ରମାଣିଲ—
ଜୀବନ ଏକ ସଙ୍ଗୀତ
ଏକ ମହାନାଟକ ।

—କୁଞ୍ଜବିହାରୀ

ମାମୁଁ ନୟାଗଡ଼ ରାଜା ପ୍ରାଣତ୍ୟାଗ କଲେ; ଅପୁତ୍ରିକ । ନ୍ୟାୟତଃ ତାଙ୍କର ଉତ୍ତରାଧିକାରୀ ଗୋବିନ୍ଦଚନ୍ଦ୍ର । ରାଜାଙ୍କ ମୃତ୍ୟୁପରେ ରାଜସିଂହାସନରେ ଅଭିଷିକ୍ତ ହେବା ଲାଗି ସେ କଟକରୁ ନୟାଗଡ଼ ଯାତ୍ରା କଲେ । ସ୍ୱଭାବତଃ ସହଜ ସ୍ୱଳ୍ପସ୍ପୃହ, ଆଳସ୍ୟପରାୟଣ । ଭୂରିଶ୍ରବା ପାଶ ବାନ୍ଧୁ ବାନ୍ଧୁ ମହାଭାରତର ଯୁଦ୍ଧ ଶେଷ ହୋଇଗଲା ପରି ତାଙ୍କ ସବଳମ୍ବ ଓ ସାଡ଼ମ୍ବର ଯାତ୍ରା ନିଷ୍ଫଳ ହୋଇଗଲା । ପରିବର୍ତ୍ତେ ଅନ୍ୟ ଜଣେ ଦୂର ରାଜସମ୍ପର୍କୀୟଙ୍କୁ ଗାଦିରେ ବସାଇ ରାଜଣବ ଦକ୍ଷାରବ୍ୟବସ୍ଥା କରିଦେଲେ । ହାତମୁଠାକୁ ଆସୁଥିବା ରାଜସମ୍ପଦ ଭାଗ୍ୟର ଚକ୍ରାନ୍ତରେ ଅନ୍ୟତ୍ର ଚାଲିଗଲା । ବିଚିତ୍ର ବିଧାତାର ବିଚାର, ବିଚିତ୍ର ଜୀବନର ଲୀଳା; ନାଟକ ପରି ଏହା କୌତୂହଳପ୍ରଦ ଓ ଚିତ୍ତାକର୍ଷକ ।

ଚଢ଼ିଥିବା ସୁବର୍ଣ୍ଣପିଢ଼ିରୁ ହଠାତ୍ ଖସିପଡ଼ିଲା ପରି ଶୂରଦେଓଙ୍କୁ ଲାଗିଲା । କିନ୍ତୁ ସେ ବ୍ୟସ୍ତ ବା ବିଚଳିତ ହୋଇ ଭାଙ୍ଗି ପଡ଼ିଲେ ନାହିଁ । ରାଜଦଣ୍ଡ ଖସିଗଲା ବା ବିଧାତା ଛଡ଼ାଇ ନେଲା; କିନ୍ତୁ ତାଙ୍କ ହାତରୁ କଲମ ଛଡ଼ାଇ ନେବାର ଶକ୍ତି କାହାର ନ ଥିଲା । ରାଜସିଂହାସନ ବଦଳରେ ସେ ଅଗଣିତ ଲୋକଙ୍କ ହୃଦୟଗାଦି ଅଧିକାର କରି ବସିଲେ । ମହାଭାବର ତୀର୍ଥବାରିରେ ସେ ହେଲେ ଅଭିଷିକ୍ତ । ହୀରା, ମାଳା, ମୋତି,

ମାଣିକରେ ତାଙ୍କ ଶ୍ରୀଅଙ୍ଗ ମଣ୍ଡିତ ହେଲା ନାହିଁ, ସତ, କିନ୍ତୁ ମନ ତାଙ୍କର ଅକଳନୀ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ହୋଇଗଲା । ସାହିତ୍ୟର ଆସନ ଏକ ଚିରସ୍ଥାୟୀ ଆସନ, କାଳର ବାହାରେ ଏହାର ସ୍ଥିତି; ସାରା ଜୀବନ କେବଳ କେତେକ ପ୍ରଜାଙ୍କର ନୁହେ, ସମଗ୍ର ଓଡ଼ିଶାର ଗଭୀର ଶ୍ରଦ୍ଧା ପ୍ରୀତିଅର୍ଘ୍ୟରୂପେ ସେ ଲାଭ କରିଥିଲେ ।

ତରଳା ଆନ୍ଧ୍ର ପ୍ରଦେଶରେ ଅବସ୍ଥିତ ଓଡ଼ିଶାର ଏକ ବିଚ୍ଛିନ୍ନାଞ୍ଚଳ । ତାର ରାଜବଂଶରେ ୧୮୮୪ ଖ୍ରୀଷ୍ଟାବ୍ଦରେ ଗୋବିନ୍ଦଚନ୍ଦ୍ରଙ୍କ ଜନ୍ମ ।

କଲେଜ ଶିକ୍ଷା ପର୍ଯ୍ୟନ୍ତ ନୟାଗଡ଼ ରାଜା ରଘୁନାଥ ସିଂହ ମାନଧାତା ଶୂରଦେଓଙ୍କ ଅଭିଭାବକ ଥିଲେ । ପଣ୍ଡିତ ଗୋପବନ୍ଧୁ କଟକରେ ତାଙ୍କର ହାନିଲାଭ ବୁଝାଶୁଝା କରୁଥିଲେ ଓ ସେ ବାବତକୁ ତାଙ୍କର ପ୍ରାପ୍ୟ ୫୦ ଟଙ୍କା ହରିହରଙ୍କୁ ଦେଇ-ଦେବା ଲାଗି ରାଜାଙ୍କୁ ଅନୁରୋଧ କରିଥିଲେ । ହରିହର ( ପରେ ଆଚାର୍ଯ୍ୟ ହରିହର ) ଶୂରଦେଓଙ୍କ ସହପାଠୀ ଥିଲେ ।

କଲେଜିଏଟ୍ ସ୍କୁଲରେ ପଢ଼ିବାବେଳେ ସେ ସଙ୍ଗୀତ ଓ ନାଟକ ରଚନା କରୁଥିଲେ, ରାମଶଙ୍କରଙ୍କ 'କାଞ୍ଚିକାବେରୀ' ସ୍କୁଲରେ ଅଭିନୟ କରାଇଥିଲେ । ଫକୀରମୋହନଙ୍କ 'ଲଛମା'କୁ ମଧ୍ୟ ନାଟ୍ୟରୂପ ଦେଇ ମଞ୍ଚୋପଯୋଗୀ କରିଥିଲେ । ରେଭେନ୍ସା କଲେଜରେ ପଢ଼ିଲାବେଳେ ସେ ରାମରଞ୍ଜନ ମହାନ୍ତିଙ୍କ 'ଗୌଡ଼-ବିଜେତା'କୁ ନିର୍ଦ୍ଦେଶନା ଦେଇ ଅଭିନୟ କରାଇଥିଲେ । ପାତ୍ରପାତ୍ରୀଙ୍କୁ ବେଶ-ଭୂଷିତ କରିବାରେ ସେ ନିପୁଣତା ଅର୍ଜନ କରିଥିଲେ ।

ସେ ସ୍ୱୟଂ ଏକ ରାସଦଳ ଗଠନ କରିଥିଲେ ଓ ସେଥିଲାଗି ନାଟକମାନ ରଚନା କରିଥିଲେ । ସେ କଟକର ପ୍ରସିଦ୍ଧ 'ବାସନ୍ତୀ' ରଙ୍ଗମଞ୍ଚ ସହିତ ସଂପୃକ୍ତ ଥିଲେ ।

ଶୂରଦେଓ କେନ୍ଦ୍ରାପଡ଼ାର ପ୍ରଖ୍ୟାତ ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ଦ୍ୱିତୀୟ ନାତି ଶ୍ରୀ ଶ୍ୟାମସୁନ୍ଦରଙ୍କ କନ୍ୟା ଚନ୍ଦ୍ରପ୍ରଭାଙ୍କୁ ୧୯୧୧ ରେ ବିବାହ କରି ବିପୁଳ ସମ୍ପତ୍ତି ଓ କଟକ ଜଗନ୍ନାଥବଲ୍ଲଭର ଦ୍ୱିତଳ ସୌଧ ଲାଭ କରିଥିଲେ । ଏହି ଗୃହରୁ ହିଁ ସମଗ୍ର ଓଡ଼ିଶାରେ ସେ ନାଟ୍ୟସଙ୍ଗୀତର ଜୁଆର ଛୁଟାଇ ଦେଇ-ଥିଲେ ।

ସେ ଆଦୌ ସଞ୍ଚୟଶୀଳ ନ ଥିଲେ । ଥିଲେ ଏକାନ୍ତ ଅମିତବ୍ୟୟୀ ଓ ଅପରିଣାମଦର୍ଶୀ । ତେଣୁ ତାଙ୍କର ଶେଷ ଜୀବନ ଘୋର ଦାରିଦ୍ର୍ୟ ମଧ୍ୟରେ କଟିଥିଲା ।

ସାଧାରଣ ଭାବେ ଜୀବନଯାପନ କରିବା ଲାଗି ସନ୍ତାନମାନଙ୍କ ଲାଗି କିଛି ହେଲେ ସମ୍ପତ୍ତି ନ ଥିଲା ।

କେନ୍ଦ୍ରାପଡ଼ା ଓ କଟକ ଉଭୟ ତାଙ୍କର କର୍ମକେନ୍ଦ୍ର ଥିଲା । ଜୀବନର ଅର୍ଥ ତାଙ୍କ ବିଚାରରେ ନାଟକ । ନାଟକ ରଚନା, ଅଭିନୟ, ସଙ୍ଗୀତ ମଧ୍ୟରେ ନିମଜ୍ଜିତ ରହି ସେ ସଂସାରର ଅନ୍ୟାନ୍ୟ ବାସ୍ତବ ବିସ୍ମୃତ ହୋଇ ଯାଉଥିଲେ ।

ତାଙ୍କ ଦେଶାତ୍ମବୋଧକ ଗୀତସବୁ ସ୍ୱାଧୀନତା ଆନ୍ଦୋଳନ କାଳରେ ଗ୍ରାମେ ଗ୍ରାମେ ମୁଖରିତ ହେଉଥିଲା ।

ନୂତନ ସ୍ୱର ସଂଯୋଜନାରେ ସେସବୁ ନବ ଜାଗରଣର ଉଦ୍ଦୀପନା ତାଳି ଦେଉଥିଲା—

'ଅଙ୍ଗେ ଅଙ୍ଗେ ବହି ନବ ତେଜ
ସଙ୍ଗେ ସଙ୍ଗେ ମୋହି ମନୁଁ ହେଜ
ଅମ୍ବର ଚୁମ୍ବିତ କଣ୍ଠେ ଗାଅ
ଜନନୀର ଜୟ ଜୟ ସଙ୍ଗୀତ ।

ସାହିତ୍ୟ-ରାଜ୍ୟରେ ସହଜ କବିଯଶଲିପ୍ସୁ ଭାବଚୋରଙ୍କୁ ସେ ବ୍ୟଙ୍ଗ କରିଛନ୍ତି । ବ୍ୟଙ୍ଗାତ୍ମକ କବିତା ରଚନାରେ ସେ ସିଦ୍ଧହସ୍ତ ଥିଲେ—

'ମାଆ ସରସ୍ୱତୀ ଦେବୀ
ସାହା ହୁଅ ମତେ କପର ଜଗତେ
ମୁହିଁ ବଡ଼ କବି ହେବି ।
ଚୋରିବିଦ୍ୟାପଣ ଭଲ ମୁଁ ଜାଣେ
ସଙ୍ଗୀତସାଗରୁ ବଛି ପଦ ଘେନେ
ଗୁପ୍ତେ ଠାକୁର ସେବି ।'

ଖଡ଼ାଖିଆ, ବାହାଦୁରିଆ, ଫଟାରସିକ, ତୁଚ୍ଛାଫୁଲା ଲୋକଙ୍କ ପ୍ରତି ତାଙ୍କର ବ୍ୟଙ୍ଗ ମହତ୍ ସାହିତ୍ୟସ୍ତରକୁ ଉନ୍ନୀତ ହୋଇଅଛି—

''ଖଡ଼ାଖିଆ ବାବୁ ଢଙ୍ଗ
ମୁଁ ତ ଦେଖି ହୁଏ ବଡ଼ ଢଙ୍ଗରେ
ସଙ୍ଗାତ, ଖଡ଼ାଖିଆ ବାବୁ ଢଙ୍ଗ,
ଛେଲକାନା ଅଧା ଅଙ୍ଗୀର ଭଙ୍ଗୀକୁ
ନ ଲୁଚେ ଉପର ଜଙ୍ଘ ।

ଫଟା ପରବସ୍ତୁ ଆଖିରେ ଲଖିତ
ସ୍ୱପ୍ନାଣୀରେ କେତେ ରଙ୍ଗ !
ଜଡ଼ାତେଲମଠା କଥା ଟେକନଣକୁ
ଦାନକୁ ଫୁଲ ବାସଙ୍ଗ ।
ଥିଲଘର ପିଲ ପଣ ଫୁଲପଣ
ଗୃଲ କେତେ ଢଙ୍ଗ ଢଙ୍ଗ ।
ଅକାଣ୍ଡିଆ ରଙ୍ଗ ଅଧୂଆ ଗୁଡ଼ଲ
ଖଡକୁ ଶାଗ ପାଲଙ୍ଗ !
ତୋରଣି କଂସାରେ କଞ୍ଚା ପାଣି ପିଣ୍ଡି
ବାଜଇ ଜଳତରଙ୍ଗ !"

ଅଭିଜାତ ବଂଶରେ ଜନ୍ମିଥିଲେ ମଧ୍ୟ ଜଣେ ଧନୀ ବା ଦାମ୍ଭିକ ହେବା ଲାଗି ତାଙ୍କର ଆକାଂକ୍ଷା ନ ଥିଲା । ସେ ବଡ଼ଲୋକ ହେବାକୁ ଚାହୁଁ ନ ଥିଲେ; ସମସ୍ତଙ୍କ କାର୍ଯ୍ୟରେ ଯେପରି ଲାଗି ପାରିବେ, ଏହାହିଁ ତାଙ୍କର ଅନ୍ତର୍ଗତ ବାସନା ଥିଲା । ତାଙ୍କର ସେହି ଇଚ୍ଛା ଗୀତରେ ରୂପାୟିତ ହୋଇଅଛି—

'ଦୟାମୟ ଭଗବାନ ହେ
ମୋତେ ଜଗତରେ କର ସାନ ।'

'ମୋତେ ରସଭର ରସାଳ କର ନାହିଁ, ଶ୍ରେଷ୍ଠ ଧାନଟିଏ ମାତ୍ର କର । ଏଥିରେ ଜଗତର ପ୍ରାଣୀ ଅଧିକ ସନ୍ତୋଷ ଲାଭ କରେ ।

ମୋତେ ସମୁଦ୍ର କର ନାହିଁ, ସ୍ୱଚ୍ଛାଧାରର ଶ୍ରେଷ୍ଠ ଝରଣାଟିଏ ମାତ୍ର କର । ମୋ ଜଳ ପାନକରି ଲୋକେ ତୃଷା ଶାନ୍ତ କରନ୍ତୁ ।'

ଶୁଦ୍ଧଦେବ ମୋଟରେ ୨୨ ଖଣ୍ଡ ନାଟକ ରଚନା କରିଛନ୍ତି । ସେଗୁଡ଼ିକ ସେକାଳେ ଖୁବ୍ ଲୋକପ୍ରିୟ ହୋଇଥିଲା ଓ ଅକଲାନ୍ତୀ ସାହିତ୍ୟିକ ଓ ସାମାଜିକ କଲ୍ୟାଣ ସାଧନ କରିଥିଲା—ରାସଲୀଳା, ମାନଭଞ୍ଜନ, ଯୁଗଳମିଳନ, ସାକ୍ଷୀଗୋପାଳ, ଧ୍ରୁବ, ସୁଦାମା, ଗୋପେଶ୍ୱର ପୂଜା, ନରମେଧ ଯଜ୍ଞ, ନରକାସୁର ବଧ, ମାୟା ଶବରୀ, ଶ୍ରୀକୃଷ୍ଣ ମହିମା, ଉତ୍କଳ ରମଣୀ, ହିନ୍ଦୋଳ ବିଜୟ, ମିବାରପୁଜ, ମୁକୁନ୍ଦ ଦେବ, ପାଠୋଇ ବୋହୂ, ପେଟେଣ୍ଟ ମେଡ଼ିସିନ୍, ମହାନ୍ତ ଫାର୍ସ, ହାଡ଼ୁବାବୁ ଫାର୍ସ, ଡାଗବାଣ୍ଡ, କୁଳରକ୍ଷା ଇତ୍ୟାଦି । ସେ ଯାତ୍ରା ଓ ଥିଏଟର—ନାଟକର ଏକ ସମନ୍ୱୟ ସାଧନ କରିଥିଲେ; ପ୍ରଚଳିତ ଯାତ୍ରାକୁ ଉନ୍ନତତର କରିବା, ଆଧୁନିକ ନାଟକକୁ ରଙ୍ଗେତ୍ରକୁ ନେଇଯିବା ତାଙ୍କର ଲକ୍ଷ୍ୟ ଥିଲା ।

ଶୂରଦେଓ ଗ୍ରହଣ କଲ; ଅତୀତ ଗୌରବ ବର୍ଣ୍ଣନ କରି ସେ ଜାତିକୁ ଉଦ୍‌ବୁଦ୍ଧ କରିବାକୁ ଚେଷ୍ଟା କରିଛନ୍ତି । ନିମ୍ନୋକ୍ତ ସଙ୍ଗୀତର କରୁଣ ଓ ମଧୁର ଝଙ୍କାରରେ ଦିନେ ଓଡ଼ିଶାର ଗଗନ ପବନ ମୁଖରିତ ହେଉଥିଲା—

କହ କୃପାନିଧି କେତେ ମରଣାନ୍ତି କହିଲ ମୁଁ କାହାରେ କାନ୍ଦିବି
କହ କେଉଁ ରୋଷେ ଗ୍ରୀତ କ ହୃଦୟେ ବସି ଦୁଃଖଦ୍ୱାର ପିନ୍ଧିବି
କେତେ ବା ଦେଖିବ ପ୍ରକୃତି ରଙ୍ଗ
କେତେ ବା ଗଣିବ ସିନ୍ଧୁ ତରଙ୍ଗ
କେତେ ରବ ଛବ ନଚ ନଟେଶିବ କେତେ ଚିତ୍ରଗଣେ ବାନ୍ଧିବି ।
କାହିଁ ସେ ଶ୍ୟାମଳ ସୁନ୍ଦର ଶସ୍ୟ
କାହିଁ ସେ ସମୀର ହିଲ୍ଲୋଳ ହାସ୍ୟ
କାହିଁ ସେ କାନ୍ତ କାହିଁ ସେ ଶାନ୍ତ କେଉଁ ପ୍ରେମେ ପ୍ରାଣ ରଞ୍ଜିବ ।
କାହିଁ ସେ ବୀରଙ୍କ ବାଣ ଟଙ୍କାର
କାହିଁ ସେ ଭାରତୀ ବୀଣା ଝଙ୍କାର
କାହିଁ ସେ ଗରବ କାହିଁ ଗୌରବ କାହା ଦମ୍ଭେ ଦମ୍ଭ ବାନ୍ଧିବ ?
ପାରାବାର ବକ୍ଷେ ଗର୍ବ ସହିତ
ଭ୍ରମୁଥିଲା କେତେ ଖର୍ବ ବୋଇତ
କାହିଁ ସେ ବାଣିଜ୍ୟ କାହିଁ ସେହି ରାଜ୍ୟ କରମକୁ ସିନା ନିନ୍ଦିବ ।'
ବାଲି ପଛେ ଏକା ଦେଉଳ ଲୁଚ
ଗାଲ ପାଶ ମୋ କାହାଣୀ ଶୁଣୁଚ
ଚଉଦିଗ ଶୂନ୍ୟ କାହିଁ ଗତ ଅନ୍ୟ କହ କେଉଁ ବୁଦ୍ଧି ପାଢ଼ିବ ?

( ଉ: ସା: ୧୮ଶ ଭାଗ, ପଞ୍ଚ ସଂଖ୍ୟା )

ଶୂରଦେଓଙ୍କ ନାଟକାଭିନୟ ବିଷୟରେ ବିଶ୍ୱନାଥ କର ଓ ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ ।

"ଆମ୍ଭମାନଙ୍କ ସ୍ନେହାସ୍ପଦ ଯୁବକବନ୍ଧୁ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ଶୂରଦେଓ ସଙ୍ଗୀତାଦି କଳାରେ ସୁନିପୁଣ । ଉତ୍କଳର ଶିକ୍ଷିତ ସମାଜରେ, ବିଶେଷତଃ ଯୁବକମଣ୍ଡଳୀରେ ତାଙ୍କର ବିଶେଷ ଖ୍ୟାତି ଅଛି । ଯାତ୍ରା ସମ୍ପାରରେ ମନୋନିବେଶ କରି ଅଳ୍ପକାଳ ମଧ୍ୟରେ ସେ ଯେଉଁ କୃତିତ୍ୱ ଦେଖାଇଛନ୍ତି, ତାହା ସାମାନ୍ୟ ପ୍ରଶଂସାର କଥା ନୁହେ । ଆମ୍ଭେମାନେ ଆହୂତ ହୋଇଯାଇ ତାଙ୍କ 'ରାସଲୀଳା' ଓ 'ମାନଭଞ୍ଜନ' ଏ ଦୁଇଟି ଅଭିନୟ ଦେଖି ଅତ୍ୟନ୍ତ ପ୍ରୀତ ହୋଇଅଛୁ । ଯଥାର୍ଥରେ ଅଭିନୟ ବିଷୟରେ ବାଛିବାର କିଛି ନାହିଁ । ଗୀତଗୁଡ଼ିକର ଭାଷା ବିଶୁଦ୍ଧ ଅଥଚ

ସୁଲଳିତ, ରାଗରାଗିଣୀ ମନୋହର । ଅଭିନେତା ବାଳକମାନଙ୍କର ବେଶଭୂଷା, ଭାବଭଙ୍ଗୀ, କଥୋପକଥନ, ନୃତ୍ୟ ସବୁ ଚିତ୍ତାକର୍ଷକ । (ଉ: ସା: ଦ୍ୱାବିଂଶ ବର୍ଷ, ବିବିଧ ପ୍ରସଙ୍ଗ, ବିଶ୍ୱନାଥ କର)

"ଶୂରଦେଓ ମହାଶୟ ଏଥିମଧ୍ୟରେ 'ସାକ୍ଷୀ ଗୋପାଳ', 'ଧ୍ରୁବ ଚରିତ' ପ୍ରଭୃତିର ଅଭିନୟ କରାଇଛନ୍ତି । ଆମ୍ଭେମାନେ ସାକ୍ଷୀଗୋପାଳ ଅଭିନୟ ଦେଖି ପ୍ରୀତ ହୋଇଅଛୁ । ସାକ୍ଷୀଗୋପାଳର ଭୂମିକା ସ୍ୱରୂପ ଗୋଲୋକଧାମରେ ଶ୍ରୀକୃଷ୍ଣ ଓ ରାଧାଙ୍କ ପ୍ରସଙ୍ଗ ଉତ୍ଥାପିତ ହୋଇଅଛି; ସତ୍ୟ, କିନ୍ତୁ ତାହା ଅତି ବିଶୁଦ୍ଧ-ଭାବରେ । ସାକ୍ଷୀଗୋପାଳରେ ସ୍ଥାନେ ସ୍ଥାନେ ବର୍ତ୍ତମାନ ସମୟୋପଯୋଗୀ କଥୋପକଥନ ମଧ୍ୟ ଦିଆଯାଇଅଛି, ଯଥା—ଓଡ଼ିଆ ଜାତିକୁ ଯୁଦ୍ଧରେ ଯୋଗ ଦେବାଲାଗି ଉତ୍ସାହବାଣୀ, ସ୍ତ୍ରୀ ଜାତିର କର୍ତ୍ତବ୍ୟ, ବିଦ୍ୟାଶିକ୍ଷା ଓ ଆଦର୍ଶ ଇତ୍ୟାଦି । ଏତଦ୍ ଭିନ୍ନ ହାସ୍ୟରସର ମଧ୍ୟ ଅଭାବ ନାହିଁ । ମିଷ୍ଟାନ୍ନ ବିକ୍ରେତା ବାଳକ ତାର ଅଭିନୟ ସ୍ୱାଭାବିକ ଭାବରେ ଦେଖାଇଥିଲା । ଶୂରଦେଓ ମହାଶୟ ଗୀତଗୁଡ଼ିକ ସରଳ ଭାଷାରେ ଓ ନୂତନ ଛନ୍ଦରେ ରଚନା କରିଛନ୍ତି ।"

( ଚିନ୍ତାମଣି ଆଚାର୍ଯ୍ୟ, ଉ: ସା: ତ୍ରୟୋବିଂଶତି ଭାଗ )

ନାଟକାଭିନୟ ଯିଏ ଶୂରଦେଓଙ୍କୁ ବାସ୍ତବ କରିଦେଇଥିଲା । ଏଇ ବାସ୍ତବ ମହାନ ଭାବପ୍ରବଣତା ଧର୍ମପ୍ରାଣ, ଦେଶଭକ୍ତ ଓ ସମାଜ-ସଂସ୍କାରକ ହେବା ଦିଗରେ ଯିଏ ତାଙ୍କୁ ଉନ୍ମୁଖ କରିଥିଲା ।

ଉତ୍ତରାଧିକାରୀଙ୍କ ଲାଗି ସେ କିଛିହେଲେ ସମ୍ପତ୍ତି ରଖିଯାଇ ନ ଥିଲେ ବି ଉତ୍କଳୀୟମାନଙ୍କ ଲାଗି ସାଇତି ଯାଇଥିଲେ ପ୍ରଚୁର ସାହିତ୍ୟ ସମ୍ପଦ । ତାର ତାତ୍କାଳିକ ମୂଲ୍ୟ ଥିଲା ପ୍ରଚୁର ।

ସେ ଏକାଧାରରେ ଥିଲେ କବି, ନାଟ୍ୟକାର, ସଙ୍ଗୀତଜ୍ଞ, ଚିତ୍ରଶିଳ୍ପୀ । ନାଟକାଭିନୟର ସଫଳତା ଲାଗି ସେ ସବୁକିଛି କରିବାର ଦକ୍ଷତା ଅର୍ଜନ କରିଥିଲେ—ଡ୍ରେସିଂ, ପେଣ୍ଟିଂ, ବାଦ୍ୟ ବାଦନ, ଅଭିନୟ, ନୃତ୍ୟକଳାର ବହୁ ବିଭାବର ଏକତମ ରୂପ ଥିଲେ ସେ । ଏ ବିଶେଷଜ୍ଞ ଯୁଗରେ ତାଙ୍କପରି ଜଣେ ବହୁ-ବିଦ୍ୟାବିତ୍ ଦୁର୍ଲଭ ।

୧୯୩୯, ଜୁନ ମାସ ୧୬ ତାରିଖରେ ତାଙ୍କର ତିରୋଧାନ ହେଲା । ତାଙ୍କ ପ୍ରୟାଣ ସଙ୍ଗେ ସଙ୍ଗେ ସେ ଯୁଗର ଯାତ୍ରା ଓ ନାଟକର ଶ୍ରେଷ୍ଠ ସମନ୍ୱୟପୁରୁଷଙ୍କର ଯେପରି କି ତିରୋଧାନ ଘଟିଲା !



# * ବୈଷ୍ଣବ ପାଣି

ଜନ୍ମ—୧୮୮୨, କୁମାର ପୂର୍ଣ୍ଣିମା, ଗୁରୁବାର
ମୃତ୍ୟୁ—୧୯୫୬, ବୈଶାଖ ଅମାବାସ୍ୟା

ଓଡ଼ିଶାର ଅଗଣିତ କବିଙ୍କର ନାମ ଅଜ୍ଞାତ ଯବନିକାର ଅନ୍ତରାଳରେ ଲୁଚିଗଲା—ପାଲାର କବି, ପାଠୁଆ ଓ ଦାସକାଠିଆର କବି, ଦଣ୍ଡନାଟ, ଘୁମୁରାନାଟ, କରମା ନାଟର କବି, ସଖୀନାଟ, ଚଇତିଘୋଡ଼ାନାଟର କବି, ସର୍ବୋପରି ଲୀଳାନାଟ ସୁଆଙ୍ଗ ପାର୍ଟି ଓ ଯାତ୍ରାର କବି । ଯେଉଁମାନେ ପତ୍ର ପତ୍ରିକାରେ ଲେଖିଲେ, ପୁସ୍ତକ ଲେଖି ଛାପା କଲେ, ସେମାନଙ୍କ ନାମ ଲିପିବଦ୍ଧ ହୋଇଗଲା; ପାଣ୍ଡୁଲିପି ଓ ଢେଦାର ଲୋପ ଓ ଗାୟକମାନଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଅଧିକାଂଶ ଲୋକକାବ୍ୟ—କବିମାନଙ୍କର ନାମ ଓ ଖ୍ୟାତି ସ୍ମୃତିପଟରୁ ଲିଭିଗଲା ।

ତେବେ ସେମାନେ ଥିଲେ 'ଗଣ'ର ମନୋରଞ୍ଜକ, ପଲ୍ଲୀରେ ବିଦଗ୍ଧ ବାତାବରଣର ସ୍ରଷ୍ଟା, ସାମାଜିକ ଶୃଙ୍ଖଳା ରକ୍ଷାର ମୁଖ୍ୟନିମିତ୍ତ ଓ ସର୍ବୋପରି ଲୋକଶିକ୍ଷକ । ଜୀବନକୁ ସରସ ସୁନ୍ଦର ରଖିବାରେ ସେମାନଙ୍କ ଦାନ ଥିଲା ଅକଳନ୍ତି । ଚାଲିଗଲେ ଚହଳ ପଡ଼ୁଥିଲା 'କବି' 'କବି' । ସେମାନେ ଜନସାଧାରଣଙ୍କ ଅକୁଣ୍ଠ ଶ୍ରଦ୍ଧାଭକ୍ତି ପାଉଥିଲେ—ଏହା ହିଁ ହୋଇଥିଲା କବି ପ୍ରତିଭାର ସ୍ୱତଃ ସ୍ୱୀକୃତି । ସାହିତ୍ୟ ଏକାଡେମୀ ବା ଜ୍ଞାନପୀଠ ପୁରସ୍କାରର ପରିଧିର ମଧ୍ୟକୁ ନ ଆସିଲେ ବି ଆନନ୍ଦ ଜୟଧ୍ୱନି ଅଗଣିତ ମୁଖର ପ୍ରଶଂସା ବଚନ ସେମାନଙ୍କ ହୃଦୟକୁ ଝଙ୍କୃତ କରି ରଖିଥିଲା । ଯାଦୁଘର ବା କୌଣସି ପୋଥିପାଠାଗାର ସେମାନଙ୍କ ଜୀର୍ଣ୍ଣ ବା ଛିନ୍ନ ପାଣ୍ଡୁଲିପିର ଯତ୍ନ ନେଇ ନାହିଁ ବା କୌଣସି ସଂଗ୍ରାହକ ସେମାନଙ୍କ ନାଟକ, କବିତା ବା ଗୀତାବଳୀ ଲୋକମୁଖରୁ ସଂଗ୍ରହ କରିନାହିଁ । ପରମାନନ୍ଦ ମିଶ୍ର, ଜଗନ୍ନାଥ ପାଣି, ଗୋପାଳ ଦାସ ପ୍ରଭୃତି ବହୁ ଯାତ୍ରାକବିଙ୍କ ମଧ୍ୟରେ ବୈଷ୍ଣବ ପାଣି ବରଂ ଅଧିକ ଭାଗ୍ୟବାନ ।

---

* ବୈଷ୍ଣବ ଜୟନ୍ତୀରେ 'ରେଡ଼ିଓ ଟକ'—କୁମାର ପୂର୍ଣ୍ଣିମା, ୧୯୭୬

ଦେଶରେ ସୁପରିଚିତ ହେଲେ ବି ନବଦଗ୍ଧ ମହଲ ତାଙ୍କୁ କବିରୂପେ ଚିହ୍ନି ପାରି ନ ଥିଲା । ‘କୃତ ଅର୍ଚ୍ଚନା ସମ୍ବାଦ’ ତରଫରୁ ଗଳ୍ପ ପୁସ୍ତିକା ୧୯୬୭ ରେ ପ୍ରକାଶିତ ହେଲାପରେ ନବଦଗ୍ଧ ଦୃଷ୍ଟି ତାଙ୍କ ପ୍ରତି ଆକୃଷ୍ଟ ହେଲା । କୋଠପଦାରେ କବିଜୟନ୍ତୀ ପାଳନ, କେନ୍ଦ୍ରରେ ନବନିର୍ମିତ ଗୀତାଭବନସ୍ଥ, ୧୯୬୮ ରେ ‘ଗଳ୍ପ ବୈଷ୍ଣବପାଣି’ ଗ୍ରନ୍ଥାବଳୀ ପ୍ରକାଶ, ‘ଉତ୍କଳସାହିତ୍ୟ ସମାଜ’ ପକ୍ଷରୁ ଶ୍ରୀରାମଚନ୍ଦ୍ର ଭବନରେ ତାଙ୍କ ପ୍ରତିକୃତି ଉନ୍ମୋଚନ ପାଣିକବିଙ୍କ ସ୍ମୃତିକୁ ଉଜ୍ଜ୍ୱଳିତ କଲା । ଏବେ ଫିଟିଗଲା ଗୋଟିଏ ନୂଆ ବାଟ । ସାହିତ୍ୟର ପଂକ୍ତି-ଭୋଜନରେ ଯୋଗ ଦେଲେ ଗ୍ରାମୀଣ ଓ ନାଗରିକ କବି ସମସ୍ତେ । ‘ଉତ୍କଳ ସାହିତ୍ୟ ସମାଜ’ ହେଲା ସେମାନଙ୍କର ଏକ ମିଳନପୀଠ ।

ପାଣିଙ୍କ ଜନ୍ମସ୍ଥାନ କଟକ ଜିଲ୍ଲାର କୋଠପଦା ଗ୍ରାମ, ବିରୂପା ନଦୀ କୂଳରେ ଅବସ୍ଥିତ । ୧୮୮୨ ଖ୍ରୀଷ୍ଟାବ୍ଦରେ କୁମାର ପୂର୍ଣ୍ଣିମା ତିଥିରେ ତାଙ୍କର ଜନ୍ମ । ପ୍ରକୃତି ଯେପରି କି ଆନନ୍ଦରେ ସେଦିନ ହସି ଉଠିଥିଲା । ତାଙ୍କର ମୃତ୍ୟୁ ୧୯୫୬ ଖ୍ରୀଷ୍ଟାବ୍ଦରେ ଅମାବାସ୍ୟା ତିଥିରେ । ପ୍ରକୃତି ଯେପରି କି ସେଦିନ ବିଷଣ୍ଣ, ମ୍ରିୟମାଣ ହୋଇ ଉଠିଥିଲା । ପ୍ରକୃତିର ଏହି ଇଙ୍ଗିତ ଅଭିବ୍ୟକ୍ତିରେ ମନୁଷ୍ୟର ମନର ଭାବକୁ ପ୍ରକାଶ କରିଥିଲା । ଜଗନ୍ନାଥ ଦାସଙ୍କ ପରେ ସାହିତ୍ୟକୁ ତାଙ୍କ ପରି ସାର୍ବଜନୀନ ରୂପ ଆଉ କିଏ ଦେଇପାରିଥିଲେ ? ତେଣୁ ତାଙ୍କ ବିୟୋଗରେ ପ୍ରକୃତି ଓ ଜନତାର ଦୁଃଖ ।

ଅତି ଦୁଃଖୀ ବ୍ରାହ୍ମଣ ପରିବାରଟିଏ । ପିତା ଆତ୍ମମୃତିରେ ପଞ୍ଚୁଆତି ବା ଏକୋଇଶା ପାଳିବାକୁ ଅକ୍ଷମ ଥିଲେ । ଦୁଇବେଳା ଦୁଇମୁଠା ଆହାର ଯୋଗାଇବା ତାଙ୍କ ପକ୍ଷେ ସମ୍ଭବ ହେଉ ନ ଥିଲା । ତେଣୁ କିଶୋର ବୟସରେ ସେ ପୁଅକୁ କୋଠପଦା ମଠ ମହନ୍ତଙ୍କ ପାଖେ ଛାଡ଼ି ଦେଇଥିଲେ । ପିଲାଟି ମଠ ବଗିଚାରୁ ଫୁଲ ତୋଳିଆଣି ଠାକୁରଙ୍କ ଲାଗି ମାଳା ଗୁନ୍ଥି ଦେଉଥିଲା, ଚନ୍ଦନ ଘୋରି ଦେଉଥିଲା, ଅଉ ଯାହା ଛୋଟ୍‌କୁଆ କାମ ମହନ୍ତ ବତାଉଥିଲେ, କରୁଥିଲା ।

ପାଣିଙ୍କର ପହିଲି ନାମ ଥିଲା ଶତ୍ରୁଘ୍ନ । ପିତାଙ୍କର ପରମ ଶତ୍ରୁ ଥିଲା ଦାରିଦ୍ର୍ୟ । ପୁଅ ଦାରିଦ୍ର୍ୟ ଦୁଃଖ ଦୂର କରିବ, ହୁଏତ ତାଙ୍କର ବିଶ୍ୱାସ ଥିଲା, କିନ୍ତୁ ଏ ନାମଟିକୁ ତାଙ୍କୁ ପରିବର୍ତ୍ତନ କରିବାକୁ ହୋଇଥିଲା । ଘୋର ବ୍ୟାଧିରେ ଥରେ ଶତ୍ରୁଘ୍ନର ଜୀବନାଶା ହରାଇ ସେ ଠାକୁରଙ୍କ ନାମରେ ପାଣି ଛଡ଼ାଇଦେଲେ । ସେ ଠାକୁର

କୃଷ୍ଣ ବା କୃଷ୍ଣ । ବୈଷ୍ଣବଙ୍କ ପାଖେ ଯମ ଭରସି ପଶିପାରେ ନାହିଁ । ଶେଷରେ କଷ୍ଣ ହେଲେ ବୈଷ୍ଣବ ନାମରେ । ସେହି ନାମରେ ସେ ଓଡ଼ିଶାରେ ପ୍ରତିଷ୍ଠିତ ହେଲେ ।

କେଉଁଟପଦାର ମହାନ୍ତ ମହାରାଜ ଜଣେ ସାହିତ୍ୟ ଓ ସଙ୍ଗୀତପ୍ରେମୀ ବ୍ୟକ୍ତି ଥିଲେ । ତାଙ୍କ କର୍ତ୍ତୃତ୍ୱରେ ଗୋଟିଏ ଯାତ୍ରାଦଳ ପରିଚାଳିତ ହେଉଥିଲା । ସେ ସମୟରେ ବୈଷ୍ଣବଙ୍କ ଆଗ୍ରହ ଦେଖି ମହାନ୍ତ ଡେଭିସ୍ ସ୍କୁଲରେ ତାଙ୍କ ନାମ ଲେଖାଇ ଦେଲେ, ସ୍କୁଲର ହେଡମାଷ୍ଟର ମଧ୍ୟ ସେ ସମୟରେ ଯଥାସମ୍ଭବ ଚେଷ୍ଟିତ ହେଲେ । କିନ୍ତୁ ଆତ୍ମଚେଷ୍ଟା ବିନା କିଛି ହୋଇପାରେ । ବୈଷ୍ଣବ ଶାନ୍ତଶିଷ୍ଟ ପ୍ରକୃତିର ନ ଥିଲେ, ମନ ଧ୍ୟାନଦେଇ ଅଧ୍ୟୟନରେ ଅଭିନିବିଷ୍ଟ ହୋଇପାରିଲେ ନାହିଁ । ଷଷ୍ଠ ଶ୍ରେଣୀରୁ ତାଙ୍କୁ ସ୍କୁଲ ଛାଡ଼ିବାକୁ ହୋଇଥିଲା । ଦାନାକନାର ସମସ୍ୟା ତାଙ୍କ ଜୀବନକୁ ପରିଣତ କରିଥିଲା ଏକ ଯୁଦ୍ଧରେ । ତାଙ୍କୁ କେତେବେଳେ ଗୋରୁଚରାଳି, କେତେବେଳେ ବା ବେଶ୍ୟାସେବୀ ହେବାକୁ ପଡ଼ିଥିଲା । ସ୍କୁଲର ଗତାନୁଗତିକ ଶିକ୍ଷାରୁ ବଞ୍ଚିତ ହେଲେ ବି ବ୍ୟକ୍ତିଗତ ସାଧନା ତାଙ୍କର କିଛି ନ ଥିଲା । ସେ ମୁଖସ୍ଥ କରୁଥିଲେ 'ଅମର କୋଷ', ପଢ଼ୁଥିଲେ ଉପେନ୍ଦ୍ର ଅଭିମନ୍ୟୁଙ୍କ ଛାନ୍ଦ । ସାପ ବା ଲଣ୍ଠନ ଅଭାବରୁ ତାଙ୍କୁ ଚୁଲି ଆଲୁଅରେ ହିଁ ପଢ଼ିବାକୁ ହୋଇଥିଲା । ଯେଉଁ ସାମାନ୍ୟ ବିଦ୍ୟା ସେ ହାସଲ କରିଥିଲେ, ତାହା ତାଙ୍କ କବିତ୍ୱ ଶକ୍ତିକୁ ବିକାଶ ଦେଇଥିଲା । ଶ୍ରମ ଜୀବନ-ସଂଗ୍ରାମ ଫଳରେ ସେ ଜନସମାଜର ନିକଟ ସମ୍ପର୍କରେ ଆସିଥିଲେ ଓ ସେମାନଙ୍କ ଗତିବିଧି ଭଲଭାବେ ପରଖି ନିରେଖି ପାରିଥିଲେ । ଅନୁଭୂତିର ନିବିଡ଼ତା ଯୋଗୁଁ ହିଁ ତାଙ୍କ ଗୀତ ସବୁ 'ଗଣ' ଆତ୍ମାର ଏତେ ନିକଟବର୍ତ୍ତୀ ହୋଇ ପାରିଥିଲା ।

ସେ ଧର୍ମଦ୍ରୋହୀକୁ ଛାଡ଼ି ରଜକକନ୍ୟା 'ହିର' ପ୍ରେମରେ ମାତି ଉଠିଥିଲେ । ଏ ଅବସ୍ଥାରେ ଗାଁରେ ଘର କରି ରହିବା ତାଙ୍କ ପକ୍ଷେ ସମ୍ଭବ ହେଲା ନାହିଁ । ସେ ହେଲେ ସମାଜଚ୍ୟୁତ । ବହୁ ଲାଞ୍ଛନା, ଅପମାନ ମଧ୍ୟରେ ସେ ନିଜକୁ ଅବିଚଳିତ ରଖି ସାଧନା ମାର୍ଗରେ ଅଗ୍ରସର ହୋଇଥିଲେ ।

ତାଙ୍କ କଣ୍ଠସ୍ୱର ମଧୁର ଓ ବାକ୍‌ଭଙ୍ଗୀ ଅପୂର୍ବ ଥିଲା, ତେଣୁ ପାଲାଦଳରେ ଯୋଗଦେଇ ଗାୟକ ଭାବରେ ସେ ପ୍ରତିଷ୍ଠା ଅର୍ଜନ କରିଥିଲେ । ସେତେବେଳେ ସ୍ୱାଧୀନଯୁଗର ସାହିତ୍ୟ ସହିତ ନିବିଡ଼ଭାବେ ପରିଚିତ ହେବାର ସୁଯୋଗ ତାଙ୍କୁ ମିଳିଥିଲା । ପାରିବାରିକ ଅସୁବିଧାରୁ ପାଲି ଛାଡ଼ି ୪ ଟଙ୍କା ବେତନରେ ଯାତ୍ରା ଓସ୍ତାଦ୍ ହୋଇଥିଲେ । କୋଠପଦା ଯାତ୍ରାଦଳର ତତ୍ତ୍ୱାବଧାରକ ଭାବେ ସେ ମହାନ୍ତଙ୍କ ବିଶ୍ୱାସଭାଜନ ହୋଇଥିଲେ । ତାଙ୍କ ଅଧ୍ୟବସାୟ ଯୋଗୁଁ ଏହି ଦଳ ଖୁବ୍ ନାମ

କରେଇଥିଲ, କବିତା ପରେ କବିତା ଆସୁଥିଲା । ସେଠାରୁ ଅନେକଟା ଦଳର ପ୍ରାୟ ଥିଲା । ଏଣେ ଦେବେନ୍ଦ୍ରନାଥଙ୍କର ବହୁ ସ୍ୱର୍ଗୀୟ ରଙ୍ଗ ମନ୍ଦିରବାସୀଙ୍କ ଉପରେ ବନ୍ଧନ ଏକ ବନ୍ଧୁର କରିଥିଲା ।

ଯାହା ହେଉ, ବହୁ ଜନସମାଗମ ହେବା ଫଳରେ ଶୃଙ୍ଖଳାର ଏକ ସମସ୍ୟା ହୋଇଥିଲା । ମାଜିଷ୍ଟ୍ରେଟ୍ ସୁଜନ୍ମ ଆଦେଶ କଲେ ଏବଂ ଯାତ୍ରା ବନ୍ଦ କରି ଦେଇଥିଲେ । ଏହି ଅଭିଜ୍ଞତା ନେଇ ସେ 'ଶ୍ରୀ ଜଗନ୍ନାଥଙ୍କୁ' ସମ୍ବୋଧି ଲେଖିଲେ— ତାଙ୍କର କରୁଣ ଶୋକ ଗୀତିକା—

'ନିତ୍ୟ ବଣୋଦବନାସ ହେ, ଯାହା କେବେ ଦେଖିଲି ନେତ
ନାହିଁ ମୋର ଆଶା ଆଉ କ ଦେଖିବ
କେବେ ତ୍ରିଭଙ୍ଗ ମୂର୍ତ୍ତିକି
ଜନ୍ମଥିଲ ଯେଉଁ ଆନନ୍ଦ ପ୍ରଦୀପ ଏତୋରେ ବାରେବଚନ
ହେ ଗୀତାଭକ୍ତେଶ୍ୱର, ଜାଣେ ତା ଆଜ
ଲୋଭ ଦଣ୍ଡ ଶିତନ
ପଳାଇ ଯିବାକୁ ପଥ ବନ୍ଧୁ ତବ ବଇଷ୍ଣବ ବନଜେ ।'

ତା ପରେ ବହୁ ଯାତ୍ରାଦଳର ସଙ୍ଗଠକ ଭାବେ ବୈଷ୍ଣବ ସୁନାମ ଅର୍ଜନ କରିଥିଲେ । କଲିକତାରେ ଗୋପାଳ ଦାସଙ୍କ ଦଳ ସହିତ ତାଙ୍କର ପ୍ରତିଯୋଗିତା ହୋଇଥିଲା । ସେ ସେଠି ସେତେବେଳେ ଚାରିଶ ଅଠର ଟଙ୍କା ଲାଭ କରିଥିଲେ, ତାଙ୍କ ଉପରେ ବହୁ ପ୍ରଶଂସା ବୃଷ୍ଟି ହୋଇଥିଲା । ଗୋପାଳ ଦାସଙ୍କୁ ହରାଇବା ପରେ ସେ ବାଳକୃଷ୍ଣ ମହାନ୍ତିଙ୍କ ସଙ୍ଗେ ମୁଣ୍ଡ ଫଟାଇଥିଲେ । ବାଳକୃଷ୍ଣ ତାଙ୍କୁ ଉତ୍ତ୍ୟକ୍ତ କରିବା ଲାଗି 'ପାଣି ଧୋବଣୀ' ନାମ ରଚନା କରିଥିଲେ । ବୈଷ୍ଣବ ଅନ୍ୟ ଏକ ଆସରରେ ତାର ଜବାବ୍ ଦେଇ ସୂଚାଇଥିଲେ ଯେ "ପାଣିକୁ ଧୋବଣୀ ଓ ଧୋବଣୀକୁ ଗ୍ରହ ପାଣି ଲଦିପାରିବ ନାହିଁ ।" ବାଳକୃଷ୍ଣଙ୍କ ଗୀତାଭିନୟରେ ଗୀତ ସ୍ୱଳ୍ପ, ସଂଳାପ ଅଧିକ ଥିଲା । ଏଣୁ ଥିଏଟର ନାଟକକୁ ଆଂଶିକଭାବେ ଅନୁସରଣ କରୁଥିଲା । ଗୀତ ରଚନାରେ ବାଳକୃଷ୍ଣ ପାଣିଙ୍କ ସହିତ ଟକ୍କର ଦେଇ ପାରୁ ନ ଥିଲେ ।

ଘର ପ୍ରତ୍ୟେକ ବନ୍ଧୁଙ୍କ ଭିତରରେ ଥିଲାବେଳେ ବି ଦାରିଦ୍ର୍ୟ ତାଙ୍କର ସହଚର ଥିଲା । ଯଶସ୍ୱୀ ତାଙ୍କ ସ୍ୱଭାବବିରୋଧୀ ଥିଲା । ମିଳିଲେ ବାଘର ଆହାର, ନ ମିଳିଲେ ପବନ ଆହାର—ଏ ତାଙ୍କର ଧାରା ଥିଲା । ଶେଷ ଜୀବନରେ ତାଙ୍କର ବଳ ନ ଥିଲା, ଉକଟ ଦାରିଦ୍ର୍ୟ ମଧ୍ୟରେ ଦିନ କଟୁଥିଲା । ସରକାରୀ ସାହାଯ୍ୟ ଯାହା ମିଳୁଥିଲା, ତାହା ସମୁଦ୍ରକୁ ଶଙ୍ଖେ ପରି । ଚାଦର୍ ପେନ୍, ଚକଣ୍ଟି, ଚକଣ୍ଟା ସବୁଅଡ଼କୁ

କାରଣ ହେଉଥିଲା । ।। ପ୍ରିୟା 'ହର'ର ମୃତ୍ୟୁରେ ତାଙ୍କ ଜୀବନ ଏକାନ୍ତ କାତର ଓ ଦୁଃସହ ହୋଇ ଉଠିଲା । ୭୨ ବର୍ଷ ବୟସରେ ୧୯୫୭ ଖ୍ରୀଷ୍ଟାବ୍ଦରେ ବୈଶାଖ ଅମାବାସ୍ୟା ଦିନ ଶତାଧିକ ଯାତ୍ରାନାଟକ, ଫାର୍ସର ରଚୟିତା, ବହୁ ସଙ୍ଗୀତ ଓ ଚଉତିଶା, ଚଉପଦୀର ଲେଖକ ବୈଷ୍ଣବ ପାଣିଙ୍କର ମୃତ୍ୟୁ ହେଲା ।

କବି ବିଚିତ୍ର ସାହିତ୍ୟଶୈଳୀ ଓ ଲୋକଶୈଳୀ ମଧ୍ୟରେ ଏକ ସମନ୍ୱୟ ସ୍ଥାପନ କରିଥିଲେ । ଦଣ୍ଡନାଟ, ପାଲା ପ୍ରଭୃତି ଲୋକନାଟ୍ୟ ମଧ୍ୟରେ ଯାତ୍ରା ସବୁଠାରୁ ଲୋକପ୍ରିୟ ହୋଇ ଉଠିଥିଲା । ଏଥିରେ କିଛି ଦୁର୍ବୋଧ ନ ଥିଲା । ଯାତ୍ରା ଗୀତ ଶୁଣିଲା ମାତ୍ରେ ମନରେ ଗ୍ରୁପି ହୋଇଯାଉଥିଲା । ମଇଁଷିଆଳ ପୋକ ମଇଁଷି ପିଠିରେ, ତାଳମାକୁଡ଼ ଖେଳାଳି ଗଛ ଡାଳରେ, ହଳିଆ ଧାନକ୍ଷେତରେ, ନାହୁଣୀ ଡଙ୍ଗାରେ, ବାଟୋଇ ବାଟରେ, ରସିକ ଗାଧୁଆ ତୁଠରେ ପାଣି କବିଙ୍କ ଯାତ୍ରା ଗୀତ ମନଖୁସିରେ ଗାଉଥିଲା । ଏହାର ଛନ୍ଦ ସରଳ ଓ ଏକାନ୍ତ ଲୋକୋପଯୋଗୀ ଥିଲା । ଗ୍ରାମାଞ୍ଚଳରେ ତୁଣ୍ଡେ ତୁଣ୍ଡେ ବୋହିଯାଉଥିଲେ ସେ । ହାଣ୍ଡିଶାଳରେ ଗୁଣ୍ଡୁ ଗୁଣ୍ଡୁ ସ୍ୱରରେ ଗାଉଥିଲା ବୋହୂ । କୁମାରୀମାନେ 'ଦୋଳି', 'ଫୁଲ ବଉଳବେଣୀ' ଗୀତ ସହିତ ଗାଉଥିଲେ ପାଣିଙ୍କ ଯାତ୍ରାଗୀତ । ପଲ୍ଲୀର ନରନାରୀ ନାଗ୍ର ବୁଝି ନ ଥିଲେ ଥିଏଟର ବା ସିନେମା । ଯାତ୍ରା ଗୀତରେ ହିଁ ତାର ମର୍ମ ସ୍ପନ୍ଦିତ ହେଉଥିଲା । ସାହିତ୍ୟକୁ ପଲ୍ଲୀ ପଲ୍ଲୀରେ ପହଞ୍ଚାଇ ଦେବା ଥିଲା ବୈଷ୍ଣବଙ୍କର ଏକ ବଡ଼ କୃତିତ୍ୱ । ଉପେନ୍ଦ୍ର ଓ ତତ୍ପରବର୍ତ୍ତୀ ରାଧାନାଥ ପ୍ରମୁଖ ସାହିତ୍ୟରେ ସାଧାରଣଙ୍କ ପ୍ରବେଶ ପ୍ରାୟ ନହିଁ ଥିଲା । ବୈଷ୍ଣବଙ୍କ ଲେଖନୀର କୁହୁକ ସ୍ପର୍ଶରେ ସରସ୍ୱତୀ ସର୍ବସେବ୍ୟା ହୋଇଗଲେ ।

ସେ ଥିଲେ ଏକାନ୍ତ ଭାବେ ସମାଜସଚେତନ । ତାଙ୍କ ଲେଖାରେ ବାସ୍ତବ ଜୀବନର ଚିତ୍ର ଏକାନ୍ତ ସଜୀବ ହୋଇଅଛି । ଟାଉଟରଙ୍କ କାରସାଦ ଯୋଗୁଁ ଗାଉଁଲି ଲୋକେ ଜେଲଜେଲନ୍ତ ହେଉଥିଲେ । ତାଙ୍କ ମୁଦ୍ରିରେ ଟାଉଟରର ଚରିତ୍ର ଅଙ୍କିତ ହୋଇଅଛି—

"ଭାଇ ମରୁ ନାହାନ୍ତି ଏ ପର ଘରଭୁଡ଼ା
ପେଷା କରି ଅଛନ୍ତି ନାଡ଼ କଲଯୋଡ଼ା
ଦାଣ୍ଡେ ହୋଇ ଭଲଲୋକ କପଟେ ଲୋକଙ୍କୁ ଫାଙ୍କି
ମିଛେ ମିଛେ ମେଡ଼ୁଥାନ୍ତି ଜଣ ଯୋଡ଼ା
ଦେଲେ ଟଙ୍କେ ମଣେ କେହୁ ମିଛ ସାକ୍ଷୀ ଦିଅନ୍ତି ଯାଇ
ଧର୍ମ ଅଦାଲତ ପୀଠେ ହୋଇ ଛୁଡ଼ା ।"

କବିଙ୍କ ତାଙ୍କ ହାସ୍ୟରସ ପରିବେଷଣରେ ସମ୍ପୃକ୍ତ ନାଟକର ବିଦୂଷକଙ୍କୁ ବଳି ଯାଇଥିଲା । ଲୋକଙ୍କ ଭିତରେ ଯେଉଁ ପ୍ରକାର ଅନ୍ଧ ତାମସ ରହିଥିଲା, ସେ ତାକୁ

ସରସ ରୂପ ଦେଇଥିଲେ । ହାସ୍ୟ ମୂହିଁରୁ ହିଁ ସମାଜର ବିଚିତ୍ର ରୂପ ହାସ୍ୟବ୍ୟଙ୍ଗରେ ରସାଣିତ ହୋଇ ଫୁଟି ଉଠୁଥିଲା । ହାସ୍ୟ ବାହାରିଲା ବେଳେ ଜନତା ହାସ୍ୟରୋଳରେ ଉଛୁଳୁଥିଲା ।

ଓଡ଼ିଆମାନେ ସେତେବେଳେ ବହୁ ସଂଖ୍ୟାରେ କଲିକତାର ଚଟକଳରେ କାମ କରୁଥିଲେ । ଝୋଟଗୋଛ ମୁଣ୍ଡରେ ମୁଣ୍ଡେଇ କଳକୁ ବୋହି ନେଉଥିଲେ । ନଣ୍ଡା ଗିରଜାରେ, ହରସିଂହା ପଡ଼ାରେ ରହୁଥିଲେ, ନୂଆ ନୂଆ ଫେସନ ଶିଖି ପଇସାପତ୍ର ଉଡ଼ାଇ ଦେଉଥିଲେ । କଲିକତାରୁ ଘରକୁ ଫେରିଲାବେଳେ ଜୋତାମାଡ଼ି ମହଣ ଛତା ଟାଣି ଫେରୁଥିଲେ । ବୈଷ୍ଣବ ହାସ୍ୟରସରେ କଲିକତା ଓଡ଼ିଆଙ୍କ ଚରିତ୍ର ଚିତ୍ରଣ କରିଛନ୍ତି—

"ବସାଘର କରିବା ଯାଇ ହରି ସିଂହା ପଡ଼ାରେ ଭାଇ
ଚନ୍ଦ୍ର କଳ୍ପ ଢଳ ଅଯୁକର ମନ କଣିବା ଫୁଲେଲ ତେଲରେ
ଝୋଟ ମୁଣ୍ଡାଇବା ମୁଣ୍ଡରେ ଝୋଟ ପଶିଯିବ ଗୁଣ୍ଡରେ
ପେଟ ପାଇଁ ଯେବେ ଖଣ୍ଡପଣ କଲ ଜେଏଲରେ
ହାତେ ଧର ଫିରିଙ୍ଗି ଛତା ଗୋଡ଼େ ମାଡ଼ି ଚଢ଼ାଅ ଜୋତା
ବଇଷ୍ଣବ କହ ଗଣ୍ଠି ର ମୁଣ୍ଡାଇ ସଡ଼କରେ ହେବା ଗେଲରେ ।"

ସେହିପରି ଭଟଗୀତରେ ମଧ୍ୟ ହାସ୍ୟ ବା ବ୍ୟଙ୍ଗ ପୂରି ରହିଛି—

"ମୁଁ ତ ଭଟକାମ ଛାଡ଼ି ନାଟ କରିବ ରେ
କେତେ ଆଉ ବାଟେଘାଟେ ଫେରିବ ରେ
ବୋଲି ତାଖିଟି ତାଖିଟି ଉବ୍ ତାବଲାକୁ ପିଟି
ଗୀତରେ ବେଣ୍ଡିରେ ତେଲ ମାରିବ ରେ ।"

ସେତେବେଳର ପାଠପଢ଼ୁଆଙ୍କ ଅଧୋଗତି ବ୍ୟଙ୍ଗଗୀତରେ ଚିତ୍ରିତ ହୋଇଅଛି—

ମୁଁ ତ ପାଠ ପଢ଼ିବରେ ପାଠ ପଢ଼ିବ
କାଳିଆ ଘୋଡ଼ାରେ ଚଢ଼ିବ
ମଧୁବାବୁ ସଙ୍ଗେ ଲଢ଼ିବ
ଭାରତୀକୁ ହେବ କୋଟି ନମସ୍କାର
ମାଥା ମୁଣ୍ଡେ ବାଧା କୋଡ଼ିବ ।"

କବିଙ୍କ ଜୀବନ ଲୁହରେ ଗଲା । କିନ୍ତୁ ସେ ଲୁହ ତାଙ୍କର ଏକାନ୍ତ ବ୍ୟକ୍ତିଗତ । ଦେଶ ଲାଗି ତାଙ୍କର ଥିଲା ମଧୁ ଓ କ୍ଷୀରଧାରା । ତାହା ସ୍ୱଚ୍ଛନ୍ଦ ମନରେ ପରଷି ଦେଇ ସେ ଜାତିର ମାନସିକ ସ୍ୱାସ୍ଥ୍ୟକୁ ବଳିଷ୍ଠ କରି ଗଢ଼ି ଯାଇଛନ୍ତି ।

●

# ଡାକ୍ତର ରାଧାଚରଣ ପଣ୍ଡା

ଜନ୍ମ--୧୮୯୮

ମୃତ୍ୟୁ—୨୯।୧୦।୭୪

---

"ତାଙ୍କୁ ଭଙ୍ଗା ଝାପର ପରି
ମନେ କରନ୍ତି ପଥିକ !
କେତେ ସାଧନାର
କେତେ ତପସ୍ୟାର ଦର୍ପଣ ହିଏ ସେ
ତାଙ୍କୁ ଟିକଏ ବୁଝି ବୁଝି ଯାଅ
ପଥିକ !
ଆଜି ସେ କଣ ଦେଇପାରନ୍ତା
ଅଧିକ !!"

—କୃଷ୍ଣଚନ୍ଦ୍ର ତ୍ରିପାଠୀ

"କିଏ କହେ ତୁମେ ସାହିତ୍ୟିକ
କିଏ କହେ ତୁମେ ଗବେଷକ
କେ'ବା କହେ ତୁମେ ଡାକ୍ତର
ମାତ୍ର ତୁମେ ଜଣେ ମନୀଷୀ ଥିଲ !"

—ସଙ୍କର୍ଷଣ ପଣ୍ଡା

ରାଧାଚରଣ ପଣ୍ଡାଙ୍କ ଜନ୍ମ ୧୮୯୮ ଖ୍ରୀଷ୍ଟାବ୍ଦ ଚୈତ୍ର ଶୁକ୍ଳ ପଞ୍ଚମୀରେ । ଆନ୍ଧ୍ର ପ୍ରଦେଶର ଟିକାଲି ଓଡ଼ିଶାର ଏକ ବିଚ୍ଛିନ୍ନାଞ୍ଚଳ, ବହୁଳାଂଶେ ଓଡ଼ିଆ ଅଧ୍ୟୁଷିତ । ଟିକାଲି ରାଜ୍ୟରେ ମୁଁ ଘରେ ସେ ଭୂମିଷ୍ଠ ହୋଇଥିଲେ । ତାଙ୍କ

ପିତାଙ୍କ ନାମ କୃଷ୍ଣଚନ୍ଦ୍ର ଶର୍ମା, ତାଙ୍କ ଘର ସାଲୁରରେ । ସାଲୁର ପାଠଶାଳାରେ ପ୍ରାଥମିକଙ୍କ ବାଲ୍ୟଶିକ୍ଷା ତେଲୁଗୁ ମାଧ୍ୟମରେ ହୋଇଥିଲା, ପରବର୍ତ୍ତୀ କାଳରେ ସେ ପାରଳାଖେମିଣ୍ଡି ଓ ଜୟପୁର ଆସି ଓଡ଼ିଆ ଭାଷା ଶିଖିଥିଲେ । ମାତ୍ର ନ'ବର୍ଷ ବୟସରେ ତାଙ୍କର ପିତୃବିୟୋଗ ଘଟିଥିଲା । ଘୋର ପ୍ରତିକୂଳ ପରିସ୍ଥିତି ମଧ୍ୟରେ ତାଙ୍କୁ ଉଚ୍ଚଶିକ୍ଷା ଲାଭ କରିବାକୁ ହୋଇଥିଲା ।

ମା'ଙ୍କର ପୁନା ଅଳଙ୍କାର ବନ୍ଧକ ଦେଇ ସେ ଡାକ୍ତରୀ ପଢ଼ିଥିଲେ, ୧୯୨୫ ଖ୍ରୀଷ୍ଟାବ୍ଦରେ ବିଶାଖାପାଟଣା ମେଡ଼ିକାଲ ସ୍କୁଲରୁ ଏଲ୍. ଏମ୍. ପି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କ ନିଜ ଭାଷାରେ—"ମୁଁ ଲେଖିବାକୁ ଗଲାବେଳେ ପାଦରେ ଜୋତା ନ ଥିଲା କି ମୁଣ୍ଡରେ ଛତା ନ ଥିଲା ।" ଏଲ୍. ଏମ୍. ପି. ପାସ୍ ପରେ ସେ ଅଳ୍ପ ଦିନ ଜୟପୁର ଓ ପାରଳାଖେମିଣ୍ଡିରେ ଶିକ୍ଷକ ହୋଇଥିଲେ । ତା ପରେ ପୁରୀ ଜିଲ୍ଲାବୋର୍ଡ଼ ଅଧୀନରେ ଜଣେ ଡାକ୍ତରଭାବେ ପାରିକୁଦ ଦ୍ୱୀପରେ ଅବସ୍ଥାପିତ ହେଲେ । ପାରିକୁଦରୁ ସେ କାଳଜପୁର, ଅସ୍ତରଙ୍ଗରେ ଡାକ୍ତରଭାବେ ଅବସ୍ଥାପିତ ହେଲେ ଓ ପୁରୀ ସହରର ଜଣେ ସ୍ୱାସ୍ଥ୍ୟ ଅଫିସରଭାବେ କାର୍ଯ୍ୟ କଲେ ।

କୋଡ଼ିଏ ବର୍ଷ ଚାକିରି କଲାପରେ ସେ ଇସ୍ତଫା ଦେଇ ଆସି ବାଲୁଗାଁରେ ଘର କଲେ ଓ ସ୍ୱାଧୀନ ଚିକିତ୍ସାଳୟଟିଏ ସ୍ଥାପନ କଲେ । ଶେଷନିଶ୍ୱାସ ଥିବା ପର୍ଯ୍ୟନ୍ତ ସେ ବାଲୁଗାଁରେ ରହି ଚିକିତ୍ସା କରୁଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପରେ ସେ ସେ ଅଞ୍ଚଳର ମହାନ୍ ବ୍ୟକ୍ତିତ୍ୱଭାବେ ଦୃଷ୍ଟି ଆକର୍ଷଣ କରୁଥିଲେ । ସାହିତ୍ୟିକ ଓ ବିଦଗ୍ଧ ଅତିଥିଙ୍କ ଲାଗି ତାଙ୍କ ଦ୍ୱାର ସଦା ଉନ୍ମୁକ୍ତ ଥିଲା । ଚିଲିକାର ଜଣେ ବିଶେଷଜ୍ଞଭାବେ ପ୍ରତିଷ୍ଠା ଅର୍ଜିଥିଲେ । ବିଶିଷ୍ଟ ଅତିଥି ଆସିଲେ ଚିଲିକାର ପ୍ରାକୃତିକ ଦୃଶ୍ୟ ଦେଖାଇବା ତାଙ୍କର ଏକ ବିନୋଦନ ଥିଲା ।

ଚିଲିକା ହ୍ରଦକୁ ଭ୍ରମଣକାରୀଙ୍କର ସୌନ୍ଦର୍ଯ୍ୟମୟ ରିସର୍ଟକ୍ଷେତ୍ର ରୂପେ କଳ୍ପନା ଓ ତଦନୁଯାୟୀ ଯୋଜନା କରିଥିଲେ । ଓଡ଼ିଆ ଓ ଇଂରାଜୀ ଉଭୟ ଭାଷାରେ ସେ ଚିଲିକା ବିଷୟରେ ଗ୍ରନ୍ଥରଚନା କରିଥିଲେ; ଇଂରାଜୀ ପାଣ୍ଡୁଲିପିଟିର ନାମ 'Beauty spots of the Chilika' । କଣ୍ଟିଆ, ଚଢ଼େଇଗୁହା, ରମ୍ଭାକାଟୀ ପାରିକୁଦ, ମାଲୁଦ, କାଳିଜାଇ, ବରକୁଦା, ବଡ଼କୂଳ, ନଳବନ, ଭାଲେରି, ସୋଲରୀ ପ୍ରଭୃତି ସୁନ୍ଦର ସ୍ଥାନ ଓ ଯାତାୟାତପଥର ଏକ ମାନଚିତ୍ର ଅଙ୍କନ କରିଥିଲେ ।

ଯେଉଁ ଅଞ୍ଚଳରେ ଚିକିତ୍ସା କରୁଥିଲେ, ସେ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି ପ୍ରତି ତାଙ୍କର ଦୃଷ୍ଟି ଥିଲା । କିପରି ସ୍କୁଲଟିଏ ଗଢ଼ି ଉଠିବ, ଲୋକେ କୁସଂସ୍କାରମୁକ୍ତ

ଆତ୍ମନିର୍ଭରଶୀଳ ହୋଇ ଉଠିବେ, ଆପଦବିପଦରେ ପରସ୍ପରର ସହାୟକ ହେବେ, ସର୍ବୋପରି ଭଲ ମଣିଷ ହେବେ, ସେଥିପ୍ରତି ତାଙ୍କର ଦୃଷ୍ଟି ଥିଲା । ସେ ହୋଇଥିଲେ ସେ ଅଞ୍ଚଳର ନେତା, ସଂଗଠକ । ପିଲାଠାରୁ ବୃଦ୍ଧ ସମସ୍ତଙ୍କ ସଙ୍ଗେ ସେ ମିଶି-ପାରୁଥିଲେ, ସମସ୍ତଙ୍କର ଅତି ଆପଣାର ହୋଇଥିଲେ । ତାଙ୍କ ବ୍ୟକ୍ତିତ୍ୱର ଅଦ୍ଭୁତ ଚୁମ୍ବକ ଶକ୍ତି; ସଦା ଲୋକଙ୍କୁ ପାଖକୁ ଟାଣି ଆଣୁଥିଲା, କିଛି ସତ୍ ପରାମର୍ଶ ଦେଉଥିଲା । ଜନକଲ୍ୟାଣ କରିବା ତାଙ୍କର ଏକ ସ୍ୱାଭାବିକ ପ୍ରବୃତ୍ତି ସଦୃଶ ଥିଲା ।

ଡାକ୍ତରୀକୁ ଏକ ଲାଭଜନକ ବ୍ୟବସାୟ ରୂପେ ସେ ମନେକରୁ ନ ଥିଲେ । ଏହାକୁ ଜନକଲ୍ୟାଣର ଏକ ଅନ୍ୟତମ ପନ୍ଥାଭାବେ ବିବେଚନା କରୁଥିଲେ । ଦୁଃସ୍ଥ ରୋଗୀଙ୍କୁ ସେ ବିନା ପଇସାରେ ଚିକିତ୍ସା କରୁଥିଲେ । ଲୋକସେବା ତାଙ୍କର ପରମ ଧର୍ମ ଥିଲା ।

ତାଙ୍କ ଉଦ୍ୟମରେ ବାଲିଗାଁ ହାଇସ୍କୁଲଟି ନିର୍ମିତ ହୋଇଥିଲା । ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ସମେତ ତାଙ୍କ ଜୀବନରେ ସଞ୍ଚିତ ଅଧିକାଂଶ ପୁସ୍ତକ ସେ ଏହି ସ୍କୁଲର ପାଠାଗାରକୁ ଦାନ କରିଥିଲେ । ସେ ଏହି ସ୍କୁଲରେ ଜଣେ ଅବୈତନିକ ଶିକ୍ଷକଭାବେ 'ଶରୀର ତତ୍ତ୍ୱ' ଓ 'ସ୍ୱାସ୍ଥ୍ୟରକ୍ଷା' ଶିକ୍ଷା ଦେଉଥିଲେ ।

ସେ ପୂରାପୂରି ଗାନ୍ଧିବାଦୀ ଥିଲେ । ଅରଟରେ ବା ଚରଖାରେ ସୂତା କାଟୁଥିଲେ, ଆଜୀବନ ଖଦଡ଼ ପିନ୍ଧୁଥିଲେ । ସରଳଭାବେ ଜୀବନଯାପନ କରୁଥିଲେ ।

ବୃକ୍ଷରୋପଣ ତାଙ୍କର ଏକ ବିନୋଦନ ଥିଲା । ବଜାରରୁ ଦୁଧ କିଣି ସେ ଖାଉ ନଥିଲେ । ଗାଈ ପୋଷିଥିଲେ, ନିଜେ ଘାସ କାଟି ଆଣୁଥିଲେ, ମୋହୁଁଥିଲେ, ଗୁହାଳ ସଫା କରୁଥିଲେ ।

କୋଦାଳରେ ମାଟି ହାଣି ବାଡ଼ିରେ ପନିପରିବା କରୁଥିଲେ; ସେ ବର୍ଷକରେ ଥରେ ହେଲେ ହାଟରୁ ପରିବା କିଣି ଖାଉ ନ ଥିଲେ । ଅନ୍ୟର ଉତ୍ପାଦିତ ଅନ୍ନ-ଭୋଗକୁ ସେ ପାପ ମନେ କରୁଥିଲେ । ବାଡ଼ିପଟର ଦୁଇମାଣ ଜମିର ଉତ୍ପନ୍ନ ଧାନରେ ତାଙ୍କର ବର୍ଷକ ଚଳି ଯାଉଥିଲା । ଆତ୍ମନିର୍ଭରତା ଦୃଷ୍ଟିରୁ ସେ ଅନନୁକରଣୀୟ ।

ଚିର ସ୍ୱାଧୀନଚେତା, ନିରଳସକର୍ମୀ, ମାନବତାବାଦୀ ରାଧାଚରଣ ହସ୍ତ୍ରାହର ଜୀବନ୍ତ ମୂର୍ତ୍ତି ଓ କର୍ମତତ୍ପରତାର ପ୍ରତୀକ ଥିଲେ । ନିତାନ୍ତ ଅଧ୍ୟବସାୟୀ ଓ କର୍ତ୍ତବ୍ୟନିଷ୍ଠ ଥିଲେ, ଅଯଥାରେ ଗୋଟିଏ ମୁହୂର୍ତ୍ତ ନଷ୍ଟ କରୁ ନ ଥିଲେ । ଡାକ୍ତର-ଖାନା, ବଗିଚା, ପାଠାଗାର ଓ ଚରଖା—ଏଇ ଚାରୋଟିରେ ହିଁ ତାଙ୍କର

ନିତ୍ୟନୈମିତ୍ତିକ କର୍ମ । ସକାଳୁ କଚ୍ଛ ବଗିଚ୍ଚ କାମ, ତାପରେ ରୋଗୀ ଦେଖା, ତା ମଧ୍ୟରେ ସୂତାକଟା, ପୁସ୍ତକ ପଢ଼ା, ପ୍ରବନ୍ଧ ରଚନା ବା ଚିଠିପତ୍ର ଲେଖା ।

ତାଙ୍କର ପ୍ରେରଣାଭରା ପତ୍ର ଓଡ଼ିଆ ଲେଖକର କ୍ଲାନ୍ତ ଲେଖମାକୁ ନୂତନ ଗତି ଦେଉଥିଲା । ପ୍ରତିଦିନ ସେ ବହୁସଂଖ୍ୟକ ପତ୍ର ଲେଖୁଥିଲେ । ଅନସୂୟା, ଚିର ହାସ୍ୟମୁଖ, ଆମରଣ ତରୁଣ, ଅକ୍ଲାନ୍ତ କର୍ମୀ ରାଧାଚରଣ ଏକ ଆଦର୍ଶ ବ୍ୟକ୍ତିତ୍ୱ— ସର୍ବତୋଭାବେ କାବ୍ୟ, ଉପନ୍ୟାସର ନାୟକ ହେବାକୁ ଯୋଗ୍ୟ । ତାଙ୍କ ଲେଖା ଅପେକ୍ଷା ତାଙ୍କ ବ୍ୟକ୍ତିତ୍ୱ ମହତ୍ତର ଜଡ଼ ଅଥବା ଜୀବନକୁ ଚଳଞ୍ଚଳ କରିବାରେ ହିଁ ସେହି ବ୍ୟକ୍ତିତ୍ୱର ସିଦ୍ଧି ।

ଜଣେ ସାହିତ୍ୟିକ ହେବା ଲାଗି ତାଙ୍କର ଇଚ୍ଛାକାଂକ୍ଷା ଥିଲା । ତାକୁ ଚରିତାର୍ଥ କରିବା ଲାଗି ସେ ଆଜୀବନ ଚେଷ୍ଟିତ ଥିଲେ, ବହୁ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ତଥାପି ବିଦଗ୍ଧମହଲ ସନ୍ଦିହାନ—ଶ୍ରୀ ପଣ୍ଡା ସାହିତ୍ୟିକ ପଦବାଚ୍ୟ କି ନୁହନ୍ତି ?

ଶ୍ରୀ ପଣ୍ଡା ଐତିହାସିକ ଗବେଷଣାରେ ଚିର ଅଗ୍ରଣୀ । କାକଟପୁରରେ ରହିବା କାଳରେ ସେ ମୁମୂର୍ଷୁ ପ୍ରାଚୀ ନଦୀର ତୀରବର୍ତ୍ତୀ ପ୍ରାଚୀନ ସଭ୍ୟତାର ଅନୁସନ୍ଧାନ କରି 'ପ୍ରାଚୀ ସଭ୍ୟତାର ଇତିହାସ' ପୁସ୍ତକ ରଚନା କରିଥିଲେ ।

ସେ କଳ୍ପନାଚକ୍ଷୁରେ ସମୃଦ୍ଧ ଓଡ଼ିଶାର ସ୍ୱରୂପ ଦେଖି ପାରୁଥିଲେ, ସମାଜର ମୂଳ ଓ ମେରୁଦଣ୍ଡ ମଳାମୁଣ୍ଡିଆକୁ ବର୍ଷସାରା ଧନ୍ଦା ଯୋଗାଇବାକୁ ଚିନ୍ତା କରି-ଥିଲେ । ଅର୍ଥନୈତିକ ଉନ୍ନତି ବିନା ସାଂସ୍କୃତିକ ଉନ୍ନତି ସମ୍ଭବପର ନୁହେଁ, ଏ ବିଶ୍ୱାସ ତାଙ୍କର ଥିଲା । ଗ୍ରାମର ଶୁଭଚିନ୍ତକ ଓ ସଂଗଠକ ଭାବେ ସେ 'ଓଡ଼ିଶାର କୁଟୀରଶିଳ୍ପ' ପୁସ୍ତକ ରଚନା କରିଥିଲେ ।

ସେ ନାଟ୍ୟକବି ଅନ୍ନପୂର୍ଣ୍ଣାଙ୍କ ଜୀବନୀ ରଚନା କରିଥିଲେ । ତାଙ୍କ ରଚିତ ବହୁ ସଂକ୍ଷିପ୍ତ ଜୀବନ ଚରିତ ଏବେ ପାଣ୍ଡୁଲିପି ଅବସ୍ଥାରେ ଅଛି । ସେ 'ପଲ୍ଲୀମଙ୍ଗଳ', 'ସହକାର', 'ଆଶା' ପତ୍ରିକାର ଜଣେ ସ୍ୱତନ୍ତ୍ର ଲେଖକ ଥିଲେ । ପୂର୍ଣ୍ଣଚନ୍ଦ୍ର ଭାଷା-କୋଷ'ର ପ୍ରଥମ ସେଟ୍ ଖରିଦ କରିଥିବାରୁ ସେ ଆଜୀବନ ଗର୍ବିତ ଥିଲେ ।

୨୯ । ୧୦ । ୭୪ ରେ ରାଧାଚରଣଙ୍କ ମୃତ୍ୟୁ ହେଲା । ସେ ଯେପରି ଗୁଣୀ, ସେହିପରି ଗୁଣଜ୍ଞ; ସେ ନିଜେ ଯେପରି କର୍ମତତ୍ପର, ଅନ୍ୟ ମନରେ କର୍ମତତ୍ପରତା ସୃଷ୍ଟି କରିବାକୁ ସେହିପରି ସମର୍ଥ ଥିଲେ । ତାଙ୍କ ବ୍ୟକ୍ତିତ୍ୱ ଏକ ସ୍ପର୍ଶମଣି । ଯେ ତାଙ୍କ ସଂସ୍ପର୍ଶରେ ଆସୁଥିଲା, ସେ ସୁନା ହୋଇ ଯାଉଥିଲା ।

ରାଧାଚରଣଙ୍କ ରଚିତ କେତୋଟି ପୁସ୍ତକ—

୧ । ପାଣକୁନ୍ଦ (ରାଜବଂଶର ଏକ ଇତିହାସ )

୨ । ଓଡ଼ିଶାର କୁଟୀର ଶିଳ୍ପ ( ଉତ୍କଳ ସାହିତ୍ୟ ସମାଜରୁ ୧୯୩୨ ରେ ଜଗନ୍ନାଥ ପୁରସ୍କାର ପ୍ରାପ୍ତ )

୩ । ଉତ୍କଳର ପଲ୍ଲୀପ୍ରସଙ୍ଗ ।

୪ । ଉତ୍କଳର ଶିଳ୍ପ ଗୃହଶିଳ୍ପ ( ଉତ୍କଳ ସାହିତ୍ୟ ସମାଜରୁ ୧୯୩୩ ରେ ହିନ୍ଦୋଳ ପୁରସ୍କାର ପ୍ରାପ୍ତ )

୫ । ଓଡ଼ିଶାର ନାନା କଥା ।

୬ । ପ୍ରାଚୀ ନଦୀର ଐତିହାସିକ ବିଭବ ( ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ )

୭ । ପ୍ରୌଢ଼ ଶିକ୍ଷା ( ଭାରତ ସରକାରଙ୍କଠାରୁ ୫୫୦୦ଙ୍କା ପୁରସ୍କାରପ୍ରାପ୍ତି )

୮ । ଜୀବନୀ ( ଗୋଦାବରୀଶ ମିଶ୍ର, ନାଟ୍ୟକବି ଅନ୍ନପୂର୍ଣ୍ଣା, ରାଜକବି ବିକ୍ରମ ଦେବ ବର୍ମା, ମହାପୁରୁଷ ପିଟର, ଡାକ୍ତର ଲିଭିଂଷ୍ଟୋନ୍, ଦାନବୀର କ୍ଷେତ୍ରବାସୀ ରାଉତରାୟ, ଦାତା ଲକ୍ଷ୍ମଣ ପ ଣ )

ସ୍ୱାସ୍ଥ୍ୟ—୧ । ପ୍ରସୂତି ବିଜ୍ଞାନ ଓ ଶିଶୁପାଳନ

୨ । ମେଲେରିଆ

୩ । କୁଷ୍ଠ ରୋଗ

୪ । ପାନଖିଆ ଓଡ଼ିଶାର କଳଙ୍କ

୫ । ଧୂଆଁ ପତ୍ର

୬ । ଅଫିମ

ଅନ୍ୟାନ୍ୟ ମଜାଦାର ସିରିଜ—

୧ । ଲଣ୍ଡେ ସଙ୍ଗରେ ପଣ୍ଡେ ଭାଇ

୨ । ଢୋଲ ଭିତରେ ମୂଷା

୩ । ଓଡ଼ିଶାର ସପ୍ତାଶ୍ଚର୍ଯ୍ୟ

୪ । ଓଡ଼ିଶାର ଷଣ୍ଢ ଲଢ଼େଇ

୫ । ଓଡ଼ିଶାରେ ମନ୍ତ୍ରୀ ହେବାପାଇଁ ମାଟି ଛାଡ଼ିବା ଲଜ୍ଜାଜନକ

ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ଜୀବନୀ (ଉତ୍କଳ ସାହିତ୍ୟ ସମାଜରୁ ୧୯୫୬ରେ ପୁରସ୍କାରପ୍ରାପ୍ତ)

ଅପ୍ରକାଶିତ ପାଣ୍ଡୁଲିପି—

୧ । ରାଜା ରାମମୋହନ ରାୟ

୨ । ଓଡ଼ିଶାର ଲୁଣ ଇତିହାସ

୩ । ଦେଖାଶିଖା ଓଡ଼ିଆ

୪ । ଓଡ଼ିଶାର ପ୍ରାୟ ୨୦୦ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଜୀବନୀ

୫ । ପଣ୍ଡା ପଣ୍ଡିତ ପତ୍ରାବଳୀ (ଗୋଦାବରୀଶ ଓ ରାଧାଚରଣଙ୍କ ଚିଠିପତ୍ର)

୬ । ଓଡ଼ିଶାର ମରହଟ୍ଟା ରାଜତ୍ୱ

୭ । ଆଦର୍ଶ କର୍ମବୀର ବୈକୁଣ୍ଠନାଥ ପୂଜାରୀ

୮ । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଜୀବନୀ



# ନାଟ୍ୟଭୂଷଣ ଅଦ୍ୱୈତଚରଣ ମହାନ୍ତି

ଜନ୍ମ—୧୯୦୭

ମୃତ୍ୟୁ—୧୩।୮।୭୫

ସାହିତ୍ୟ ସାଧନାର ପ୍ରତିକୂଳ ବିସ୍ମରି ସେ ଅର୍ଥକଷ୍ଟ ତାଲ୍ଲକଷ୍ଟ ଜୀବିକାକୁ ଜଳାଞ୍ଜଳି ଦେଇଥିଲେ । ସାଧାରଣ ଦୃଷ୍ଟିରେ ଏହା ଭାବପ୍ରବଣତା ବା ପାଗଳାମି ହୋଇପାରେ । ଶେଷ ଜୀବନ ତାଙ୍କର ଘୋର ଦାରିଦ୍ର୍ୟ ମଧ୍ୟରେ କଟିଥିଲା । ହୃଏତ ସେ ପସ୍ତାଇଥିଲେ । ସାରା ଜୀବନର ସାହିତ୍ୟ ସାଧନା ତାଙ୍କୁ ଆର୍ଥିକ ସ୍ୱଚ୍ଛଳତା ଦେଇପାରି ନ ଥିଲା । ବରଂ ଶିକ୍ଷକ ଜୀବନର ଯତ୍‌ସାମାନ୍ୟ ଆୟ ଏହି ବାଟରେ ଅପବ୍ୟୟିତ ହୋଇଥିଲା । ସେ କିଛି ସଞ୍ଚୟ କରିପାରି ନ ଥିଲେ । ଉତ୍କଳ ସାହିତ୍ୟ ସମାଜ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସାହାଯ୍ୟ ହୁଏତ ସମୁଦ୍ରକୁ ଶଙ୍ଖେ ପାଣି ପରି ହୋଇଥିଲା । ସାହିତ୍ୟ ସାହିତ୍ୟିକକୁ ଜୀବନାନ୍ତେ ସ୍ମରଣୀୟ ରଖିପାରେ, କିନ୍ତୁ ଦାନାକନା, ଜରା ବା ରୋଗ ବ୍ୟାଧିରେ ଔଷଧ, ପଥ୍ୟ ଯୋଗାଇ ନ ପାରେ— ଏହି ଧାରଣା ଯେମିତି ସେ ଆଗି ବୁଝିଥିଲେ ।

ଶିକ୍ଷକ ଜୀବନର ସମସ୍ତ ଅବସରକୁ ସେ ସାହିତ୍ୟ ବିଶେଷତଃ ନାଟ୍ୟକଳା ଲାଗି ପାଣି ଛଡ଼େଇ ଦେଇଥିଲେ । ସମାଜ ଦାୟରେ ସେ ପରିବାରର ସୁଖ ସୌଭାଗ୍ୟକୁ ବଳି ଦେଇଥିଲେ ।

ରଙ୍ଗମଞ୍ଚ ସହିତ ସେ ନିବିଡ଼ ଯୋଗାଯୋଗ ରକ୍ଷା କରିଥିଲେ । ଫଳରେ ତାଙ୍କ ନାଟକ ସବୁ ହୋଇପାରିଥିଲା ବାସ୍ତବ, ହାସଲ କରିପାରିଥିଲା ରଙ୍ଗମଞ୍ଚୋପଯୋଗିତା । ସାହିତ୍ୟିକମୂଲ୍ୟ ଯଥେଷ୍ଟ ଥିବାରୁ ତାଙ୍କର କେତୋଟି ନାଟକ କଲେଜର ପାଠ୍ୟପୁସ୍ତକ ହୋଇପାରିଥିଲା, ସେ ଲାଭ କରିଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର । ଉତ୍କଳ ନାଟ୍ୟ ସଂଘ ତାଙ୍କୁ 'ସାହିତ୍ୟ ଭୂଷଣ' ଉପାଧିରେ ଭୂଷିତ କରିଥିଲେ । ନାଟ୍ୟକାର, ଅଭିନେତା ଓ ନିର୍ଦ୍ଦେଶକ ଭାବରେ ତାଙ୍କ କୃତିତ୍ୱ

ପ୍ରଶଂସା ଲାଭ କରିଥିଲା । ଜଣେ ସତ୍ୟଜିତ୍ ରାୟ୍ ଭାବେ ଉଭରିବାର କୌଣସି ସୁଯୋଗ ତାଙ୍କୁ ଓଡ଼ିଶାର ବଦ୍ଧ୍ୱାନ୍ ସମାଜ ଦେଇପାରି ନ ଥିଲା ।

କାମପାଲ ମିଶ୍ରଙ୍କ ରଚିତ 'ସୀତା ବିବାହ' ନାଟକକୁ ପ୍ରଖ୍ୟାତ ରାସରସିକ, ସଙ୍ଗୀତ ବିଶାରଦ ମୋହନସୁନ୍ଦର ଗୋସ୍ୱାମୀ ସିନେମା ରୂପ ଦେଇଥିଲେ । ଏହା ପ୍ରଥମ ଓଡ଼ିଆ ସବାକ୍ ଚଳଚ୍ଚିତ୍ର । ଏଥିରେ ଲକ୍ଷ୍ମଣ ଭୂମିକାରେ ଅବତୀର୍ଣ୍ଣ ହୋଇ ଅଦ୍ୱୈତବାବୁ ଉଚ୍ଚ ପ୍ରଶଂସା ଲାଭ କରିଥିଲେ ।

ତାଙ୍କ ପ୍ରଥମ ସ୍ୱରଚିତ 'ମହାରାଷ୍ଟ୍ର' ନାଟକରେ ସେ ହୋଇଥିଲେ ଶିବାଜୀ । ଶ୍ରୀମନ୍ଦିର, ସୁଦାମା, କନ୍ଦର୍ପସୁର ବଧ, କେଦାରଗୌରୀ ପ୍ରଭୃତି ରେକର୍ଡ ନାଟକମାନଙ୍କରେ ସେ ମୁଖ୍ୟଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଅନ୍ନପୂର୍ଣ୍ଣା 'ବି'ଗ୍ରୁପ୍ ତାଙ୍କର 'ସାଧବ ଝିଅ', 'ନର ଦେବତା', 'ରାଧିକା' ଓ 'ପରିଚୟ' ନାଟକ ଅଭିନୟ କରିଥିଲେ । ତାଙ୍କ ରଚିତ ବହୁ ନାଟକ ଏବେ ପାଣ୍ଡୁଲିପି ଅବସ୍ଥାରେ ପଡ଼ିରହି କୀଟଦଷ୍ଟ ହେଉଅଛି ।

କବିତାରଚନାରେ ତାଙ୍କ ସାହିତ୍ୟିକ ଜୀବନର ଶୁଭାରମ୍ଭ ହୋଇଥିଲା; ଚନ୍ଦାଙ୍କନରେ ମଧ୍ୟ ତାଙ୍କ ପ୍ରତିଭାର ସୂଚନା ମିଳିଥିଲା । କିନ୍ତୁ ପ୍ରକୃତ ପକ୍ଷେ ନାଟ୍ୟକାର ଭାବରେ ସେ ଯଶସ୍ୱୀ ହୋଇଥିଲେ ।

ବାଲ୍ୟ ଓ ଯୌବନ କାଳରେ ସେ ବୁଝିଥିଲେ ଯେ ଜୀବନ ଅର୍ଥ ଆନନ୍ଦ, ଶେଷ ନିଃଶ୍ୱାସ ଯିବା ଆଗରୁ ବୁଝିଲେ ଯେ ଜୀବନ ଅର୍ଥ ଯନ୍ତ୍ରଣା ।



# ବିଦ୍ୟୁତ୍ ପ୍ରଭା

**ଜନ୍ମ—୧୯୨୭ ଜୁଲାଇ ୧୨ ତାରିଖ**

**ମୃତ୍ୟୁ—୧୯୭୭ ଜାନୁୟାରୀ ୨୮ ତାରିଖ**

---

ଯେତେବେଳେ ବୁଝିଲି—
ଜୀବନ, ମୃତ୍ୟୁ ଏକା କଥା
ସେତେବେଳେ ଲିଭିଗଲ ତୁମେ ବିଦ୍ୟୁଲ୍ଲତା

—କୁଞ୍ଜବିହାରୀ

ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କ ପରେ ବିଦ୍ୟୁତ୍‌ପ୍ରଭାନ୍ତ ଦ୍ୱିତୀୟ ଉଜ୍ଜ୍ୱଳତମ ଦଶେ । କୁନ୍ତଳାକୁମାରୀ ଓ ବିଦ୍ୟୁତ୍‌ପ୍ରଭା ଉଭୟ କବିତ୍ୱର ବିପୁଳ ସମ୍ଭାବନା ନେଇ ଜନ୍ମିଥିଲେ । ଉଭୟଙ୍କ କବିତ୍ୱ ଶିରୀଷକୁସୁମ ପରି ସୁକୁମାର, କିନ୍ତୁ କାଳଜୟୀ; ଯଦିବା ଉଭୟେ ଶେଫାଳୀ ପରି କ୍ଷୀଣଜୀବୀ । ପୂର୍ଣ୍ଣାଙ୍ଗ ବିକାଶ ହେବା ଆଗରୁ ଉଭୟ ସଂସାର ତ୍ୟାଗ କଲେ । ଉଭୟଙ୍କ ଶେଷ ଜୀବନର କାରୁଣ୍ୟ ଏବେ ବି ଉତ୍କଳ ଆକାଶକୁ ବେଦନଭରା କରେ ।

ଆତ୍ମହତ୍ୟା ଲାଗି ଏ ବୋଧହୁଏ ତୃତୀୟ ଚେଷ୍ଟା । 'ସ୍ୱାମୀ ମୋର ସେବା କରିବେ ? ନାରୀ ଜନ୍ମର ସାର୍ଥକତା ତେବେ କେଉଁଠି ?' ପୀଡ଼ିତାବସ୍ଥାରେ ବିଦ୍ୟୁତ୍‌ଙ୍କ ମନରେ କ୍ଷୋଭ ଜାତ ହୋଇଥିଲା । ଶାରୀରିକ ପୀଡ଼ା ଓ ଦୁଶ୍ଚିନ୍ତା ମଧ୍ୟରେ ସେ ମାନସିକ ଭାରସାମ୍ୟ ହରାଇ ବସିଥିଲେ, ତାଙ୍କ ସୃଷ୍ଟିଶକ୍ତି ପ୍ରାୟ ଲୋପ ପାଇଥିଲା ।

ରାତିର ନିର୍ଜନତା ମଧ୍ୟରେ ସେ କେତେକ ମୂଲ୍ୟବାନ୍ ଅଳଙ୍କାର ଶୀତଲୋକ ରଖିଲେ, ନୂଆ ଶାଲଟି ରଖି ପୁରୁଣା ଶାଲଟି ଘୋଡ଼ି ହେଲେ । ତାପରେ ଉଦାସ ମନରେ ବୁଲିଲେ; ଯେତେବେଳକୁ କୁଆଁ ତାର ଅନେକ ଉପରକୁ ଉଠିଥିଲା; ସକାଳ । ଟ୍ରେନ୍ ଦ୍ରୁତଗତିରେ ମାଡ଼ି ଆସୁଥିବା ବେଳେ ଦ୍ରୁତପଦରେ ପ୍ରାର୍ଥନା ଭଙ୍ଗୀରେ ତା ସାମ୍ନାରେ ଛିଡ଼ା ହୋଇଗଲେ । ଲୋକଙ୍କ ଆଖି ବୁଜି ହୋଇଗଲା । କିନ୍ତୁ

ମୁହୂର୍ତ୍ତିକେ କଥା ଶେଷ । ବିଜଣ୍ଡିତ, ବିପର୍ଯ୍ୟସ୍ତ ଦେହଟା ମାତ୍ର ପଡ଼ିରହିଲା—ଆତ୍ମୀୟ ସ୍ୱଜନ ଖୋଜି ଖୋଜି ଆସି ଗାଡ଼ି ଅସ୍ଥାନରେ ଅଟକିଥିବା ଦେଖି ଚମକି ପଡ଼ିଲେ । ନିରୁପାୟ; ରହିଲା କେବଳ ଅଗଣିତ ଆଖିର ଧାର । ତାଙ୍କ ନିଜ କବିତା ହିଁ ତାଙ୍କ ନିଜ ପ୍ରତି ପ୍ରଯୁକ୍ତ ହୋଇଥିଲା—

'ଭାଙ୍ଗିଗଲା ମୋର ଶ୍ରେଷ୍ଠ ଧୂଳିଘର
ଛିଣ୍ଡିଗଲା ଲତା ଦୋଳି !'

୧୯୨୬ ମସିହା ଜୁଲାଇ ୨୨ ତାରିଖରେ କଟକ ଜିଲ୍ଲାର କେନ୍ଦ୍ରାପଡ଼ା ନିକଟବର୍ତ୍ତୀ ଝିଙ୍କିଡ଼ୀ ଗ୍ରାମରେ ବିଦ୍ୟୁତ୍‌ପ୍ରଭାଙ୍କର ଜନ୍ମ । ତାଙ୍କ ମା'ଙ୍କ ନାମ ରେଖା । ଘରର ବିବାହ ଉପଲକ୍ଷେ ସେ ଯାଇଥିଲେ ବାପଘରକୁ । ହଠାତ୍ ଦିନେ ପ୍ରଚଣ୍ଡ ବର୍ଷା ହେଲା; ତୋଫାନରେ ଗୃହଘର ସବୁ ଉଠିଲା, ପଡ଼ିଲା, କେତେ ବା ଉଡ଼ିଗଲା ।

'ସମସ୍ତେ ହୋଇ ଏକମୁଖ
ଡାକିଲେ ନାରାୟଣ ରଖ ।'

ଏଇ ଘୋର ଝଟିକା, ବର୍ଷା, ବାଦଲ ଓ ପ୍ରଚଣ୍ଡ ବିଦ୍ୟୁଚ୍ଛଟା ମଧ୍ୟରେ କବିଙ୍କର ଜନ୍ମ, ତଦନୁଯାୟୀ ନାମ ।

ତାଙ୍କ ପିତାଙ୍କ ନାମ ନିମାଇଁ ଚରଣ ଦାସ, ଘର କାଣୀନଦୀକୂଳସ୍ଥ ଏରଡ଼ଙ୍ଗା ଗ୍ରାମରେ । ବିଦ୍ୟୁତ୍ ଏହି ଗ୍ରାମରେ ଦଶବର୍ଷ ବୟସ ପର୍ଯ୍ୟନ୍ତ ଲାଳିତପାଳିତ ହୋଇଥିଲେ ।

ପିତା ନିମାଇଁ ଚରଣ ଜଣେ ଆତ୍ମନିର୍ଭରଶୀଳ ବ୍ୟକ୍ତି । 'ହାତରେ ନ ଥାଇ ଧନ, ପୁଅ ବାହାକରି ମନ' ଅବସ୍ଥା । କାଣି କଉଡ଼ିଟିଏ ନ ଥିବାବେଳେ ସେ ପୁସ୍ତକ ବ୍ୟବସାୟ ଆରମ୍ଭ କଲେ । ମାଟ୍ରିକ୍ ଶ୍ରେଣୀଲାଗି ବହୁ ଉପାଦେୟ ପୁସ୍ତକ ସେ ରଚନା କଲେ, ବିଭିନ୍ନ ସ୍କୁଲକୁ ଯାଇ ସେ ସବୁ ନିଜେ ବିକ୍ରୀ କଲେ । ତାଙ୍କ ବାକ୍‌ଭଙ୍ଗୀ ଚମତ୍କାର; ବ୍ୟକ୍ତିତ୍ୱ ଯୋଗୁଁ ସେ ଶିକ୍ଷକ ଓ ଛାତ୍ର ମହଲରେ ବିଶେଷ ଲୋକପ୍ରିୟ ହୋଇ ପାରିଥିଲେ । ପୁସ୍ତକ ଗଣି ଗଣି ସଂଖ୍ୟାରେ କଟିଲା, ନିମାଇଁ ଚରଣଙ୍କ ଆର୍ଥିକ ଅବସ୍ଥା ବଦଳିଲା । ସେ ଗାଁ ଛାଡ଼ି କଟକ ସହରରେ ବସବାସ କଲେ, କୁଟୀରକୁ ଏକ ବିପୁଳ ସୌଧରେ ପରିଣତ କରିବାକୁ ସମର୍ଥ ହେଲେ । ବିଦ୍ୟୁତ୍ ପିତାଙ୍କ ସହିତ ଆସି କଟକରେ ବାସକଲେ ଓ ରେଭେନ୍‌ସା ଗାର୍ଲସ୍ ସ୍କୁଲରେ ନାମ ଲେଖାଇଲେ । ମାତ୍ର ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିବା ଅବସ୍ଥାରେ ତାଙ୍କ ପୋଥିରେ ଡୋରି ବନ୍ଧା ହେଲା । ବୟଃପ୍ରାପ୍ତ ପରେ ପରିବାରର ରକ୍ଷଣଶୀଳତା ଯୋଗୁଁ ନାଟ୍ୟଜୀବନର

ନାନା କଣ୍ଟକଣା ମଧ୍ୟରେ ତାଙ୍କୁ କାଳ କଟେଇବାକୁ ହୋଇଥିଲା । ସେ ଉଚ୍ଚଶିକ୍ଷାରୁ ବଞ୍ଚିତ ହେବାରୁ ତାଙ୍କ ମନ ଭାଙ୍ଗି ଗଲା ।

ଝରଣା ମୁହଁରେ ଛିଡ଼ା ହୋଇଗଲା ଏକ ଦୁର୍ଲଙ୍ଘ୍ୟ ପର୍ବତ, ପ୍ରପାତ ସୃଷ୍ଟି କରି ପାରିଲେ ନାହିଁ, କିନ୍ତୁ ଝରଣା ପରିଣତ ହୋଇଗଲା ଏକ ପ୍ରଶାନ୍ତ ସରୋବରରେ— ମାନସରୋବର ବା ମନସରୋବର; ସେଥିରେ ଫୁଟି ଉଠିଲା ଅଗଣିତ ପଦ୍ମ, ସୁବର୍ଣ୍ଣର । ଜୀବନ ଏକ ସ୍ୱାଭାବିକ ପଥରେ ବାଧାପାଇ ଗଡ଼ିଗଲା ଅନ୍ୟ ଏକ କଲ୍ୟାଣକର ପଥରେ । ବିଚିତ୍ର ତାଙ୍କ ଲୀଳା, ରହସ୍ୟମୟ ଭଗବାନଙ୍କର ଉଦ୍ଦେଶ୍ୟ ।

ଅନ୍ତରରେ ଭାବକୁ ବିକଶିତ କରିବା ଲାଗି ଉପଯୁକ୍ତ ପାଣିପାଗ ଯୋଗାଇ ଦେଉଥିଲେ ତାଙ୍କର ସୁଯୋଗ୍ୟ ପିତା । ବିଦ୍ୟୁତ ହେଲା ଦ୍ୱିତୀୟ ଜୀବନ, ଅକଳନ୍ତି ତାଙ୍କର ସ୍ନେହ; ବିଦ୍ୟୁତକୁ ସାମାଜିକ ପ୍ରତିଷ୍ଠା ଦେବା ଲାଗି ତାଙ୍କ ଯତ୍ନର ଅନ୍ତ ନ ଥିଲା । ତାର ଲେଖା କିପରି ସାହିତ୍ୟ ପତ୍ରିକାରେ ବାହାରିବ, ତାର ବହି କିପରି ପ୍ରକାଶ ପାଇବ, ପ୍ରକାଶିତ ହେଲା ପରେ ସର୍ବସାଧାରଣରେ ପ୍ରଶଂସିତ ହେବ, ନିମାଇଁ ଚରଣଙ୍କୁ ନିଦ ନ ଥିଲା ।

ସେ ବିଶିଷ୍ଟ କବିମାନଙ୍କଠାରୁ ମୁଖବନ୍ଧ ଲେଖାଇ ଆଣିଥିଲେ, ନିର୍ଲୋଭ ଭାବେ ଖର୍ଚ୍ଚ କରି ବିଦ୍ୟୁତର ପୁସ୍ତକ ସବୁ ଗୋଟିକ ପରେ ଗୋଟିଏ ଛପାଇ ଥିଲେ । ତାଙ୍କର ଏକନିଷ୍ଠ ଉଦ୍ୟମରେ ହିଁ ଅଧିକାଂଶ କାବ୍ୟକବିତା 'ବିଦ୍ୟୁତ୍ପ୍ରଭା ସଞ୍ଚୟନ'ରେ ରୂପାୟିତ ହେଲା । କୌଣସି ଓଡ଼ିଆ ପିତା ନିଜ କନ୍ୟାକୁ ସାହିତ୍ୟ ଦିଗରେ ଏପରି ଅକୁଣ୍ଠିତ ଭାବରେ ସାହାଯ୍ୟ କରିବା ଦୃଷ୍ଟାନ୍ତ ବିରଳ । ବିଦ୍ୟୁତର କୌଣସି କଥା ତଳେ ପଡ଼ି ନ ଥିଲା । ବିଦ୍ୟୁତ ସ୍ୱକବିତା ଆବୃତ୍ତି କଲାବେଳେ ତାଙ୍କ ଗ୍ରୁଢ ଆନନ୍ଦରେ ଫାଟି ପଡ଼ୁଥିଲା ।

ବିଦ୍ୟୁତ୍ପ୍ରଭାର ବିବାହ ହେଲା ୧୯୪୯, ଜୁଲାଇ ୭ ତାରିଖରେ, ପଞ୍ଚାନନ ମହାନ୍ତିଙ୍କ ସହିତ । ଡ଼ି: ପି: ଆଇ: ଅଫିସର କିରାଣି ପଦରୁ ସେ ମୁଖ୍ୟ ସମୀକ୍ଷକ ଭାବେ ଉନ୍ନୀତ ହୋଇଥିଲେ ।

ଏହି ଦମ୍ପତିଙ୍କର ଦୁଇ ଗୋଟି ପୁଅ, ଦୁଇ ଗୋଟି କନ୍ୟା । ପଣ୍ଡିଚେରୀର ଶ୍ରୀ ଅରବିନ୍ଦ ଆଶ୍ରମରେ ସେମାନଙ୍କ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା କରାଯାଇ ଥିଲା । ମାନସିକ ସ୍ଥିରତା ଓ ଶାନ୍ତି ଲାଗି ଶେଷ ଜୀବନରେ ବିଦ୍ୟୁତ୍ପ୍ରଭା ଆଶ୍ରମରେ ବସବାସ କରିଥିଲେ ।

'ସବିତା' ବିଦ୍ୟୁତ୍ପ୍ରଭାଙ୍କର ପ୍ରଥମ କବିତା ପୁସ୍ତକ । ତା ପରେ ସେ 'କନକାଞ୍ଜଳି', 'ମଟ୍ଟରିକା', 'ଉତ୍କଳ ସାରସ୍ୱତ ପ୍ରତିଭା', 'ବିହାୟସୀ', 'ବନ୍ଦନା',

'ସ୍ୱର୍ଣ୍ଣ ଦୀପ', 'ନୂଆ ଗିହ୍ନୀ', 'ଯାତ୍ରାକୁ ଯିବ' ପୁସ୍ତକ ଆଦ୍ୟ ଯୌବନରେ, 'ମାଟି, ପାଣି, ପବନ', 'ଜ୍ୟୋତି ଶିଖା', ପୁସ୍ତକ ଦୁଇଟି ଶେଷଜୀବନରେ ରଚନା କରିଥିଲେ । 'ମାଟି, ପାଣି, ପବନ' ଏକ ଶିଶୁ କବିତାଗୁଚ୍ଛ, 'ଜ୍ୟୋତି ଶିଖା' ଶେଷ ରଚନା । ୧୯୭୩ ଖ୍ରୀଷ୍ଟାବ୍ଦ ପରେ ଆଉ କିଛି ଲେଖିବାଭଳି ମାନସିକ ସ୍ଥୈର୍ଯ୍ୟ ତାଙ୍କର ନ ଥିଲା ।

ଶେଷ ଜୀବନରେ ରଚିତ 'ସମୁଦ୍ର ଓ ସମାଧି' କବିତା କବିଙ୍କର ତତ୍କାଳୀନ ମନୋଭାବ ପ୍ରକାଶ କରିଅଛି—ସେ ମୃତ୍ୟୁସମୁଦ୍ରରେ ନିମଗ୍ନ ହେବେ ନା ସମାଧିରେ ଯୋଗମଗ୍ନ ହେବେ ?

"ଏକ ପାଶେ ଢାଳେ ମହାସିନ୍ଧୁର
ଉନ୍ମନ ନୀଳ ଜଳ
ଡାକେ ଆରପାଶେ ଧ୍ୟାନ ମଗନ
ଶାନ୍ତ ସମାଧିତଳ ।"

'ବିଦ୍ୟୁତ୍ ପ୍ରଭା ସଞ୍ଚୟନ'ରେ ମୋଟରେ ୨୨୪ ଗୋଟି କବିତା ସ୍ଥାନ ପାଇଅଛି । 'କଅଁଳ ଜୀବନ', 'ଭକ୍ତିମାଲ୍ୟ', 'ଶ୍ରଦ୍ଧାଞ୍ଜଳି' ପ୍ରଭୃତି ନୂତନ କବିତାଗୁଚ୍ଛ ସଂଯୋଜିତ ହୋଇଅଛି ।

ବିଦ୍ୟୁତ୍ପ୍ରଭାଙ୍କ କବିତାକୁ ନିମ୍ନ କେତୋଟି ବିଭାବରେ ବିଭକ୍ତ କରାଯାଇପାରେ : (କ) ପଲ୍ଲୀପ୍ରାଣତା (ଖ) ପ୍ରକୃତି ପ୍ରବଣତା (ଗ) ଈଶ୍ୱରୈକନିଷ୍ଠତା ।

ଜନନୀଜୀବନର ବାତ୍ସଲ୍ୟ ବହୁ କବିତାରେ ରୂପାୟିତ ହୋଇଅଛି । ନିମ୍ନମଧ୍ୟବିତ୍ତ ପରିବାରର ଅଭାବ ଅନାଟନ, ପଡ଼ା ଗାଁର ଘରୋଇ ସୁଖଦୁଃଖ, ନିବିଡ଼ ଅନୁଭବ ଭିତରୁ ସେ ପ୍ରକାଶ କରିଛନ୍ତି । ଭାବ ସିଧାସଳଖ ଅନ୍ତରରେ ପ୍ରବେଶ କଲା ପରି ଲାଗେ; ବିଷୟ ଆଡ଼ମ୍ବରଶୂନ୍ୟ, ପ୍ରକାଶ ଜୀବନ୍ତ ।

'ଜୀବନ ଚକ୍ର' କବିତାରେ ନିଜ ଜୀବନ କଥା କହୁଁ କହୁଁ ବାଲ୍ୟରୁ ଜରା ପର୍ଯ୍ୟନ୍ତ ସାଧାରଣ ଜୀବନ ଗାଥା ସେ ଗାଇଯାଇଛନ୍ତି । କେବଳ ଅଭିଜାତ ବଂଶରେ ବା ଧନୀ ଘରେ ବିଭା ହେଲେ ମଣିଷ ସୁଖୀ ହୋଇ ନ ପାରେ । ବିବାହରେ ପ୍ରେମ ହିଁ ସୁଖର ମୂଳ ଉତ୍ସ—

"କାନ୍ଥୁ ପଛକେ ମାଟି ଖସୁଥାଉ
ଛାତରୁ ଖସୁ ଥାଉ ପାଣି
ଶାଗପେଜ ଖାଇ ଆପଣାକୁ ଭାବି
ମଣିବ ସେ ରାଜରାଣୀ ।"—'ପ୍ରଚ୍ଛନ୍ନ ସ୍ୱପ୍ନ'

ଚମ୍ପାଠୀ ମୁହିଁଚନ୍ଦ୍ରିଁରେ କଙ୍କଣ, ମୁଦ ଉପହାର ଅପେକ୍ଷା ଗୁରୁବାରେ ଶାଶୁ ଘରେ ପାଦ ଦେଇଥିବାରୁ ତାଙ୍କ ଦିଆ ହୋଇଥିବା 'ଲକ୍ଷ୍ମୀ' ନାମଟିକୁ ସେ ଅଧିକ ପସନ୍ଦ କରନ୍ତି ।

ଶାଶୁଘରେ ବୋହୂ କପର ଅତ୍ୟାଚାରିତା, ତାହା ଅନୁଭବୀମାନେ ଚର୍ଚ୍ଚିଛନ୍ତି । ଶାଶୁ, ନଣନ୍ଦ ଏପର୍ଯ୍ୟନ୍ତ ସେ ଘରର ପୋଇଲା ବ ମୁହଁ ମୋଡ଼େ । ଏ ଚିତ୍ର ପାରମ୍ପରିକ; ମୌଖିକ ଗାଉଁଲୀଗୀତରେ ଯେପରି, ତାଙ୍କ କବିତାରେ ସେହିପରି ଫୁଟିଛି ।

ଘୋର ଦାରିଦ୍ର୍ୟ ଓ ସ୍ନେହହୀନ ନିଷ୍ଠୁର ପରିବେଶର ଚିତ୍ର ସେ 'ଦୁର୍ଗତାର ପ୍ରଥମ ପର୍ବ'ରେ ଦେଇଛନ୍ତି । ଏହାକୁ ଏକ ସଂକ୍ଷିପ୍ତ ଆତ୍ମଚରିତ କୁହାଯାଇପାରେ । ମାଆ ସେତେବେଳେ ତାଙ୍କର ମନେ ପଡ଼ୁଛି । ମାଆ ଦେବୀ, ମାଆର ସ୍ନେହ ହିଁ ସ୍ୱର୍ଗ । ନିମ୍ନ ମଧ୍ୟବିତ୍ତ ପରିବାରର ପିଲାଙ୍କ ଛିଣ୍ଡା, କୁଣିଆଁ ଚର୍ଚ୍ଚା, ରୋଗବଇରାଗ, ଶୀତ, ପଖାଳ ଆହାର, ଧାନ ଉସୁଆଁ, ବରବଟା ଆଦି ସ୍ତ୍ରୀମାନଙ୍କର କଠିନ ଶ୍ରମର ଚିତ୍ର ତାଙ୍କ କବିତାରେ ବାସ୍ତବଭାବେ ରୂପାୟିତ ହୋଇଛି—

ଏକେ ନାରୀ ଜୀବନ ତ ରନ୍ଧନଆଁ
ତହିଁ ଗୃହ ଜଞ୍ଜାଳ କରସିନା
ଯେବେ କଲମ ଧରିଲି ଶୁଣେ ଗାଳି
ତାକୁ ଛାଡ଼ିଲେ ବ ହୁଏ ଖିନଭିନ ।
ଲେଖା ସବୁ ନଣା ତହୁଁ ବଡ଼ ନଣା
ତାର ସୁଆଦ ଚାଖିଛୁ ଯିଏ ଥରେ
ସେ କି ସହଜରେ ତାରେ ପାରେ ଏଡ଼ି ?
ଯେତେ ବାଧା ଆସୁ ପଛେ ଜୀବନରେ ।
ଆଜି ଯିଏ ଯେତେ ପଛେ ଯାହା କହୁ
ମୁଁ ତ ନାହିଁ ସୁଅପର ବହିଯିବ
ଏଇ ରସଟିକ ପାଇଁ ଯେତେ ଝଡ଼
ସୁଖେ ହସି ହସି ସବୁ ସହିଯିବି
ସେ ଯେ ସବୁ ବେଦନାର ପ୍ରଲେପନ
ସେ ଯେ ସବୁ ଦୁଃଖର ଗଉରବ
ସେ ମୋ ଶକ୍ତି ନଦୀର ବନାନୀର
ନବ ମେଘ ମହ୍ଲାର କଲରବ ।

× × ×

ଏକ ବିଳାସୀ ମୁହଁର ଶିଖା ପରି
ମୋର କବିତା ପ୍ରଦୀପ ଆଜି ଜଳେ । —ପ୍ରତିଘାତ

ଆଦ୍ୟ କବି ଜୀବନରେ କବି କବିତା ରଚନା ଲାଗି ଅନୁକୂଳ ପରିବେଶ ଲାଭ କରିପାରି ନାହାନ୍ତି । 'ପ୍ରତିଘାତ' ତାଙ୍କ ଭାବ ପ୍ରକାଶରେ ବାଧା ଓ ଜୀବନଯନ୍ତ୍ରଣାକୁ ରୂପାୟିତ କରିଛି ।

ବିଦ୍ୟୁତ୍‌ପ୍ରଭାଙ୍କୁ ମୁଖ୍ୟତଃ 'ପଲ୍ଲୀକବି' ଆଖ୍ୟା ଦିଆଯାଇ ପାରେ । ସ୍ୱକବିତା'ରେ ଚଉତିମାଳ ପ୍ରୟୋଗରେ ସେ ପଲ୍ଲୀକବି ନନ୍ଦକିଶୋରଙ୍କ ସରଣୀ ଅନୁସରଣ କରିଛନ୍ତି—

'ଆଜୁଉଁ ଦିଏ ବା ସିଆଣ ଏଡ଼େ,
ପାଣି ପଡ଼ିଲେ ସେ ନ ହେବ କେଡ଼େ ।
'ଆଜହୁଁ ଏଡ଼େ, ପାଣି ପଡ଼ିଲେ ହେବ କେଡ଼େ !'—ଢଗ

ମଲ୍ଲି ଖୋଜୁଥାଏ କାକର ପାଣି
ବଇଦ ବତାଏ ଦେ ତୋରାଣି ।'
'ମଲ୍ଲି ଖୋଜୁଥିଲା କାକର ପାଣି
ବଇଦ କହିଲା—ଦେ ତୋରାଣି ।'—ଢଗ

'ଧୀରପାଣି ପଥର କାଟେ', 'ହିମତି ଖେଳରୁ ମହାଭାରତ', 'ପଢ଼ିଲେ ଗୁଣିଲେ ଦୁଧ ଭାତ, ନ ପଢ଼ିଲେ ବାରୁ ଠେଙ୍ଗାମାଡ଼' ପ୍ରଭୃତି ବହୁ ଢଗ କବି 'ଯାହାକୁ ଦିଏ' କବିତା ପୁସ୍ତକରେ ବ୍ୟବହାର କରିଛନ୍ତି । ବହିର ନାମ ବି ଢଗର ଏକ ଅଂଶ—

'ଯାହାକୁ ଯେ
ବରକୁ ଗୁହଲ ଧରାଇ ଦେ ।'

ଲୋକସାହିତ୍ୟରୁ ଅତ୍ୟଧିକ ଉଧାର ଆଣିଥିବା ଯୋଗୁଁ ତାଙ୍କ ମୌଳିକ କବିତ୍ୱରେ ହାନି ଘଟିଛି, ସ୍ୱାଧୀନ ଚିନ୍ତା ବିକାଶର ଅବକାଶ ଘଟି ପାରିନାହିଁ । କବିତା ଗଦ୍ୟାତ୍ମକ ହୋଇ ଯାଇଅଛି । 'ଚାପି ଖାପି', 'ଶୁଖା ରୁଖା', 'ଟାଣ ଚେମଡ଼ା', ପ୍ରଭୃତିର ଲଥା ଅଂଶ ସୁଖକର ବୋଧ ହେଉନାହିଁ ।

ଏଇ ସବୁ କବିତା ଚିନ୍ତା ଓ ପ୍ରକାଶ ଦୃଷ୍ଟିରୁ ଗୋଟିଏ ଗୋଟିଏ ପ୍ରବନ୍ଧ ପରି ହୋଇଛି—କାନ୍ଦାକଟା କେତେ ପ୍ରକାର ହୁଏ ? ହସ କୌତୁକ କେତେ ପ୍ରକାର ? ବୁଢ଼ା କେମିତି ହସେ ? ରସିକ କେମିତି ହସେ ? ରୋଗୀ କେମିତି ଶୁଖିଲା ହସ

ହେବେ ? ନକ୍ସ୍ୟା କେମିତି ହେବେ ? ବାଡ଼୍ ଅ ଛିଅ କେମିତ ହେବେ ? ଜଣା କେତେ ପ୍ରକାର ? ଏସବୁ କବିତାରେ କିଛି ଭାବୁକତା ଅଛି, କିନ୍ତୁ ରସିକତା, ପ୍ରବଣତା ବା ପ୍ରେରଣା ନାହିଁ । ଶିକ୍ଷା ଦେବାର ପ୍ରବୃତ୍ତି ତୀବ୍ର ।

'ମୁଣ୍ଡ କୋଡ଼ି କାନ୍ଦେ କେହୁ ଟେକ୍ତ ଅଶ୍ରୁଧାରେ
ମହାତ୍ମା ହବୁର ପାଇଁ କାନ୍ଦେ ସବୁ କାଳେ ।'

'କଅଁଳ ଜୀବନ' ଏକ କିଶୋର କବିତାଗୁଚ୍ଛ । ଏଥିରେ ଶିକ୍ଷା ଦେବାର ପ୍ରବୃତ୍ତି ପୂର ରହିଛି—

"ସ୍ୱଭାବେ ହେବ ମୁଁ କୋଇଲି ପରିକା
ରୂପେ ହୁଏ ପଛେ କଳା
ଅବମୁଖ ହେଲେ ମାଟି ହେବ ସବୁ
ଧନ ଚକ୍‌ଚକିଆ ଧଳା ।"

ନିମ୍ନୋଦ୍ଧୃତ ପଦରେ କବି ନିଜ ସମ୍ବନ୍ଧରେ କହିଲା ପରି ଲାଗେ—

"ଗ୍ରେଟିଆ ଜୀବନେ ବଡ଼ର ମହତ
ଯେପରି ମୁଁ ଜଗତେ ହୁଏ ପ୍ରିୟ
ରୂମ ଫୁଲବନେ ମଧୁର ପବନ
ଖେଳସାଥୀ ମୋର କିରେହୁଅ ।"

କିଶୋର ମନରେ ଉଚ୍ଚାକାଂକ୍ଷା ଜାଗ୍ରତ କରିବାର ପ୍ରବୃତ୍ତି ଶ୍ରେୟସ୍କର । କିନ୍ତୁ ପୁନଃ ପୁନଃ ନୀତି ଉପଦେଶ ଏକାନ୍ତ ପ୍ରତ୍ୟକ୍ଷ ଓ କବିତାର ସ୍ୱାଭାବିକତା ଓ କଳାତ୍ମକତାର ହାନିକାରକ ।

'ଭକ୍ତମାଲ୍ୟ' ଏକ ରହସ୍ୟବାଦୀ କବିତାଗୁଚ୍ଛ । ରବୀନ୍ଦ୍ରନାଥ 'ଗୀତାଞ୍ଜଳି' ଲେଖି ନୋବେଲ ପୁରସ୍କାର ନ ପାଇଥିଲେ ଆଧୁନିକ ଯୁଗରେ ଭଗବତ୍ ଭକ୍ତିମୂଳକ, ନମ୍ରତାସୂଚକ ଏତେ କବିତା ଓଡ଼ିଆରେ ଲେଖା ହୋଇଥାନ୍ତା କି ନାହିଁ, ସନ୍ଦେହ । ବିଦ୍ୟୁତ୍‌ପ୍ରଭାଙ୍କ କବିତାରେ ରବୀନ୍ଦ୍ରଙ୍କ ଅନ୍ତଃସ୍ୱର ସୁଲଭ—

"ଭକ୍ତ କହିଲା ଭଗବାନ୍ ପାଶେ
ଏତେ କରୁଣାର ବିନମୟେ ପ୍ରଭୁ
କି କରିବି ତବ କୁହ ?

କହିଲେ ଦେବତା—ମୁଁ
ଦୁଃଖ ଦଳିତ କୋଟି କଙ୍କାଳ ଶ୍ରାନ୍ତ ନୟନୁଁ
ପୋଛୁ ପାରବୁ କି ଲୁହ ?

'ମୁଁ ନିଷ୍ପାପ ନୁହେଁ, ତଥାପି ମୋତେ ଗ୍ରହଣ କର'—କବି ଭଗବାନ୍‌ଙ୍କୁ ନିବେଦନ କରିଛନ୍ତି; ତାଙ୍କର କାବ୍ୟିକ ପ୍ରଶ୍ନ କବିତାକୁ ରସୋତ୍ତୀର୍ଣ୍ଣ କରିଛି—

"ଫୁଲେ କୀଟ ବୋଲି ଲଗେନି କି ତବ ସେବାରେ ?
କୁଣ୍ଠିତ ତେବେ କିଂପା ମତେ କୃପା ଦେବାରେ ?"

'ଉତ୍କଳ ସାରସ୍ୱତ ପ୍ରତିଭା' ପୁସ୍ତକର ନାମ ବଦଳାଇ ପଞ୍ଚସୂନରେ 'ଶ୍ରଦ୍ଧାଞ୍ଜଳି' ରଚିଛନ୍ତି—ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣ, ପଠାଣି ସାମନ୍ତ, ପୁଞ୍ଜଳଦେବ, ମହାରାଜା ଶ୍ରୀରାମଚନ୍ଦ୍ର, କର୍ମବୀର ଗୌରୀଶଙ୍କର, ରାଧାନାଥ, ଫକୀରମୋହନ, ନୀଳମଣି ବିଦ୍ୟାରତ୍ନ, କୁଳବୃଦ୍ଧ ମଧୁସୂଦନ, ଗୋପବନ୍ଧୁ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ, ନନ୍ଦ କିଶୋର ବଳ, ରାମ ଶଙ୍କର ରାୟ, ମୃତ୍ୟୁଞ୍ଜୟ ରଥ ପ୍ରଭୃତି କବି, ନେତା ଓ ଲେଖକମାନଙ୍କ ଯଶୋଗାନ କରିଛନ୍ତି । ଏହା ମଧ୍ୟ ଭକ୍ତକବି ମଧୁସୂଦନଙ୍କ ପରମ୍ପରା ଅନୁସରଣ ।

'ପ୍ରିୟ ଓ ପ୍ରିୟା' କବିତାଗୁଚ୍ଛ ଉପରେ ମାନସିଂହଙ୍କ କବିତାର ପ୍ରଭାବ ସୁସ୍ପଷ୍ଟ—

"କେତେ ତ ଶୁଣିଛୁ ଆଦରର ଡାକ
'ବୋହୂ', 'ମାଆ', ସାଆନ୍ତାଣୀ
ସବୁଠୁଁ ମଧୁର କିପାଇଁ ଲାଗିତ
ତୁମେ ଯେବେ ଡାକ 'ରାଣୀ' ?

'ଖଦ୍ୟୋତିକା' ଏକ ଚତୁର୍ଦ୍ଦଶ କବିତା ସମଷ୍ଟି—ଦୁଇ ଧାଡ଼ି ଧାଡ଼ିଆ କବିତା । କଳନାବିଳାସିତା, ଶାବ୍ଦିକ ସଂଯମ, ଜୀବନ ଦର୍ଶନ ଓ କଳାପାଟବ ଯୋଗୁଁ ଏହା ହୃଦୟସ୍ପର୍ଶୀ ହୋଇଛି—

"ସରଗ ନଈର ପଗଡ଼ୀ ତୁଠରେ
ପ୍ରଭାତ ସିନାନ ସାରି
ଗୃହେ ଚଳେ ଚମ୍ପା ଏଇ ପଦୁଅଁ ଟି
ସରଗେ ଗଗରେ ମାରି ।"

'ଖଦ୍ୟୋତିକା' ପାଠ ବେଳେ ଏ ଜାତୀୟ କବିତାର କବି ଓମରଖାୟାମ୍ ସ୍ମରଣରେ ଆସନ୍ତି ।

କବିଙ୍କ ପ୍ରକୃତିପ୍ରେମ ଏକ ପାରମ୍ପରିକ ଅନୁସରଣ ନୁହେଁ, ଏହା ପଲ୍ଲୀ ପ୍ରକୃତି ପର୍ଯ୍ୟବେକ୍ଷଣରୁ ଉଦ୍‌ଭୂତ । କବି ବହୁ ଦେଶ ବା ରାଜ୍ୟ ପରିଭ୍ରମଣର ସୁଯୋଗ ଜୀବନରେ ପାଇନାହାନ୍ତି । ତାଙ୍କ ଅନୁଭୂତି ପଲ୍ଲୀପ୍ରକୃତି ମଧ୍ୟରେ ହିଁ ଆବଦ୍ଧ ରହିଗଲା । ତାଙ୍କ ପ୍ରକୃତି ଚିତ୍ରଣ ନିଜସ୍ୱ ମାଧୁର୍ଯ୍ୟରେ ମନୋହର, ସ୍ୱତଃସ୍ଫୂର୍ତ୍ତ ଓ ସ୍ୱାଭାବିକ—

"ଏକାନ୍ତ ଆପଣା ସମ ଗୁଗୁଚିଆ କାନ୍ଦି
ଅନଇ ଶିଶୁଟି ପରି କାହା ଛୁଉଁନାହିଁ ।"

ତାଙ୍କ ପଲ୍ଲୀପ୍ରକୃତି ପଲ୍ଲୀର ଏକ ଅଲ୍ୟଳୀ ଝିଅର ମଧୁର ଚେହେରା ମନେ ପକାଇ ଦିଏ—

"ବଟା ବନ ହଳଦୀରେ ଲେପି ସାରା ଦେହ
ଧରଣୀରେ ହସିଲଣି ମଗୁଣୀର ଝିଅ ।"

'ବନ୍ଦନିକା'ର 'ସବୁଜ ପ୍ରୀତି' ପଲ୍ଲୀକବି ନନ୍ଦ କିଶୋରଙ୍କ 'ନିର୍ଝରିଣୀ' ବା 'ପଲ୍ଲୀଚିତ୍ର' କବିତା ସବୁ ମନେ ପକାଇଦିଏ—

"ଝିଡ଼ିଆ ପାଖେ 'ବନା' ପଖିଆ ମୁଣ୍ଡେ
ବିଲରୁ ବାହୁଥିଲେ ଘାସ
କାହୁରି ବନ ଚୋଟା ଶ୍ରବଣ ଡେରି
ଶୁଣନ୍ତି ସୀତା ବନବାସ ।"

ମାନବିକତା ବିଦ୍ୟୁତ୍‌ପ୍ରଭାଙ୍କ କବିତାର ଆଉ ଏକ ବିଶେଷତ୍ୱ । ଦୁଃଖିନୀ ବିଧବା ଭଉଣୀଟି ପ୍ରତି ତାଙ୍କ ମମତା ଅଶ୍ରୁ ଝରିପଡ଼ିଛି । ରିକ୍‌ସାବାଲାର ବେଦନାରେ କବି ଆତ୍ମହରା ହୋଇଛନ୍ତି । ଲକ୍ଷ ଲକ୍ଷ ଦୀନଦୁଃଖୀ ପୀଡ଼ିତ ଶୋଷିତ ତାଙ୍କ ଅନ୍ତରରେ ତୋଳିଛନ୍ତି କରୁଣ ରାଗିଣୀ । ସେ ହୋଇଛନ୍ତି ମଣିଷ ପ୍ରତି ସମବେଦନା ପ୍ରବଣ, ଜ୍ୟୋସ୍ନା ଅପେକ୍ଷା ଅନ୍ଧକାର ତାଙ୍କ ଅନ୍ତରକୁ ସମଧିକ ଆକର୍ଷଣ କରିଛି । କାରଣ ଅନ୍ଧକାର ତାର ପ୍ରସାରିତ ବକ୍ଷରେ ଲକ୍ଷ ଲକ୍ଷ ଦୁର୍ଭାଗ୍ୟଙ୍କୁ ଆଶ୍ରୟ ପ୍ରଦାନ କରେ । ହାସ୍ୟ ଅପେକ୍ଷା ଅଶ୍ରୁ ମହତ୍ତର, କାରଣ ଦୁଃଖୀନପୀଡ଼ିତର ଅନ୍ତରତମ ବେଦନାକୁ ଏହା ଧୋଇ ଦିଏ ।

ମଣିଷର ବେଦନାକୁ ଯେଉଁ କବିମାନେ କବିତାର ଉପଜୀବ୍ୟ ନ କରନ୍ତି, ସେମାନଙ୍କୁ ଲକ୍ଷ୍ୟ କରି କବି ଲେଖିଛନ୍ତି—

"ଦେଖିଅଛୁ କେଉଁ ଚରଣତଳ ଯାର ହ୍ରାସ
ଭାବିଛ କି ଦିନେ ତା' କରୁଣ ଇତିହାସ ?

× × ×

ରକ୍ତ ଢାଳେ ଯେ ପାସୋରି ଆପଣା ସୁଖ
ତା ପାଇଁ ତୁମର ଲେଖନୀ ରହିଲା ମୂକ
ଦିନେ ତ ତାହାର ଲୁହ ଆଁଣି କୁଟୀରେ ଗୃହି
ଜନ ସମ୍ମୁଖେ ପଢିଏ ଗାଇଲ ନାହିଁ ।
ନିଃସ୍ୱର ଯେଉଁ ଚିନ୍ତାରେ ନାହିଁ ସ୍ଥାନ
ବିଶ୍ୱରୁ ବେଗେ ମରୁ ସେ କବିର ଗାନ ।"—ବନ୍ଦନକା

ବିଦ୍ୟୁତ୍‌ପ୍ରଭାଙ୍କ ଛନ୍ଦ ବିଦ୍ୟୁତ୍ ପରି ପ୍ରାଣରେ ସ୍ପନ୍ଦନ ଆଣେ । ତାଙ୍କ ଭାଷା ସହଜ, ସରସ ଓ ସାବଲୀଳ ।

ଆଧୁନିକ କବି ଭାବେ ପ୍ରତିଷ୍ଠା ଅର୍ଜିବା ପାଇଁ ବିଦ୍ୟୁତ୍‌ପ୍ରଭାଙ୍କ ଚେଷ୍ଟାର ଅନ୍ତ ନ ଥିଲା । ଗଦ୍ୟ କବିତା ଲେଖା ସେଇ ଚେଷ୍ଟାର ରୂପାୟନ । ଏହା ନାମତଃ ଗଦ୍ୟ କବିତା; ପ୍ରକୃତ ପକ୍ଷେ ଛନ୍ଦ କବିତା, ଅମିତ୍ରାକ୍ଷର ବା ମୁକ୍ତ ଛନ୍ଦ କବିତା । କେତୋଟି କବିତା ବାହ୍ୟ ଛନ୍ଦରୁ ଆଧୁନିକ ଦିଶିପାରେ, କିନ୍ତୁ ତାର ଅନ୍ତଃସ୍ୱର ଗ୍ରାମୀଣ । ତାଙ୍କ ଗଦ୍ୟ କବିତା ଗାଉଁଲି ଝିଅ ହଠାତ୍ ଆଧୁନିକ ବେଶ ପୋଷାକ ପିନ୍ଧିଲା ପରି ହାସ୍ୟୋଦ୍ରେକ କରେ ।

ସ୍ୱକବିତାରେ ବିଦ୍ୟୁତ୍‌ପ୍ରଭାଙ୍କର ପ୍ରତିଭାର ପୂର୍ଣ୍ଣାଙ୍ଗ ବିକାଶ ଦେଖିବାକୁ ମିଳେ ନାହିଁ । ଶେଷ କବିତାଗୁଡ଼ିକ କୈଶୋର ବା ମଧ୍ୟ ଯୌବନର କବିତା ଅପେକ୍ଷା ଉତ୍କୃଷ୍ଟତର, ଏହା ନିର୍ଭରଭାବେ କୁହାଯାଇ ପାରିବ ନାହିଁ । ବିଦ୍ୟୁତ୍ ଜୀବନ-ଆକାଶରେ ଚମକୁ ଚମକୁ ହଠାତ୍ ଏକ ନିଶ୍ଚଳ ବିନ୍ଦୁରେ ଅଟକିଗଲା ପରି ଲାଗେ—ସ୍ଥାଣୁ, ନିଷ୍ପନ୍ଦ; ତେଣିକି ଆଉ ଗତି ନାହିଁ, ପଥ ଯେପରି କି ରୁଦ୍ଧ, ଧରିବେଣ ଅର୍ଗଳବଦ୍ଧ । ତଥାପି ଏ ଯୁଗର କାବ୍ୟକବିତା ପୀଠିକାରେ ତାଙ୍କୁ ସ୍ମୃତି କହୁଛୁ ଏ—

"ଆଖି କହେ ଯାକୁ ସୃଷ୍ଟିର ଅତି ସାନ
ମନ ପାଏ ତହିଁ ବିରାଟର ସନ୍ଧାନ ।"



# ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ

ଜନ୍ମ—୨୧ ତାରିଖ ମାର୍ଚ୍ଚ ୧୯୦୧

ମୃତ୍ୟୁ—୨୮ ଅଗଷ୍ଟ, ୧୯୭୮

---

'ମଣିଷ ଭାଗ୍ୟ ହାତର ଖେଳଣା ମାତ୍ର ନୁହେଁ, ସେ ନିଜର ଭାଗ୍ୟ ଗଢ଼େ ।'

'ନିଜ ଦୁରବସ୍ଥା ଲାଗି ମଣିଷର ନିଜର ଦାୟିତ୍ୱ ଅଳ୍ପ ନୁହେଁ, ସେ ନିଜେ ସେଥିରୁ ମୁକୁଳିବାକୁ ଚେଷ୍ଟା ନ କଲେ ସ୍ୱୟଂ ପତିତପାବନ ତାକୁ ଉଦ୍ଧାର କରି ପାରିବେ ନାହିଁ ।'

'ଉଚ୍ଚାକାଂକ୍ଷା କାମ୍ୟ; କିନ୍ତୁ କେବଳ ଉଚ୍ଚାକାଂକ୍ଷା କାହାକୁ ବଡ଼ କରିପାରେ ନାହିଁ । ସାଧନା ସହିତ ତାର ନିବିଡ଼ ଯୋଗାଯୋଗ ଆବଶ୍ୟକ ।'

'ସାଧନା ବ୍ୟର୍ଥ ହୁଏ ନାହିଁ, ଫଳେ ନା ଫଳେ ଏହା କାର୍ଯ୍ୟରେ ଲାଗେ । ଉତ୍ଥାନ ଲାଗି ଅଦୃଶ୍ୟ ଭାବରେ ଏହା ସୋପାନ ପଂକ୍ତି ନିର୍ମାଣ କରିଥାଏ ।'

ପଣ୍ଡିତ ବାନାମ୍ବରଙ୍କ ଜୀବନର ମର୍ମବାଣୀ ଏ । ସଂଗ୍ରାମ ଯେତେ ତୀବ୍ର ହେଉନା କାହିଁକି, କେବେ ତାଙ୍କୁ କ୍ଲାନ୍ତ କରିନାହିଁ । ପରିସ୍ଥିତି ଯେତେ ପ୍ରତିକୂଳ ହେଲେ ବି ତାଙ୍କୁ ସାଧନାରେ ନିମଜ୍ଜିତ କରିଛି । ସେ ନିଜକୁ ଯୋଗ୍ୟକରି ଗଢ଼ିବାକୁ ଚେଷ୍ଟିତ ହୋଇଛନ୍ତି । 'ତମସୋ ମା ଜ୍ୟୋତିର୍ଗମୟ'—ହତେ' ଯେପରି ଏହା ତାଙ୍କର ଧ୍ୟାନମନ୍ତ୍ର । ବାଲ୍ୟ, କୈଶୋର ଓ ଅର୍ଦ୍ଧଯୌବନ ତମସାଚ୍ଛନ୍ନ, ଆଲୋକକୁ ତାଙ୍କର ଗତି ଯେପରି ବହୁ ମନୀଷୀଙ୍କ ଜୀବନ ପରି ତାଙ୍କ ଜୀବନର ଗୋଟିଏ ଆଲେଖ୍ୟ ଅଙ୍କନ କରାଯାଇପାରେ ।

ବାନାମ୍ବର ଗତାନୁଗତିକ ଅର୍ଥରେ ଜଣେ ପଣ୍ଡିତ ଆଖ୍ୟାଧାରୀ ନୁହନ୍ତି, ପ୍ରକୃତ ପକ୍ଷେ ସେ ଜଣେ କୃତବିଦ୍ୟ ପଣ୍ଡିତ ।

ଦେଶରେ ଜଣେ ଜଣେ ବହୁଶାସ୍ତ୍ରଦର୍ଶୀ ପଣ୍ଡିତ ଅଭିଭାବକ ନ ଥିଲେ ଗବେଷକମାନେ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇଥା'ନ୍ତି । ବହୁଶାସ୍ତ୍ର ଅନୁଧ୍ୟାନ କରି ଯେଉଁ ସଂଶୟ ଦୂର ନ ହୁଏ, ଜଣେ ବ୍ୟୁତ୍ପନ୍ନ ସୁକ୍ଷ୍ମ ପଣ୍ଡିତ ଅକ୍ଲେଶରେ ତାହା ଛିନ୍ନ କରି ବିଦ୍ୟା ସାଧନାର ଦିଶାରୀ ହୋଇଥାନ୍ତି । ବାନାମ୍ବର ସେହି ଶ୍ରେଣୀର ଜଣେ ଅନ୍ତିମ ପଣ୍ଡିତ । ଅଳଙ୍କାର, ଜ୍ୟୋତିଷ, ନ୍ୟାୟ, ସାହିତ୍ୟ, ବ୍ୟାକରଣ, ଇତିହାସ, ଧର୍ମ ଆଦି ନାନା ବିଷୟରେ ସେ ସୁନିପୁଣ । ବିଦ୍ୟାର୍ଥୀ ଯେ କୌଣସି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଲାଗି ତାଙ୍କଠାରେ ଭରସା ରଖୁଥିଲେ ।

ଆଦ୍ୟ ଯୌବନରେ ପାରମ୍ପରିକ ସଂସ୍କୃତିକୁ ଯେପରି ତାଙ୍କ ବ୍ୟକ୍ତିତ୍ୱ ନିତାନ୍ତ ଲୌକିକ ସ୍ତରରେ ଆବଦ୍ଧ ରହିଥିଲା । ଦାରିଦ୍ର୍ୟ ତାଙ୍କ ଉତ୍ଥାନ ଓ ଉତ୍କର୍ଷଲାଭର ଥିଲା ପ୍ରଧାନ ଅନ୍ତରାୟ; କିନ୍ତୁ ପରିସ୍ଥିତିର ଦୁର୍ବହ ବୋଝ ବୋହି ଭାଙ୍ଗି ପଡ଼ିବା ବ୍ୟକ୍ତି ସେ ନୁହନ୍ତି । ମନ୍ଦ ଭିତରୁ ଭଲ, ଦୁର୍ଦ୍ଦଶାରୁ ସୁଦଶା ଲାଭ ଏକ କଠୋର ବ୍ରତରୂପେ ସେ ଗ୍ରହଣ କରିଥିଲେ । 'ଏବେ କିଛି ହୋଇ ପାରିବ ନାହିଁ, ଭବିଷ୍ୟତରେ ଅବସ୍ଥା ବଦଳିଲେ କିଛି କରିବି'—ଏ ଭାବ ତାଙ୍କର ନ ଥିଲା । ବର୍ତ୍ତମାନ ଉପରେ ତାଙ୍କର ଦୃଢ଼ ଆସ୍ଥା ଥିଲା । 'ମଣିଷ ଅବସ୍ଥାର ଦାସ ନୁହେଁ, ସ୍ରଷ୍ଟା, ନିର୍ଣ୍ଣାୟକ' ତାଙ୍କର ବିଶ୍ୱାସ ଥିଲା । ସତ୍ୟାନୁସନ୍ଧାନ ଓ ଗବେଷଣା ଅତି ଶୋଚନୀୟ ଅବସ୍ଥାରୁ ତାଙ୍କୁ କ୍ରମେ ଉଚ୍ଚତର ସ୍ତରକୁ ନେଇଗଲା, ସେ ହେଲେ ଟୋଲ୍ ପଣ୍ଡିତରୁ କଲେଜ ଅଧ୍ୟାପକ, ବିଶ୍ୱକୋଷର ସଂକଳକ, ସର୍ବୋପରି ଜଣେ ଗବେଷକ, ଲେଖକ ।

ବାନାମ୍ବରଙ୍କ ଜନ୍ମ ସନ ୧୩୦୮ ସାଲ, ୧୯୦୧ ମସିହା ମାର୍ଚ୍ଚ ମାସ ୨୧ ତାରିଖ ଚୈତ୍ର ଶୁକ୍ଳ ପ୍ରତିପଦ ତିଥିରେ । ତାଙ୍କ ପିତାଙ୍କ ନାମ ସର୍ବେଶ୍ୱର ଆଚାର୍ଯ୍ୟ, ମାତାଙ୍କ ନାମ ଦୁଲହା ଦେଈ । ତାଙ୍କ ପିତା ସଂସ୍କୃତରେ ଜଣେ ଖ୍ୟାତନାମା ପଣ୍ଡିତ ଥିଲେ । 'ଜାତକାଲଙ୍କାର', 'ଦ୍ୱାତ୍ରିଂଶତ୍ ପୁତ୍ତଳିକା' ଗ୍ରନ୍ଥ ଓ ପଣ୍ଡିତ କପିଳେଶ୍ୱର ନନ୍ଦଙ୍କ ସହିତ ମିଶି ପ୍ରିଣ୍ଟିଂ କମ୍ପାନୀର 'ପଣ୍ଡିତ ସର୍ବସ୍ୱ' ସ୍ମୃତିଗ୍ରନ୍ଥ ସେ ଓଡ଼ିଆରେ ଅନୁବାଦ କରିଥିଲେ । 'ବତିଶ ସିଂହାସନ' (ଦ୍ୱାତ୍ରିଂଶତ୍ ପୁତ୍ତଳିକାର ଓଡ଼ିଆ ଅନୁବାଦ) ରେ ସେ ସ୍ୱଗ୍ରାମ ଓ ବଂଶର ପରିଚୟ ଦେଇଛନ୍ତି—

'କୋଦଣ୍ଡା ବିଷୟାନ୍ତରଗତ ବେଣ୍ଟକାର
ସନ୍ନିକଟ ଶିଶୁଅରେ ଅଟେ ମୋର ଘର
ପିତା ମହାଦେବ ମାତା ଲକ୍ଷ୍ମୀଙ୍କ ଉଦରେ
ଜନମିଲୁ ବିଶ୍ୱଗୁରୁ ଭୂସୁର କୁଳରେ
ମଧ୍ୟମ ସନ୍ତାନ ମୋ ନାମ ଅଟେ ସର୍ବେଶ୍ୱର ।'

ସର୍ବେଶ୍ୱର ପୁରୀରେ ପ୍ରତିଷ୍ଠିତ ସଂସ୍କୃତ ବିଦ୍ୟାଳୟରେ ଶିକ୍ଷାଲାଭ କରିଥିଲେ, ମହାମହୋପାଧ୍ୟାୟ ସଦାଶିବ ମିଶ୍ର କାବ୍ୟକଣ୍ଠ ତାଙ୍କର ସହାଧ୍ୟାୟୀ ଥିଲେ । ୧୮୮୫ ଖ୍ରୀଷ୍ଟାବ୍ଦ ବେଳକୁ ସେ ପ୍ରିଣ୍ଟିଂ କମ୍ପାନୀର ଦ୍ୱିତୀୟ ପଣ୍ଡିତରୂପେ କାର୍ଯ୍ୟ କରୁଥିଲେ ।

ଯେତେବେଳେ ପଠାଣି ସାମନ୍ତଙ୍କ ଗଣିତ ପଞ୍ଜିକା ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌ରେ ମୁଦ୍ରିତ ହେଲା, ପ୍ରୁଫ୍ ସଂଶୋଧନ ଏକ ଜଟିଳ ସମସ୍ୟା ରୂପେ ଦେଖା ଦେଇଥିଲା । ଜଣେ ଲୋକ କଟକରୁ ଖଣ୍ଡପଡ଼ା ଚାଲି ଚାଲି ଯାଇ ପଠାଣି ସାମନ୍ତଙ୍କଠାରୁ ପ୍ରୁଫ୍ ସଂଶୋଧନ କରିନେଇ ଆସୁଥିଲା । ସେଥିରେ ସପ୍ତାହେ କାଳ ନଷ୍ଟ ହେଉଥିଲା । 'ଉତ୍କଳ ଦୀପିକା'ର ସମ୍ପାଦକ ଓ ପ୍ରିଣ୍ଟିଂ କମ୍ପାନୀର ସ୍ୱତ୍ୱାଧିକାରୀ ଶ୍ରୀ ଗୌରୀଶଙ୍କର ରାୟ ପାଞ୍ଜି ରଚନାର ପ୍ରଣାଳୀ ଜାଣି ଆସିବା ଲାଗି ସର୍ବେଶ୍ୱରଙ୍କୁ ସାମନ୍ତଙ୍କ ନିକଟକୁ ପଠାଇଲେ ଓ ସେ ( ଫଳିତ ଜ୍ୟୋତିଷରେ ଅଭିଜ୍ଞ ଓ ଗଣିତ ଜ୍ୟୋତିଷରେ ସାଧାରଣଭାବେ ଜ୍ଞାନବାନ୍ ) ବର୍ଷାଧିକ କାଳ ଶିଷ୍ୟଭାବେ ରହି 'ପାଞ୍ଜି ତୋଳା' ଶିକ୍ଷା କରିଥିଲେ । ତାପରେ ଆଉ ପ୍ରୁଫ୍ ପଠାଇବା ଦରକାର ହେଲାନାହିଁ, ସର୍ବେଶ୍ୱର ନିଜେ ସଂଶୋଧନ କରିବାକୁ ସମର୍ଥ ହେଲେ ।

ଚାଟଶାଳୀ ଶିକ୍ଷା ପରେ ପିତା ବାନାମ୍ବରଙ୍କୁ ସପ୍ତମ ବର୍ଷ ବୟସରେ ସଂସ୍କୃତ ଶିକ୍ଷା ଦେଇଥିଲେ । 'ମୂଳପୋଥି ନଷ୍ଟ ହେବ' ଏହି ଆଶଙ୍କାରେ ସେ ପହିଲେ ବ୍ୟାକରଣରୁ ଦୁଇ ତିନି ଗୋଟି ପତ୍ର ତାଳପତ୍ରରେ ଲେଖି ଖଣ୍ଡିଏ ଖେଦା କରି ଦେଇଥିଲେ । ସେତକ ମୁଖସ୍ଥ ହୋଇଗଲେ ଆଉଖଣ୍ଡେ ପତ୍ରରେ ପରବର୍ତ୍ତୀ ପାଠ ଲେଖି କ୍ରମେ ଖେଦାର କଳେବର ବଢ଼ାଉଥିଲେ, ଏହିପରି ସ୍ୱରସନ୍ଧି ଶେଷ ପର୍ଯ୍ୟନ୍ତ ବାନାମ୍ବର ଖେଦାରୁ ପଢ଼ିଥିଲେ । ତାପରେ ତାଙ୍କ ଦାୟିତ୍ୱଜ୍ଞାନ ବିଷୟରେ ବିଶ୍ୱାସ ଆସିବାରୁ ତାଙ୍କୁ ମୂଳ ପୋଥି ପଢ଼ିବାର ଅଧିକାର ଦିଆହୋଇଥିଲା । ବ୍ୟାକରଣ ସୂତ୍ରର ଓଡ଼ିଆ ଅର୍ଥକୁ ମନେ ରଖି ତାଙ୍କୁ ସନ୍ଧି ଓ ଶବ୍ଦ ସାଧିବାକୁ ହୋଇଥିଲା ।

ସୂତ୍ରର ଅର୍ଥ ନ ବୁଝିଲେ ବି କେଉଁ ସୂତ୍ରଦ୍ୱାରା କେଉଁ କାର୍ଯ୍ୟ ହେଉଅଛି, ତାହା ମନେ ରଖିବାକୁ ହେଉଥିଲା । ଏହିପରି ଭାବରେ ତାଙ୍କ ପିତାଙ୍କ ମୃତ୍ୟୁବେଳକୁ (୧୯୧୧) ସେ 'ଶବ୍ଦ' ଶେଷ କରିଥିଲେ, ଏଣେ ମାଇନର ଚତୁର୍ଥ ଶ୍ରେଣୀରେ ପଢ଼ୁଥିଲେ । ଘରେ ସ୍କୁଲ ପାଠ ପ୍ରସ୍ତୁତ କରିବାକୁ ପ୍ରାୟ ସମୟ ମିଳୁ ନ ଥିଲା । ତାଙ୍କ ପିତା ପ୍ରତ୍ୟହ ପ୍ରିଣ୍ଟିଂ କମ୍ପାନୀକୁ ସକାଳ ନ'ଟାବେଳେ ଘରୁ ଚାଲିଯାନ୍ତି, ଘରକୁ ରାତି ଆଠଟା ନ'ଟାବେଳେ ଫେରନ୍ତି । ପିତା ଗୃହରେ ରହୁଥିବା ସମୟରେ

ସେ ସମ୍ଭୃତ ପଢ଼ୁଥିଲେ, ପିତା ଚାଲିଯିବା ପରେ ସେ ସାଥୀମାନଙ୍କ ସହ କ୍ରୀଡ଼ାମୋଦରେ କାଳ କଟାଇ ଦେଉଥିଲେ । ସ୍କୁଲପଢ଼ା ପ୍ରାୟ ସ୍କୁଲରେ ଆରମ୍ଭ କରିବାକୁ ହେଉଥିଲା ।

୧୯୧୧ ମସିହା, ଜନ୍ମାଷ୍ଟମୀ, କାଟଯୋଡ଼ରେ ଘୋର ବନ୍ୟା ଆସିଗଲା । ତା ପରଦିନ ବେଣ୍ଟକାର ଗାଆଁ ବାଣ୍ଡରେ ପାଣି, କାନ୍ଥ ମୂଳ ଭିଜିଲା । ଶେଷକୁ କାନ୍ଥସବୁ ତଳକୁ ଶୋଇ ପଡ଼ିଲା, ଗ୍ରାମର ଅଧିକାଂଶ ଘର ଭଙ୍ଗିଗଲା । ତାଣ୍ଡକୁ ବଞ୍ଚାଇବାର ଉପାୟ ନାହିଁ, ସେଠି ସ୍ତ୍ରୁଟେ ପାଣି । କାନ୍ଥ ଧୁଲ୍ ଧାଲ୍ ପଡୁଥାଏ, 'ଜୟ ଗଙ୍ଗାମାତାଙ୍କୀ ଜୟ ଜୟ', ଶଙ୍ଖ ଓ ହୁଳହୁଳି ଧ୍ୱନି ଶୁଣାଯାଉଥାଏ । ବାନାମୃର ଅନ୍ୟମାନଙ୍କ ସହିତ କଳେଇଙ୍କ ଉଚ୍ଚତର ଘରକୁ ଉଠିଗଲେ । ସେଠାରେ ରହିବା ଅସମ୍ଭବ ହେବାରୁ ଅନ୍ୟ ଜଣେ ଉଚ୍ଚ ପିଣ୍ଡାକୁ ଯାଇ ଆଶ୍ରୟ ନେଲେ । ଘୋର ଶଙ୍କା ମଧ୍ୟରେ କାଳରାତି ପାହିଲା; ନଈ ଗୁଡ଼ ପଡ଼ିଲା । ଘରକୁ ଫେରି ଦେଖିଲେ ବେଳାକୁ କବାଟ ତଳକୁ ଦବି ଯାଇଛି । ଘର ଭିତରେ ଜମିଥିବା ପଟୁ ଆଡ଼େଇ କବାଟ ଖୋଲି ବହୁ କଷ୍ଟରେ ଘରେ ପଶିବାକୁ ହେଲା । ପୋଥି ଆଲମିରାରେ ପଟୁ ଜମିଯାଇଥିଲା । ବାପା ସେ ସବୁ ଫିଟାଇ ଧୋଇ ସଫାକରି ଶୁଖାଇଦେଲେ । ଘରେ କାଠ ପଟା ପକାଇ ଚଳା ବିଚଳା ହେଲେ ।

ଜଳ କଳୁଷିତ ହୋଇଥିଲା, ବଢ଼ି ପଛେ ପଛେ ବାଡ଼ି ଧାଡ଼ିଦେଲା । କେତେ କେତେ ଗଜା ଭେଣ୍ଡା, ଯୁବତୀ ଶୋଇପଡ଼ିଲେ । ଭାଦ୍ର ଶୁକ୍ଳ ଚତୁର୍ଦ୍ଦଶୀ ଦିନ ସବୁ ଦିନ ପରି ବାପା କଟକ ବାହାରିଲେ, ନଈ କୂଳରେ ପହଞ୍ଚୁ ନ ପହଞ୍ଚୁ ତାଙ୍କ ପେଟ କାଟି କାଟି ହେଲା । ଦିନ ଘ୍ରଣ୍ଟା ବେଳକୁ ମଳିନ ମୁଖରେ ସେ ଘରକୁ ଫେରି ଆସିଲେ ଓ ପରଦିନ ଦକାଳୁ ତାଙ୍କ ସଂସାରଲୀଳା ଶେଷ ହୋଇଗଲା ।

ଜିହରେ ଘର ନାହିଁ, ଜମିରେ ଫସଲ ନାହିଁ, ଗଣ୍ଠିରେ ଧନ ନାହିଁ, ପାଞ୍ଚ ଜଣ ପୋଷ୍ୟ । ଏଇ ଘୋର ଦୁରବସ୍ଥାରେ ପିତାଙ୍କ କଳେଇ ପୁଅ ଭାଇ ଶ୍ରୀ କୃଷ୍ଣଚନ୍ଦ୍ର ଆଲ୍ଲୀଏ ତାଙ୍କୁ ସ୍ୱକର୍ମ ସ୍ଥାନ ଗୋପାଳପୁରକୁ ନେଇଗଲେ, ବାଲିକୁଦା ମାଇନର ସ୍କୁଲରେ ନାମ ଲେଖାଇ ଦେଲେ । କେତେ ମାସ ପରେ ସେଠାରୁ ଆସି କଟକ ଭକ୍ତୋଣିଆ ସ୍କୁଲରେ (ଏବେ କବି ମଧୁସୂଦନଙ୍କ ନାମରେ ନାମିତ ଭକ୍ତମଧୁ ବିଦ୍ୟାପୀଠ) ପଢ଼ିଲେ । କିଛି ଦିନ ପରେ କୃଷ୍ଣଚନ୍ଦ୍ର ତାଙ୍କୁ ପୁଣି ଗୋପାଳପୁରକୁ ନେଇ-ଗଲେ ଓ ବାଲିକୁଦା ସ୍କୁଲରେ ବାନାମୃର ୧୯୧୫ ମସିହା ପର୍ଯ୍ୟନ୍ତ ପଢ଼ିଲେ । ଅବଶ୍ୟ ଛାତ୍ରୋପସ୍ଥାନ ପୁସ୍ତକରେ ପଞ୍ଚମ ଶ୍ରେଣୀରୁ ତାଙ୍କ ନାମ ଲେଖା ହେଉ ନଥିଲା । "ସ୍କୁଲ ଦରମା ଦେବାକୁ ଅସମର୍ଥ, କୌଣସି ମତେ ପଢ଼ିଯାଉ" ଦୟା ପାଇ କର୍ତ୍ତୃପକ୍ଷ ଏଇ ବ୍ୟବସ୍ଥା କରି ଦେଇଥିଲେ ।

୧୯୧୬ ରେ କୋଷ୍ଟ କେନାଲ ବିଭାଗରେ ବାଲେଶ୍ୱର ଜିଲାର ଇରମ୍ ସେକ୍‌ସନକୁ କୃତ୍ତିଚନ୍ଦ୍ରଙ୍କର ବଦଳି ହେଲା ।

ପ୍ରଥମ ବିଶ୍ୱଯୁଦ୍ଧର ଶେଷ ପର୍ଯ୍ୟାୟ । ବାନାମ୍ବର କକେଇଙ୍କ ସହିତ ରହୁଥିବା ସ୍ଥାନରୁ 'ପଢ଼ୁଆ' (ରାଧାନାଥଙ୍କ 'ଉଷା' କାବ୍ୟ ବର୍ଣ୍ଣିତ ପ୍ରଥମା ପଦା) ପ୍ରାୟ ଦୁଇ ମାଇଲ ଦୂର । ସେଠି ପଣ୍ଡିତ ଅନନ୍ତଙ୍କ ଜାବ୍ୟତୀର୍ଥଙ୍କର ଗୋଟିଏ ସସ୍କୃତ ଟୋଲ୍ ଥିଲା । ସେଇ ଟୋଲରେ ବାନାମ୍ବର ପଢ଼ିଲେ; କିନ୍ତୁ ତାଙ୍କୁ ମେଲେରିଆ ଜ୍ୱର ହୋଇଥାଏ, ମିହ୍ନା ବଢ଼ିଥାଏ । ଟୋଲ୍‌କୁ ଯିବା ବାଟରେ ଜ୍ୱର ଆସେ, ଫେରିଲା ବେଳକୁ ଛାଡ଼ିଯାଏ । କୌଣସି ଔଷଧ ଖାଉ ନଥାନ୍ତି । କ୍ରମେ ଦେହ ରକ୍ତଶୂନ୍ୟ ହୋଇଗଲା । ସେ ଅଚଳ ହୋଇ ପଡ଼ିଲେ । କକେଇ କିଛି ଉପାୟ ନ ପାଇ ଗ୍ରାମକୁ ପଠାଇ ଦେଲେ । ଗ୍ରାମରେ ସେ ନାନା ଚିକିତ୍ସା ପରେ ରୋଗମୁକ୍ତ ହେଲେ, କିନ୍ତୁ ଆଉ ଇରମ୍ ଫେରିଲେ ନାହିଁ । 'ନ ପାଠପଢ଼ା, ନ ଗୃହକର୍ମ' ଏଇ ଅବସ୍ଥାରେ କିଛି ଦିନ କଟିଲା, ନିରୁଦ୍ଦିଷ୍ଟ ହୋଇ ବୁଲୁଥିବା ବେଳେ ଜଣେ ଭଦ୍ରଲୋକ ତାଙ୍କ ପିଲାଙ୍କୁ ପଢ଼ାଇବାକୁ ଡାକିଲେ । ବାନାମ୍ବର ଦୁଇ ବେଳା ପଢ଼ାଇବାକୁ ଗଲେ, ମାସକୁ ବେତନ ଏକ ଟଙ୍କା ମାତ୍ର । ତାଙ୍କ ପିଲାଙ୍କ ସହିତ ଆଉ ସାତ ଆଠ ଜଣ ଛାତ୍ର ଜୁଟିଲେ । ସେମାନଙ୍କ ମଧ୍ୟରୁ ମାସକୁ କିଏ ଅଣାଏ, କିଏ ଦୁଇ ଅଣା ଦରମା ଦେଉଥାନ୍ତି । ୧୯୧୯ ପର୍ଯ୍ୟନ୍ତ ଏଇ ଅବସ୍ଥାରେ ଜୀବନ କଟିଲା ।

ତା ପରେ ସେ ଭଗବାନଙ୍କ ହାତରେ ନିଜକୁ ଛାଡ଼ିଦେଲେ—'ଯାହା କରିବାର ସେ କରନ୍ତୁ ।' ଦିନେ କଣ ମନହେଲା, ଜଣେ ଚନ୍ଦ୍ରାଳଣା ବଂଧୁଙ୍କ ସାହାଯ୍ୟରେ ଖଡ଼ଗପୁର ପର୍ଯ୍ୟନ୍ତ ଗାଡ଼ିରେ ଚାଲିଗଲେ—ଯଦି କିଛି ଚାକିରି ମିଳିଯାଏ ! ଆଠ ଦିନ ଖଡ଼ଗପୁରରେ କଟାଇଲାପରେ ଗଲେ ଜାମ୍‌ସେଦପୁର । ସେଠି ଜଣେ ବାଲ୍ୟ ସହପାଠୀଙ୍କ ସହିତ ଦେଖା ହୋଇଗଲା । ସେ ତାଙ୍କୁ ନିଜ ବସାକୁ ନେଇ-ଗଲେ । ଟାଟା କମ୍ପାନୀଙ୍କ ଆନୁକୂଲ୍ୟରେ ସେତେବେଳେ ଠକ୍‌କର ବାପା ଶିକ୍ଷା ସଂଗଠନ କାର୍ଯ୍ୟ କରୁଥିଲେ, ଶ୍ରୀଯୁକ୍ତ ଲକ୍ଷ୍ମୀ ନାରାୟଣ ସାହୁ ସହକାରୀ ଥିଲେ, ତାଙ୍କ ସହିତ ସାକ୍ଷାତ୍ କରିବାରୁ ସେ ବାନାମ୍ବରଙ୍କୁ ସିଂହଭୂମର ଓଡ଼ିଆ ଛାତ୍ରମାନଙ୍କୁ ଓଡ଼ିଆ ପଢ଼ାଇବା କାର୍ଯ୍ୟରେ ଲଗାଇଲେ । ଜଣେ ଓଡ଼ିଆପ୍ରେମୀ ସିଂହଭୂଷଣଙ୍କ ପିଣ୍ଡାରେ ସ୍କୁଲ୍ ଖୋଲିଲା । ବାନାମ୍ବର ପିଲାମାନଙ୍କୁ ଓଡ଼ିଆ ବର୍ଣ୍ଣମାଳା ଶିଖାଇବାକୁ ଲାଗିଲେ । ଏହି ସମୟରେ କମ୍ପାନୀରେ ଧର୍ମଘଟ ହେଲା । ଗୋରା ସୈନିକ ଜଗି ରହି କାହାକୁ କାରଖାନା ଭିତରକୁ ଛାଡ଼ିଦେଲେ ନାହିଁ । ଧର୍ମଘଟ ଉଗ୍ର ଆକାର ଧାରଣ କଲା । ଗୁଳିରେ କେତେକ ମୃତାହତ ହେଲେ, କର୍ମଚାରୀମାନେ ଟାଟା ଛାଡ଼ି ଘରକୁ ପଳାଇ

ଗଲେ । କାରଖାନା ବନ୍ଦ ହେବା ସଙ୍ଗେ ସଙ୍ଗେ ପାଠଶାଳା ଆପେ ଆପେ ବନ୍ଦ ହୋଇଗଲା ।

ବାନାମ୍ବର ଗ୍ରେକଶ ଖୋଜ ବୁଲୁବୁଲୁ ମେଣ୍ଟ୍ (ବୁଲମାନଙ୍କ ଜଗୁଥିଲା) କାମରେ ମୁକରର ହେଲେ--ଦିନକୁ ମଜୁରି ସାତ ଅଣା ମାତ୍ର । ରବିବାର ଦିନଟି ଛୁଟି । ତେଣୁ ସପ୍ତାହକୁ ଦୁଇ ଟଙ୍କା ଦଶ ଅଣା ମଜୁରି ମିଳିଲା ।

ଏଥିରେ ତାଙ୍କର ପଦୋନ୍ନତ ହେଲା । ସେ ହେଲେ 'ମେଣ୍ଟ'ରୁ 'ନମ୍ବର ପେଣ୍ଟର'; ଦୈନିକ ମଜୁରି ଆଠ ଅଣା । ଶ୍ରମିକମାନଙ୍କ ଦାବୀ ଫଳରେ ଏହା ପନ୍ଦର ଅଣା ଦୁଇ ପଇସା ହେଲା । ଏହି ଗ୍ରେକଟରେ ସେ ପ୍ରାୟ ଏକ ବର୍ଷ ଥିଲେ । ତାଙ୍କର ତତ୍ତ୍ୱାବଧାରକ ଥିଲେ ଜଣେ ଆଙ୍ଗ୍ଲୋ ଏଣ୍ଡିଆନ୍; ସେ ନିଜକୁ ଜଣେ ଆମେରିକାନ ବୋଲି କହୁଥିଲେ । ତାଙ୍କ ହାତର ବଣି ଆଙ୍ଗୁଠିଟି ତାଙ୍କର ନ ଥିଲା । ଅର୍ଦ୍ଧ ପାଗଳ, ନିତାନ୍ତ କୁଦ୍ଧଷୀ, ସଂସ୍କୃତ ସୌଜନ୍ୟହୀନ, ଅଶ୍ରାବ୍ୟ ଭାଷାରେ ସେ କର୍ମଗୃହମାନଙ୍କୁ ଶୋଧୁଥିଲା, ଏପରି ବ୍ୟକ୍ତି ଅଧୀନରେ ଗ୍ରେକଶ କରିବା ସମ୍ମାନହାନିକର ବିଚାରି ବାନାମ୍ବର ଗ୍ରେକଶ ଛାଡ଼ି ୧୯୬୧ ଖ୍ରୀଷ୍ଟାବ୍ଦରେ ଗ୍ରାମକୁ ପଳାଇ ଆସିଲେ । ଦାରିଦ୍ର୍ୟର ତୀବ୍ର କଷାଘାତ ତାଙ୍କୁ ପୁଣି ସହ୍ୟ କରିବାକୁ ହେଲା । ବେକାର ହୋଇ କିଛି କାଳ ବୁଲିଲା ପରେ ନିଜର ଅପରିଣାମଦର୍ଶିତାକୁ ସେ ଧିକ୍କାର କଲେ, କିନ୍ତୁ ସେଇ ନୀଚ ସାହେବର କଥା ସ୍ମରଣ ମାତ୍ରକେ ତାଙ୍କ ହୃଦୟ ଘୃଣାରେ ସଙ୍କୁଚିତ ହୋଇଗଲା । ମାଲଗିରି ଗଡ଼ଜାତରେ ବନ୍ଦୋବସ୍ତ ହେଉଥାଏ । କେତେ ଜଣ ଗ୍ରାମୀଣଙ୍କ ସହିତ ସେଠାକୁ ଯାଇ ସେ ପଟ୍ଟା ନକଲ କାର୍ଯ୍ୟରେ ନିଯୁକ୍ତ ହେଲେ । ଏସବୁ କାର୍ଯ୍ୟ ଭଲ ନ ଲଗିବାରୁ ସେ ପୁଣି ପଳାଇଗଲେ । ଉଦ୍ଦେଶ୍ୟ ସେଠି ସଂସ୍କୃତ କଲେଜରେ ପଢ଼ିବେ ।

ପୁରୀ ସଂସ୍କୃତ କଲେଜର ସେତେବେଳର ଅଧ୍ୟକ୍ଷ ଶ୍ରୀ ଶ୍ୟାମ ସୁନ୍ଦର ଦାସ ମହାପାତ୍ରଙ୍କ ସହିତ ସାକ୍ଷାତ କରି ସେ ନିଜର ଉଦ୍ଦେଶ୍ୟ ଜଣାଇଲେ । ୧୯୨୨, ଫେବୃୟାରି ୧୦ ତାରିଖ । ପ୍ରିନ୍ସିପାଲଙ୍କ ଅନୁଗ୍ରହରୁ ସେ କଲେଜରେ ନାମ ଲେଖାଇଲେ, ପ୍ରଥମା ଶ୍ରେଣୀରେ ନ୍ୟୂନବୟସ୍କ ପିଲାମାନଙ୍କ ସହିତ ତାଙ୍କୁ ପଢ଼ିବାକୁ ହେଲା । ସଙ୍କୋଚ ଲାଗୁଥାଏ, କିନ୍ତୁ ନିରୁପାୟ । ତାଙ୍କ ମେଧା ଉଚ୍ଚକୋଟୀର ଥିଲା । ପଢ଼ାପଢ଼ିର କିଞ୍ଚିତ୍ ସୁଯୋଗ ପାଇବା ମାତ୍ରେ ସେ କୃତିତ୍ୱ ଦର୍ଶାଇବାକୁ ସମର୍ଥ ହେଲେ । ସେ ପ୍ରଥମା ପରୀକ୍ଷାରେ ସମଗ୍ର ବିହାର ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କଲେ, ତତ୍ପରେ ସେ ସାହିତ୍ୟ ବ୍ୟାକରଣ ମଧ୍ୟମା, ଓ ସାହିତ୍ୟରେ ଆଚାର୍ଯ୍ୟ ପାସ୍ କଲେ । ୧୯୨୮ ମାର୍ଚ୍ଚ ମାସରେ ଶେଷ ପରୀକ୍ଷା ଦେଲେ, ଉତ୍କଳମଣି ଗୋପବନ୍ଧୁଙ୍କ ତିରୋଧାନ ଦୁଃସମ୍ବାଦ ଓ ପରୀକ୍ଷାରେ ସାଫଲ୍ୟସମ୍ବାଦ ଏକା ଦିନକେ ପାଇଥିଲେ ।

ସେ ପ୍ରଥମା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ତାଙ୍କର ପରମହିତୈଷୀ ଜେପୁରିଆ କଲେଜର ହରେକୃଷ୍ଣ ମହାନ୍ତଙ୍କ ପୁତ୍ରମାନଙ୍କର ଗୃହଶିକ୍ଷକ ରୂପେ ନିଯୁକ୍ତ ହେଲେ । ସେ ମୁଖ୍ୟତଃ ପିଲାମାନଙ୍କୁ ସଂସ୍କୃତ ପଢ଼ାଉଥିଲେ । ଶ୍ରୀ ମହାନ୍ତି ତାଙ୍କର ଖାଦ୍ୟପେୟ ଛଡ଼ା ଅନ୍ୟାନ୍ୟ ବ୍ୟୟଭାର ମଧ୍ୟ ବହନ କରୁଥିଲେ । ଗଣେଶ ଚତୁର୍ଥୀ ପୂଜାଦିନ ତାଙ୍କ ପିଲାମାନଙ୍କ ଲାଗି ନୂଆ ଲୁଗା ଆସିଲା । ବାଚସ୍ପତିଙ୍କ ଲାଗି ମଧ୍ୟ ଖଣ୍ଡିଏ ନୂଆଲୁଗା ଆସିଥିଲା । ପୁଷ୍କରିଣୀ ଘରେ ସେ ସେଇ ଲୁଗା ପାଲଟି ରଖି କଲେଜକୁ ଗଲେ । ଫେରଆସି ଦେଖିଲେ ଯେ କିଏ ଝରକାବାଟେ ଲୁଗାଟି ଚୋରିକରି ନେଇଯାଇଛି । ସେତେବେଳେ ତାଙ୍କର ଖଣ୍ଡିଏ ମାତ୍ର ଲୁଗା ଥିଲା । ତେଣୁ ସକାଳୁ ଉଠି ଏଇ ଶ୍ଳୋକଟି କାଗଜରେ ଲେଖି ପିଲଙ୍କ ହାତରେ ହରେକୃଷ୍ଣ ବାବୁଙ୍କ ନିକଟକୁ ପଠାଇଦେଲେ—

"ଚୀରଂ ତସ୍ୟ ଚୌରେଣ
ହୃତଂ ଜନସ୍ୟ ଶ୍ରେଣତମ୍
ପ୍ରାର୍ଥୟେଽର୍ଥଂ ସୁଚୀରଂ ବା
ଦତ୍ତ୍ୱା କୃତାର୍ଥୟନ୍ତୁ ମାମ୍ ।"

ଚିର ଦରିଦ୍ର ମୁଁ, ମୋ ଲୁଗାଖଣ୍ଡିକ ଶରନାଳ ଲାଗି ଚୋର ଚୋରିକରି ନେଇଗଲା । ଆପଣ ଅର୍ଥ ବା ଉତ୍ତମ ବସ୍ତ୍ର ଦାନକରି ମୋତେ କୃତାର୍ଥ କରନ୍ତୁ ।

ଶ୍ଳୋକଟି ପଢ଼ିବା ମାତ୍ରେ ସେଇ ଗୁଣଗ୍ରାହୀ ବଳାଡ଼ୁକୁ ଲୋକ ପଠାଇ ଲୁଗା ଖଣ୍ଡିଏ କିଣିଆଣି ଦେଇଥିଲେ ।]

ସେହି ବର୍ଷ କଲେଜରେ ଗୋଟିଏ ସଂସ୍କୃତ ଶ୍ଳୋକ ରଚନା ପ୍ରତିଯୋଗିତା ହୋଇଥିଲା । ବିଷୟ ଥିଲା 'ନଦୀ', ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ବ୍ୟକ୍ତିଙ୍କୁ ତିନିଟଙ୍କା ପୁରସ୍କାର ଦାନ ଘୋଷଣା କରାଯାଇଥିଲା । ସ୍ୱତ ଗୋଟାକବେଳେ ବାଚସ୍ପତି ଶ୍ଳୋକ ରଚନା ଶେଷ କଲେ, କିନ୍ତୁ ପ୍ରତିଯୋଗିତାରେ ଦାଖଲ କରିବାଲାଗି ତାଙ୍କର ସଙ୍କୋଚ ଆସିଥିଲା । ଜଣେ ବନ୍ଧୁ ତାଙ୍କଠାରୁ ତାହା ନେଇଯାଇ ପଣ୍ଡିତ ମାଧ୍ୱାଧର ତର୍କ ପଞ୍ଚାନନଙ୍କୁ ଦେଇଦେଲେ । ପଣ୍ଡିତ ମହାଶୟ ଶ୍ଳୋକଗୁଡ଼ିକ ପଢ଼ି ମୁଗ୍ଧ ହେଲେ, କିନ୍ତୁ 'ବ୍ୟକ୍ତ' ଶବ୍ଦର ବିଶେଷଣଟି ପୁଂଲିଙ୍ଗ ଥିବାର ଦେଖି 'ମନୁଷ୍ୟରୂପେଣ ମୃଗାଃ' ବୋଲି ଗାଳିଦେଲେ । ତଳେ ଶ୍ଳୋକରୁ କେତୋଟି ଉଦ୍ଧୃତ ହେଲା—

କ୍ୱାପି ଗ୍ରାବାକୁଳିତ ଜଠରା ସୈକତେ କ୍ୱାପି ଲୀନା
କ୍ୱାପ୍ୟାରଣ୍ୟେ ପ୍ରବହତି ଘନେ ଲୋକଦୃଷ୍ଟେଃ ପଦେ ବା

ତୀର୍ଥେ ଶୀର୍ଣ୍ଣା ସୃଜସି ଚ ବହୁ କ୍ଷୁଦ୍ର ବାପୀ ହ୍ରଦାନ୍ତ
ମନ୍ଦଂ ମନ୍ଦଂ ଚଳସି ଜଡସ୍ୟାଽନୁସ୍ରୀୟମାଣାଽଙ୍ଗ ଦେବ
ଏତେନାପି ତ୍ୟଜସି ନ ପୁନଃ ସ୍ୱଚ୍ଛତାମଦ୍ରିକନ୍ୟେ
ଦଗ୍ଧ୍ୱା ଭୂୟଃ କନକମନଲେ ପ୍ରାପୟେତ୍କୋ ବିରୂପ୍ୟମ୍ ।
ଆସ୍ୱାଦାସ୍ୟାଂ ଶରଦ ଜଗତାଂ କାଶହାସୈର୍ହସନ୍ତ୍ୟାମ୍
ନୀରୈଃ ପୂର୍ଣ୍ଣା ମୁନିଜନମନଃ ସ୍ୱଚ୍ଛକୈଃ ରୌପ୍ୟଶୁଭ୍ରୈଃ
ଛନ୍ନାଭସ୍ୟଃ ଫୁଲ୍ଲିତକମଳୈଃ ରାଜିତା ରାଜହଂସୈଃ
ଚେତଃ କେଷାଂ ହରସି ନ ସତାଂ ବସ୍ତୁତଃ ସ୍ନିଗ୍ଧରୂପା ।
ବର୍ଷାସୁତ୍ୱଂ ନବଜଳମଦା ବର୍ଦ୍ଧିତାମ୍ବୁ ପ୍ରବାହା
ଘୋରାବର୍ତ୍ତୈଃ ସହ କଳକଳା ଧ୍ୱାନମାବିଷ୍କରୋଷି
କୂଳଂ କାନ୍ତ୍ୱାଽନ୍ତିକତଟତରୂନାଶୁ ପ୍ରୋତ୍ପାଟୟନ୍ତ୍ୟଃ
ହତ୍ୱା ସତ୍ତ୍ୱାନ୍ ଜନୟସି କ୍ୱଚିତ୍ ଖଣ୍ଡ ସଂହାରଲୀଲାମ୍ ।
ପାଷାଣୀ ତ୍ୱଂ ତରଳ ହୃଦୟା ସାମ୍ପ୍ରତା ତ୍ୱଂ ବିସେନା
ଯୁକ୍ତା କମ୍ପାଭିଗମନପରେଽମ୍ଭୋନିଧେସ୍ତ୍ୱଂ ପ୍ରିୟେଽପି
ଗମ୍ଭୀରେଽପି ସ୍ଫୁଟ କଳରବାଽରତଂ ହ୍ଲାଦଶବ୍ଦମ୍
ବାଙ୍କ୍ତବଙ୍କ୍ତୁଂ ପ୍ରଭବତି କଦାକାଽପି ଧାତ୍ରୀ ବନୈବ ।

ତାପରେ ବୃତ୍ତିର ଅନୁସନ୍ଧାନ ହେଲା ପ୍ରଧାନ ଲକ୍ଷ୍ୟ । ସେ କଟକର 'ଦତ୍ତ ପ୍ରେସ୍'ରେ ପ୍ରୁଫ୍ ରିଡର୍ କାର୍ଯ୍ୟଟିଏ ପାଇଲେ । ଦୁଇମାସ ପରେ ସେ ଶ୍ରୀ କଣ୍ଠ ଶାସ୍ତ୍ରୀଙ୍କ ପ୍ରତିଷ୍ଠିତ ଲକ୍ଷ୍ମୀନାରାୟଣ ଟୋଲ୍‌ରେ ମୁଖ୍ୟ ପଣ୍ଡିତ ଭାବେ ନିଯୁକ୍ତ ହେଲେ । ତାଙ୍କ ରହଣିକାଳ ମଧ୍ୟରେ କେତେକ ଛାତ୍ର ମଧ୍ୟମା, ସାହିତ୍ୟ ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ତାପରେ ସେ କଟକ ପ୍ରିଣ୍ଟିଂ କମ୍ପାନୀର ପ୍ରୁଫ୍ ରିଡର୍ ଭାବେ ଓ କିଛିଦିନ ପରେ କେଉଁଝରର ସଂସ୍କୃତ ଟୋଲ୍‌ରେ ମୁଖ୍ୟ ପଣ୍ଡିତ ଭାବେ ନିଯୁକ୍ତି ଲାଭ କଲେ । ଏହିଠାରେ ହିଁ ତାଙ୍କ ବିଦ୍‌ବତ୍ତ୍ୱ ବିକାଶର ଅନୁକୂଳକ୍ଷେତ୍ର ଲାଭ କଲା ।

କେଉଁଝର ଗଡ଼କୁ ଯାଇ ଦେଖିଲେ—ସଂସ୍କୃତ ଅବସ୍ଥା ଶୋଚନୀୟ । ଟୋଲ୍‌ର ସ୍ୱତନ୍ତ୍ର ଗୃହ ନାହିଁ, ଛାତ୍ର ମଧ୍ୟ ନାହାନ୍ତି । କେବଳ ରାଜ ସରକାରଙ୍କ ଗ୍ରାଣ୍ଟଟିଏ ମାତ୍ର

ଅଛି । ପୁରୁଣା ରାଜବାଟିର ଗୋଟିଏ ବଖରା ସଫାସଫି ହୋଇ ଟୋଲ୍ ବସିଲା । ଶାସନମାନଙ୍କୁ ଯାଇ ପାଠ ନ ପଢ଼ି ବସିଥିବା ପିଲାଙ୍କ ମଧ୍ୟରୁ ଛାତ୍ର ଯୋଗାଡ଼ କରି ଆଣିବାକୁ ହେଲା । ଦେବାନ୍ ବ୍ରଜକିଶୋର ଶତପଥୀ କିଛି ଉପକରଣ ଯୋଗାଇ ଦେଲେ । ଟୋଲ ଚାଲିଲା । କେତେକ ଛାତ୍ର ପ୍ରଥମାରୁ ମଧ୍ୟମାକୁ ଉତ୍ତୀର୍ଣ୍ଣ ହେଲେ । ଟୋଲକୁ ଟ୍ରେନିଂ ସ୍କୁଲର ଗୋଟିଏ ବଖରାକୁ ଘୁଞ୍ଚାଇ ଦିଆଗଲା । କିନ୍ତୁ ନିଷ୍ଠର ବୃତ୍ତିଜୀବୀ ବ୍ରାହ୍ମଣମାନଙ୍କ ମଧ୍ୟରେ ସଂସ୍କୃତ ପ୍ରତି କୌଣସି ଆଗ୍ରହ ନ ଥିଲା, କାରଣ ଏହି ବିଦ୍ୟା ଅର୍ଥକରୀ ନ ଥିଲା । ବସିବାଠାରୁ ଜାଗିବା ନ୍ୟାୟରେ ଲୋକେ ସଂସ୍କୃତ ପଢ଼ୁଥିଲେ । ଆଗ୍ରହ ଜନ୍ମାଇବା ଚେଷ୍ଟାରେ ପଣ୍ଡିତ ବାନାମ୍ବର ଗଡ଼ରେ ବହୁ ଶତ୍ରୁ ସୃଷ୍ଟି କଲେ ।

୨

ଶେଷରେ ପ୍ରୟାସ ନିଷ୍ଫଳ ଜାଣି ସେ ଏକକ ବିଦ୍ୟା ସାଧନା ପ୍ରତି ମନ ଦେଲେ । ଅବସର ସମୟକୁ ନାନା ଗ୍ରନ୍ଥ ଅଧ୍ୟୟନରେ ଲଗାଇଲେ । ଏହି ସମୟରେ ତାଙ୍କର ପ୍ରଧାନ ସାଂସ୍କୃତିକ କାର୍ଯ୍ୟ ହେଲା—ପୋଥି ସଂଗ୍ରହ ଓ ସଙ୍କଳନ । ରାଜବାଟିରୁ ପ୍ରାପ୍ତ 'ରସ କଳ୍ପଦ୍ରୁମ' ପୋଥିର କେତେକାଂଶ କୀଟଦଷ୍ଟ ଓ ଖଣ୍ଡିତ ହୋଇଥିଲା । ବହୁ ଆଗ୍ରହରେ ସେ ତାହା ଉଦ୍ଧାର କଲେ । ଏହାର ମୂଲ୍ୟବାନ୍ ଶ୍ଳୋକ ବ୍ୟାଖ୍ୟା ଓ ଆଲୋଚନା ଶୁଣିବା ଲାଗି ବହୁ ଶ୍ରୋତା ଆସୁଥିଲେ । ନିୟମିତ ଆଲୋଚନା ଫଳରେ ତାଙ୍କ ଅନୁଶୀଳନ ଶକ୍ତି ବିକାଶ ଲାଭ କରିଥିଲା ଓ ଆତ୍ମପ୍ରତ୍ୟୟ ଜନ୍ମିଥିଲା ।

ତାପରେ ସେ ଗୋବିନ୍ଦ ଭଞ୍ଜଙ୍କ 'ଭକ୍ତମାଳା' ଗ୍ରନ୍ଥ ଉଦ୍ଧାର କଲେ ଓ ରାଜା ସାହେବଙ୍କ ଆନୁକୂଲ୍ୟରେ 'କେନ୍ଦୁଝର ଚନ୍ଦ୍ରମାଳା' ଶିରୋନାମାରେ ପ୍ରକାଶ କଲେ । ସାହିତ୍ୟିକମାନଙ୍କ ଉଚ୍ଚ ପ୍ରଶଂସା ଲାଭ ପରେ ରାଜ ପରିବାରର ଅନୁକୂଳ ଦୃଷ୍ଟି ପଣ୍ଡିତ ବାନାମ୍ବରଙ୍କ ଉପରେ ପଡ଼ିଲା ଓ ଖଳଲୋକଙ୍କ ଚୁଗୁଲି ପସର ଫାଟିଗଲା । ଏହିପରି ଗ୍ରନ୍ଥ ସଙ୍କଳନ ଓ ପ୍ରକାଶ ଦ୍ୱାରା ସେ ସମଗ୍ର ଉତ୍କଳର ବିଦଗ୍ଧ ମହଲରେ ପରିଚିତ ହେଲେ ଓ ତାଙ୍କ ପଦୋନ୍ନତିର ଦ୍ୱାର ଉଦ୍‌ଘାଟିତ ହେଲା ।

୧୯୪୪ ମସିହାରେ ଉତ୍କଳ ଖ୍ରୀଷ୍ଟିୟାନ୍ କଲେଜ (ଅଧୁନା ଖ୍ରାଇଷ୍ଟ କଲେଜ) ପ୍ରତିଷ୍ଠିତ ହେଲା । ଅଧ୍ୟାପକ ନିଯୁକ୍ତି ପାଇଁ ଦିଆ ଯାଇଥିବା ବିଜ୍ଞାପନରେ ସଂସ୍କୃତ ଓ ଓଡ଼ିଆ ଅଧ୍ୟାପକଙ୍କର ଯେଉଁ ଯୋଗ୍ୟତାର ଉଲ୍ଲେଖ ଥିଲା ତାହା ଦେଖି ସେ ଗୋଟିଏ ଆବେଦନ ପତ୍ର ପଠାଇଦେଲେ ।

ଇତି ମଧ୍ୟରେ ରେଭେନ୍ସା କଲେଜର ଦର୍ଶନ ଅଧ୍ୟାପକ ମହାମାନ୍ ବିପିନ-ବିହାରୀ ରାୟ ସତେ ବା ବାନାମ୍ବରଙ୍କ ଉଦ୍ଧାର କର୍ତ୍ତା ରୂପେ ଆସି କେନ୍ଦୁଝର ଗଡ଼ରେ

ଦେଖା ଦେଲେ । ସେ ଉଦାରଚେତା, ଗୁଣଜ୍ଞ, ବିଦ୍ୟାର ମୂଲ୍ୟ ବୁଝନ୍ତି, ପ୍ରକୃତ ବିଦ୍ୱାନଙ୍କୁ ଚିହ୍ନନ୍ତି । ବାନାମ୍ବର କେନ୍ଦୁଝର ଗ୍ରନ୍ଥମାଳା ତାଙ୍କୁ ଉପହାର ଦେଇଥିଲେ । ସଂକଳନ ରୀତି ଦେଖି ଓ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ପଢ଼ି ବିପିନବାବୁଙ୍କ ଉଚ୍ଚ ଧାରଣା ଜନ୍ମିଲା । ସେ ମନେ କଲେ ଯେ କେନ୍ଦୁଝରର ଅରଣ୍ୟାନୀରେ ଲୁକ୍କାୟିତ ଅଗଣିତ ଖଣି ମଧ୍ୟରେ ସେ ଗୋଟିଏ ଉତ୍କୃଷ୍ଟ ମଣି ଆବିଷ୍କାର କରିଛନ୍ତି, ଯେମିତି କରୁଥିଲେ ସାର୍ ଆଶୁତୋଷ ମୁଖାର୍ଜି କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗଳା ଭାଷା ଓ ସାହିତ୍ୟ ଅଧ୍ୟାପକ ନିଯୁକ୍ତି ବେଳେ । ଡିଗ୍ରୀ ଅପେକ୍ଷା ଜ୍ଞାନର ଗଭୀରତା ଓ କୃତିତ୍ୱକୁ ଯୋଗ୍ୟତାର ମାପକାଠି ରୂପେ ସେ ଧରୁଥିଲେ ।

ବିପିନବାବୁ ଖ୍ରୀଷ୍ଟିୟାନ୍ କଲେଜର ପ୍ରାବନ୍ଧକ କମିଟିର ଜଣେ ସଭ୍ୟ ଥିଲେ । ମୁଖ୍ୟତଃ ତାଙ୍କର ସୁପାରିସ୍‌ରେ ହିଁ ବାନାମ୍ବର ବାବୁ କଲେଜର ସଂସ୍କୃତ ଓ ଓଡ଼ିଆ ଅଧ୍ୟାପକ ରୂପେ ନିଯୁକ୍ତି ଲାଭ କଲେ । କିନ୍ତୁ ରାଜା ସାହେବଙ୍କ ଅନୁକୂଳ ମତ ନ ଥିବାରୁ ଯୋଗ ଦେବାରେ ବିଳମ୍ବ ଘଟିଲା । ଦେୱାନ୍ ପଂଡ଼ିତ କର୍ତ୍ତା ନିଷନ୍‌ଙ୍କ ପ୍ରଚେଷ୍ଟାରେ ସେ ଗଡ଼ ଷ୍କୋଲ୍‌ରୁ ଅବ୍ୟାହତି ଲାଭ କଲେ । କେନ୍ଦୁଝର ଛାଡ଼ି ଚାଲି-ଯାଉଥିବା ଜାଣି ଗୁଣଗ୍ରାହିକା ରାଣୀ ସାହେବା ଅତି ଦୁଃଖିତ ହେଲେ ଓ ସୁନା ମୁଦି, ପାଟ ଯୋଡ଼ା ଓ ପଚଶଟି ଟଙ୍କା ଉପହାର ଦେଲେ । ପଂଡ଼ିତ ବାନାମ୍ବର ନିମ୍ନ ଶ୍ଳୋକରେ ରାଜା ସାହେବ ଓ ଟିକାୟତଙ୍କୁ ଆଶୀର୍ବାଦ କଲେ—

ନଦୀ ଶଙ୍କୁନ ସମ୍ଭବା ଚୂଡ଼ାରସା ପ୍ଳାବିତା
ଦ୍ରବତ୍ କନକକାନ୍ତି ଭାଗ୍ ରୁଚିର ବେଣିବାରୋଜ୍ଜ୍ୱଳା
ମହୋନ୍ନମନଦା ତୁ ଯା ଭବତି ଭକ୍ତରାଜେଃ କ୍ଷଣାତ୍
ପ୍ରସାଦୟତୁ ସା ରମାରମଣ ତେ ମନଃ ଶ୍ରୀଃ ସଦା

କଟକ ଆସି ବାନାମ୍ବର ୧୯୪୪ ଅଗଷ୍ଟ ୧୫ ତାରିଖରେ ଉତ୍କଳ ଖ୍ରୀଷ୍ଟ ୟାନ୍ କଲେଜରେ ଯୋଗଦେଲେ । ଧର୍ମପ୍ରାଣ ଅଧ୍ୟକ୍ଷ ବ୍ରଜାନନ୍ଦ ମହାନ୍ତିଙ୍କ ସହିତ ସାକ୍ଷାତ୍ କଲାପରେ ତାଙ୍କ ମନରୁ ସମସ୍ତ ଗୌଣତ୍ୱ ଓ ଶଙ୍କା ଦୂର ହୋଇଯାଇଥିଲା । ଦୁଇମାସ ମଧ୍ୟରେ ସେ ଅଧ୍ୟାପନାରେ ଦକ୍ଷତାର ପରିଚୟ ଦେଇଥିଲେ ଓ ବିନୟ ସୌଜନ୍ୟାଦି ଗୁଣ ଯୋଗୁଁ ଅଧ୍ୟାପକ ଓ ଛାତ୍ର ମହଲରେ ବିଶେଷ ଲୋକପ୍ରିୟ ହୋଇଥିଲେ । କିନ୍ତୁ ତାଙ୍କୁ ମାସିକ ପଞ୍ଚସ୍ତରି ଟଙ୍କା ବେତନ ଦିଆଯାଉଥିଲା । ପରେ କଲେଜ ଅଧ୍ୟକ୍ଷ ଓ ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ସୁପାରିସ କ୍ରମେ ତାଙ୍କ ବେତନକୁ ଏମ୍.ଏ ଯୋଗ୍ୟତା ଥିବା ଅଧ୍ୟାପକଙ୍କ ବେତନ ସହିତ ସମାନ କରିଦିଆ ହୋଇଥିଲା ।

୧୯୪୪ରୁ ୧୯୫୭ ପର୍ଯ୍ୟନ୍ତ ସେ ଉକ୍ତ କଲେଜର ଅଧ୍ୟାପକ ଥିଲେ ଓ ଉତ୍କଳ-ବିଶ୍ୱବିଦ୍ୟାଳୟର ସିନେଟ୍ ସଭ୍ୟ ହୋଇଥିଲେ । ତାଙ୍କ ପାଣ୍ଡିତ୍ୟ ପ୍ରତିଷ୍ଠା ବଢ଼ିଥିଲା ଓ ପଣ୍ଡିତ ନୀଳକଣ୍ଠ ଦାସ ନବଭାରତ ପ୍ରେସ୍‌କୁ ଡକାଇ ନାନା ବିଷୟରେ ତାଙ୍କ ସହିତ ଆଲୋଚନା କରୁଥିଲେ ।

୧୯୫୭ ମସିହା ଜୁଲାଇ ନଅ ତାରିଖରୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ସଙ୍କଳିତ ଜ୍ଞାନକୋଷ ବିଭାଗରେ ସହକାରୀ ସଙ୍କଳକଭାବେ ଯୋଗ ଦେଲେ । ସେତେବେଳେ ଡକ୍ଟର ମାୟାଧର ମାନସିଂହ ଜ୍ଞାନକୋଷର ମୁଖ୍ୟ ସଙ୍କଳକ ଥିଲେ । ମାନସିଂହ ଜ୍ଞାନକୋଷର ଚତୁର୍ଥ ଖଣ୍ଡ ବାହାରିବା ପରେ ପଣ୍ଡିତ ବାନାମ୍ବରଙ୍କୁ ୧୯୬୮ ମସିହା ସେପ୍‌ଟେମ୍ବର ମାସରୁ ଅବ୍ୟାହତି ମିଳିଲା । ତାପରେ ସେ କେନ୍ଦ୍ରାପଡ଼ା କଲେଜରେ କେତୋଟି ମାସ ଅଧ୍ୟାପକ ହୋଇଥିଲେ, କିନ୍ତୁ ସ୍ୱାସ୍ଥ୍ୟଭଙ୍ଗ ଦୃଷ୍ଟିରୁ ତାଙ୍କୁ କଲେଜ ଛାଡ଼ି ଚାଲିଆସିବାକୁ ହୋଇଥିଲା ।

ସାହିତ୍ୟ ପତ୍ରିକାମାନଙ୍କରେ ତାଙ୍କର ବହୁ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ‘ପୁଷ୍ପଗିରି’ ପ୍ରବନ୍ଧରେ ସେ କେନ୍ଦୁଝରର ସୀତାଭିଞ୍ଜି ଗ୍ରାମର ‘ରାବଣଛାୟା’ ଭିତ୍ତିଚିତ୍ର ପ୍ରସଙ୍ଗ ଆଲୋଚନା କରିଛନ୍ତି । ତାଙ୍କ ମତରେ ଏହା ଏକ ବୌଦ୍ଧପୀଠ, ଉତ୍କଳୀୟ କଳା ରାଜ୍ୟର ଗୌରବ । ତାଙ୍କ ଅନୁସନ୍ଧାନ ଫଳରେ ଏହି ଗ୍ରାମରୁ ୩୬ଟି କୁଶାଣ ମୁଦ୍ରା ମିଳିଥିଲା ।

‘ଶାନ୍ତିଦେବ ଓ ତାହାର ରାଜ୍ୟ’ ପ୍ରବନ୍ଧରେ ଶାନ୍ତିଦେବ ଓଡ଼ିଆ ଚର୍ଯ୍ୟାଗୀତର ଜଣେ ରଚୟିତା ବୋଲି ସେ ପ୍ରତିପାଦନ କରିଛନ୍ତି । କେନ୍ଦୁଝର ଗଡ଼ରୁ ପାଞ୍ଚମାଇଲ ଦୂରରେ ‘ସନ୍ତୋଇ ଭଞ୍ଜ’ ପାହାଡ଼ ଅଛି । ସେଠି ଗୁମ୍ଫା ନିକଟରେ ଧ୍ୟାନୀ ବୁଦ୍ଧଙ୍କର ମୂର୍ତ୍ତି ଅଛି, ଏବେ ସେ ଠାକୁରାଣୀ ରୂପେ ପୂଜିତ । ‘ବୌଦ୍ଧ ଦୋହା ଓ ଗାନ’ରେ ଶାନ୍ତିଦେବ ରାଉତ ଓ ଭୁସୁକଙ୍କ ନାମରେ ଭଣିତ ଯେଉଁ ଚର୍ଯ୍ୟା ଗୀତଗୁଡ଼ିକ ଅଛି, ସେସବୁ କେନ୍ଦୁଝର ରାମ ସଙ୍କଧାଙ୍କ ରାଜପୁତ୍ର ସନ୍ତୋଇ ଭଞ୍ଜଙ୍କର ରଚନା ବୋଲି ମନେହୁଏ ।

‘ଛନ୍ଦ ଶବ୍ଦର ଉତ୍ପତ୍ତି’ ନାମରେ ସେ ଗୋଟିଏ ଦୀର୍ଘ ପ୍ରବନ୍ଧ ‘ନବଭାରତ’ରେ ଲେଖିଥିଲେ । ଏହା ତାଙ୍କ ଗଭୀର ଜ୍ଞାନର ପରିଚାୟକ । ‘ସ୍କନ୍ଧ’ ଶବ୍ଦରୁ ‘ଛନ୍ଦ’ ଶବ୍ଦର ଉତ୍ପତ୍ତି ହୋଇଅଛି ବୋଲି ସେ ଦର୍ଶାଇଛନ୍ତି ।

୨୮ । ୮ । ୭୮ ରେ ବାନାମ୍ବର ପରଲୋକଗାମୀ ହେଲେ । ତାଙ୍କ ଜୀବନରେ କିଛି ଚମକ ନାହିଁ, ହୁଏତ କିଛି ଚହଟ ନାହିଁ । ତଥାପି ଏକ ସ୍ଥିରକାଳ ହୃଦୟର ଏହା ଚିତ୍ତାକର୍ଷକ ।

ବାନାମ୍ବରଙ୍କ ପ୍ରକାଶିତ ପୁସ୍ତକାବଳୀ—

୧ । ସଚ୍ଚିଦାନନ୍ଦ—ସଂସ୍କୃତରୁ ଅନୁଦିତ

୨ । ଅଶ୍ୱ ଶାସ୍ତ୍ରମ୍—ମୂଳ ଅନୁବାଦ ସହିତ ପ୍ରକାଶିତ ।

୩ । ସଙ୍ଗୀତ ମୁକ୍ତାବଳୀ—ସାନୁବାଦ ପ୍ରକାଶିତ (ପ୍ରକାଶକ-ଉତ୍କଳବିଶ୍ୱବିଦ୍ୟାଳୟ)

୪ । ନାଟ୍ୟ ଶାସ୍ତ୍ରମ୍—ମୂଳ ଅନୁବାଦ ସହିତ ପ୍ରକାଶିତ ।

୫ । ରସକଳ୍ପଦ୍ରୁମଃ—ପ୍ରକାଶକ-ଓଡ଼ିଶା ସାହିତ୍ୟ ଏକାଡେମୀ ।

୬ । ଭଞ୍ଜମହୋଦୟମ୍—କେଉଁଝର ବିଷୟକ ପ୍ରାଚୀନ ସଂସ୍କୃତ ଗ୍ରନ୍ଥ, ଟୀକା ଟିପ୍ପଣୀ ସହ ପ୍ରକାଶିତ ।

୭ । ଭକ୍ତ ବିନୋଦ—ସଂକଳନ-ଲେଖକ- ଗୋବିନ୍ଦ ଭଞ୍ଜ

୮ । ପ୍ରେମ ଗାଥା— " " "

୯ । ବହୁଳା ଚରିତ— " " "

୧୦ । ରସ ମୁକ୍ତାବଳୀ— " " ଗଦାଧର ଭଞ୍ଜ—ଓଡ଼ିଆ ଛନ୍ଦରେ ରସ ବିବେଚନ ।

୧୧ । ଅମ୍ବିକା ବିଳାସ—ଏହାର ଲେଖକ ବଳଭଦ୍ର ଭଞ୍ଜ ବୋଲି 'ସହକାର'ରେ ପ୍ରକାଶିତ ପ୍ରବନ୍ଧମାନଙ୍କରେ ବାନାମ୍ବର ପ୍ରତିପାଦନ କରିଛନ୍ତି ।



# ଲାଲା ନଗେନ୍ଦ୍ରକୁମାର ରାୟ

ଜନ୍ମ—୧୩ । ୧୦ । ୧୮୯୮
ମୃତ୍ୟୁ—୮ । ୧ । ୧୯୭୯

'ଦାରିଦ୍ର୍ୟ ଆଉ ହତାଶା ଗ୍ଲାନିରେ
ଶେଷ ନିଃଶ୍ୱାସ ଯେତେବେଳେ
ଭ୍ରମର ଗଲା
ଲକ୍ଷ୍ମୀଙ୍କ ଦୁଆର ବନ୍ଦ ଥିଲା
ମୃତ୍ୟୁ ପରେ ଫିଟିଗଲା ହାହାକାର, କର୍ମିଲା ମିଥିଲା ।'

—କୃତ୍ତିବହାସ

ଶ୍ରୀ ଅରବିନ୍ଦ, ଶ୍ରୀମା, ରବୀନ୍ଦ୍ର ନାଥ, ରାମକୃଷ୍ଣ, ଶାରଦା ଦେବୀ, ବିବେକାନନ୍ଦ ସତ୍ୟସାଇ ବାବା, ମଧୁସୂଦନ, ଚିତ୍ତରଞ୍ଜନ, ଗାନ୍ଧୀ, ବୁଦ୍ଧ, ନାନକଙ୍କ ପ୍ରତିକୃତି— ସେସବୁ ମଧ୍ୟରେ ସେ ଦିନ ବସିଥିଲେ ଆପଣ, ଦାରିଦ୍ର୍ୟ, ବାର୍ଦ୍ଧକ୍ୟ, ହତାଶା, ଗ୍ଲାନିରେ ମ୍ଲାନ—ଆଗକୁ ସ୍ୱଛନ୍ଦି ଭରସା ବାନ୍ଧିବାର, ସ୍ୱପ୍ନ ଦେଖିବାର କିଛି ନ ଥିଲା, କିନ୍ତୁ ପଛଟା ଦିଶୁଥିଲା ଉଜ୍ଜ୍ୱଳ, ସୁନ୍ଦର ଆଉ ମଧୁର । କିନ୍ତୁ ସେସବୁ ଏବେ ଭାବି ଲାଭ କଣ ? ଯୋଉ ଗ୍ରନ୍ଥ ଏଡ଼ି ସେଠି ଟିକିଏ ଟିକିଏ ଚିରିକିଛି, ସେ ବେଶୀ ବେଶୀ ଫାଟିବ ନା ଆଉ କଣ ହେବ ?

କଲମ ଖୋଲି କାଗଜରେ ଥୋଇ ମୁଁ ବସିଛି ହଜିଯାଇଥିବା ତାଙ୍କ ସମୃଦ୍ଧ ସ୍ମୃତିରୁ କିଛି ସାଉଁଟି ରଖିବା ଲାଗି । ମୋତେ ନିର୍ବେଦବନ୍ଧା ଦେଖି ଲାଲା ନଗେନ୍ଦ୍ର କୁମାର ଆରମ୍ଭିଲେ—

"ମୁଖ୍ୟ କମ୍ପୋଜିଟରଙ୍କୁ ନ'ଟି ଟଙ୍କା ନ ଦେଲେ ସେ କାଲି ଆସିବେ ନାହିଁ । ଟଙ୍କା ଖୋଜି ଖୋଜି ବୁଲିଲି ଟ୍ରେଡ଼ିଂ କମ୍ପାନୀରୁ ମନ ମୋହନ ପୁସ୍ତକାଳୟ । ନିରାଶାରେ ଫେରୁ ଫେରୁ ଜଣେ ବଣିଆ ହାବୁଡ଼ରେ ପଡ଼ିଲି—ଲୁହାକଡ଼ାରେ ସୁନା

ପୁଚ୍ଛ ଦେଇ ସୁନାଝଡ଼ ବୋଲି ବକଚ୍ଛ—ଏ ସମ୍ବାଦଟି 'ଦେଶକଥା'ରେ ପ୍ରକାଶ ନ କଲେ ଦୁଇ ହଜାର ଟଙ୍କା ଦେବ, କହିଲ । ନାହିଁ କରିଦେଲି, ସ୍ୱାମୀ, ସ୍ତ୍ରୀ ମୋ ଘରକୁ ଆସି ଛ' ହଜାର ଟଙ୍କା ଯାଚିଲେ । ପଣ୍ଡିତ ମନା କରିଦେଇ ରାଗରେ ପଚାରିଲି—ତୁମେ କଣ ଗୃହୀ, କେହି ସାଧୁ ହୋଇ ନହେବେ ନାହିଁ ?

"ଦେଶକଥାରେ ସମ୍ବାଦଟି ବାହାରିଲା । କିନ୍ତୁ ବଣିଆ ଜଣ ଫୁଲାଇ ସେ କାଗଜ ଉପରେ ଛେପ ପକାଇ ଅଳଥା ଟୋକେଇକ ଫିଙ୍ଗି ଦେଲା, ପୁଣ ଫଣ୍ଡକୁ କିଛି ଟଙ୍କା ପ୍ରାୟଶ୍ଚିତ୍ତ ଦେଇ ସେ ସାଧୁ ପାଲଟିଗଲା । କେତେ ଜଣ ରାଜ୍ୟ ବାହାଦୁର ତାକୁ ଶଙ୍ଖରେ ପୂରାଇ ଚନ୍ଦ ଆଚ୍ଛାଦିଲା କରିନେଲେ । ସେତେବେଳେ ବୋଉ ମୋତେ ନ' ଟଙ୍କା ଗୁଣ୍ଡଅଣ୍ଡା ଦେଇ ଉପସ୍ଥିତ ବିପଦରୁ ରକ୍ଷା କରିଥିଲା । ବହୁ ଦୁଃଖ ଓ ସଂଗ୍ରାମର ପ୍ରତୀକ ମୋ ଦେଶକଥା ।"

ଦିନେ 'ଏହା ଓଡ଼ିଶାର ଗୋଟିଏ ଲୋକପ୍ରିୟ ଦୈନିକ ପତ୍ରିକା ଥିଲା । ଲାଲା ନଗେନ୍ଦ୍ରକୁମାର ରାୟ ଏହାର ପ୍ରତିଷ୍ଠାତା ଓ ସମ୍ପାଦକ ଥିଲେ । ରାଜା, ଜମିଦାର, ସରକାରୀ ଅଫିସର କାହାର ଭ୍ରୂକୁଟିକୁ ନ ଡରି ନିର୍ଭୀକଭାବରେ ସେ ତାଙ୍କର ମତ ପ୍ରକାଶ କରି ଯାଉଥିଲେ । ସେଥିଲାଗି ତାଙ୍କୁ ବିକଟ ଦାରିଦ୍ର୍ୟ, ବିପଦ ଓ ଦୁଃଖ ବରଣ କରିବାକୁ ହୋଇଥିଲା । ଲାଲ ଜଣେ ସମ୍ପାଦକ ଭାବରେ ମହାପ୍ରାଣ, ନମସ୍ୟ; କେତେ କବି, ସାହିତ୍ୟିକ, ସମ୍ପାଦକ ସେତେବେଳେ ରାଜା ଅନୁଗ୍ରହକୁ ପରମ ସୌଭାଗ୍ୟର ବିଷୟ ମନେ କରୁଥିଲେ; ସେହି ପରିପ୍ରେକ୍ଷୀରେ ଲାଲଙ୍କ ମହତ୍ତ୍ୱର ପରିଚୟ ଉଦ୍ଧୃତ ସମ୍ପାଦକୀୟ କୟନ୍ତ୍ର ପରିମାଣରେ ଦେଇପାରିବ ।

୩୦ । ୩ । ୧୯୩୧, ଦେଶ କଥା—

"ରାଜ୍ୟସ୍ତରେ କଲେଜ ହେଲାବେଳେ ମନେ ହେଉଥିଲା, ଏଣିକି ରାଜାମାନେ ସୁଶିକ୍ଷିତ ହେଲେ ପ୍ରଜାଙ୍କ ହାତଗୁହାରି ନବ୍ୟସଭ୍ୟ ଦୃଷ୍ଟିରେ ଦେଖି ପ୍ରତିକାର କରିବେ; କିନ୍ତୁ କଲେଜ ମାର୍କା ପାଇ ଏହି (ଗଡ଼ଜାତ) ରାଜାମାନେ ପ୍ରକୃତରଞ୍ଜନତା ମୋଟେ ଶିଖୁନାହାନ୍ତି । ଯାହା ଶିଖୁଛନ୍ତି, ତାହା ବିଳାସବ୍ୟସନ ଏବଂ ଗୁଡ଼ାଏ ଅସଙ୍ଗତ, ଅବାଞ୍ଛନୀୟ, ମହାର୍ଘ ଆଦବ କାଇଦା—ଫଳରେ ସେମାନଙ୍କ ବ୍ୟୟ ଆୟ ଅପେକ୍ଷା ବେଶୀ ହେବାରୁ ବେଶୀ ଶୋଷଣ, ବେଶୀ ବେଠି ଓ ସେଥିପାଇଁ ବେଶୀ ମାଡ଼ର ତାଣ୍ଡବଲୀଳା ଚାଲିଛି । ବିଶ୍ୱାସୀ, ବହୁଦର୍ଶୀ, ଧର୍ମଭୀରୁ ପରାମର୍ଶଦାତା ପରିବର୍ତ୍ତେ ପ୍ରବୃତ୍ତିଛନ୍ତି ଗୁଡ଼ାଏ କାନକୁହା, ଆଜ୍ଞାବକା ( ଆମ୍ବକୁ ଲମ୍ବ ବୋଲି କହିଲେ ହେ ରାଜନ, ଯେଉଁମାନେ ସେ କଥାକୁ ନ କରନ୍ତି ଖଣ୍ଡନ, ସେହିମାନେ ଏ ଜଗତେ

ଆଲ୍ଗବନ୍ଧା ବନ୍ଧତ ) ଦଳ, ଏବଂ ଫମଣଃ ସେହିମାନେ ରାଜାଙ୍କ ଅଧଃପାତକୁ ଟାଣି ନେଉଛନ୍ତି । ରାଜସ୍ୱର ଅଧା ତ ମଦର କଣାରେ ବ୍ରେଜବାଜ ଭୂଲି ହୁଡ଼ି ଯାଉଛି । ପ୍ରଜାଙ୍କ ମଙ୍ଗଳ ପାଇଁ ଉଦ୍‌ବୃତ୍ତ କାହିଁ ହେବ ? ରାଜାମାନେ ଯାହା ବା କରୁଛ ଭଲ ହୁଅନ୍ତେ, ପାଖ ଲୋକଦଳଙ୍କି ସେମାନଙ୍କ ମୁଣ୍ଡ ଖାଇ ବସୁଛନ୍ତି ।''

''ଓଡ଼ିଶାର ଉଦନଷ୍ଟର ଗଡ଼ଜାତ ଏବଂ ତାକୁ ବାଦ୍‌ଦେଲେ ଓଡ଼ିଶା ଉନ୍ନତ ପଥରେ ଅଗ୍ରସର ହେବା ବଡ଼ମୂନା ।''

''ଯେଉଁ କେତେ ଉଷଣ ଜାଣା ଗଡ଼ଜାତ ଭ୍ରମଣରେ ଯାଆନ୍ତି, ସେମାନେ ଆପଣା ଝୋଲ ଭର୍ତ୍ତିକରିବା ପାଇଁ ରଜାଙ୍କ ବନ୍ଦନା ଗାଇବୁଲନ୍ତି, କନ୍ତୁ ସେମାନେ ଭାବନ୍ତି ନାହିଁ, ବେଙ୍ଗକୁ ଟିଲାଏ ଟେକା ମାରି ଖେଳିଲାବେଳେ ତାହା ବେଙ୍ଗର ମୃତ୍ୟୁ ଘଟାଇଲା ପରି ତାଙ୍କର ବନ୍ଦନା ବନାମ ଅପମାନ କରିବା ଦ୍ୱାରା ସେମାନେ ଯେ ପ୍ରଜାଙ୍କ ତଣ୍ଟିରେ ଠିଆ ହେଉଛନ୍ତି ।''

''ସେମାନେ ( ରଜାମାନେ ) ଯେଉଁ ବିଳାସବ୍ୟସନକୁ ସଭ୍ୟତା ମନେ କରୁଛନ୍ତି ତାହା ସଭ୍ୟତା ନୁହେଁ, ବରଂ ଅସ୍ୱାଭାବିକତାର ହଳାହଳ ଏବଂ ତଦ୍‌ଦ୍ୱାରା ସେମାନେ ରଜା ପ୍ରଜାର ସଂଘର୍ଷଣ ଅଗ୍ନିରେ ଇନ୍ଧନ ଯୋଗାଉଛନ୍ତି ।''

''ଅବଶ୍ୟ ବମ୍ବେଇ ଅଞ୍ଚଳରେ ଏମିତିକା କ୍ଷୁଦ୍ର କ୍ଷୁଦ୍ର ଅନେକ ରାଜ୍ୟ ଅଛି । ସେଠାରେ ଅଧିକାଂଶରେ କଲେଜ ଅଥବା ହାଇସ୍କୁଲଟିଏ ଦେଖିବାକୁ ମିଳେ । ଓଡ଼ିଶାର ୨୪ ଗଡ଼ଜାତରେ ୨୪ଟା ମାଇନର ସ୍କୁଲ ଅଛି କି ନାହିଁ ସନ୍ଦେହ । ଏମିତିକା ଜବରଦସ୍ତି ଅଜ୍ଞାନ ଅନ୍ଧକାରରେ ରଖି, ବେଠି ଖଟାଇ, ମାରଣ ରଜଦ ପ୍ରଭୃତ ଆଦାୟ କରି କେତେଦିନ ଶାସନକରି ଚାଲିବ ? ଏସବୁ ବିଷୟରେ ଆମ୍ଭେମାନେ ପଲିଟିକାଲ ଏଜେଣ୍ଟଙ୍କର ବିଶେଷ କରି ଆଇନ ଅଦାଲତ ଏବଂ ଆୟବ୍ୟୟ ଉପଲକ୍ଷେ ଟିକ୍‌ସ ଦୃଷ୍ଟି ଆକର୍ଷଣ କରୁଛୁ । ଅତ୍ୟାଚାରୀ ଓ ବିପଥଗାମୀକୁ ଠିକଣା କରିବାର କ୍ଷମତା ତାଙ୍କର ଅଛି । ସେ ଯଦି ଚେଷ୍ଟାକରି ଗୁପ୍ତ ସନ୍ଧାନ ନିଅନ୍ତି, ତେବେ ଦେଖିବେ, ଓଡ଼ିଶା ବଣ ଜଙ୍ଗଲ ଭିତରେ ଇଂରେଜ ରାଜ୍ୟରେ ଅର୍ଦ୍ଧ ବିଂଶ ଶତକରେ ଲୁଚା ଯେଉଁ ଅଭିନୟ ଘଟୁଛି, ତାହା କେତେ ଜଘନ୍ୟ, କେତେ କ୍ରୂର ଏବଂ କେତେ ଅମାର୍ଜନୀୟ ।''

ଓଡ଼ିଶା ଗଡ଼ଜାତର ଚଳଣି, ଆଚାର ଓ ଶାସନ ବିଷୟରେ ସେ ଜଣେ ଅଭିଜ୍ଞ ବ୍ୟକ୍ତି । ଗଡ଼ଜାତର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଇତିହାସ

ଲଗି ତାଙ୍କ ଅଭିଜ୍ଞତା ଏକାନ୍ତ ମୂଲ୍ୟବାନ୍ । ତଳେ ଗୋଟିଏ ଦୁଇଟି ଘଟଣା ଉଦ୍ଧାର କଲି ।

ଶ୍ରୀ ଶ୍ରୀ ଶ୍ରୀ ବିଶ୍ୱନାଥ ଦେବ ବର୍ମା ଶ୍ରୀମୁକରଣ ବେବର୍ତ୍ତା ପଟ୍ଟନାୟକ ଅଷ୍ଟଦୁର୍ଗାଧୀଶ୍ୱର; ଗଭର୍ଣ୍ଣରଙ୍କ ସମ୍ବର୍ଦ୍ଧନା ଜଣାଇବା ଲଗି ଆଠଗଡ଼ର ଖୁଣ୍ଟୁଣିଠାରେ ମହାରାଜା ବିଜେ ହୋଇଥାନ୍ତି; ତାଳଚେରର ପଣ୍ଡିତ ରଘୁନାଥ ମିଶ୍ର ଓ ଲଲ୍ଲୁ ଦୁହେଁ ଶଗଡ଼ରେ ତାଳଚେର ଯାଉଥାନ୍ତି । ରାସ୍ତା ବନ୍ଦ । ଉଭୟେ ସେଠି ଅଟକିବାକୁ ବାଧ୍ୟ ହେଲେ; ଯିବାର କୌଣସି ଉପାୟ ନଦେଖି ପଣ୍ଡିତେ ମହାରାଜାଙ୍କୁ ତୁଷ୍ଟ କରିବା ଲଗି ଗୋଟିଏ କବିତା ରଚନା କଲେ—ଏହା କବିତା ନୁହେଁ, ପ୍ରକୃତ ପକ୍ଷେ ମହାରାଜାଙ୍କ ସ୍ତୁତିବାଚନ । କବିତାଟି ଶୁଣି ପ୍ରଶଂସାପ୍ରିୟ ମହାରାଜା କହି ଆଣ୍ଡ ହେଲେ—

ଆମ୍ଭେ ବୃନ୍ଦାବନରେ ଲକ୍ଷେ ଟଙ୍କା ଦେଇ ଗୋଟିଏ ନୂତନ ରାଧାକୃଷ୍ଣ ମନ୍ଦିର ପ୍ରତିଷ୍ଠା କରିଛୁ; କବିତାରେ ତାର ଉଲ୍ଲେଖ ନାହିଁ ।

ଆମ୍ଭେ ବେଶ୍ୟା ସମାଜରେ ବେଦ ପ୍ରଚାର ଲଗି ଯେଉଁ ବ୍ରାହ୍ମଣ ପଣ୍ଡିତ ନିଯୁକ୍ତ କରିଛୁ, କଟକରୁ ଆଠଜଣ ବେଶ୍ୟା ଆସି ଆଠଗଡ଼ରେ ବେଦଶିକ୍ଷା କରୁଛନ୍ତି, କବିତାରେ ତାର ଉଲ୍ଲେଖ ନାହିଁ ।

ରାଣୀ ସାହେବା ରାଧାପ୍ରିୟା ପଟ୍ଟଦେବୀ ଅଷ୍ଟଦୁର୍ଗାଧୀଶ୍ୱରୀଙ୍କ ନାମରେ ଆମ୍ଭେ ଅନେକ ସଙ୍ଗୀତ ରଚନା କରିଅଛୁ, କବିତାରେ ତାର ଉଲ୍ଲେଖ ନାହିଁ ।

ରାଜପ୍ରଶସ୍ତିରେ ସଙ୍ଗେ ସଙ୍ଗେ ସେ ସମସ୍ତ କୀର୍ତ୍ତି ଅନ୍ତର୍ଭୁକ୍ତ କରାଗଲା । ପଣ୍ଡିତେ କହିଲେ—ଶ୍ରୀମୁଙ୍କର ଏତେ କୀର୍ତ୍ତି ଅଛି ଯେ ଯାହା ଦେଖି ଶତ୍ରୁ ସୁଦ୍ଧା ଧନ୍ୟ ଧନ୍ୟ କହୁଛନ୍ତି ।

ରାଜାଙ୍କ ପାଖରେ ଜଣେ ଖୋସାମଦିଆ ଦାଢ଼ିଆ ପଣ୍ଡିତ ଥିଲେ; ସେ କହିଲେ—ମହାପ୍ରଭୁଙ୍କ ପ୍ରତି ଗମ୍ଭୀର ଆକ୍ଷେପ କରାଗଲା, ଯେତେବେଳେ କୁହାଗଲା, ମହାପ୍ରଭୁଙ୍କର ଶତ୍ରୁ ଅଛନ୍ତି, ମହାପ୍ରଭୁ ଭଲଲୋକ ନୁହନ୍ତି ।

ଏ ଉକ୍ତି ଶ୍ରବଣ କରି ମହାରାଜା ପଣ୍ଡିତ ଓ ଲଲ୍ଲୁଙ୍କ ପ୍ରତି ଏପରି କଟାକ୍ଷ କଲେ ଯେ ଲଲ୍ଲୁ ଶ୍ରନଆଁ ହୋଇ କହିଲେ—ମହାରାଜା ଅଜାତଶତ୍ରୁ ।

ରାଜା ଏଥିରେ ସନ୍ତୁଷ୍ଟ ହୋଇ କହିଲେ—ତାଳଚେର ଆମ୍ଭର ବନ୍ଧୁରାଜ୍ୟ, ଆମ୍ଭର ଅତିଥିମାନେ ହୀନସ୍ତା ହୋଇ ସେଠି ପହଞ୍ଚିଲେ ଆମ୍ଭର ନିନ୍ଦା ହେବ ଶୀଘ୍ର ପହଞ୍ଚାଅ ।

ଆଗରେ ଛ' ଜଣ ଟେଡ୍ରେ ଟାଣିଲେ; ସେମାନେ ଦୌଡ଼ି ଦୌଡ଼ି ଥକିଗଲେ ଆଉ ଛ' ଜଣ ଟାଣିଲେ । ଏହି ପ୍ରକାରେ ଦିନ ରାତି ଦୌଡ଼ି ଦୌଡ଼ି ଲୋକମାନେ ୪୮ ମାଇଲ ପଥ ଅତିକ୍ରମ କରି ହୁଳିଆ ଗୀତ ଗାଇ ଗାଇ ଅତିଥିମାନଙ୍କୁ ତାଳଚେରରେ ପହଞ୍ଚାଇ ଦେଲେ; ଦିନକ ପାଇଁ ଯେଉଁ ଛତ୍ରା ଓ ଜଳଖିଆ ମିଳିଥିଲା, ତାକୁ ଖାଇବାକୁ ବେଳ ନାହିଁ ।

ଅଠଗଡ଼ର ସେହି ମହାରାଜାଙ୍କ ଉଦ୍ଧତ ଅନୁଗୁଳର ଟ୍ରେଜେରୀଗାର୍ଡ ଚାକିରୀରୁ ଡିସ୍‌ମିସ୍ ହୋଇଥିବା ଅବଦୁଲ ଗନି ସାକ୍ଷାତ୍ କଲା; ସେ ତାକୁ ରାଜ୍ୟର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ କରିଦେଲେ । ଏହି ସମୟରେ ରାଜପ୍ରାସାଦରୁ ବହୁ ଟଙ୍କା ସୁନା ଚୋରି ଗଲା । ଗନି ଅତି କର୍ତ୍ତବ୍ୟନିଷ୍ଠ ହୋଇ ଚୋରଙ୍କୁ ଧରିଲା ଓ ଟଙ୍କା ସୁନା ମହାରାଜାଙ୍କ ସାମ୍ନାରେ ଦାଖଲ କଲା । ମହାରାଜା ପଚାରିଲେ—

ଚୋର କାହାନ୍ତି ?

'ସିଂହ ଦ୍ୱାରରେ'

'ହଇରେ ଚୋର କଣ ନେଲେ ? ତୁ ତାଙ୍କୁ ଆଣି ସବୁ ଦେଖାଇଲୁ । ହଉ, ଯା' ସୁନାତକ ଚୋରଙ୍କୁ ଦେ, ମଦନମୋହନଙ୍କ ଭୋଗ ଚୋରଙ୍କୁ ଖୁଆଇ କହ— ବାବାଜିମାନେ, ଆଉ ଏ ରାଜ୍ୟକୁ ଆସିବ ନାହିଁ ।'

ଟଙ୍କାତକ ଟ୍ରେଜେରୀରେ ଜମା ହେଲା । ମହାରାଜା ଅବଦୁଲ୍ ଗନିଙ୍କ ହାତକୁ ଝଣ୍ଡି ଏ ପତ୍ର ଲେଖିଲେ—

ଅବଦୁଲ ଗନି, କୁଣ୍ଡଳରେ ଥିବ, ତୁମ୍ଭେ ଆମ୍ଭ ବିନାନୁମତିରେ ଚୋର ଧରିଥିବାରୁ ତୁମ୍ଭଙ୍କୁ କର୍ମଚ୍ୟୁତ କରାଗଲା !

ଗନି କଟକ ଯାଇ କମିସନରଙ୍କ ପାଖେ ଫେରାଦ ହେଲା । କମିସନର ସାହେବ ତାକୁ କଟକରେ ଚାକିରୀ ଦେଲେ ।

ପାଳଲହଡ଼ାର ରାଜା ସେତେବେଳେ ଗଣେଶ୍ୱର ପାଳ । ରାଜାଙ୍କ ପିଲାମାନେ କଲେଜିଏଟ୍ ସ୍କୁଲରେ ପଢୁଥାନ୍ତି । ହଲୱାର୍ଡ୍ ସାହେବ ସେଇ ସ୍କୁଲର ପ୍ରିନ୍ସିପାଲ୍ । କୌଣସି ଅପରାଧ ଯୋଗୁଁ ସେ ଜଣେ ରଜା ପିଲାର କାନ ମୋଡ଼ି ଝଣ୍ଡିଆ କରିଦେଲେ । ରାଜା ଏଥିରେ କ୍ରୁଦ୍ଧ ହୋଇ ଲୋକ ଜଗାଇଲେ; ସାହେବଙ୍କ ପାଖରେ ମେମ୍, ସାହେବ ହି ଚଢ଼ିଥା ଟମ୍‌ଟମ୍‌ରେ ବସି ଘୋଡ଼ା ଅଡ଼ାଉଥାନ୍ତି—ଟମ୍‌ଟମ୍ ପଛରେ ଛିଡ଼ା ହୋଇ ସାହେବଙ୍କ ଚାକର ପାଟି କରୁଥାଏ—ହଟିଯାଅ, ପାଖେଇ ଯାଅ ।

ଅଟକେବା କାରା ହେଲେ ସ୍ତୁକର ଡ୍ରେଇଁ ପଡ଼ି ଘୋଡ଼ା ଆଗରେ ଛିଡ଼ା ହୁଏ, ସେହପରି ସାହେବଙ୍କ କର୍ମ ବାମ; ରଜାଙ୍କ ଲୋକେ ଝଟ୍‌ଝଟ୍ ଅଟକାଇ ସାହେବଙ୍କ ହାତରୁ କୋରଡ଼ା ଛଡ଼ାଇ ତାଙ୍କୁ ନର୍ଦ୍ଧମ ପିଟିଲେ ଓ ରଜା ଆଗରୁହିଁ ଯାଇ କମିସନରଙ୍କ ଆଗେ ନାଲିସ୍ କଲେ । ରମେଶ ଚନ୍ଦ୍ର ଦତ୍ତ ସେତେବେଳେ କମିସନର; ଏଇ ନାଲିସ ଫଳରେ ସାହେବଙ୍କ ଚ୍ଛକଚି ଗଲା । ସାହେବ ହେଲେ ବି ବଡ଼ବି ଶିକ୍ଷକ ସେ; କେବଳ ଏଥକ ଫେଟାଉ ଯେ ଚମଡ଼ା ଗୋରି ହୋଇଥିବାରୁ ସେ ଚ୍ଛକଣରୁ ବରଖାସ୍ତ ହେଲେ ବି ପୂରା ଦରମା ଓ ପେନ୍‌ସନ୍ ପାଇଲେ ।

ଏଇ ଗଣେଶ୍ୱର ପାଲ ଥରେ ନୌକାରେ ବାଣିଜ୍ୟ ବଗରୁ ଧବଳେଶ୍ୱର ଯାତ୍ରା କଲେ । ସ୍ୱାର୍ ମହମ୍ମଦ ନାମକ ଜଣେ ବ୍ୟକ୍ତି ଧବଳେଶ୍ୱରର ଅରୁ ପଟେ ବନ୍ଶୀ ପକାଉଥିଲା, ଗୁଣୁ ଗୁଣୁ ସ୍ୱରରେ ଗୀତ ଗାଉଥିଲା, ରଜା ତା କଣ୍ଠ ସ୍ୱରରେ ମୁଗ୍ଧ ହୋଇ ତାକୁ ପାଖକୁ ଡାକିଲେ, ଦୁଇ ଅଣା ପଇସା ବକ୍‌ସିସ୍ ଦେଲେ, କହିଲେ—ମୋତେ ପାଲହଡ଼ାରେ ସାକ୍ଷାତ୍ କର ।

ବହୁ ବଣ ଜଙ୍ଗଲ ଅତକ୍ରମ କରି ସ୍ୱାର ମହମ୍ମଦ୍ ପାଲହଡ଼ାରେ ପହଞ୍ଚିଲା । ଦୈନିକ ଯଞ୍ଚା ପାଇ ହେଲା । ଏମିତ ମାସେ ଗଲା, ଥରେ ମହାରଜା ହାଟ ଗାଧୁଆ ଦେଖିବା ଲାଗି ବିଜେ କଲେ । ମହମ୍ମଦ ଶୀତରେ ଥରୁଥାଏ; ରଜାଙ୍କ ଦୃଷ୍ଟି ପଡ଼ିବା ମାତ୍ରେ ସେ ତା ଉପରକୁ ଗୋଟିଏ କମ୍ବଳ ପକାଇଦେଲେ; ଥନକୁ ଟଙ୍କାଏ ହିସାବରେ ୫୩୦ଙ୍କା ଦେଇ ତାକୁ ବଦାୟ ଦେଲେ; ଏଇ ସମୟରେ ତାଙ୍କ ମନରେ ବଚିତ୍ର ଖିଆଲ ଆସିଲା, କହିଲେ ତୁ ଆମ ରାଜ୍ୟରେ ଚମଡ଼ା ବ୍ୟବସାୟ କର । ମହମ୍ମଦ ଚମଡ଼ା ବ୍ୟବସାୟ କଲା, ରଜାଙ୍କୁ ଟଙ୍କା ଦେଲା, ଏଥିରେ ବ୍ରାହ୍ମଣମାନେ ରଜାଙ୍କୁ ନିନ୍ଦା କଲେ । ରଜା ତାପରେ ରାଜ୍ୟର ଚମଡ଼ା ନିଲମ କରିଦେଲେ, ମହମ୍ମଦ ନିଲାମ୍ ଧରିଲା, ବଡ଼ ଲୋକ ହେଲା; କ୍ରମେ ଓଡ଼ିଶାର ସତର ଗଡ଼ଜାତର ଚମଡ଼ା ବ୍ୟବସାୟ ତା ହାତକୁ ଆସିଲା—ସେ ହେଲା ଲକ୍ଷପତି, ପ୍ରତି ଗଡ଼ଜାତରେ ମହମ୍ମଦର ଦୁଇ ତନି ସ୍ତ୍ରୀ ଥିଲେ, ଅସଂଖ୍ୟ ପିଲା ଥିଲେ । ସ୍ୱାର ମହମ୍ମଦ ଗର୍ବରେ କହୁଥିଲା—ପହିଁ ଗସ୍ତା, ସୁହିଁ ବଣ ବନାୟା, ବାଲ୍‌ବଚ୍ଚା କସ୍ତା, ଖୋଦାକା କାମ୍ କସ୍ତା ।

ସେହି ସାହିତ୍ୟପ୍ରେମୀ, ଗୁଣଜ୍ଞ ମହାରଜାଙ୍କର ଗୋଟିଏ ବଡ଼ ଦୋଷ ଥିଲା । ସେ କୁସଙ୍ଗରେ ପଡ଼ି ମଦ୍ୟପାନ କରୁଥିଲେ । ରାଜ୍ୟର ବାର୍ଷିକ ଆୟ ୨୬ ହଜାର ଟଙ୍କା ମାତ୍ର ସେଥିରୁ ଅଧିକାଂଶ ହ୍ୱିସ୍କିରେ ଉଡ଼ିଯାଉଥିଲା ।

୨୨ ହଜାର ଟଙ୍କା ବାକି ପଡ଼ିଗଲା । ରାଜା ଶୁଝିପାରିଲେ ନାହିଁ । ରାଜ୍ୟ କୋର୍ଟ ଅଫ୍ ୱାର୍ଡ଼ସ୍ ହେଲା । ଚଳିବା ପାଇଁ ମାସିକ ଖର୍ଚ୍ଚ ମାତ୍ର ଶହେ ଟଙ୍କା ମିଳିଲା । ରାଜା ଏଥିରେ ଚଳିବେ କେମିତି ?

ଏହି ସମୟରେ ରାଜପ୍ରାସାଦ (ମୂଳଘର) ଉପରେ ଚଡ଼କ ପଡ଼ିଲା । ପ୍ରାସାଦ ଜଳିଗଲା । ପାଟହାତୀ ଲକ୍ଷ୍ମୀ (ଯାହା ଉପରେ ରାଜା ବିଜେ କରନ୍ତି) ହଠାତ୍ ଦିନେ ପ୍ରାଣତ୍ୟାଗ କଲା । ରାଣୀ କହିଲେ—ଆମକୁ ଲକ୍ଷ୍ମୀ ଛାଡ଼ିଲା । ଚିନ୍ତା କରି କରି ରାଣୀ ମୃତ୍ୟୁଶଯ୍ୟାରେ ରହିଲେ, ଚିକିତ୍ସା ଲାଗି ଅର୍ଥ ନାହିଁ । ରାଜା ତାଙ୍କୁ ତାଳଚେର ନେଇଗଲେ । କିନ୍ତୁ ତାଳଚେରରେ ସଞ୍ଚା ଛୁଇଁଲେ ନାହିଁ । ତାଙ୍କୁ ଆଦିବାସୀ ପ୍ରଜାମାନେ ଚାଉଳ, ଘିଅ, ପରିବା ଦେଇଆସୁଥିଲେ । ରାଜା ଅତିଥି ଭବନରେ ରହି ସେଇଥିରୁ ଖାଇ ବଡ଼ ଦୁଃଖରେ ଚଳୁଥିଲେ ।

ଢେଙ୍କାନାଳ ରାଜା ବଡ଼ଲାଟଙ୍କ ସଙ୍ଗେ କର ମର୍ଦ୍ଦନ କରିବା ପରେ ପୋଷାକ ସହିତ ଗଡ଼ଗଡ଼ିଆ ଘାଟରେ ବୁଡ଼ ମାରୁଥିଲେ ଓ ଗୁଣୁ ଗୁଣୁ ସ୍ୱରରେ କହୁଥିଲେ— ମ୍ଲେଚ୍ଛ ସ୍ପର୍ଶ କଲା ! ତାପରେ ସେଇ ଓଦା ପୋଷାକରେ ନୌକା ଚଢ଼ି ସ୍ୱରାଜ୍ୟକୁ ବାହୁଡ଼ି ଯାଉଥିଲେ ।

ଲାଲବାବୁ ଏଇଭଳି ବହୁ ରୋଚକପ୍ରଦ କାହାଣୀର ଭଣ୍ଡାର, ପ୍ରାୟ ଏକ ଶତାବ୍ଦୀର ମୂର୍ତ୍ତି ଇତିହାସ; ସେ ସମ୍ପାଦକ; ଆଜୀବନ ସାମ୍ବାଦିକ, ସଙ୍ଗ୍ରାହକ, ବ୍ୟାସକବି, ନାଟ୍ୟକାର, ବିଶେଷଭାବେ ଅନୁବାଦକ; ତାଙ୍କ ମହାର୍ଘ ଜୀବନକାହାଣୀ ଜାଣିବା ଲାଗି ଉତ୍କଣ୍ଠା ହେବା ସ୍ୱାଭାବିକ ।

ଲାଲ ନଗେନ୍ଦ୍ରକୁମାର ୩୧ । ୧୦ । ୧୮୯୮ ରେ କଟକ ବନ୍ଧେଇସାହିରେ ଜନ୍ମ ଗ୍ରହଣ କରିଥିଲେ । ଏଇ ସାହିର ନାମ ଆଗେ ମାଖନପୁର ପଥୁରିଆ ସାହି ଥିଲା । ଅଧିକାଂଶ ବାସିନ୍ଦା ମରହଟ୍ଟା, ପଥୁରିଆ କାମ କରୁଥିଲେ, କାଳକ୍ରମେ ସେମାନେ ଓଡ଼ିଆ ହୋଇଗଲେ ।

ଇଂରେଜ ସୈନ୍ୟ କାଠଯୋଡ଼ୀର ଆର ପାରିରେ, ଏପାଖରେ ମରହଟ୍ଟା ସୈନ୍ୟ ସେମାନଙ୍କ ମୁହାଁମୁହିଁ ହୋଇ ରହିଥାନ୍ତି । ଏହିକବେଳେ ନାଗପୁର ଭୋନ୍‌ସଲଙ୍କ ଆଦେଶ ଆସିଲା—ଇଂରେଜମାନଙ୍କୁ ବାରବାଟି ଦୁର୍ଗର ଚାବି ଦେଇଦିଅ ।

ଇଂରେଜମାନେ ଦୁର୍ଗ ଦଖଲ ପାଇଲେ, ବିଜୟର ସଙ୍କେତ ସ୍ୱରୂପ ତୋପ ବସାଇ ସେକାଳ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଓଡ଼ିଶାର ଗୌରବରୂପୀ ବାରବାଟୀ ଦୁର୍ଗକୁ

ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଲେ । ଗଡ଼ରେ ଗଣେଶ, ଚଣ୍ଡୀ, ଭବାନୀ, ଗୋପାଳଜୀ ପ୍ରଭୃତି ଦେବ ଦେବୀ ଥିଲେ; ସେମାନଙ୍କୁ ଇଂରେଜ ସୈନ୍ୟମାନେ ଭାଙ୍ଗି ଫିଙ୍ଗି ଦେଲେ ।

ତାପରେ କେହି ଗୋଟାଇ ନେଇ ଗଣେଶ ମୂର୍ତ୍ତିକୁ ବଡ଼େଇପାଇରେ ରଖିଲା । ଭବାନୀଙ୍କୁ ରାସ୍ତାର ପୂର୍ବପୂରୁଷ ସ୍ୱଗୃହରେ ରଖିଲେ; ଗୋପାଳଜୀ ରହିଲେ ଶଙ୍କରପୁର ଗୋପାଳଜୀ ମଠରେ, ଜଣେ ତେଲିଙ୍ଗା ଅନ୍ଧ ବାବାଜି ଚଣ୍ଡୀ (କଟକଚଣ୍ଡୀ)ଙ୍କୁ ଗୋଟାଇ ନେଇ (ଭଙ୍ଗା ଦୁଇଖଣ୍ଡକୁ ଯୋଡ଼ି) ଆପଣା କଲା, ଭିକମାଗି ଦେଉଳଟିଏ ତୋଳାଇଲା । ତାପରେ ଜନକାର ରାଣୀଙ୍କ ସାହାଯ୍ୟରେ ମନ୍ଦିର ପ୍ରାଙ୍ଗଣାଦିର ବିଶେଷ ଉନ୍ନତି କରାଗଲା ।

କଚେରୀ ଘର, ପୋଷ୍ଟଅଫିସ, ସିଟି ହସପିଟାଲ୍ ପ୍ରଭୃତି ବାରବାଟୀ ଦୁର୍ଗର ଭଙ୍ଗା ପ୍ରସ୍ତରରେ ନିର୍ମିତ ହେଲା, ଦୁର୍ଭାଗ୍ୟର ବିଷୟ ।

ନରେନ୍ଦ୍ର କୁମାରଙ୍କ ବାପାଙ୍କ ନାମ ଲାଲ ଲଛମନ ରାୟ, ମାଆଙ୍କ ନାମ ରାଧାମଣି ଦେବୀ । ବାପା ପୋଷ୍ଟାଲ ଇନସ୍‌ପେକ୍ଟର ଥିଲେ, ମେଦିନୀପୁରରୁ ଜଗଦଲପୁର ତାଙ୍କର କର୍ମକ୍ଷେତ୍ର ଥିଲା । ସେ ଅତି ସାମାନ୍ୟ ଇଂରାଜୀ ଜାଣିଥିଲେ; ସେ, ସହକାରୀ ପଲିଟିକାଲ୍ ଏଜେଣ୍ଟ ନନ୍ଦକିଶୋର ଦାସ, କବିବର ରାଧାନାଥ ରାୟ ଏ ତିନି ଜଣ ଗୋଟିଏ ବଳଦଗାଡ଼ିରେ ବସି ଟୁର୍‌ରେ ଯାଉଥିଲେ । ଦୁଇ ତିନିମାସ ପରେ ଘରକୁ ଫେରୁଥିଲେ ।

ତାଙ୍କ ଚଳାଚଳି ଘର ବୁଝାବୁଝି କରୁଥିଲେ; ଗୃହବାସ କରିବାକୁ ଜମିବାଡ଼ି ନ ଥିଲା । ସେମାନେ ଚିରଦିନ କିଣିକିଆ ଥିଲେ । ତ୍ରୈଲୋକ୍ୟ ରାମନାରାୟଣ ପୁଲିସ୍ ଇନସ୍‌ପେକ୍ଟର ଥିଲେ; ସେ ଓ ସେକାଳର ଏସ୍. ଡ଼ି. ଓ. କବି ନବୀନଚନ୍ଦ୍ର ସେନ ଷଡ଼ଯନ୍ତ୍ର କରି ପୁରୀ ରାଜା ଦିବ୍ୟସିଂହ ଦେବଙ୍କୁ କଳାପାଣି ଦଣ୍ଡରୁ ଅବ୍ୟାହତି ଦେବାଲାଗି ଚେଷ୍ଟିତ ହୋଇଥିଲେ । କିଛି କରିବାକୁ ଅସମର୍ଥ ହୋଇ ରାୟ ଚାକିରୀ ଛାଡ଼ିଦେଲେ । ତାଳଚେର ଯାଇ କରାନୀ ହେଲେ; 'ପଦ୍ମମାଳୀ'ର ଲେଖକ ଉମେଶ ଚନ୍ଦ୍ର ସରକାରଙ୍କ ପରେ ସେ ତାଳଚେରର ଦେବାନ ହୋଇଥିଲେ ।

ତାଳଚେରରୁ କଟକ ୬୦ ମାଇଲ ଦୂର, ରାଜା ବା ଦେବାନଙ୍କୁ ଘୋଡ଼ାରେ ବା ଘୋଡ଼ାଗାଡ଼ିରେ ବସି ଆସିବାକୁ ହେଉଥିଲା । ପ୍ରତ୍ୟେକ ୨୦ ମାଇଲରେ ଘୋଡ଼ା ବଦଳ କରିବାକୁ ହେଉଥିଲା । ୧୯୨୧ ରେ ତାଳଚେର ରେଲ୍‌ଲାଇନ୍ ହେଲା । ୧୯୦୦ ରେ କିଶୋରଚନ୍ଦ୍ର ହରିଚନ୍ଦନ (ଆଉ କି କିଶୋରଚନ୍ଦ୍ର ନରସିଂହ, ବସ୍ତୁତେ କିଶୋର ଜ୍ଞାନେ ବର୍ଷୀୟାନ—ରାଧାନାଥ ) ତାଳଚେରର ରାଜା ହେଲେ; ସେତେବେଳକୁ କୋଇଲାଖଣି ଆବିଷ୍କୃତ ହୋଇ ନ ଥିଲା । ତାଳଚେରର ବାର୍ଷିକ ଆୟ ମାତ୍ର ୫୩୬,୦୦୦ ଙ୍କା ଥିଲା ।

ଦେବାନ ରାମନାରାୟଣଙ୍କୁ ରାଜା ବିଶ୍ୱାସ କରୁଥିଲେ ; ରାଜା ରାଣୀଙ୍କ ମଧ୍ୟରେ ଝଗଡ଼ା ହେଲେ ସେ ତାହା ମୀମାଂସା କରୁଥିଲେ । ଦେଓ୍ୱାନ ସକାଳ ପାଞ୍ଚଟାରେ ଉଠୁଥିଲେ, ରାସ୍ତାରେ ଗୋବର କି ପଥର ପଡ଼ିଥିଲେ କଢ଼ାଇ ଦେଉଥିଲେ । ହାତୀଶାଳ, ଘୋଡ଼ାଶାଳ ସଫା, ଗାଈଦୁହାଁ, ରାଜାଙ୍କ ବଗିଚା, ରାଜାଙ୍କ ନଅର, ରାଣୀଙ୍କ ନଅରର ଖବର ଅନ୍ତର ବୁଝୁଥିଲେ, ଯାହାବରୁ କେସ୍ ଆସୁଥିଲା ମୁହେଁ ମୁହିଁ ଫଇସଲା କରି ଜେଲ୍‌ରେ କଏଦୀଙ୍କ କାର୍ଯ୍ୟ ଦେଖି ଡାକ୍ତରଖାନା ପରିଦର୍ଶନ କରନ୍ତି । ତାପରେ ଗାଧୁଆପାଧୁଆ କରି କଚେରୀକୁ ଯାନ୍ତି । ବଡ଼ ବଡ଼ ମକଦ୍ଦମାର ବିଚାର ସେଠି ହୁଏ । ତାପରେ ରାଜାଙ୍କ ଧାନ କରଜ ଦିଆ, ଦୋକାନ, କାଠବ୍ୟବସାୟ ଖବର ବୁଝନ୍ତି । ଟ୍ରେଜେରୀରେ ହିସାବ ମିଳାଇ ଦେଖନ୍ତି । ରାତିରେ କେତେକେ କେସ୍ ବିଶେଷତଃ ବ୍ୟଭିଚାରର ବିଚାର ହୁଏ । ଏଇ ବିଚାରକମଣ୍ଡଳୀରେ ବେହେରା, ପୁରୋହିତ ବସନ୍ତି । ଦେଢ଼ଶୁରର ଭାଇବୋହୁକୁ ଛୁଇଁଦେବା, କେହି ଅଜାତିଆ ଘରେ ଖାଇଦେବା, ଅହିଭକ୍ଷ୍ୟରେ ଗାଳିଦେବା କୈଶ ମକଦ୍ଦମାର ଅନ୍ତର୍ଭୁକ୍ତ ।

ବଡ଼ ବଡ଼ ଶାଳ ଖୁଣ୍ଟରେ କଣ୍ଟା ମାରିହୋଇ ହାତୀଖେଦା ତିଆରି ହେଉଥିଲା । ଖେଦା ଭିତରେ ଆଖୁ, କଦଳୀ ଗଛ ଲଗା ହେଉଥିଲା; ଖେଦା ବାଡ଼କୁ ଜଙ୍ଗଲବେଢ଼ା କୁହାଯାଉଥିଲା । ଲୋକେ ନିଆଁ ଜାଳି ବଡବଡ଼ ବାଡ଼ିଆଫୋଟକା ଫୁଟାଇ ହାତୀକୁ ଖେଦା ଭିତରକୁ ତଡ଼ି ଆଣନ୍ତି । ଖେଦା ଭିତରେ ରାତିକରି ଖୁବ୍ କାଇଦାରେ ହାତୀ ଗୋଡ଼ରେ ଫାଶ ବାନ୍ଧନ୍ତି । ହାତୀର ଦୃଷ୍ଟି ପଡ଼ିଲେ ସର୍ବନାଶ ! ଖେଦାକୁ ଲାଗି ପ୍ରାୟ ପାଞ୍ଚହଜାର ଲୋକ ଲୋଡ଼ା ହୁଅନ୍ତି, ଦୁଇ ତିନିମାସ ସମୟ ଲାଗେ । ଶୀତ କାକରରେ, ସାପକାମୁଡ଼ାରେ, ଭାଲୁ ରାମ୍ପୁଡ଼ାରେ, ବାଘ ଝମ୍ପରେ, ରୋଗ ବୈରାଗରେ କେତେ ମରନ୍ତି, ତାର ହିସାବ କିଏ ରଖେ ? ଜୀବନର କି ମୂଲ୍ୟ ?

ତାଳଚେରର 'ଗୁଲ ଝରି' ଅଞ୍ଚଳ ହାତୀଖେଦାର ଗୋଟିଏ ପ୍ରଧାନ ସ୍ଥାନ ଥିଲା । ଏଇ ଖେଦା ଦେଖିବାକୁ ଅନେକ ରାଜା, ଜମିଦାର, ସାହେବସୁବା ନିମନ୍ତ୍ରିତ ହୋଇ ଆସୁଥିଲେ ।

କକେଇଙ୍କ ପାଖେ ତାଳଚେରରେ ରହି ଲାଲ ନିମ୍ନ ପ୍ରାଥମିକ, ଉଚ୍ଚ ପ୍ରାଥମିକ ଓ ମାଇନର ଶିକ୍ଷାଲାଭ କଲେ ଏବଂ ଯଥାକ୍ରମେ ଦୁଇ, ତିନି ଚାରି ଟଙ୍କା ହିସାବରେ ବୃତ୍ତି ପାଇଥିଲେ । ଶିବରାମ ମାଷ୍ଟ୍ରେ ଗୋଟିଏ ବାରଣ୍ଡାରେ ରୋହାଲୀ କରୁଥିଲେ । ଖ୍ରୀଷ୍ଟିଆନ ପୋଷ୍ଟମାଷ୍ଟରଙ୍କ ଘରୁ ରୁଟି, ଖାଇ ସେ ଅଜାତିଆ ହୋଇଥିଲେ । ଇନସ୍‌ପେକ୍ଟର ଆସିଲାଦିନ ଛ'ଅଣିଆ ଜୋତା, ଶସ୍ତାରେ ମିଳୁଥିବା ମୃତ ସୈନିକଙ୍କ

କଲା କୋଟ୍‌ଟିଏ ପିନ୍ଧି ସ୍କୁଲକୁ ଆସୁଥିଲେ । ସ୍କୁଲକୁ ଆସିଲାବେଳେ ସଙ୍ଗରେ ଖଣ୍ଡିଏ ଆମ୍ବୁଲ ଆଣନ୍ତି । ନଗେନ୍ଦ୍ର ବାରବର୍ଷ ବୟସରେ ତାଙ୍କ ନାଆଁରେ ବ୍ୟଙ୍ଗ କବିତା ରଚନା କରିଥିଲେ ।

"ଶୁଣ ଶୁଣ ସୁଜ୍ଞଜନ ମନ କର୍ଣ୍ଣ ଦେଇ
ଆମ୍ବୁଲ ବାସ୍ତୁ କଥା ମୁହିଁ କହିବି ବୁଝାଇ
ଶିବଗ୍ରାମ ମିଶ୍ର ତାର ତାଳଚେର ଘର
ଫିଲମନ୍ ସାହୁ ପିଣ୍ଡା ବୃଟଶାଳୀ ତାର ।"

ଏ ଗୀତ ବୋଲିଲା ବେଳେ ମାଷ୍ଟ୍ରେ ତାଙ୍କ ମୁହଁରେ ହାତ ଦେଇ ଦେଉଥିଲେ । ବିରକ୍ତ ହୋଇ ସେଥିଲାଗି ସ୍କୁଲକୁ ଛାଡ଼ିବାକୁ ବସିଥିଲେ । କକାଙ୍କ ମାଡ଼ ଭୟରେ ଲାଲ ରାଜାଙ୍କୁ ମାଷ୍ଟ୍ରେ ଚାଲିଯିବା ବିଷୟ ଜଣାଇଲେ । ରାଜା ମାଷ୍ଟ୍ରଙ୍କୁ ଡକାଇ ତାଙ୍କର ଏକଟଙ୍କା ( ମାଷ୍ଟ୍ରେ ମୋଟରେ ମାସିକ ଅ.୦ଟଙ୍କା ପାଉଥିଲେ ) ଦରମା ବଢ଼ାଇ ଦେଲେ । ଲାଲ ଆଉ ଚିଡ଼ାଇଲେ ନାହିଁ ।

ସେତେବେଳେ ପ୍ରାୟ ସମସ୍ତ ଛାତ୍ର ଚାଦର ବା ଗାମୁଛା କାନ୍ଧରେ ପକାଇ ସ୍କୁଲକୁ ଆସୁଥାନ୍ତି । ରାଜାଙ୍କ ଦୁଇପୁଅ, ପୁଅର କେନାମଣି ଆଉ ଲାଲ ଏ ଚାରିଜଣ କାମିଜ ପିନ୍ଧୁଥାନ୍ତି । ଖରା ବା ବର୍ଷାକୁ ତାଳପତ୍ର ଛତା; ମହାଣ ଛତା ଚାଲୁ ହୋଇ ନ ଥାଏ ।

ରାଜ ପ୍ରାସାଦର ସାମ୍ନାରେ ବ୍ରାହ୍ମଣୀ ନଦୀ, ପୃଷ୍ଠ ପଟରେ ଅରଣ୍ୟ, ଜାତୀୟ ପାର୍କ ଆଦର୍ଶରେ ସଗଠିତ ହୋଇଥାଏ । ଏହା ବୋଧହୁଏ ଓଡ଼ିଶାର ପ୍ରଥମ ଜାତୀୟ ପାର୍କ, ରାଜା କିଶୋର ଚନ୍ଦ୍ରଙ୍କ ଦ୍ଵାରା ନିର୍ମିତ । ଏଥିରେ ହଜାରରୁ ଅଧିକ ଚିତ୍ରମୃଗ, କୃଷ୍ଣସାର ଓ ସମ୍ବର ଥିଲେ । ଶିଳ୍ପୀ କମ୍ଭୁଧର ବର୍ମା ରାଜ ପୋଷକତାରେ ମାଟିରେ କୁଳବୃଦ୍ଧ ମଧୁସୂଦନ, ବାସୁଦେବ ସୁଢ଼ଳଦେବ, ବରେଣ୍ୟ ନେତା ଗୋପବନ୍ଧୁ ଓ ସୁରେନ୍ଦ୍ର ବାନାର୍ଜି ପ୍ରଭୃତିଙ୍କ ମୂର୍ତ୍ତି ନିର୍ମାଣ କରି ରଙ୍ଗ ଦେଇଥିଲେ, ସେ ସବୁ ମାଙ୍କଲ ମୂର୍ତ୍ତିର ଭ୍ରମ ଜନ୍ମାଉଥିଲା, ସେହି ପାର୍କର ପ୍ରାଚୀର ସୁଦୀର୍ଘ ଓ ସୁଉଚ୍ଚ, ମିସ୍ତ୍ରୀକୁ ଦୈନିକ ଛ'ପଇସା ମଜୁରି ଦେଇ ଇଟା ଓ ମାଟି ଜାବରେ ଏହି ପ୍ରାଚୀର ନିର୍ମିତ ହୋଇଥିଲା । ନିଜେ କିଶୋରଚନ୍ଦ୍ର ଏଇ ପ୍ରାଚୀର ଲାଗି ମାଟି ବୋହିଥିଲେ, ଦୈନିକ ରାଜା ନିଜେ କାମ କରୁଥିଲେ; ତାଙ୍କୁ କାମ କରିବାର ଦେଖି ଲୋକେ ଦ୍ୱିଗୁଣ ଉତ୍ସାହରେ କାମରେ ଲାଗି ଯାଉଥିଲେ, ରାଜା ମଦ୍ୟ ସ୍ପର୍ଶ କରୁ ନ ଥିଲେ, ନିଜେ ପ୍ରଜାଙ୍କୁ ନାନା ପ୍ରକାର କାମ ଯୋଗାଉ ଥିଲେ, କୌଣସି ରାଜା ଆଯାମର ଘ୍ୱ ବଗିଚାରେ କାମ କରିବାକୁ ଛାଡ଼ି ନ ଥିଲେ ।

ଥରେ ବିହାର ଓଡ଼ିଶାର ଗଭର୍ଣ୍ଣର ଗେଟ୍ ସାହେବ ତାଲଚେରକୁ ଶିକାର କରିଗଲେ, ଗୋଟିଏ ମହାବଳ ବାଘ ମାରିଲେ । ଗୋଟିଏ ଫଟୋ ଉଠାଇ ମେମ୍-ସାହେବାଙ୍କ ନିକଟକୁ ପଠାଇବା କଥା ହେଲା । ନଗେନ୍ଦ୍ରଙ୍କର ସେତେବେଳେ ମାତ୍ର ୧୬ ବର୍ଷ ବୟସ । ତାଲଚେରରୁ କଟକ ୭୪ ମାଇଲ ବାଟ; ଅଧା ଫୁଟିଆ ରାସ୍ତା; ପକେଟରେ ପୋଡ଼ା ମୁଗ ମଂସ, ସେଥିରୁ ଖଣ୍ଡିଏ ପାଟିରେ ପକେଇଲେ ଚୋବାଇ ଚୋବାଇ ଦଶ ବାର ମାଇଲରେ ସରେ । ନଗେନ୍ଦ୍ର ସାଇକେଲରେ ଯାଇ କଟକ ଷ୍ଟେସନରେ ରେଲ ଗାଡ଼ିର ଗାର୍ଡ ସାହେବଙ୍କୁ ଦେଲେ, ସେ ଲେଡ଼ିଗେଟ୍‌ଙ୍କ ପାଖେ ଫଟୋ ପହଞ୍ଚାଇଲେ । ବାଟରେ ହାତୀ, ବାଘ ଭୟ, ଖଣ୍ଡ ଭୟ । ନଗେନ୍ଦ୍ର କିଶୋର ବୟସରେ ଯେ ଖୁବ୍ ସାହସୀ, ଶକ୍ତିଶାଳୀ ଥିଲେ ତାହା ଏହି ଘଟଣାରୁ ଜଣାଯାଏ ।

୧୯୦୩ ଖ୍ରୀଷ୍ଟାବ୍ଦରେ ଲାଲା କଟକ କଲେଜିଏଟ୍ ସ୍କୁଲରେ ନାମ ଲେଖାଇ ଥିଲେ । ସ୍କୁଲର ଅଧିକାଂଶ ଗ୍ରନ୍ଥ ଧନୀ; ବୃତ୍ତି ପାଇଲେ ଗରିବ ଗ୍ରନ୍ଥ ପଢ଼ି ପାରୁଥିଲେ, ନୋହିଲେ ନାହିଁ । ହେଣ୍ଡେରସନ ସାହେବ ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ । ଶିକ୍ଷକ ଭାବରେ ତାଙ୍କର ସୁନାମ ଥିଲା । ଯେପରି ପଢ଼ା ପଢ଼ି ସେହିପରି ଖେଳରେ ତାଙ୍କର ସଉକ୍ ଥିଲା । ସାଧାରଣଜ୍ଞାନ ପରୀକ୍ଷା ପ୍ରଥମେ ସେ ଓଡ଼ିଶାରେ ଚଳାଇ-ଥିଲେ । ଥରେ ଇନସ୍‌ପେକ୍ଟର ଆର୍ ମାକୋମ୍ ସ୍କୁଲ ପରିଦର୍ଶନ କଲେ, ଲାଲା ତାଙ୍କୁ ପଚାରିଲେ—'ମଲ ମର'—ଏହାର ଇଂରେଜି ଅନୁବାଦ କଣ ହେବ ?

ଇନସ୍‌ପେକ୍ଟର ପଚାରିଲେ—ଏହାର ଅର୍ଥ କଣ ?

ଲାଲ—ଜଣେ ନଈ ପହଁରି ଆସିଲା, ମୁଁ ତାକୁ କହିଲି, ମୋର ଗୋଟେ ବଡ଼କଥା କହିବାକୁ ଅଛି ।

"କଣ"

"ସେପଟେ ଭଲ ଘାସ ହୋଇଛି"

"ମଲମର, ଏଇ କଥାଟା"

ହେଣ୍ଡେରସନ ସାହେବ ମାକୋମ୍‌ଙ୍କୁ ଅର୍ଥ ବୁଝାଇଦେଲେ । ଲାଲଙ୍କର ଉତ୍ତମ ଓଡ଼ିଆ ଜ୍ଞାନର ପରିଚୟ ପାଇ ସାହେବ ତାଙ୍କଦ୍ୱାରା କେତେକ ଓଡ଼ିଆ ପଂକ୍ତି ଲେଖାଇନେଲେ । ଏହାହିଁ ତାଙ୍କ Translation ପୁସ୍ତକର ଭିତ୍ତି । ମାକ୍‌ମିଲନ ଏଇ ପୁସ୍ତକଖଣ୍ଡି ଛପାଇଥିଲେ ।

ହେଣ୍ଡେରସନ ଡବଲ ଏମ୍. ଏ; ମାସକୁ ୫୦୦ ଟଙ୍କା ବେତନ ପାଉଥିଲେ । ସେ ପାଦ୍ରି ହୋଇଥିଲେ । ଅଧିକ ବୟସରେ ମିସନାରୀ କାର୍ଯ୍ୟ ଛାଡ଼ି ବାହା ହେଲେ, କିନ୍ତୁ

କାହିଁକି କେଜାଣି ସ୍ତ୍ରୀଙ୍କୁ ବିଲାତରେ ଛାଡ଼ି ଆସିଥିଲେ । ଦିନେ କଣ ଘଟିଲା କେଜାଣି ନିଜ ଦେହରେ କିରାସିନ ଢାଳି ନିଆଁ ଲଗାଇ ଦେଲେ, ନିଆଁ ଜଳୁଥାଏ, Hurry up, Hurry up ସେ କହୁଥାନ୍ତି; ମାନେ ଜୀବନ କେମିତି ଚଞ୍ଚଳ ଛାଡ଼ିଯାଉ । ଏ ଦୃଶ୍ୟ ଅତ୍ୟନ୍ତ ବିକଟ ଓ କରୁଣ ହୋଇଥିଲା ।

ସୁଭାଷଚନ୍ଦ୍ର ବୋଷ ଯେଉଁ ବର୍ଷ ଏଣ୍ଟ୍ରାନ୍ସ ପାସ୍ କଲେ, ସେହି ବର୍ଷ ଲଲ୍ଲ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲେ; ସୁଭାଷଙ୍କ ସଙ୍ଗେ ଲଲ୍ଲଙ୍କର ଭଲ ପରିଚୟ ଥିଲା । ଦୁର୍ଗାଙ୍କ ମେଢ଼ ଯେତେବେଳେ ଗଉଡ଼ମାନେ କାନ୍ଧେଇଥିଲେ; କେତେକ ଯୁବକଙ୍କୁ ଏକାଠି କରି ନିଜେ ମେଢ଼ କାନ୍ଧେଇ ପାଣିରେ ପକେଇବାକୁ ନେବାର ବ୍ୟବସ୍ଥା ସେ କଲେ । କାହାକୁ ହଇଜା ହେଲେ ସେ ରାତସାରା ଜଗି ବସୁଥିଲେ, ନିର୍ବିକାରରେ ମଇଳା ସଫା କରୁଥିଲେ । ବଡ଼ଲୋକର ପିଲା ହୋଇ ବି ବଡ଼ଲୋକୀ ଭାବ ଆଦୌ ନ ଥିଲା । ତାଙ୍କ ସଙ୍ଗେ ମିଶି ଲଲା ମଧ୍ୟ ନିର୍ଭୀକ ଓ ନିର୍ବିକାର ହୋଇ ଯାଇଥିଲେ ।

ରାତିରେ ଖାନ୍‌ନଗର ମଶାଣିରେ ଏକୁଟିଆ ବସିରହିବା ତାଙ୍କର ଏକ ଚକୃତ ହୋଇ ଯାଇଥିଲା । ରାତସାରା ସେ ବସୁଥିଲେ, ବାଲିରେ ଆଲଜେବ୍ରା ଅଙ୍କ କଷୁଥିଲେ । ଲୋକେ ହଇଜା ମଡ଼ା ଆଣି ପୋଡ଼ି ଦେଇଯାଉଥିଲେ; ରାଜାବଗିଚାର ଦେବଦାରୁ ବଣରେ ଯେତେକ ଶାଗୁଣା ବସା ବାନ୍ଧିଥିଲେ । ଲଲ୍ଲଙ୍କୁ ଟିକିଏ ହେଲେ ଡର ମାଡୁ ନ ଥିଲା ।

"ହଇଜା ମାଲୀ" ବାବାଜୀ ସେତେବେଳେ ହଇଜାର ବଡ଼ ଚିକିତ୍ସକ । ଯେତେବେଳେ ଶତ ଶତ ସଂଖ୍ୟାରେ ଲୋକେ ମରିଯାଉଥିଲେ, ସେତେବେଳେ ହଇଜାମାଲୀ ରୋଗୀ ଦୁଆରକୁ ଯାଇ ଆଠଗୋଟି ନୂଆ ଆଟିକା ମଗାଉଥିଲା । ରୋଗୀର ମୁଣ୍ଡକୁ ଏ ଆଟିକାରୁ ସେ ଆଟିକା ତା ପରେ ଅନ୍ୟ ଆଟିକାକୁ ଛୁଇଁ ସେଥିରୁ ନିର୍ଯ୍ୟାସ ବାହାର କରି ପାଣି ମିଶାଇ ରୋଗୀକୁ ପିଇବାକୁ ଦେଉଥିଲା । ଏଥିରେ କେତେକ ରୋଗୀ ଆରୋଗ୍ୟ ଲାଭ କରୁଥିଲେ । ମଣିଷ ମୁଣ୍ଡଟିଏ ହାତରେ ଧରି ସେ ବୁଲୁଥିଲା । ତାଙ୍କୁ ଦେଖିଲେ ସ୍ତ୍ରୀଲୋକମାନେ ଭୟରେ କବାଟ କିଳୁଥିଲେ ।

୧୯୧୮ ରେ ପ୍ରଥମ ଯୁଦ୍ଧ ବିଜୟ ଉତ୍ସବ ଅନୁଷ୍ଠିତ ହେଲା । ଏଲ୍ ମେଫୁରିଆର, ଆଇ. ସି. ଏସ୍ ସେତେବେଳେ କମିଶନର; ରାଜକିଶୋର ଦାସ ଏସ୍, ଡ଼ି. ଓ; ବୈଷ୍ଣବ ପାଣିଙ୍କ ଗୀତ (ଏଥର ଘୋଡ଼ା ଚଢ଼ିବ ଲୋ, ଫିରିଙ୍ଗି ବେକ ମୋଡ଼ିବ ଲୋ ) ଶୁଣି କମିଶନର ଏସ୍. ଡି. ଓଙ୍କୁ ପଚାରିଲେ—ପିଲାମାନେ ଏ ଗୀତ ଶୁଣି କାହିଁକି ଖୁସି ହେଉଛନ୍ତି ? ଏସ୍, ଡି. ଓ କହିଲେ—ଜର୍ମାନୀ ବେକ ମୋଡ଼ିଦେବ

ବୋଲି କହୁଛନ୍ତି; ସାହେବ ଖୁସି ହୋଇ ଗଣକବି ପାଣିଙ୍କୁ ଗୋଟିଏ ସୁନା ମେଡାଲ ଦେଲେ । ଏହି ସାହେବ ( ଫଗ୍ରାସି ) କଟେଗୁରୁ ପୁଷ୍ପଗଡ଼ ଯାଏ ରାସ୍ତା ନିର୍ମାଣ କରିଥିଲେ, ଆଳୁଅ ଖଞ୍ଜିଥିଲେ । ସେତେବେଳେ ନାମକୁ ମାତ୍ର ମ୍ୟୁନିସିପାଲିଟି ଥିଲା । କଟକସାକ ଅନ୍ଧାର ।

ଏଣ୍ଟ୍ରାନ୍ସ ପାସ୍ ପରେ ଲାଲ ସେଣ୍ଟଜେଭିୟର୍ସ କଲେଜରେ ପଢ଼ିବା ଲାଗି କଲିକତା ଯାତ୍ରା କଲେ ଓ ଉକ୍ତ କଲେଜରୁ ୧୯୧୯ରେ ପ୍ରଥମ ଶ୍ରେଣୀରେ ଆଇ. ଏସ୍.ସି ପାସ୍ କଲେ । ସେତେବେଳେ କଲିକତାରେ 'ଓଡ଼ିଆ ସମାଜ' ଗଠିତ ହୋଇଥିଲା, ବାମଣ୍ଡା ରାଜା ଓ ମୟୁରଭଞ୍ଜ ରାଜା ମିଳି ଏହାର ଯାବତୀୟ ବ୍ୟୟ ନିର୍ବାହ କରୁଥିଲେ । ଲାଲ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ହୋଇ କିଛି ସାମାଜିକ କାର୍ଯ୍ୟ କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟର କୁଳପତି ସାର ଦେବପ୍ରସାଦ ସର୍ବାଧିକାରୀ କଲିକତା ଓଡ଼ିଆଙ୍କ କେନ୍ଦ୍ର ଅନୁଷ୍ଠାନ ଏହି ସମାଜର ସଭାପତି ଥିଲେ । ଥରେ ଏହାର ବାର୍ଷିକୋତ୍ସବରେ ବକ୍ତୃତା ପ୍ରସଙ୍ଗରେ ସେ କହିଲେ—

"ଜାନେନ, କୋନ୍ ଋଷିସ୍ୱୀକୃତ ରଜକକେ ଉତ୍କଳମାତା ତାର ସ୍ନେହପାଳିତ ସନ୍ତାନ ହତକେ ଉଦର ସନ୍ତାନେର ଜନ୍ୟ ବଙ୍ଗ ଜନନୀର କୋଲେ ପ୍ରେରଣ କରିଥିଲେନ୍ । ଆମି ଆମାର ଅତୀତ ଭୁଲିୟା ଗେଛି । କିନ୍ତୁ ଏଖନ ଆମାର ଓଡ଼ିଆ ଜାତୀୟତାୟ ଗୌରବ ବୋଧ କରିବାର ଅଧିକାର ଅଛେ । ଯେହେତୁ ଆମାର ପୂର୍ବପୁରୁଷ ଖୋର୍ଦ୍ଧା ହଇତେ ବଙ୍ଗ ଦେଶ ଆଗମନ କରିୟା ଛିଲେନ୍ ଏବଂ ସର୍ବାଧିକାରୀ ପଦବୀ ଖୋର୍ଦ୍ଧା ରାଜା ଦିୟେଛି । ସେଇ ଜନ୍ୟ ଆମି କଲିକତା ବିଶ୍ୱବିଦ୍ୟାଳୟେର ସିନେଟସଭାୟ ଓଡ଼ିୟା ଭାଷାକେ ଏମ୍. ଏ ଶ୍ରେଣୀତେ ସ୍ଥାନ ଦିବାର ପ୍ରସ୍ତାବ ପାସ୍ କରିୟାଛି (୧୯୧୯) ।

କିଛି ଦିନ ପୂର୍ବେ ଆମି ସାକ୍ଷୀଗୋପାଳ ଗିୟାଛିଲାମ୍ । ସେଖାନକାର ବକୁଳକୁଞ୍ଜେ ଯେ ବିଦ୍ୟାଳୟ ଦେଖେଏଲୁମ୍ ତାର ପ୍ରତିଷ୍ଠାତା ଗୋପବନ୍ଧୁକେ 'ଆମି ବାଙ୍ଗଲାର ବିଦ୍ୟାସାଗର, ପୁନାର ଗୋଖେଲ କି ବଲବୋ ସ୍ଥିର କରତେ ପେରେଛିଲାମ୍ ନା"

ଆଇ. ଏସ୍. ସି ପରେ କେମିଷ୍ଟ୍ରିରେ ଅନର୍ସ ନେଇ ଲାଲ ବି. ଏସ୍. ସି ପଢ଼ିଲେ । ୧୯୨୧ ରେ ପରୀକ୍ଷା ଦେବାଲାଗି ସିନେଟ୍ ହଲ୍‌କୁ ଯାଇଥିଲେ । ଏତିକିବେଳେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଗଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଅନିଲ ଚରଣ ରାୟ, ହେମନ୍ତ ସରକାର ପ୍ରଭୃତି ପରୀକ୍ଷା ହଲ ସାମ୍ନାରେ ପିକେଟିଂ କରିଥିଲେ । ଶୈଳବାଳା (ଯାହାଙ୍କ ନାମରେ କଟକ ମହିଳା କଲେଜଟି ନାମିତ ) ଙ୍କ ସାନ ଭଉଣୀ ସୁଧାଂଶୁବାଳା ହାଜରା ଜୋତା ସିଢ଼ି ସିଲ୍‌ଙ୍କ ଉପରେ

ଚଢ଼ି ପରୀକ୍ଷା ଦେବାକୁ ଚାଲିଗଲା । ତା ଫଳରେ ବହୁତ ଉତ୍ତେଜନା ସୃଷ୍ଟି ହୋଇ ଧ୍ୱଂସାକାଣ୍ଡ ଆରମ୍ଭ ହୋଇଗଲା; ଫଳରେ ପୁଲିସ୍ ଲାଠି ଚଳାଇଲେ । ଅନେକ ଛାତ୍ରଙ୍କ ସହିତ ଲାଲଙ୍କୁ ପୁଲିସ୍ ଗିରଫ କରି ନେଇଗଲେ । ତାଙ୍କୁ ତିନି ସପ୍ତାହ ଜେଲଦଣ୍ଡ ଆଦେଶ ହେଲା, ଏହି ସତ୍ୟାଗ୍ରହ କାଳରେ ଲାଲଙ୍କୁ ତିନିଥର ଜେଲ ଭୋଗିବାକୁ ହୋଇଥିଲା । ଜେଲରୁ ଫେରିବା ପରେ ଆଉ ପରୀକ୍ଷା ଦେବା ତୃଷ୍ଣା ନ ଥିଲା, ଘରୁ ଯେଉଁ ସାହାଯ୍ୟ ଆସୁଥିଲା ତାହା ବନ୍ଦ କରି ଦିଆଗଲା; ଲାଲଙ୍କୁ ଘରକୁ ଫେରାଇ ଆଣିବା ଅଭିଭାବକଙ୍କର ଉଦ୍ଦେଶ୍ୟ ଥିଲା ।

ଏହି ସମୟରେ ପ୍ରିନ୍ସ ଅଫ୍ ୱେଲ୍ସ କଲିକତା ଆସିବାର ଥାଏ । ତାଙ୍କ ସମ୍ବର୍ଦ୍ଧନା ସଭାକୁ ବୟକଟ୍ କରିବା ଲାଗି ଶ୍ରମିକମାନଙ୍କୁ ସଂଗଠିତ କରିବା ଦାୟିତ୍ୱ ଲାଲଙ୍କୁ ଦିଆ ହୋଇଥାଏ । ଶ୍ରମିକମାନେ ଧର୍ମଘଟ କଲେ ଶାସକ ଇଂରେଜଙ୍କ ପକ୍ଷରେ ଯେ ଆଉ ଭାରତୀୟମାନେ ନାହାନ୍ତି, ତାହା ପ୍ରମାଣ କରାଯାଇ ପାରିବ । ଶ୍ରମିକମାନଙ୍କର ସଂଗଠନର ସହକାରୀ ସମ୍ପାଦକ ଲାଲ 'ନିର୍ଭୀକ' ନାମକ ଖଣ୍ଡିଏ ପତ୍ରିକା ପ୍ରକାଶ କଲେ; ସେଥିରେ 'ନମକହାରାମ୍ ଫତେ ମହମ୍ମଦ' (ଯେ ଓଡ଼ିଶା ଅଧିକାର ଲାଗି ଇଂରେଜ ସୈନ୍ୟଙ୍କୁ ବାଟ କଢ଼ାଇ ଆଣିଥିଲା) ଙ୍କ ବିଷୟରେ ଗୋଟିଏ ଲେଖା ବାହାରିଲା । ସେତେବେଳେ ବଙ୍ଗଳାର କବି କାଜି ନଜରୁଲ୍-ଇସ୍‌ଲାମ୍‌ଙ୍କ 'ଧୂମକେତୁ' ପତ୍ରିକାରେ 'ଦୁଃଶାସନରେ ରକ୍ତ ଚାଇ' କବିତା ପ୍ରକାଶ ପାଇଥିଲା, ଏକା ଦିନକେ ଲାଲ, ଓ ନଜରୁଲ୍‌ଙ୍କର ବିଚାର ହୋଇ ଦୁହିଁଙ୍କୁ ଦୁଇ ବର୍ଷ କରି ଜେଲ୍ ଦଣ୍ଡ ଆଦେଶ ହେଲା, 'ଋଷି ଆର ଝଙ୍କାରେ ବଳସେବୀ 'ରାଜନୀତି ପ୍ରଚାର କରୁଛୁ' ବୋଲି ଲାଲଙ୍କର ବିଚାର ହେଲା; କିନ୍ତୁ 'ନିର୍ଭୀକ'ର ଲେଖାଟି ପଢ଼ିବା ଲାଗି ସେଠି କେହି ନ ଥିଲେ; ଫଳରେ ତାଙ୍କୁ ଖଲାସ୍ କରି ଛାଡ଼ି ଦିଆହେଲା, ଲାଲ କଟକ ଫେରି ଆସିଲେ ।

ସେତେବେଳେ ଭାରତ ସେବକ ସମାଜର ସଭ୍ୟ ଲକ୍ଷ୍ମୀନାରାୟଣ ସାହୁ 'ଷ୍ଟାର ଅଫ୍ ଉତ୍କଳ' ପତ୍ରିକା କଟକରୁ ବାହାର କରୁଥିଲେ । ଲାଲ ସେଥିରେ ଯୋଗ ଦେଲେ. ଶ୍ରୀ ଶ୍ରୀନିବାସ ଶାସ୍ତ୍ରୀ ଏହାର ସଭାପତି ଥିଲେ । ମହା ବାଗ୍ମୀ, କିନ୍ତୁ ବ୍ରିଟିସ୍ ସରକାରଙ୍କ ସପକ୍ଷ ଲୋକ ସେ ଥିଲେ; ଭାରତର ଜଣେ ପ୍ରତିନିଧି ହୋଇ କାନେଡାରେ ଅନୁଷ୍ଠିତ ସାମ୍ରାଜ୍ୟବାଦୀ ସମ୍ମିଳନୀରେ ଯୋଗ ଦେଇଥିଲେ । ସାହେବାଣୀମାନେ ତାଙ୍କୁ Indian Terbannud Dog ବୋଲି କହି ପଚା ଅଣ୍ଡା ପକାଇଲେ । ଶ୍ରୀ ଶାସ୍ତ୍ରୀଙ୍କ ସମାଲୋଚନା କରି 'star'ରେ ଲେଖା ବାହାରି ଥିଲା । ଅନୁସନ୍ଧାନ ପରେ ଲକ୍ଷ୍ମୀନାରାୟଣ ଦୋଷୀ ସାବ୍ୟସ୍ତ ହେଲେ, ସମ୍ପାଦକତା ଛାଡ଼ିଲେ । 'ଷ୍ଟାର' ଚିର ଦିନ ଲାଗି ବନ୍ଦ ହୋଇଗଲା ।

ତା ପରେ ଲଳ୍ନ ଏକୁଟିଆ କଟକରୁ ସାପ୍ତାହିକ 'ନିର୍ଭୀକ' ବାହାର କଲେ । ୧୯୨୪ ରେ 'ସ୍ୱରାଜ' ଦଳର ମୁଖପତ୍ର ହୋଇ 'ନିର୍ଭୀକ' ଦୈନିକ ହୋଇ ବାହାରିଲା । ଯେତେ ଦୂର ସମ୍ଭବ, ଏହା ଓଡ଼ିଶାର ପ୍ରଥମ ଦୈନିକ ଓ ପ୍ରଥମ ଦୈନିକର ସମ୍ପାଦକ ହେବାର ଗୌରବ ଲଳ୍ନଙ୍କ ପ୍ରାପ୍ୟ । ଦଳ ପାଞ୍ଚ ହଜାର ଦୈନିକ କିଣି ନେବାର କଥା ହୋଇଥିଲା, କିନ୍ତୁ ସେ ତାହା କିଣି ନେଲେ ନାହିଁ । ଅର୍ଥାଭାବରୁ 'ନିର୍ଭୀକ' ବନ୍ଦ ହୋଇଗଲା । ତା ପରେ ପୁଣି ସାପ୍ତାହିକ ଭାବେ ଆତ୍ମ ପ୍ରକାଶ କଲା । କିନ୍ତୁ ବେଶୀ ଦିନ ଚଳିଲା ନାହିଁ । ତାପରେ ଲଳ୍ନ ୧୯୩୦ରେ ସାପ୍ତାହିକ 'ଦେଶକଥା' ଚଳାଇଲେ, ନାନା ସ୍ଥାନରେ ବକ୍ତୃତା ଦେଇ କଂଗ୍ରେସ୍ ସପକ୍ଷରେ ପ୍ରଚାର କଲେ । 'ଉତ୍କଳ ଦୀପିକା' ଦୈନିକ ଭାବରେ ଅଳ୍ପ କେତେ ଦିନ ଚାଲିଥିଲା । ତାପରେ 'ଦେଶ କଥା' ଦୈନିକ ଭାବରେ ୧୯୩୭ ରେ ପ୍ରକାଶ ପାଇଲା । ପ୍ୟାରୀଶଙ୍କର ରାୟ ଦୀପିକା ଗ୍ରନ୍ଥ 'ଦେଶ କଥା'ରେ ଯୋଗ ଦେଲେ । ଗିରିଜା ଶଙ୍କର ରାୟ ଭୂମ୍ୟଧିକାରୀ ସଙ୍ଘ ତରଫରୁ ଲାଲାଙ୍କୁ ଟ ୧୪୦ ଙ୍କା, କୃଷ୍ଣ ଚନ୍ଦ୍ର ଗଜପତି ଟ ୨୦୦, ରାଜେନ୍ଦ୍ର ନାରାୟଣ ସିଂ ଦେଓ ଟ ୨୦୦, ସାହିତ୍ୟ ସମ୍ରାଟ ବିକ୍ରମ ଦେବ ବର୍ମା ଟ ୧୦୦, ପରଳା ସାହେବ ମାସିକ ଦଶ ଟଙ୍କା ସାହାଯ୍ୟ ଦେଇଥିଲେ ।

ଏହି ଦୈନିକରେ ଦୁର୍ନୀତିଗ୍ରସ୍ତ ଅଫିସର୍, ଅତ୍ୟାଚାରୀ ରାଜା ଓ ଜମିଦାର-ମାନଙ୍କ ବିରୁଦ୍ଧରେ ଲଳ୍ନ ନିର୍ଭୀକ ଭାବରେ ଲେଖୁଥିଲେ । ସେ କଚେରୀକୁ ଯାଇ ଓକିଲାତି କରୁ ଥିଲେ । ତାଙ୍କ ନାମ ମାତ୍ର ଦେଖି ହାକିମ ଆସାମୀମାନଙ୍କୁ ଛାଡ଼ି ଦେଉଥିଲେ, ସେ ଦୈନିକ ୩୦।୪୦ ଟଙ୍କା ରୋଜଗାର କରୁଥିଲେ । ତାଙ୍କର ଅଫିସ ମଟର ଗାଡ଼ି, ମଟର ସାଇକେଲ, ଟେକ୍ସୀ ଓ ଘୋଡ଼ାଗାଡ଼ି ଥିଲା । ଆଭିଜାତ୍ୟର ବିରାଟ ରୂପ ଦେଖାଗଲେ ବି ଭିତରଟା ଫାଙ୍କା ଥିଲା । ଘରକୁ ଲୋକଙ୍କୁ ରାନ୍ଧିବାଢ଼ି ତାଙ୍କୁ ଖାଇବାକୁ ଦେବାକୁ ହେଉଥିଲା । ସରକାରୀ ବ୍ୟବସ୍ଥା ବିଜ୍ଞାପନ, ନିଲାମ ଇସ୍ତାହାର, ଗଡ଼ଜାତ ସମ୍ବାଦ-ପ୍ରକାଶ ଆୟରେ କୌଣସି ମତେ ଦୈନିକଟି ଚଳୁଥିଲା, ପାଞ୍ଚ ବର୍ଷ ଚଳିଲା । ଆଉ ତା ପରେ ଚଳାଇବା ସମ୍ଭବ ହେଲା ନାହିଁ । ସେଭଳି ପୁଞ୍ଜି ବା ଯଥେଷ୍ଟ କାଟତି ନ ହେଉଥିଲେ ସ୍ୱାଧୀନ ଭାବରେ ଦୈନିକଟିଏ ଚଳାଇବା କଷ୍ଟକର ।

ଏହି ସମୟରେ ଗଜପତି କୃଷ୍ଣଚନ୍ଦ୍ରଙ୍କ ମୁଖ୍ୟମନ୍ତ୍ରିତ୍ୱରେ ନୂତନ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା । ଓଡ଼ିଶା ସରକାରଙ୍କ ଯୋଗସୂତ୍ର ଅଫିସର ହୋଇ ଲଳ୍ନ କଲିକତା ଯାତ୍ରା କଲେ ଓ ଏହି ଚାକିରୀରେ କିଛି ଦିନ ପରେ ବଙ୍ଗସରକାରଙ୍କ ଶ୍ରମ କମିଶନର ଅଫିସ ସହିତ ସମ୍ପୃକ୍ତ ହେଲେ । ଓଡ଼ିଆମାନଙ୍କ ମଧ୍ୟରେ କଳତକରାଳ ମୀମାଂସା ଓ ଚାକିରୀ ସମସ୍ୟାର ସମାଧାନ କରିବାକୁ ସେ ଚେଷ୍ଟିତ ହୋଇଥିଲେ । ୧୯୪୨ ରେ କଲିକତା ଯାଇ ପାଞ୍ଚ ବର୍ଷ ରହିଲା ପରେ ୧୯୪୭ ରେ କଟକ ଫେରି ଆସିଲେ ।

ସେତେବେଳକୁ ପ୍ରେସର ସମସ୍ତ ଅକ୍ଷର ସେମାନ ଯାଇଥିଲା; ଛପାଖାନାର ଖୋଳଟି ମାତ୍ର ଅବଶିଷ୍ଟ ଥିଲା । ଲାଲ ମୁଣ୍ଡରେ ହାତ ଦେଇ କିଛି ଦିନ ବସିଲେ; କିନ୍ତୁ ଖାଲି ଏଇଥିରେ ଦିନେ ସଂସାର ଚଳେନା; ତାଙ୍କୁ ରୋଜଗାର କରିବାକୁ ହେବ । ଦୁର୍ଭିକ୍ଷ ଲାଗି ରହିଥିଲା ବେଳେ ସ୍ୱତନ୍ତ୍ର ଦଳ ନେତା ରାଜେନ୍ଦ୍ର ନାରାୟଣ 'ଦେଶ କଥା'କୁ ଦଳର ମୁଖପତ୍ର କରିବାକୁ ଚେଷ୍ଟା କଲେ । ମାତ୍ର ତୋଡ଼ଏ ଦିନ ଦୈନିକ ଆକାରରେ ଏହି ପତ୍ରିକା ଚାଲିଥିଲା । ଜନତାପତ୍ର ଏପରି କଷ୍ଟକ୍ଲିଷ୍ଟ ହୋଇଥିଲା ଯେ ପ୍ରେସ ଆଉ ଚାଲୁ ଅବସ୍ଥାକୁ ଆସି ପାରିଲା ନାହିଁ । ବାଧ୍ୟ ହୋଇ ଲାଲା ପୁଣି ଓକିଲାତି କଲେ; କିନ୍ତୁ ଥରେ ବ୍ୟବସାୟ ଛାଡ଼ିଗଲେ ଆଉ ଯୋଡ଼ ହୁଏନାହିଁ । ବଜାରରେ ଲାଲାଙ୍କର କି ପ୍ରତିଷ୍ଠା ଅଛି ଯେ ମହକିଲ ଆସିବେ ? ଦୈନିକ ବନ୍ଦ ହୋଇଯିବା ପରେ ତାଙ୍କ ପ୍ରତି କାହାର ଭୟ ରହିଲା ନାହିଁ । କଚେରୀ ଯିବା ବନ୍ଦ ହେଲା, ଲାଲା ନୋବେଲ ପୁରସ୍କାର ପ୍ରାପ୍ତ ଲେଖକମାନଙ୍କ ଗ୍ରନ୍ଥ ଅନୁବାଦରେ ଲାଗିଲେ, ସେ ପାର୍ଲ ଏସ୍ ବକ୍‌ଙ୍କ 'ଗୁଡ଼ ଆର୍ଥ', ହେମିଂୱେଙ୍କର 'ଓଲଡ଼ ମ୍ୟାନ ଆଣ୍ଡ ଦ ସି', ଆଲବର୍ଟ କାମୁଙ୍କର 'ଫରେନର', ଫଲ', 'ବାର୍ନାଡ଼ ଶ'ଙ୍କର 'ପ୍ଲେଜ୍ ଅନ୍ ପ୍ଲେଜେଣ୍ଟ', ଷ୍ଟାଇନ୍‌ବେକ୍‌ଙ୍କର ପାର୍ଲ', ହାଲଡ଼ର ଲାକସେନ୍‌ସଙ୍କର 'ଇନ୍‌ଡିପେଣ୍ଡେଣ୍ଟ ପିପଲ୍' ପ୍ରଭୃତି ବହୁ ଗ୍ରନ୍ଥ ଅନୁବାଦ କରିଥିଲେ । ହଜାରେ ଶବ୍ଦ ଅନୁବାଦ କଲେ ସେ ୫ ଟଙ୍କା ପାଉଥିଲେ; ପ୍ରଥମେ ମନମୋହନ ପୁସ୍ତକାଳୟ, ଟ୍ରେଡ଼ିଂ କମ୍ପାନି ଓ ଗ୍ରନ୍ଥମନ୍ଦିର ତାଙ୍କ ଅନୁବାଦିତ ପୁସ୍ତକସବୁ ପ୍ରକାଶ କଲେ, ଲାଲଙ୍କର ବଞ୍ଚିବାର ଏହା ହିଁ ମୁଖ୍ୟ ଅବଲମ୍ବନ ହୋଇଥିଲା ।

୧୯୨୨ ରେ ଲାଲଙ୍କର ପ୍ରଥମ ଲେଖା କବିତା ପୁସ୍ତକ 'ଆନନ୍ଦ ଲହରି' କଲିକତାରୁ ପ୍ରକାଶିତ ହୋଇଥିଲା, ସେଇ ବହି ବା ପାଣ୍ଡୁଲିପି ଲୋପ ପାଇ ଯାଇଛି । ତାର ଦାମ୍ ଚାରି ପଇସା ଥିଲା । ଦେଶାତ୍ମବୋଧ ହିଁ ତାର ବିଷୟ ଥିଲା । ଉଦ୍ଧୃତ ପଦଟି ମାତ୍ର ଲାଲଙ୍କର ମନେ ଥିଲା—

'ରେଲ୍ ମଟର ଟ୍ରାମ ଗାଡ଼ି
ଫେରିବୁ ଆପଣା ଘର
ତରୁଣ ଯୁଗଳେ ମାଡ଼ି ଦେବା ଆମେ
ସେତୁବନ୍ଧ ରାମେଶ୍ୱର ।'

ଲାଲ କୃଷ୍ଣ ସିଂହଙ୍କ ମହାଭାରତ ଅଠର ଖଣ୍ଡ ପଢ଼ି ତାକୁ ସରଳ ଭାଷାରେ ତିନି ଖଣ୍ଡରେ ଲେଖିଥିଲେ । କଟକରେ ତାଙ୍କ ଅନୁପସ୍ଥିତି କାଳରେ କୋଠାରୁ ପାଣି ଝରି ଆଲମାରୀ ଓଦା ହୋଇଗଲା, ସମସ୍ତ ପାଣ୍ଡୁଲିପି ଉଇ ଖାଇଗଲେ । ଆଲମାରୀ ଖୋଲିଲା ବେଳକୁ ଢ଼ଙ୍କାଟିଏ ମାତ୍ର ଥିଲା । ତିନି ବର୍ଷର କଠୋର ଶ୍ରମ ପାଣିରେ ପଡ଼ିଲା । ଲାଲଙ୍କ ମୁଖରୁ ତାର କେତୋଟି ପଦ ତଳେ ଉଦ୍ଧୃତ ହେଲା—

"ମିଥ୍ୟା ନୁହେଁ ମୁହିଁ ସଜଳାଛୁ ବେଦ
ରଚିଛୁ ଅନେକ ଗ୍ରନ୍ଥ
ରତନ ବୋଲିଣ ଶାମୁକା ତୋଳିଛୁ
ସିନ୍ଧୁ ଗର୍ଭୁ ଅବିରତ ।
ବ୍ୟାକୁଳ ଚିତ୍ତରେ ଚିନ୍ତି ନାରାୟଣ
ପାଇଲି ଅପୂର୍ବ ଜ୍ଞାନ
କରିଲି ଚେଷ୍ଟା ମୁଁ ଭ୍ରାନ୍ତ ଅର୍ଜୁନଙ୍କୁ
ଏହି ମହା ଗୀତା ଦାନ ।
ନିଜେ ନାରାୟଣ ସାଜିନ ଏହାର
ଏହି ଗୀତା ତାଙ୍କ ବାଣୀ
କୃଷ୍ଣ ଓ ମହର୍ଷି ନିମିତ୍ତ ମାତର
କ୍ରୁଚୂନାଥ ଥାଅ ଜାଣି ।
ତୁ ଯଦି ମାନବ ହଉଥିଲେ ଖ୍ରୀଷ୍ଟ
ତୁ ଯଦି ମାନବ ହରି
ଦେବତା ଉପରେ ତେବେ ତ ନିର୍ଦ୍ଧିତ
ମାନବ ଜନମଧାରୀ ।"

ଲାଲ ବହୁ କବିତା ରଚନା କରିଥିଲେ । ସେ ସବୁ ଦୁର୍ଲଭ । ତଳେ ତାଙ୍କ ମୁଖରୁ ଗୋଟିଏ ମାତ୍ର କବିତା ଉଦ୍ଧୃତ ହେଲା—

"ଅନ୍ତରଯାମୀ ଆହେ ଅନ୍ତରବାସୀ
ବଜାଅ ବୀଣା ମମ ଅନ୍ତରେ ବସି
ଶୁଣିବି ଯେବେ ତବ ଆହ୍ୱାନବାଣୀ
ଧରମ କରମ ସବୁ ଛାଡ଼ି ସେକ୍ଷଣି
ଛୁଟିବି ତବ ପଦେ ଲୋଟିବି ଆସି ।
ଚରଣ ଚିହ୍ନ ତବ ଜୀବନ ପଥରେ
ଅଙ୍କିତ ହେଉ ମମ ଜୀବନ ନୀରେ
ବିମ୍ବିତ ହେଉ ତବ ଆନନ ଶଶୀ
ଅନ୍ତରଯାମୀ ଅହେ ଅନ୍ତରବାସୀ ।"

ନାଟ୍ୟକାର ଭାବେ ଲାଲ ସୁପ୍ରସିଦ୍ଧ; ତାଙ୍କ ନାଟକକୁ ପୌରାଣିକ ଓ ଐତିହାସିକ ଏଇ ଦୁଇଟି ବିଭାଗରେ ବିଭକ୍ତ କରାଯାଇପାରେ । ସେ ମୋଟରେ ତିନି ଖଣ୍ଡ ନାଟକ

ରଚନା କରିଛନ୍ତି । 'ରଘୁ ଅରକ୍ଷିତ' ତାଙ୍କର ପ୍ରଥମ ନାଟକ, ପଞ୍ଚାଙ୍କ ବିଶିଷ୍ଟ, ମୁକ୍ତ-ଛନ୍ଦ କବିତା ଓ ଗଦ୍ୟରେ ଏହାର ସଂଳାପ ଲିଖିତ । ଏହି ନାଟକଟି ଲେଖକଙ୍କ ସ୍ତ୍ରୀ କମଳା ରାୟଙ୍କ ନାମରେ ଉତ୍ସର୍ଗୀକୃତ । ମୁଖବନ୍ଧରେ ଲେଖକ ଲେଖିଛନ୍ତି—

"ଏ ନାଟକ ଖଣ୍ଡି ୧୯୨୮ ରେ ଲେଖିଥିଲି, ଉତ୍କଳର ଅନେକ ସ୍ଥାନରେ ତଥା କଲିକତାରେ ଏହା ଏକାଧିକ ବାର ଅଭିନୀତ ହୋଇ ଦର୍ଶକମଣ୍ଡଳୀର ପ୍ରଶଂସା ଅର୍ଜନ କରିଥିଲା । ଓଡ଼ିଆ ଭାଷାର ଅନବଦ୍ୟ ଭକ୍ତ ଜୀବନୀ 'ଦାର୍ଢ୍ୟତା ଭକ୍ତି'ର ଗୋଟିଏ ଉପାଖ୍ୟାନକୁ ଅଳ୍ପ ଆଦଳବଦଳ କରି ନାଟକର ବିଷୟବସ୍ତୁ ସଂଗୃହୀତ । ସମୟୋପଯୋଗୀ ସାମାଜିକ ଘଟଣାବଳୀର ଚରିତ୍ର ମଧ୍ୟ ସମାଲୋଚନା ଛଳରେ ଏଥିରେ ଯୋଗ କରାଯାଇଅଛି । ଗୀତ ମଧ୍ୟରୁ କେତୋଟି ଅଭିନେତାମାନଙ୍କର ରଚନା, ମନେ ନାହିଁ ବୋଲି ଉଚିତ ମତେ କୃତଜ୍ଞତା ସ୍ୱୀକାର କରି ପାରିଲି ନାହିଁ । ଅନ୍ୟ ଭାଷାରେ ଲିଖିତ ଉପନ୍ୟାସ ଓ ନାଟକର ଛାୟା ଏଥିରେ ଥିବାରୁ ଏହା ଅବଶ୍ୟ ପୂର୍ଣ୍ଣ ମୌଳିକ ରଚନା ନୁହେ । ତଥାପି ପୌରାଣିକ ଭାବଧାରା ସମନ୍ୱିତ ହୋଇ-ଥିବାରୁ ଗଣନାଟ୍ୟ ଶ୍ରେଣୀଭୁକ୍ତ ହୋଇପାରେ ।"

'କଳିଙ୍ଗ ବିଜୟ' ତାଙ୍କର ଦ୍ୱିତୀୟ ପ୍ରକାଶିତ ନାଟକ, ଯଦିଓ ବା ଏହା ଲିଖିତ ହୋଇଥିଲା 'ରଘୁ ଅରକ୍ଷିତ' ଆଗରୁ ୧୯୨୭ ରେ । "ବୌଦ୍ଧ ଯୁଗର ପୂର୍ବର୍ତ୍ତୀ ଯୁଗର ଇତିହାସ ଏହାର ମୂଳଭିତ୍ତି, ତଥାପି ଏହାକୁ ଇତିହାସ ବୋଲି ଭାବିବା ଭ୍ରମ । ସ୍ୱଜାତୀୟ ଗୌରବ ବୃଦ୍ଧି ନିମିତ୍ତ ଲେଖକମାନେ ଇତିହାସର ସୀମା ଲଙ୍ଘନ କରି ପାରନ୍ତି । ଏ କ୍ଷେତ୍ରରେ ମଧ୍ୟ ତାହା ହିଁ କରା ହୋଇଛି । ନାଟକର ପ୍ରାଣ ହେଉଛି ବାସ୍ତବତା ଓ ସ୍ୱାଭାବିକତା ।"

ଏହା ନାଟ୍ୟାଚାର୍ଯ୍ୟ ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କ ଦ୍ୱାରା ସଂଶୋଧିତ । କଳାହାଣ୍ଡି ବ୍ରଜ ମୋହନ ସାହିତ୍ୟ ପରିଷଦ ତରଫରୁ ଅନୁଷ୍ଠିତ ପ୍ରତିଯୋଗିତାରେ ୩୫ ଟି ନାଟକ ମଧ୍ୟରେ ଶ୍ରେଷ୍ଠ ବିବେଚିତ ହୋଇ ୧୦୦୦ ଟଙ୍କା ପୁରସ୍କାର ପ୍ରାପ୍ତ ହୋଇଥିଲା (୧୯୪୫) ଓ ସେହି ବର୍ଷ ଏହା ପ୍ରକାଶିତ ହୋଇଥିଲା ।

'ଶେଷ ସ୍ୱାଧୀନତା' ତାଙ୍କର ଶ୍ରେଷ୍ଠ ନାଟକ, ୧୯୫୦ରେ ପ୍ରକାଶିତ । "ଏହି ନାଟକଟି ରୋଗ ଶଯ୍ୟାରେ ଆଇ ୧୯୩୧ ସାଲରେ କଟକ ମେଡ଼ିକାଲ ସ୍କୁଲରେ ଅଭିନୟ ପାଇଁ ସାତ ଦିନ ମଧ୍ୟରେ ସେ ଲେଖିଥିଲେ । ବିଷୟବସ୍ତୁ ଓଡ଼ିଶା ଇତିହାସର ଅଧ୍ୟାୟଟିଏ । ପଞ୍ଚଦଶ ଶତାବ୍ଦୀର ଓଡ଼ିଶା ଅବସ୍ଥାକୁ ଭିତ୍ତି କରି ଏଥିର ଚରିତ୍ର ଚରିତ୍ର ହୋଇଅଛି । ପ୍ରଧାନତମ ଲକ୍ଷ୍ୟ ଓଡ଼ିଶାର ଜାତୀୟତା ଓ ସଂସ୍କୃତିକୁ ମହାସ୍ଥାନ କରିବା । ଏହା ସାଙ୍ଗକୁ ଆଧୁନିକ ହିନ୍ଦୁ ମୁସଲମାନ ଦ୍ୱନ୍ଦ୍ୱ ଏବଂ ଅସ୍ପୃଶ୍ୟତା ଦୂରୀକରଣ

ଭାବଧାରା ମିଶିଅଛି । ବାସ୍ତବ ନାଟ୍ୟକଳା ତଥା ଓଡ଼ିଶାରେ ଅଭିନେତ୍ରୀଙ୍କର ବିରଳତା ପ୍ରତି ଲକ୍ଷ୍ୟ କରି ଏଥିରେ କୁଶୀଳବଙ୍କର ଭୂମିକା ''

## ବିବିଧ ରତ୍ନସଂଗ୍ରହ

ଲଲଙ୍କ 'ବିବିଧ ରତ୍ନ ସଂଗ୍ରହ' (୧୯୩୬) ବିଶ୍ୱଜ୍ଞାନ କୋଷର ପୂର୍ବଜ । ''ଏପରି ଫର୍ଦ୍ଦିଏ ବହି ଲେଖା ଯାହା କି ସୁକୁମାରମତି ବାଳକଙ୍କଠାରୁ ଆରମ୍ଭ କରି ବର୍ଷୀୟାନ୍ ବୃଦ୍ଧ ପର୍ଯ୍ୟନ୍ତ, କୁଟୀରବାସୀଙ୍କଠାରୁ ପ୍ରାସାଦବାସୀ ପର୍ଯ୍ୟନ୍ତ, ଗୃହଶାଳୀ ଗୃହସ୍ଥଠାରୁ ବିଶ୍ୱ ବିଦ୍ୟାଳୟ ଅଧ୍ୟକ୍ଷଙ୍କ ପର୍ଯ୍ୟନ୍ତ, ଏବଂ ମୋଟିଆ ମଜୁରିଆଠାରୁ କୋଟିପତି ମାଲିକ ପର୍ଯ୍ୟନ୍ତ, ସବୁ ସ୍ତରର, ସବୁ ସମ୍ପ୍ରଦାୟର ଓ ସବୁ ଅବସ୍ଥାର ଲୋକଙ୍କର ଅଭାବ ପୂର୍ଣ୍ଣ କରିବ ।''

ଏହି ସଂଗ୍ରହ ଲାଗି ଲଲ ଦୁଇ ବର୍ଷ କାଳ ଇମ୍ପେରିଆଲ୍ ଲାଇବ୍ରେରୀରେ କଟାଇଥିଲେ । ନାନା ସ୍ଥାନ ବୁଲି ବହୁ ପୁସ୍ତକ ଓ ପତ୍ରପତ୍ରିକାରୁ ବିଷୟ ସଂଗ୍ରହ କରିଥିଲେ । ଚାରି ଖଣ୍ଡରେ ପ୍ରକାଶର ଯୋଜନା ହୋଇଥିଲା । କିନ୍ତୁ ମନମୋହନ ପ୍ରେସ୍‌ରେ ଅନ୍ୟ ଖଣ୍ଡମାନ ହଜିଗଲା । ଏହା ଅତି ଦୁଃଖଦାୟକ ଘଟଣା ।

ସ୍ୱ ପ୍ରକାଶଙ୍କ ବିଷୟରେ କହିବାକୁ ଯାଇ ଲଲ ଗୋଟିଏ ଅନୁଶୋଚନାର ବିଷୟ ଉଲ୍ଲେଖ କରିଥିଲେ । ସେ କାମବିଷୟକ ଅଜ୍ଞତା ଦୂରୀକରଣାର୍ଥେ 'ବିବାହ ବନ୍ଧନ' ଓ 'କାମ ବିଜ୍ଞାନ' ଶୀର୍ଷକ ଦୁଇଖଣ୍ଡ ପୁସ୍ତକ ରଚନା କରିଥିଲେ; ଏହିସବୁ ପୁସ୍ତକ ୬୦ ହଜାରରୁ ଅଧିକ ବିକ୍ରୀ ହୋଇଥିଲା । ପ୍ରକାଶକ ମନମୋହନ ପୁସ୍ତକାଳୟ ଲେଖକଙ୍କୁ ଗୋଟିଏ ରୌପ୍ୟ ଗ୍ଲାସ (ଦାମ୍ ୩୫ ଟଙ୍କା) ମାତ୍ର ଉପହାର ଦେଇଥିଲେ ଯାହା କେତେ ଦିନ ପରେ କିଏ ହରଣଚାଳ କରି ନେଇଥିଲା ।

୮ । ୧ । ୧୯୭୯ ମର୍ତ୍ତ୍ୟ ଭୂମିରେ ଲଲଙ୍କ ଶେଷଦିନ; ରାତି ଦୁଇଟାବେଳେ ଡାକ୍ତର ଖାନାର ନିର୍ଜନ ବାତାବରଣ ମଧ୍ୟରେ ତାଙ୍କର ତିରୋଧାନ; ହୃଦ୍ ରୋଗରେ ହୃତ୍‌ପୀଡ଼ିତ ହୋଇଥିଲେ ସେ, ଅଚେତ ଅବସ୍ଥାରେ ପ୍ରାୟ ଏକ ସପ୍ତାହ ମୃତ୍ୟୁ ସହିତ ସଂଗ୍ରାମ କରିଥିଲେ ।

ଶ୍ମଶାନକୁ ଯିବା ପରେ ଓଡ଼ିଶା ସାହିତ୍ୟ ଏକାଡେମୀ ସଭାପତି ସାହାଯ୍ୟ ସମ୍ଭାର ନେଇ ଆସି ପହଞ୍ଚିଥିଲେ । ଏହା ତାଙ୍କ ଶେଷକ୍ରିୟା କାର୍ଯ୍ୟରେ ନ ଲାଗିଲେ ବି ଶୋଚନା କରିବାର କିଛି ନାହିଁ । କାରଣ ଲଲବାବୁଙ୍କ ଆତ୍ମା ସ୍ୱର୍ଗରେ ଆତ୍ମପ୍ରସାଦ ଲାଭ କରିଥିବ, ମଲା ପରେ କେହି କେହି ତାଙ୍କ କଥା ମନେ ପକାଇଛନ୍ତି ଭାବି । ଏତିକି ସ୍ୱୀକୃତି ତାଙ୍କୁ କମ୍ ଆନନ୍ଦ ଦେଇ ନ ଥିବ ।



# ବୈକୁଣ୍ଠନାଥ ପଟ୍ଟନାୟକ

ଜନ୍ମ--୧୪।୯।୧୯୦୪

ମୃତ୍ୟୁ—୨୭।୧।୧୯୭୯

କଳାପୁଷ୍ପ

ରାଣୀହାଟ, ଗଡ଼େ ସାହି

କଟକ—୧

ତା ୬।୮।୭୨, ରବିବାର

---

ପରମ ଶ୍ରଦ୍ଧାସ୍ପଦେଷୁ,

ଡଃ କୃଷ୍ଣବାବୁ, ଆପଣଙ୍କୁ ତ ଗୁଡ଼ାଏ ଖଟାଇ ନେଲି । ତାପରେ ଆପଣଙ୍କ ନବ ନିଯୁକ୍ତି କଥା କାଗଜରୁ ଜାଣି ସୁଖୀ ହେବା ସଙ୍ଗେ ସଙ୍ଗେ ଆତ୍ମକୃତ ପାପ ଲାଗି ବଡ଼ ଲଜ୍ଜିତ ହେଲି । ଉତ୍କଳସାହିତ୍ୟର ପୁରୋଧାଙ୍କୁ ବସାଇ ମୁଁ ସାତ ଆଠ ଦିନଧରି କିରାଣି କାମରେ ଲଗାଇଛି, ଗୁଡ଼ାଏ ଆତ୍ମପ୍ରଶଂସା ଓ ନିଜ ଗୁଣ ଗାନ କରି । ଆନ୍ତରିକ ଅନୁରୋଧ, ମୋର ସେ ବିବରଣୀଗୁଡ଼ାକ ଫାଇଲ୍ କରିଦିଅନ୍ତୁ । ଅବଶ୍ୟ ଆପଣଙ୍କ ପରିଶ୍ରମକୁ ମୁଁ ଅବଜ୍ଞା କରିପାରିବି ନାହିଁ । ଇଚ୍ଛା ନ କରି ସୁଦ୍ଧା ପାପଭାର ବଢ଼ାଇଛି । ଏ ସମ୍ପର୍କରେ ଶ୍ରୀକୃଷ୍ଣଙ୍କ ଅର୍ଜୁନଙ୍କ ଉତ୍ତର ସ୍ମରଣ କରନ୍ତୁ । ଯଦି ଆପଣ ତାକୁ ନିଶ୍ଚୟ ପ୍ରକାଶ କରିବେ, ମୋର କୃତାଞ୍ଜଳିପୁଟେ ନିବେଦନ, ସେଥିରୁ 'ଅହଂ'କୁ ବାଦ୍ ଦିଅନ୍ତୁ । ଛି, ଛି, କି କଦର୍ଯ୍ୟ ଆତ୍ମପ୍ରଚାର ଆପଣ ଅକାତରେ ଲେଖି ପକାଇଲେ । ଟିକିଏ ବି ମୋତେ ଚେତାଇଲେ ନାହିଁ ? ଏବେ ପ୍ରଥମ ପୁରୁଷ ସ୍ଥଳେ ତୃତୀୟକୁ ବସାଇ ଗୋଟିଏ ପରିବର୍ତ୍ତିତ ଲେଖା ମୁଁ ଦେଖିଲେ ଶାନ୍ତିରେ ମରି ପାରିବି । ମୋର ଅନ୍ତର୍ଦାହ ଅପ୍ରକାଶ୍ୟ । ସବୁ ଜାଗାରୁ 'ମୁଁ'କୁ ଉଠାଇ 'ସେ' ବସାଇବାକୁ ବେଶୀ ପରିଶ୍ରମ ବା କଷ୍ଟ ହେବ କି ?

'ଉତ୍ତରାୟଣ' ପରେ ଆହୁରି ଅନେକଗୁଡ଼ିଏ ପଦ୍ୟ ଲେଖିଗଲଣି । ଆଖିର କ୍ଷୀଣ ଶକ୍ତିକୁ ବିଶ୍ୱାସ କରିହେଉ ନାହିଁ । 'ସହଜଭଙ୍ଗୀ'ର ୩୦୦ ପୃଷ୍ଠା, Lyricsରୁ

୧୦୦ ପୃଷ୍ଠା ହବ, ନକେ ଛଡ଼ାଇଥିଲି । ଏ ଢଙ୍ଗରେ କେହି ଟିକଏ ସାହାଯ୍ୟ କଲେ ଅଖି ଆଉ ଆଉ କେତେ ଗୁଡ଼ାଏ କାର୍ଯ୍ୟ ହୋଇଯାନ୍ତା । ଆପଣଙ୍କର ତରୁଣ ସୁଲଭ ଉତ୍ସାହ ଉପରେ ଗତ ପୁରୋଧା ନଅନ୍ତି ନିଶ୍ଚୟ ପୁଷ୍ପ ବୃଷ୍ଟି କରିବ । Research ବି ହେବ, ଆମ ଭଳି ମୃତ ଲେଖକଙ୍କର ପଙ୍କୋଦ୍ଧାର କାମ ବି ହେବ । ଅବଶ୍ୟ ସରକାର ପୁରାତନ ପୁସ୍ତକଶ୍ରେଣୀରେ ଯେତେ ଛାପିଛନ୍ତି ତାର ୧/୪ ଅଂଶ ଆପଣଙ୍କ ଭାଗରେ ପଡ଼ିବ କି ନାହିଁ କହିହେଉ ନାହିଁ ।

ବଶମ୍ବଦ

ବୈକୁଣ୍ଠନାଥ ପଟ୍ଟନାୟକ

ବୈକୁଣ୍ଠନାଥଙ୍କ ଜୀବନର ଟିପ୍ପଣୀ ଟିକଏ ଲେଖିବା ଲାଗି କେତେ ଥର ହାରସ୍ଥ ହୋଇ ନୈରାଶ୍ୟରେ ଫେରିଥିଲି । ପରାଜୟ ସ୍ୱୀକାର କରିବାକୁ ମନ କୁଣ୍ଠିତ, ଭିତରୁ ଡ଼ାକ ଆସୁଥାଏ—ଯା ଯା, ବାରମ୍ବାର ଯା । ପାଇବା ପର୍ଯ୍ୟନ୍ତ ଯାଉଥା ।

"କଣ ଏ ସବୁ ଦରକାର ?"

"ଭଗବାନ୍‌ଙ୍କ ସୃଷ୍ଟିର ରହସ୍ୟ ଉଦ୍‌ଘାଟନରେ ସାହାଯ୍ୟ କରେ କବି । ଆପଣଙ୍କ କବିତା ତାହା କରିଛି । କବିତାର ରହସ୍ୟ ଉଦ୍‌ଘାଟନ କରିବ ଆପଣଙ୍କ ଜୀବନଚରିତ ।"

"କାହିଁକି ଏ ବୃଥା ଚେଷ୍ଟା ?"

"ବୃଥା କି ନୁହେଁ ଜାଣେନା । ମତେ କିଏ କହୁଛି—ଯା, ଲେଖ୍ । ମୁଁ ଆସୁଛି । ମୋ ଦେହ ଖରାପ, ପାରିବି ନାହିଁ ବୋଲି ନାସ୍ତି କରିବାରୁ ସେ ଭଲ କରି ଦେଇଛନ୍ତି ।

କବିତା ତ ତାଙ୍କର ସ୍ୱର । ତାଙ୍କ ଇଚ୍ଛା ବିନା କିଏ ସେ ଶବ୍ଦ ପାଇ ପାରେ ? ମୋର କୃତିତ୍ୱ ବୋଲି କିଏ ଗର୍ବ ଦେଖାଇ ପାରେ ? ଆପଣଙ୍କୁ ବୁଝାଇବେ ସେଇ, ମୋ ହାତରେ ଲେଖାଇବେ ସେଇ । ବ୍ୟାସଦେବଙ୍କ ନିକଟକୁ ଗଣପତି ଆସି ଥିଲେ । ଲେଖି ଲେଖି ମହାଭାରତ ହୋଇଗଲା ।" ଆପଣ ବ୍ୟାସଦେବ, ମୁଁ ଗଣପତି, ମାନେ ଗଣେଶାବତାରର ସହାୟକ ।"

"ଦେଖୁଛି—ତୁମେ ମତେ ଛାଡ଼ି ଦେବ ନାହିଁ । ଥରେ ଫେରାଇଲି, ଦୁଇ ଥର ଫେରାଇଲି, ତଥାପି ଆରମ୍ଭ ଧର୍ମ ଛାଡ଼ ।"

"ଆପଣଙ୍କ ଦୁଆରକୁ ଆପେ ଆପେ ଆସୁଛି । ମହାରାଜା ଡାକିଲେ ବି ଯାନ୍ତି ନାହିଁ । 'ସମ୍ମାନର' ଗୌରବ ମୋର ଲୋଡ଼ା ନାହିଁ ।"

"ଆଉ କେହି ପାରି ନ ଆନ୍ତେ । ଯାହାକୁ ବି ମୁଁ ହୃଦୟ ଖୋଲି କହନ୍ତି ନାହିଁ । କିଏ ମୋଠୁଁ ଏପରି ଆଦାୟ କରି ନେଇ ପାରନ୍ତା ନାହିଁ ।"

"ଆପଣ କାମଧେନୁ, ମୁଁ ଅବଶ୍ୟ ଦୋଗ୍ଧା ଗୋପାଳନନ୍ଦନ ନୁହେଁ ।"

"କେତେ ଥର ଆପଣଙ୍କ ଗଳାକୁ ଶିବ ଶିବ ମନେ କରେ—

ମନେ ପଡ଼ିଯାଏ ମୋର "ହାକମ୍" ( ମୃତ କନିଷ୍ଠ ପୁତ୍ରର ଡ଼ାକ ନାମ ) କଥା ! ସଘମିତ୍ର ! !",

"ତା ରକ୍ତ ବର୍ଷକ ପରେ ବି ଲାଗିଛି ଆମ ଗଳା କାନ୍ଥ ଉପରେ । କିମିତି ଖେଳରୁ ମହାଭାରତ ସୃଷ୍ଟି; ଗୋଟିଏ ପୁତ୍ରର ନୃଶଂସ ନିଧନ, ଅନ୍ୟଟିର ଆତ୍ମହତ୍ୟା । ବାର୍ଦ୍ଧକ୍ୟରେ ଏ ଦୁଃଖ ତାଙ୍କ ପ୍ରତି ଦୁଃସାହ ହୋଇଥିଲା, ଯେତେ ବୈରାଗ୍ୟ ଭାବାପନ୍ନ, ସଂସାର ପ୍ରତି ଉଦାସୀନ, ଦୃଢ଼ ସଂକଳ୍ପନିଷ୍ଠ ହେଲେ ବି ।

ଏକ ଉତ୍କୃଷ୍ଟ ଗୀତିକବିତା, ଅପୂର୍ବ କରୁଣୋଚ୍ଛ୍ୱାସ ଓ ଭାବବୈଭବରେ ଭରା ।

'ପକ୍ଷୀ ମାୟା'—

ଘର ଶୁଆ ଉଠେ ହାକମ୍ ହାକମ୍ ଡ଼ାକ
ହାକମ୍ ତ ବାବୁ ହାସ୍ପାତଲରୁ
ଛ' ମାସ ହେଲା ପଳାଇଛି ଦେଇ ଫାଙ୍କି ।
ଖାଇବାକୁ ମାଗି ଏଇଠୁ ଆସୁଛି କନ୍ଦି
ଲୁଚିଇଲା ମୁଖ କାଳ ନ ପାରିଲା ସନ୍ଧି
ଆଠଟା ଘାତକ
ପେଟେ ଭୁଷି ଦେଲେ ଛୁରି
ପାପ ଲଭିଗଲା !
କାହା ପାଇଁ ହେବି ଝୁରି ?
କିଶୋର ବୟସ ତୋଠାରେ ଯେତେକ ତାଗି
ନ ଖାଇ ଥିଲେ ରୁ ରାଗେ ସେ ମାରି ନ ମାରୁ
ବାହାରୁ ଲୋଡ଼ିଛି ଦିଏ ଦୁଧ ଭାତ ଖୋଳି

ତବ ଦୁଧ ଛେନା ପୁଣି ଅଙ୍ଗୁର କୋଳି
କଇଁଥ କାକୁଡ଼ି ତୋଳି ଆଣେ କାହୁଁ ବୁଲି
ପକ୍ଷୀ ମାତର
ଅଭ୍ୟାସ ବଶେ ପାରୁ ନାହିଁ ତାକୁ ଭୁଲି
ଭୁଲି ପାରୁନାହିଁ ପୁଣି ତା ଜନ୍ମଦାତା
ଜଗତ ଉଦ୍‌ଧାରେ
ଝୁଣି ଇତସ୍ତତେ
ଲେଖି ରଖେ ତାର ଗାଥା ।

ସେସମିତ ମୋ ଦୁଆରେ ସାଙ୍ଗମାନଙ୍କ ସହିତ ପ୍ରାୟ ହରୁଥନ ଗଲ୍ପା-ମୋଦରେ ମାତିଥିବାର ଦେଖେ । ମୋର ଓ ଆପଣଙ୍କ ମଧ୍ୟରେ ଥିଲ ସେ ଏକ ଯୋଗସୂତ୍ର । ତାଠାରୁ ଆପଣଙ୍କ ସମ୍ବାଦ ପ୍ରତଦନ ପାଉଥିଲି । ସେ ସ୍ନିଗ୍ଧଗଳ୍ପ ଆପଣଙ୍କ ଅନ୍ତରକୁ ମୋ ଅନ୍ତର ସହିତ ନିବଡ଼ ଭାବରେ ବାନ୍ଧି ଦେଇ । ଆପଣଙ୍କ ବାର୍ଦ୍ଧକ୍ୟର ଏ ଉଷ୍ମ ଅଶ୍ରୁ ଟୋପା ଈଶ୍ୱରଙ୍କ ଶ୍ରୀଚରେ ପଡ଼ୁଥିବ ! ସେଇ ଅଶ୍ରୁ କେତେ ବିନ୍ଦୁ ମୁଁ ନେବାକୁ ଆସିଛି । ଦେଉଛ କଏ ? ନେଉଛି କଏ ? ଦେଉଛି ଯେ ନେଉଛି ସେ । ଆପଣ ଜୀବନରସର ଏକ ପ୍ରପାତ, ଆପଣ ଝରିଯାନ୍ତୁ, ମୁଁ ଡୁବି ଯାଏଁ ।

ବୈକୁଣ୍ଠନାଥ ଡାକଥିଲେ, ମୁଁ ଲେଖିଥିଲି, ତାଙ୍କ ଅନୁରୋଧରେ ଏବେ 'ମୁଁ' କୁ 'ସେ' କରିପାରି ନାହିଁ କମ୍ବା ଏହା ଲୋଡ଼ା ପଡ଼ନାହିଁ । ତାଙ୍କ ମନର ଭାବ ଯେମିତି ଏ ବୃତ୍ତାନ୍ତ ଠିକକ ଲେଖିଛି ।

କବି ସ୍ନେହପ୍ରବଣ; ଖଞ୍ଜ; ଆଖିକୁ ଭଲ ଦିଶୁ ନାହିଁ । ଏଣେ ହୃଦ୍ ରୋଗ । ସେଇ ଅବସ୍ଥାରେ ଜନତା କ୍ଷୋଭରେ କର୍ଫି କରି ମୋତେ ଶୁଆଉଥିଲେ, ବାହାର କରୁଥିଲେ ଅତଥିମାନଙ୍କ ଲାଗି ସମ୍ପତ ବିପ୍ଳନ୍ତି । ଚନ୍ନି ଚନ୍ନି କରି ପାଣିବାଣିକ ପ୍ରଶ୍ନସବୁ ପଚାରୁଥିଲେ, ସାଧାରଣତଃ ସଂସାର ମାୟାରେ ସେପରି ଜଡ଼ିତ ନ ହେଲେ ବି ।

ସେପରି ବିଷୟବୁଦ୍ଧି ତାଙ୍କର ନ ଥିଲା, ଜମିବାଡ଼ି ବଢ଼ାଇବା, କୋଠାବାଡ଼ି ତିଆରି କରିବା, ପାଠ୍ୟପୁସ୍ତକ ଲେଖି ଅର୍ଥ ଉପାର୍ଜନ କରିବା, ପରୀକ୍ଷକ, ପ୍ରାଶ୍ନିକ ହେବାଲାଗି ସେ ଲାଳାୟିତ ନ ଥିଲେ । ଭାଗ୍ୟକୁ ଯେତିକି ଜୁଟିଲା ସେତିକରେ ସେ ଚଳୁଥିଲେ । କାହା ପାଖେ ଦିନେ ହାତ ପତାଇ ନ ଥିଲେ, କେବେ ସମ୍ପଦ ବା କ୍ଷମତାର ଦ୍ୱାରସ୍ଥ ହୋଇ ନ ଥିଲେ । ପତିତ, ନିପେଷିତଙ୍କ ପକ୍ଷପାତୀ ଭାବରେ ସେ

ସଗୌରବେ ମୁଣ୍ଡ ଟେକି ଛିଡ଼ା ହୋଇଥିଲେ । ପଦ୍ମପତ୍ର ଆସନ ଓ 'ବନମାଳ' ଲାଗି କେବେ ସେ ଲାଳାୟିତ ହୋଇ ନ ଥିଲେ । ସମୃଦ୍ଧିବାଦର ପୂର୍ଣ୍ଣ ବିରୋଧୀ ଥିଲେ ସେ । ତପଃ ଆଚରଣ ହିଁ ତାଙ୍କର ମୁଖ୍ୟବ୍ରତ ଥିଲା ।

ସେ ସ୍ୱଳ୍ପସନ୍ତୁଷ୍ଟ ଥିଲେ; ଏଇ ବ୍ୟକ୍ତିଗତ ଜୀବନସତ୍ୟ ତାଙ୍କ କବିତାରେ ବ୍ୟକ୍ତ ହୋଇଥିଲା ଓ ସୁପ୍ରତିଷ୍ଠିତା ଗାୟିକା କନ୍ୟା ସୁନନ୍ଦାଙ୍କ କଣ୍ଠରେ ଅଦ୍ଭୁତ ଭାବେ ଶ୍ରୋତା ମନକୁ ଆଲୋଡ଼ିତ କରୁଥିଲା—

"ଜୀବନ ପାତ୍ର ମୋ ଭରିଛ କେତେ ମତେ
ନ ଦେଲ ବୋଲି କିଛି କହିବ କାହେ ଆଉ ?
× × ×
ତରଣୀ ମୋର ତବ ଘାଟରେ ବନ୍ଧିଯାଉ ।"

ଦୁଃଖ ମୃତ୍ୟୁ, ଶୋକ ଓ ଗ୍ଲାନି ମଧ୍ୟରେ ସେ ନିର୍ଦ୍ୱନ୍ଦ୍ୱ ଥିଲେ । ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ ବୟସରେ ହାତରେ ରୋଷେଇ କରି ଖାଇବା ଗୋଟିଏ ଦୃଶ୍ୟ ଥିଲା । କର୍ମଯୋଗରେ ଦୀକ୍ଷିତ ଓ ତେଜ ଅନୁସନ୍ଧାନୀ ନିଷ୍ଠାପରାୟଣ ଥିଲେ । ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶରେ ଅନୁପ୍ରାଣିତ ଥିଲେ ସେ । ସାରା ଜୀବନ ଯଥାସମ୍ଭବ ଆତ୍ମନିର୍ଭରଶୀଳ ହେବା ଲାଗି ଚେଷ୍ଟିତ, ତାଙ୍କ ଆତ୍ମସମ୍ମାନ ବୋଧ ଅତି ମହନୀୟ ପ୍ରଖର ଥିଲା ।

ନିର୍ଭୀକତା ଓ ବୈପ୍ଳବିକ ମନୋଭାବ ସେ ପିତାଙ୍କଠାରୁ ଉତ୍ତରାଧିକାର ସୂତ୍ରେ ଲାଭ କରିଥିଲେ । ଚାକିରି ଜୀବନରେ ଉପରିସ୍ଥଙ୍କ ପ୍ରିୟତା ବା ପ୍ରସାଦ ସେ ପାଇ ପାରି ନ ଥିଲେ । ଅଧ୍ୟାପକତାରୁ ଶିକ୍ଷକତାକୁ ଅଧୋଗତି, ଘନ ଘନ ବଦଳି, ଦୀର୍ଘ ପ୍ରଚେଷ୍ଟା ପରେ ପେନସନ୍ ଲାଭ, ତାଙ୍କ ନିର୍ଭୀକତା ଓ ସ୍ପଷ୍ଟବାଦିତାର ଅବଶ୍ୟମ୍ଭାବୀ ଫଳ ସ୍ୱରୂପ ହୋଇଥିଲା । କବି ଓ ସାହିତ୍ୟିକ ବୋଲି କୌଣସି ଉପରିସ୍ଥ ହାକିମ କେବେ ତାଙ୍କୁ ସ୍ୱତନ୍ତ୍ର ଶ୍ରଦ୍ଧା ବା ସମ୍ମାନ ଦେଇ ନ ଥିଲେ । ବରଂ ସାଧାରଣ ନ୍ୟାୟବିଚାରରୁ ସେ ବହୁବାର ବଞ୍ଚିତ ହୋଇଥିଲେ । ପିତାଙ୍କୁ ଯେପରି ଗଡ଼ଜାତ ରାଜାଙ୍କ ବିରୁଦ୍ଧରେ, ତାଙ୍କୁ ସେହିପରି ରାଜଶିଆଳୀ ଶୃଗାଳୋପମ ହାକିମମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ହୋଇଥିଲା ।

ନିଜର ସଂସାର ଓ ସମାଜ ସହିତ ସାଲିସ୍ ବା ଆପୋଷ ମୀମାଂସା ମନୋଭାବ ତାଙ୍କର ନ ଥିଲା । ଏହା ଶେଷ ଜୀବନରେ ସ୍ତ୍ରୀ ଆଦରମଣିଙ୍କଠାରୁ ତାଙ୍କୁ ଦୂରେଇ ରଖିଥିଲା । ଶେଷରେ ଈଶ୍ୱର (କୃଷ୍ଣ; ଶିବ ନୁହନ୍ତି) ଓ ବୈଷ୍ଣବ ଧର୍ମ ସହିତ ତାଙ୍କର

ଗୋଷ୍ଠୀର ଭୂମିକାମାନ ହୋଇଥିଲା। ସେ ଛନ୍ଦାଚରଣ ଶୀର୍ଷିପୂର୍ଣ୍ଣ କବିତା, ଚରିତ୍ର ଶ୍ରୀକୃଷ୍ଣଙ୍କ ପୂଜା ଆରାଧନାରେ ମନ ନିବେଶ କରିଥିଲେ। ଯୋଗୀ ଋଷି ମହାତ୍ମାଙ୍କ ପରିଚୟ ବା ଫଟୋ ତାଙ୍କ କୋଠରୀ କାନ୍ଥର ଶ୍ରୀବୃଦ୍ଧି ସାଧନ କରୁଥିଲା।

ବୈକୁଣ୍ଠନାଥ ପଟ୍ଟନାୟକ ଆଧୁନିକ କାବ୍ୟଜଗତର ଏକ ଶ୍ରେଷ୍ଠ ନାମ। ସବୁଜ ଗୋଷ୍ଠୀ ମଧ୍ୟରେ ତାଙ୍କ ସାହିତ୍ୟିକ ପ୍ରଚେଷ୍ଟା ଓ ନିଷ୍ଠା ଅତୁଳନୀୟ। ତାଙ୍କ ପ୍ରାଣପ୍ରାଚୁର୍ଯ୍ୟ, ଗଭୀର ଜୀବନଦର୍ଶନ, ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ଓ ମାନବିକତା ତାଙ୍କୁ କାବ୍ୟଜଗତରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ କରିଅଛି।

ଅନେକାଂଶରେ ଜୀବନ ଲାଗି ସେ କଳାର ଅନୁଧ୍ୟାନ କରିଛନ୍ତି। ସାହିତ୍ୟକୁ ଅବଲମ୍ବନ କରି ନିଜର ଆର୍ଥିକ ଅବସ୍ଥା ବଦଳାଇବା ଚିନ୍ତା ସେ କେବେ କରି ନାହାନ୍ତି।

ଆଦ୍ୟ ତାରୁଣ୍ୟରେ ହୁଏତ ସମାଜଭିତ୍ତିର ଆକାଂକ୍ଷା ଥିଲା। ପରେ ବସ୍ତୁସୋପାନ ଧର୍ମ ବା ମୋକ୍ଷ ଚିନ୍ତା ତାଙ୍କ ମନରେ ସ୍ଥାନ ପାଇଲା। ଭଗବାନଙ୍କ ନାମ ଗାଇ ନିଶ୍ଚିନ୍ତ ଯାଯାବର ଭାବେ ବୁଲିବା କଳ୍ପନାର ଅନ୍ତରାୟ ଅଙ୍ଗବୈକଲ୍ୟ ବା ବାର୍ଦ୍ଧକ୍ୟ। ଏ ଅବସ୍ଥାରେ ବଙ୍ଗଳାର ବାଉଲସଂପ୍ରଦାୟ ପ୍ରତି ତାଙ୍କ ଆକର୍ଷଣ ଏକାନ୍ତ ସ୍ୱାଭାବିକ ହୋଇଥିଲା।

ବୈକୁଣ୍ଠନାଥଙ୍କ ଜନ୍ମ ୧୪। ୯। ୧୯୦୪ ତାରିଖରେ ଗଡ଼ଜାତ ରାଜ୍ୟ ବଡ଼ମ୍ବାରେ। ତାଙ୍କ ପିତାଙ୍କ ନାମ ନାରାୟଣ ସୁମନ୍ତ ପଟ୍ଟନାୟକ। ସେ ପିଲାଟି ଘରକୁ ପୃଥ ହୋଇ ଯାଇଥିଲେ। ତାଙ୍କ ପାଳକ ପିତାଙ୍କ ନାମ ଦୀନବନ୍ଧୁ ପଟ୍ଟନାୟକ। ତାଙ୍କ ଜନ୍ମଦାତା ଏକାନ୍ତ ସ୍ୱାଧୀନଚେତା ଓ ନିର୍ଭୀକ ଥିଲେ। ସ୍ପଷ୍ଟବାଦିତା ଯୋଗୁଁ ତାଙ୍କୁ ଜୀବନରେ ବହୁତ କିଛି ହରାଇବାକୁ ପଡ଼ିଥିଲା। ରାଜାଙ୍କ ସାଙ୍ଗରେ ତାଙ୍କର ଭଲ ପଡ଼ୁ ନ ଥିଲା। ରାଜକିଆଲ ଓ ଅତ୍ୟାଚାର ତାଙ୍କ ପକ୍ଷରେ ଅସହ୍ୟ ହୋଇଥିଲା। ରାଜାଙ୍କ ପାଖଲୋକଗୁଡ଼ିକ ନିଜକୁ ଜଣେ ଜଣେ ରାଜା ମନେ କରୁଥିଲେ, ରାଜ ଅତ୍ୟାଚାରରେ ତୀକ୍ଷ୍ଣ ଆୟୁଧ ଭଳି କାମ କରୁଥିଲେ। କାହା ବିରୁଦ୍ଧରେ କିଛି ଶୁଣିଲେ ରାଜା ଆଦେଶ ଦିଅନ୍ତି—ଆରେ ଅମୁକକୁ ଧରି ଆଣ, ହାଜତକୋଠରେ ପକାଇ ଦିଅ। ପ୍ରଜାଙ୍କ ଝାଳବୁହା ଧନ ରାଜା ଅକ୍ଷିବୃଜ ବିଳାସବ୍ୟସନରେ ଖର୍ଚ୍ଚ କରୁଥିଲେ। ଥରେ ରାମନବମୀ ଉତ୍ସବରେ ହନୁମାନ୍ ଲାଙ୍ଗୁଳରେ ନିଆଁ ଲଗାଇବାରୁ ସେ ସ୍ଥଳକୁ ସ୍ଥଳ ଡେଇଁଲା। ଗରିବ ପ୍ରଜାଙ୍କର କୁଡ଼ିଆଗୁଡ଼ିକ ପୋଡ଼ିଗଲା। ମହଲରେ ହାସ୍ୟରୋଳ ଉଠୁଥିଲା। ସେମାନଙ୍କ ଦୁଃଖ ପ୍ରତି କେହି

ଦୃଷ୍ଟିପାତ କଲ ନାହିଁ । ଏହା ଦେଖି ବୈକୁଣ୍ଠ ଭାବଲେ—ସଂସାରରେ ଈଶ୍ୱର ନାହାନ୍ତି ।

ବେଠି ବେଗାରି ମାଗଣି ତ ସାଧାରଣ କଥା । ରାଜା ପାରିଧିକୁ ବାହାରିଲେ ପ୍ରଜାଙ୍କ ଦୁଃଖର ସୀମା ରହୁ ନ ଥିଲା । ଗୁଳିବାଜି କେତେ ଝଲା ପଡ଼ୁଥିଲେ । କାହାକୁ ବା ହାତୀ ଦଳି ଦେଉଥିଲେ, ବାଘ ଟାଣି ନେଉଥିଲେ । ହାତୀଖେଦା ହେଲେ ଚୁଡ଼ା ଗୁଡ଼ଲ ବାନ୍ଧି ପ୍ରଜାଙ୍କୁ ବଣବୁଦାରେ ମାସ ମାସ ପଡ଼ି ରହିବାକୁ ଦେଉଥିଲ । କୁଳଦେବତା ଭଟ୍ଟାରିକାଙ୍କ ପାଖରେ ହଜାର ହଜାର ବୋଦା ବଳି ପଡ଼ୁଥିଲେ । ରକ୍ତର ନଈ ବୋହି ଯାଉଥିଲା । ଶିକ୍ଷା ବିସ୍ତାର ମୋଟେ ନ ହେଉ, ଏହା ରାଜାଙ୍କ ଇଚ୍ଛା ଥିଲା । ଅତ୍ୟାଚାରର ନାନା ଭୟଙ୍କର ଦୃଶ୍ୟ ନାରାୟଣଙ୍କୁ ରାଜଦ୍ରୋହୀ କରିଥିଲା । ସେହି ଅଭିଯୋଗରେ ତାଙ୍କୁ ରାଜ୍ୟ ବହିଷ୍କାର ଆଦେଶ ହେଲା, ରାଜରୋଷରେ ତାଙ୍କର ବିପୁଳ ଭୂସମ୍ପତ୍ତି ନଷ୍ଟଭ୍ରଷ୍ଟ ହୋଇଗଲା । ରାଜା ହାତୀ ପୂରାଇ ତାଙ୍କ ଫସଲ ନଷ୍ଟ କରିଦେଲେ, ତାଙ୍କ ବାନପ୍ରସ୍ଥାଶ୍ରମ କୁଟୀରରେ ମଧ୍ୟ ଅଗ୍ନି ସଂଯୋଗ କରିଥିଲେ । କୁଳଦେବତା ନାରାୟଣଙ୍କ ସହିତ ତାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତି କରାଗଲା ।

କିଛି ଦିନ ରାଜାଙ୍କ ଗୃହଶିକ୍ଷକ ଥିବାରୁ ରାଜ୍ୟର ସୁପରିଚାଳନା ଲାଗି ସେ ପରାମର୍ଶ ଦେଇ ଆସୁଥିଲେ । ତାଙ୍କୁ ବେଳେ ବେଳେ ଅପ୍ରିୟ କଥା କହିବାକୁ ପଡୁଥିଲା । ଏସବୁ ଶୁଣି ଶୁଣି ରାଜା ତାଙ୍କୁ ଆୟତ୍ତକୁ ଆଣିବା ଚେଷ୍ଟାରେ ଥରେ ଦେବାନ ପଦବୀ ଯାଚିଥିଲେ । ସେକାଳେ ଦେବାନଙ୍କୁ ପାତ୍ର କୁହାଯାଉଥିଲା । ପାତ୍ରଙ୍କୁ 'ସୁମନ୍ତ୍ର' ପଦରେ ଭୂଷିତ କରାଯାଉଥିଲା । ବଂଶଗତ ଏଇ ସୁମନ୍ତ୍ର ପଦ ବ୍ୟବହାର ଲାଗି ରାଜା ଯେତେବେଳେ ଦେବାନ ଗିରିକି ଯାଚିଲେ, ସେତେବେଳେ ଶ୍ରୀ ପଟ୍ଟନାୟକ କଟୁଭାବେ ସହି ଏହା ପ୍ରତ୍ୟାଖ୍ୟାନ କଲେ । ସେ କହିଲେ—ମୁଁ ପ୍ରଜାଶୋଷଣର ନିମିତ୍ତ ହେବାକୁ ଚାହେଁ ନାହିଁ । ରାଜ୍ୟରେ ଯେଉଁ ଅତ୍ୟାଚାର ହେଉଛି, ପ୍ରଜାମାନେ ଯେପରି ଉତ୍ପୀଡ଼ିତ, ସେଥିରେ ଏ ରାଜ୍ୟରେ କେହି ଜଳ ସ୍ପର୍ଶ କରିବା ଅନୁଚିତ । ରାଜା ପଚାରିଲେ—ଆପଣ କିପରି ଅଛନ୍ତି ?

ସୁମନ୍ତ୍ର—ମୁଁ ମଧ୍ୟ ଏଠି ଜଳ ସ୍ପର୍ଶ କରିବାକୁ ଚାହେଁ ନାହିଁ ।

ରାଜା—ତେବେ ଆପଣ ରାଜ୍ୟ ଛାଡ଼ି ଯାଉନାହାନ୍ତି କାହିଁକି ?

ସୁମନ୍ତ୍ର—ହଁ, ଆଜି ରାତିରେ ହିଁ ଯିବି ।

ବୈକୁଣ୍ଠନାଥଙ୍କୁ ପିଉସୀ ପୁଅ କରି ନେଇଥିଲେ । ତେଣୁ ତାଙ୍କ ପିତାଙ୍କ ବହିଷ୍କୃତ ହେବାରେ ତାଙ୍କର କିଛି କ୍ଷତି ହେଲାନାହିଁ; ପିଉସା ପିଉସୀଙ୍କ ଯତ୍ନରେ ସେ

ଲଳିତ ପାଳିତ ହେବାକୁ ଲାଗିଲେ । ପଦ୍ମଲେ ଜଣେ ମାଟ୍ରିକ ଅବଧାନଙ୍କ ଚାଟଶାଳୀରେ ସେ ଶିକ୍ଷାଲାଭ କରିଥିଲେ । ବେତ ତାଙ୍କର ପ୍ରଧାନ ଅସ୍ତ୍ର ଥିଲା । ବେତାଘାତ ଭୟରେ ବୈକୁଣ୍ଠଙ୍କ ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା । ତାପରେ ସେ ଗଡ଼ରେ ନିମ୍ନପ୍ରାଥମିକ ଶିକ୍ଷା ଶେଷକରି କଟକ ଚାଲିଆସିଲେ ଓ ୧୯୧୬ ରେ କଲେଜିଏଟ୍ ସ୍କୁଲରେ ସର୍ବନିମ୍ନ ଶ୍ରେଣୀରେ ନାମ ଲେଖାଇଲେ । ସେତେବେଳେ ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶ ତାଙ୍କୁ ବିଶେଷ ଆକୃଷ୍ଟ କରିଥିଲା ଓ ସେ ସେଥିଲାଗି ଚାନ୍ଦା ସଂଗ୍ରହରେ ଲାଗି ପଡ଼ିଲେ । ସତ୍ୟବାଦୀରେ ବୋମା ତିଆରି ହେଉଛି ବୋଲି ସାମ୍ରାଜ୍ୟବାଦୀ ବିଦେଶୀ ସରକାର ଦୁର୍ନାମ ରଟାଉଥିଲେ । ଏହି ବିପ୍ଳବୀ ଅନୁଷ୍ଠାନ ଲାଗି ବୈକୁଣ୍ଠ ଚାନ୍ଦା ସଂଗ୍ରହ କରୁଛନ୍ତି, ସମ୍ବାଦ ପାଇ ହେଡ଼ମାଷ୍ଟର ହେଣ୍ଡ୍ରିକସନ୍ ସାହେବ ତାଙ୍କୁ ରଷ୍ଟିକେଟ୍ କରିଦେବେ ବୋଲି ଧମକାଇଲେ ।

୧୯୧୫ ମସିହା । ସତ୍ୟବାଦୀ ବନବିଦ୍ୟାଳୟରେ ପଢ଼ିବେ ବୋଲି ଜିଦ୍‌ଧରି ବସିଲେ, ଉପାସ ରହିଲେ, ବହୁତ କାନ୍ଦବୋବା କଲେ । ଶେଷରେ ତାଙ୍କର ବିଜୟ ହେଲା । କିନ୍ତୁ କଟକରୁ ବିଦାୟ ନେବା ପୂର୍ବରୁ ବଢ଼ିଲା ନଈ କାଠଯୋଡ଼ୀରେ ବହୁ ସନ୍ତରଣ କରିଥିଲେ । ଦୁର୍ବଳ ସ୍ୱାସ୍ଥ୍ୟ, ତାଙ୍କୁ ନୂଆପାଣି ଧରିଥିଲା । ସ୍କୁଲରେ ପ୍ରବେଶଲାଭ ପରେ ସେ ନିମୋନିଆ ରୋଗରେ ଆକ୍ରାନ୍ତ ହୋଇଥିଲେ । ଆଚାର୍ଯ୍ୟ ହରିହର ମାଆଭଳି ତାଙ୍କ ଦେହ ପାଖରେ ବସି ସେବା କରିଥିଲେ ।

ତାଙ୍କୁ ବଞ୍ଚାଇବା ଲାଗି ପିଲାମାନେ ବହୁ ଚେଷ୍ଟା କରିଥିଲେ । ତାଙ୍କ ଅବସ୍ଥା ସାଙ୍ଘାତିକ ହୋଇଥିଲା । ବର୍ଷାଦିନ ଯୋଗୁଁ ଶ୍ମଶାନକୁ ଶବ ନେବାର ବ୍ୟବସ୍ଥା ଆଗରୁ କରାଯାଇଥିଲା । ଏଇ ଅବସ୍ଥାରେ ବୈଦ୍ୟରାଜ ମାର୍କଣ୍ଡେୟ ଚିକିତ୍ସା କରି ତାଙ୍କୁ ଜୀବନ ମୃତ୍ୟୁମୁଖରୁ ଫେରାଇ ଆଣିଥିଲେ ।

ସତ୍ୟବାଦୀ ଏକ ସୁଦୃଶ୍ୟ ପଲ୍ଲୀ, ନାରକେଳ, ଚୂତଅନାସ ଓ ବକୁଳକୁଞ୍ଜଭରା । କିନ୍ତୁ ଏହାର ଜଳବାୟୁ ବୈକୁଣ୍ଠଙ୍କ ଦେହରେ ସାହୁ ନ ଥିଲା । ସତ୍ୟବାଦୀକୁ ସେ ଅତଳାସ୍ପତନ ବୋଲି ମନେ କରୁଥିଲେ । ଏହାର ପରିଚାଳକ ଓ ଶିକ୍ଷକମାନେ ଗୁରୁକୁଳାଶ୍ରମର ସ୍ୱପ୍ନ ଦେଖି ସତ୍ୟବାଦୀ ହାଇ ଇଂରାଜୀ ବିଦ୍ୟାଳୟ ରୂପରେ ସେଇ ପ୍ରତିଷ୍ଠାକୁ ନଡ଼ ଦେଇଥିଲେ ଓ କୌଣସି ପରିବର୍ତ୍ତନକୁ ପ୍ରଶ୍ରୟ ଦେଇ ନ ଥିଲେ । ଏହାକୁ ଦୂରଦୃଷ୍ଟିର ଅଭାବ ବୋଲି ବୈକୁଣ୍ଠନାଥ ମନେ କରୁଥିଲେ ।

ସ୍ନାନ ପରେ ପୋଖରୀଟି ନରକ କୁଣ୍ଡ ବନିଯାଉଥିଲା । ଖାଇବାକୁ ମିଳୁଥିଲା ବଗଡ଼ା ଅନ୍ନ, ଡାଲି ପାଣି, ଆଳୁ ବାଇଗଣ ଘାଣ୍ଟ । ମାସକୁ ତିନି ଟଙ୍କା

ବାର ଅଣା ମେସ୍‌ଖର୍ଚ୍ଚ ପଡ଼ୁଥିଲା । ଶିକ୍ଷକ ଓ ଛାତ୍ର ସମସ୍ତେ ସେବା ଭାବରେ ଦୀକ୍ଷିତ ଥିଲେ । ଛାତ୍ରମାନେ ଶିକ୍ଷକମାନଙ୍କର ପୁତ୍ରବତ୍ ଥିଲେ । ସେମାନଙ୍କ ସ୍ନେହ, ଦୟା, ସହାନୁଭୂତି ସବୁବେଳେ ମିଳୁଥିଲା । ସେଠାରେ ତିନିବର୍ଷ ପଢ଼ିଲା ପରେ ବୈକୁଣ୍ଠନାଥ ସାର୍ଟିଫିକେଟ୍ ନେଇ ଢେଙ୍କାନାଳ ଫେରିଗଲେ । ଏହି ରାଜ୍ୟରେ ଆଧୁନିକତା ପ୍ରବେଶ କରି ନ ଥିଲା । ପୁରାତନ ରୀତିରେ ପଢ଼ାପଢ଼ି ଚାଲିଥିଲା । ମୁଖସ୍ଥ ଥିଲା ବ୍ରହ୍ମାସ୍ତ୍ର । ତାପରେ ବୈକୁଣ୍ଠ ଢେଙ୍କାନାଳ ହାଇସ୍କୁଲରେ ପଢ଼ିଲେ । ସେଠି ବନ୍ଧୁ ଅନ୍ନଦାଶଙ୍କର ରାୟଙ୍କ ସହିତ ତାଙ୍କର ପ୍ରଥମେ ସାକ୍ଷାତ ହେଲା ୧୯୨୦ ମସିହାରେ । ଦୁହେଁ ଏକା କ୍ଲାସରେ ପଢ଼ୁଥିଲେ । ସେତେବେଳେ ଅସହଯୋଗ ଆନ୍ଦୋଳନ ଲାଗି ଗାନ୍ଧିଜୀଙ୍କ ଡକରା ଆସିଲା । ଅଲୀ ଭ୍ରାତୃଦ୍ୱୟ ଘୋଷଣା କଲେ—ଯେଉଁମାନେ ୧୯୨୧ ରେ ପାସ୍ କରିବେ, ସେମାନଙ୍କ କପାଳରେ 'କ୍ଲାର୍କସିପ୍' ଲେଖି ଦିଆଯିବ । ଅନ୍ନଦା ଓ ବୈକୁଣ୍ଠ ଏଥିରେ ପ୍ରଭାବିତ ହୋଇ ପରୀକ୍ଷା ନ ଦେବାଲାଗି ଛାତ୍ରମାନଙ୍କୁ ମତାଉଥିଲେ । ଶିକ୍ଷକମାନେ ଛାତ୍ରମାନଙ୍କୁ ବୁଝାଉଥିଲେ—ଏ କଂଗ୍ରେସବାଲାଙ୍କ କଥାରେ ପଡ଼ନା । ପରୀକ୍ଷା ନ ଦେଲେ ଛାତ୍ର ନାମ କଟିଯିବ, ରାଜ୍ୟରୁ ତଡ଼ିଦିଆଯିବ ।

ରେଭେନ୍‌ସା କଲେଜ ମାଟ୍ରିକ୍ ପରୀକ୍ଷା କେନ୍ଦ୍ର ଥିଲା । ଶେଷକୁ ଅନ୍ନଦା ଓ ବୈକୁଣ୍ଠ ଅନ୍ୟ ଆଠଜଣ ପିଲାଙ୍କ ସହିତ ପରୀକ୍ଷା ଦେଲେ ଓ ସମସ୍ତେ ପାସ୍ କଲେ ।

ମାଟ୍ରିକ୍ ପାସ୍ ପରେ ବୈକୁଣ୍ଠ କୌଣସି ଜାତୀୟ ବିଦ୍ୟାଳୟରେ ପଢ଼ିବା ଚିନ୍ତା କରୁଥାନ୍ତି । ତାଙ୍କ ପିତା ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ 'କାଟି ପିନ୍ଧ, କୁଟି ଖାଅ, ମନ୍ତ୍ର ପ୍ରଚାର କରୁଥାନ୍ତି ଓ ବାଡ଼ିରେ ଗୋଟିଏ କୃଷି ଫାର୍ମ କରିଥାନ୍ତି । ସେ ଇଂରାଜୀ ଜାଣି ନଥିଲେ ସୁଦ୍ଧା କେତେକ ପ୍ରବଚନ ମୁଖସ୍ଥ କରିଥାନ୍ତି । ସେଥି-ମଧ୍ୟରୁ ଗୋଟିଏ ହେଲା—

"Better a plough man at one's feet
Than a service man at one's knees."

ପଇସା ନେଇ ଶିକ୍ଷାଦେବା ପଦ୍ଧତିକୁ ସେ ବେଶ୍ୟାବୃତ୍ତି ବୋଲି କହୁଥାନ୍ତି । ତାଙ୍କ ଜନ୍ମକଲା ପିତା ଯେତିକି ରାଜଦ୍ରୋହୀ, ପାଳକ ପିତା ସେତିକି ରାଜଭକ୍ତ ଥିଲେ । ସେ ବଡ଼ମ୍ବା ରାଜାଙ୍କର ଜଣେ ସ୍ୱଳ୍ପ ବେତନଭୋଗୀ କର୍ମଚାରୀ ଭାବରେ କାର୍ଯ୍ୟ କରୁଥିଲେ । ଦିନେ ବୈକୁଣ୍ଠନାଥ ହାରମୋନିୟମ୍ ବଜାଇ ଗୋଟିଏ ଗୀତ ଗାଉଥିଲେ । ଅନ୍ତରା ଶେଷ ହେଲାବେଳକୁ ପାଳକ ପିତା ଦୌଡ଼ିଆସି ଭର୍ତ୍ସନା କରି କହିଲେ—ଏ ଯନ୍ତ୍ରଟାକୁ ଭାଙ୍ଗି ପକାଅ । ତାଙ୍କ ମତରେ ଗୃହାଭ୍ୟନ୍ତରରେ ସଙ୍ଗୀତ

ଚର୍ଚ୍ଚା ଶାସ୍ତ୍ରନିଷିଦ୍ଧ । ସଙ୍ଗୀତରେ କେବଳ ବାରବନିତାର ଅଧିକାର । ସଙ୍ଗୀତ ଗାଇଲେ ଘରୁ ଲକ୍ଷ୍ମୀ ଛାଡ଼ିଯାନ୍ତି । ସେହି ଦିନରୁ ତାଙ୍କ ମନର ସବୁ ସ୍ଫୂର୍ତ୍ତି ଯାଇଥିଲା । କିନ୍ତୁ ଗ୍ୟକଷ୍ଣ କଣବାର ସାତ ଆଠବର୍ଷ ପରେ ସେ ସେତାର ଶିଖିଥିଲେ ।

ପ୍ରଥମ କବିତା ସେ ଲେଖିଥିଲେ ଢେଙ୍କାନାଳରେ । ଦିନେ ରାତିରେ ସେ ସ୍ୱପ୍ନ ଦେଖିଲେ—ଦେବୀ ସାମ୍ନାରେ ଉଭା ହୋଇଛନ୍ତି । ହାତରେ ତାଙ୍କର ପତାକା । ସେଥିରେ ଗୋଟିଏ ଧାଡ଼ି କବିତା ଲେଖା ହୋଇଥିଲା । ଦେବୀ ତାଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ—ବାକି ଧାଡ଼ିଗୁଡ଼ିକ ପୂରଣ କର । ତା ପରଦିନ ସକାଳେ ଉଠି ବୈକୁଣ୍ଠ ଯେଉଁ କବିତାଟି ଲେଖିଥିଲେ ତାହା ଢେଙ୍କାନାଳ ସ୍କୁଲର ହାତଲେଖା ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ପିଲାଦିନେ ତାଙ୍କୁ ଭକ୍ତଚରଣ ଦାସ ଓ ଭକ୍ତକବି ମଧୁସୂଦନ ରାଓଙ୍କ କବିତା ବିଶେଷ ପ୍ରଭାବିତ କରିଥିଲା । ମୋ ତୁଣ୍ଡରୁ 'କହିବି ମନ ଆରେ ମୋ ବୋଲ କର' ଚଉତିଶା ଆବୃତ୍ତି ଶୁଣି ପାଳକ ପିତା କୃଷ୍ଣଭକ୍ତ ଦୀନବନ୍ଧୁ ଅତି ଅସ୍ଥିର ହୋଇ କହୁଥିଲେ—ଏ ଛୋକାଟା ପିଲାଦିନୁଁ କାହିଁକି ଏ ଗୀତ ଗୁଡ଼ାକ ଗାଉଛୁ ?

ବଡ଼ମ୍ବାର ଚନ୍ଦନ ଯାତ୍ରା ତାଙ୍କୁ ବିଶେଷ ଆକୃଷ୍ଟ କରୁଥିଲା । 'ଗୋଟିପୁଅ' ସଙ୍ଗୀତ, ଯାତ୍ରା, ଜାଲୁଣ୍ଡପଟ୍ଟଶ୍ରୀରାମ ମୋହନ ଗୋସେଇଁଙ୍କ ରାମଲୀଳା, ପାଲା ତାଙ୍କ କିଶୋର ପ୍ରାଣକୁ ଅଭିଭୂତ କରୁଥିଲା । ଶ୍ରୀକୃଷ୍ଣଙ୍କ ମାଲ୍ୟାଣୀ ବେଶ, ନାପିତୁଣୀ ବେଶ ଓ ପରିଶେଷରେ 'ବନ୍ଧୁରେ ତୋ ଲାଗି ବୈରାଗୀ ହେଲି' ଗୀତ ଓ ଦୃଶ୍ୟାବଳୀ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । 'ମନବୋଧ ଚଉତିଶା' ଓ 'ତ୍ରିକ୍ଷିପ୍ରାଣେ ଦେବାବନ୍ତଚଣି' ଭିତରୁ ଏ ରସ ଜନ୍ମ ।

ବଡ଼ମ୍ବାର ନଦୀ, ନାଳ, ପର୍ବତମାଳା, ଝଡ଼ ତୋଫାନ ତାଙ୍କ ମନ ଉପରେ ଅଦ୍ଭୁତ ପ୍ରଭାବ ବିସ୍ତାର କରିଥିଲା । ମେଘାଡ଼ମ୍ବରରେ ଝଞ୍ଜା ଆସିଲେ ତାଙ୍କ ଚିତ୍ତ ମୟୂର ପରି ନୃତ୍ୟ କରୁଥିଲା । ସେହି ଅନୁଭୂତିର ସଙ୍କେତ 'କାବ୍ୟସଞ୍ଚୟନ'ର 'ବନ୍ଜ ବାଦଲ' ପଦ୍ୟରୁ ମିଳେ ।

୧୯୨୧ରେ ରେଭେନ୍ସା କଲେଜରେ ନାମ ଲେଖାଇଲା ପରେ ପରେ ବଡ଼ମ୍ବା ସହିତ କୌଣସି ସମ୍ପର୍କ ରହିଲା ନାହିଁ । ଏହି କଲେଜକୁ ଆସିଲା ପରେ ସବୁଜ ଗୋଷ୍ଠୀର ଅଭ୍ୟୁଦୟ ହେଲା । ସତ୍ୟବାଦୀରେ ହରିହର ତାଙ୍କର ବନ୍ଧୁ ଥିଲେ, ଅନ୍ନଦା ଢେଙ୍କାନାଳରେ ବନ୍ଧୁ ହେଲେ । ତିନି ବନ୍ଧୁ ଯାକ ଏକାବେଳକେ ରେଭେନ୍ସା କଲେଜରେ ନାମ ଲେଖାଇଲେ । ଅନ୍ନଦାଙ୍କ ସହିତ ଦିନେ ତୁମୁଳତର୍କ କରି କଲେଜରୁ ଫେରୁଥିଲା

ବେଳେ ଗୁଣୀହାଟ ପୋଲରେ ଶରତଙ୍କ ସହିତ ପରିଚୟ ହେଲା । ଅନ୍ନଦା କିଛି ଦିନ ପୁରୀ ଜିଲା ସ୍କୁଲରେ ପଢ଼ିଥିଲେ । ସେଠି କାଳନ୍ଦୀଙ୍କ ସହିତ ତାଙ୍କର ବନ୍ଧୁତା ଜମିଥିଲା ଓ କ୍ରମେ କାଳନ୍ଦୀଙ୍କ ସହିତ କଲେଜରେ ବୈକୁଣ୍ଠଙ୍କ ଘନିଷ୍ଠତା ଆସିଥିଲା । ପଞ୍ଚସଖା ଟେଲିପଡ଼ିଆରେ ବସି ନାନା ବିଷୟ ଆଲୋଚନା କରୁଥିଲେ । ଦିନେ ଅନ୍ନଦା ଓ ସେ ସ୍ଥିର କଲେ, ଲେଡ଼ି କବି ଉଇଲିଅମ୍ କାଉପରଙ୍କ ପରି ଗୋଟିଏ 'Non-Sense Club' ଗଢ଼ିବେ, ଗୋଟିଏ ହାତଲେଖା ପତ୍ରିକା ବାହାର କରିବେ । ପତ୍ରିକାର ନାମ ହରିହର ଦେଇଥିଲେ—'ଅବକାଶ' —ଅନ୍ନଦା, ବୈକୁଣ୍ଠ, କାଳନ୍ଦୀ, ଶରତ ଏମାନଙ୍କ ନାମର ଆଦ୍ୟ ଅକ୍ଷରକୁ ନେଇ; ନିଜ ନାମଟି ସେ ବିନମ୍ରବଶତଃ ବାଦ୍ ଦେଇଥିଲେ, କିନ୍ତୁ ନାମଟି ରୋଚକ ହେଲେ ବି ଗୂଢ଼ ବ୍ୟଞ୍ଜନାତ୍ମକ ହୋଇ ନ ଥିବାରୁ ପତ୍ରିକାର ନାମ ରଖାଗଲା 'ଶକ୍ତି ସାଧନ' । ଲେଖାଗୁଡ଼ିକ ସେ ପୁଣି ଥରେ ଲେଖି ସଂକଳନ କରୁଥିଲେ ।

ଆଇ. ଏ. ରେ ଭଲ କରି ଅନ୍ନଦା ଓ ଶରତ୍ ସରକାରୀ ବୃତ୍ତି ପାଇଲେ ଓ ଆହୁରି ଭଲ ଫଳ ଆଶାରେ ବିହାରର ପାଟଣା କଲେଜରେ ନାମ ଲେଖାଇଲେ । ଏଇ ବନ୍ଧୁ ବିଚ୍ଛେଦରେ ବୈକୁଣ୍ଠ ମର୍ମାହତ ହୋଇଥିଲେ ।

'ଉତ୍କଳ ସାହିତ୍ୟ'ର ସମ୍ପାଦକ ଶ୍ରୀ ବିଶ୍ୱନାଥ କରଙ୍କ ସହିତ ବୈକୁଣ୍ଠ, କାଳନ୍ଦୀ ଓ ଅନ୍ନଦାଙ୍କର ସମ୍ପର୍କ ସ୍ଥାପିତ ହେଲା । ଏହି ପତ୍ରିକାର ଆଦ୍ୟ ପୃଷ୍ଠା ଏହି ତିନି ଜଣଙ୍କ ମଧ୍ୟରୁ କେହି ହେଲେ ଦଖଲ କରି ବସୁଥିଲେ । ୧୯୨୨-୨୩ ସାଲରୁ ଆରମ୍ଭ କରି ଅନ୍ୟୂନ ଗୋଟିଏ ଯୁଗ 'ସବୁଜ-ଗୋଷ୍ଠୀ' 'ଉତ୍କଳ ସାହିତ୍ୟ'କୁ ଏକଚାଟିଆ ଅଧିକାରରେ ରଖିଥିଲେ । ଅନ୍ନଦାଙ୍କ ପ୍ରବାସ କ୍ରମରେ ବୃତ୍ତାନ୍ତ, କାଳନ୍ଦୀ, ଅନ୍ନଦା, ହରିହର ଓ ଶରତଙ୍କର 'ବାସନ୍ତୀ' ଉପନ୍ୟାସର କେତେକ ପରିଚ୍ଛେଦ ସେଥିରେ ପ୍ରକାଶିତ ହୋଇଥିଲା । 'ବାସନ୍ତୀ' ଉପନ୍ୟାସ ବଙ୍ଗଳା ବାରୟାରି ଉପନ୍ୟାସର ପ୍ରତିକ୍ରିୟା । ଅନ୍ନଦାଙ୍କର ଝୁଙ୍କ ଥିଲା ଯେ ବଙ୍ଗଳା ପରି ଓଡ଼ିଆରେ ବାର ଜଣ ବା ଅଧିକ ଲେଖକ ମିଶି ଗୋଟାଏ ବୃହତ୍ ଉପନ୍ୟାସ ଲେଖିବେ । ଉପନ୍ୟାସର କଥାବସ୍ତୁ ଓ ପରିକଳ୍ପନା ଶୁଣି ବିଶ୍ୱନାଥବାବୁ ଅତ୍ୟନ୍ତ ପ୍ରୀତ ହୋଇ ଥିଲେ । ବୈକୁଣ୍ଠ କିନ୍ତୁ ଏଥିରେ ଅଂଶ ଗ୍ରହଣ କରି ନ ଥିଲେ । କାଳନ୍ଦୀ ଓ ଅନ୍ନଦାଙ୍କ ସହିତ ଗଦ୍ୟ ଲେଖାରେ ଟକ୍କର ଦେବାର ସାହସ ତାଙ୍କର ନ ଥିଲା । ତଥାପି ସେ ଭକ୍ତ ଓ ରାଧାନାଥ ସାହିତ୍ୟର ସମାଲୋଚନା ସଲାପ ଆକାରରେ ଲେଖିଥିଲେ, 'ଯୁଗବାଣୀ' ଓ 'ରସଚକ୍ର'ରେ ତାଙ୍କର କେତେକ ସମାଲୋଚନା ପ୍ରକାଶିତ ହୋଇଥିଲା । ତାଙ୍କ କ୍ଲିଷ୍ଟ ଗଦ୍ୟଭାଷାକୁ ଲକ୍ଷ୍ୟ କରି 'ଡଗର ଖୁଣ୍ଟା'ର ସମ୍ପାଦକ ଏକ ବ୍ୟଙ୍ଗାତ୍ମକ ଟିପ୍ପଣୀ ଲେଖିଥିଲେ—କାଳନ୍ଦୀ, ମାନସିଂ ସଂସ୍କୃତ ଜାଣନ୍ତି, କିନ୍ତୁ ଓଡ଼ିଆ

ଲେଖନ୍ତି । ପଣ୍ଡିତ ଗୋଦାବରୀଶ ସଂସ୍କୃତ ଜାଣନ୍ତି ନାହିଁ, ସଂସ୍କୃତ ମଧ୍ୟ ଲେଖନ୍ତି ନାହିଁ । କିନ୍ତୁ ବୈକୁଣ୍ଠ ସଂସ୍କୃତ ଜାଣନ୍ତି ନାହିଁ, ସଂସ୍କୃତ ଲେଖନ୍ତି !

ଅନ୍ନଦା ପାଠଶାଳା ତ୍ୟାଗ କରିବା ପରେ ବୈକୁଣ୍ଠ କାଳନ୍ଦୀଙ୍କର ନିକଟ ସମ୍ପର୍କରେ ଆସିଲେ । କାଳନ୍ଦୀ ରାଧାନାଥଙ୍କର ଓ ବୈକୁଣ୍ଠ ଭକ୍ତକବି ମଧୁସୂଦନଙ୍କର ପ୍ରାବକ ଥିଲେ । ୧୯୨୫ ରେ କାଳନ୍ଦୀ ବି. ଏ. ପାସ୍ କଲେ । ଆଶ୍ଚର୍ଯ୍ୟର କଥା, ଓଡ଼ିଆରେ ଅତି ଅଳ୍ପ ନମ୍ବର ରଖି ବୈକୁଣ୍ଠ ଫେଲ୍ ହେଲେ । ୧୯୨୬ ରେ ସେ ପୁଣି ପରୀକ୍ଷା ଦେଇ ବି. ଏ. ପାସ୍ କଲେ ।

ହରିହର ସତ୍ପଥୀ ବିଶ୍ୱବିଦ୍ୟାଳୟରୁ ପାସ୍ କରିଥିଲେ ମଧ୍ୟ ବିଶେଷ ସୌଖୀନ ଥିଲେ । କିନ୍ତୁ ତାଙ୍କ ସୌଖୀନପ୍ରିୟତା ବିଳାସ ନୁହେଁ, ତାଙ୍କ ପ୍ରକୃତିର ଏକ ଅଂଶ । ବୈକୁଣ୍ଠଙ୍କ ମତରେ ସେ ଦେହ ଓ ମନ ଉଭୟରେ ପରିଚ୍ଛନ୍ନ । ସେ ଯେପରି ଭଦ୍ର, ବିନୟୀ, ସେହିପରି ସ୍ନେହପ୍ରବଣ ।

ବୈକୁଣ୍ଠ ବି. ଏ. ରେ ଇତିହାସ ଓ ଅର୍ଥନୀତି ନେଇଥିଲେ । ଇଂରାଜୀ କ୍ଲାସରେ ତିନି ବନ୍ଧୁଙ୍କର ମିଳନ ହେଉଥିଲା ।

ଅଧ୍ୟାପକ ହ୍ୱାଇଟଲକ୍ ଓ ସ୍ମିଥ୍ଙ୍କର ଇଂରାଜୀ ଓ ଇତିହାସରେ ଯଥେଷ୍ଟ ବିଦ୍ୱତ୍ତା ଥିଲେ ମଧ୍ୟ ସେମାନଙ୍କର ବକ୍ତୃତା ହୃଦୟସ୍ପର୍ଶୀ ହେଉ ନ ଥିଲା । ସାର୍ ଯଦୁନାଥ ସରକାର ଶିକ୍ଷାଦାନରେ ଯେପରି ସରଳ, ପ୍ରାଞ୍ଜଳ, ନମ୍ବର ଦେବାରେ ସେହି-ପରି ମୁକ୍ତହସ୍ତ ଥିଲେ । ସେ ଥରେ ଇତିହାସରେ ବୈକୁଣ୍ଠଙ୍କୁ ଶହେରୁ ଚଉରାନବେ ନମ୍ବର ଦେଇଥିଲେ । ହ୍ୱାଇଟ୍‌ଲକ୍ ସାହେବଙ୍କ ହାତରୁ ମଧ୍ୟ ସେ ଇଂରାଜୀରେ ୮୫ ନମ୍ବର ପାଇଥିଲେ । ନମ୍ବର ଦେବାରେ ଅଧ୍ୟାପକ ବରଦା ଚାଟାର୍ଜୀ ଅତ୍ୟନ୍ତ କୃପଣ ଥିଲେ । ଓ୍ୱାର୍ଡ଼ସ୍ୱର୍ଥଙ୍କ ଉପରେ ଥରେ ସେ ଗୋଟିଏ ନିବନ୍ଧ ଲେଖିବାକୁ ଦେଇ-ଥିଲେ । ପ୍ରଥମେ ବୈକୁଣ୍ଠଙ୍କୁ ୧୦ ନମ୍ବରରୁ ୭ ନମ୍ବର ଦେଇ ପରେ ତାଙ୍କୁ ୬ ଓ ଶେଷରେ ୬ ୧/୨ କରିଥିଲେ ଓ କଡ଼ା ମନ୍ତବ୍ୟ ଦେଇଥିଲେ—'ନିଶ୍ଚେ କୌଣସି ନୋଟ୍ ବହିରୁ କପି କରିଅଛ' ! ଏଥିରେ ବୈକୁଣ୍ଠ ଏତେ କ୍ରୋଧାନ୍ୱିତ ହେଲେ ଯେ ସେ ପଛ ବେଞ୍ଚରେ ଦାରୁମୂର୍ତ୍ତି ପରି ବସିଗଲେ ଓ ଅଧ୍ୟାପକଙ୍କ ଉପରେ କି ପ୍ରତିଶୋଧ ନେବେ ମନେ ମନେ ଚିନ୍ତା କରିବାକୁ ଲାଗିଲେ । ଯେତେ କୈଫିୟତ ଦେଲେ ବି ଅଧ୍ୟାପକଙ୍କର ମନଃପୂତ ହେଲା ନାହିଁ । ନିଜ ମତରେ ଦୃଢ଼ ରହି ସେ କହିଲେ—୬ ୧/୨ ହିଁ ତୁମର ପ୍ରାପ୍ୟ ।

କଲେଜରେ ଥରେ ଇଂରାଜୀରେ ୧୦୦ରୁ ସେ ୫୮ ନମ୍ବର ପାଇଥିଲେ । ସେହି ପରୀକ୍ଷାରେ ଅନ୍ନଦା ୫୬ ନମ୍ବର ପାଇଥିଲେ । ପଢ଼ାଟେବୁଲ ପାଖରେ ଗୋଟିଏ କଣ୍ଟାରେ ସେ ଖାତାଟି ଟାଙ୍ଗି ଦେଇଥାନ୍ତି । ବୈକୁଣ୍ଠ ଯେତେବେଳେ ପଚାରିଲେ—ଇଏ କଣ ?

ଅନ୍ନଦା କହିଲେ—ଦେଖ୍ ନା, ମାତ୍ର ୪୬ ନମ୍ବର ପାଇଲି । ଏଥିରେ କଣ ହେବ ? ବୈକୁଣ୍ଠ ଏହାର ଉତ୍ତରରେ କହିଲେ—"ତୁମର ୪୬ଟା ୬୪ ହେଉ, ମୋର ୫୮ଟା ୪୦ ବା ୪୬ ହୋଇଯାଉ, ପ୍ରଭୁଙ୍କୁ ଜଣାଉଛି ।"

କଲେଜ ପାଠ୍ୟକ୍ରମ ଉପରେ ଅନ୍ନଦା ଓ ଶରତ୍ ବିଶେଷ ଗୁରୁତ୍ୱ ଦେଉଥିଲେ । ପାଞ୍ଚଜଣଙ୍କ ମଧ୍ୟରେ ସ୍ୱଭାବତରେ ବୈକୁଣ୍ଠ ବିଶେଷ ହୁଗୁଳା ଥିଲେ । ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କୃତିତ୍ୱ ଦେଖାଇବା ଯେପରି କି ତାଙ୍କ ପକ୍ଷରେ ଏକ ସ୍ୱପ୍ନ ଥିଲି । ପାଠ୍ୟପୁସ୍ତକ ଗୁଡ଼ିକ ସେ ବହୁ ସମୟରେ ନିର୍ଜନ ସ୍ଥାନକୁ ଚାଲିଯାଉଥିଲେ ଓ ବସି କବିତା ଲେଖୁଥିଲେ । ବାହାର ବହି ପଢ଼ାରେ ତାଙ୍କର ବହୁ ସମୟ ବ୍ୟୟିତ ହେଉଥିଲି ।

କଲେଜରେ ପଢ଼ିଲାବେଳେ ସେ ରବୀନ୍ଦ୍ରନାଥ, ରୋମାଁରୋଲାଁ, ଓ୍ୱାଲ୍ଟ୍ ହୁଇଟିମାନ, ଓ୍ୱାର୍ଡ଼ସ୍‌ଓ୍ୱାର୍ଥ, ସେଲି ଓ ବ୍ରାଉନିଂଙ୍କର ଲେଖାସବୁ ପାଠ କରିଥିଲେ । ରୋଲାଁଙ୍କ ଜନ୍ କ୍ରିଷ୍ଟଫ୍ (ଚାରି ଖଣ୍ଡ ବଡ଼ ବଡ଼ ଉପନ୍ୟାସ) ତାଙ୍କୁ ଏତେ ଅଭିଭୂତ କରିଥିଲି ଯେ ସେ ତାକୁ ଶେଷ ନ କରିବା ଯାଏ ପାଗଳ ପ୍ରାୟ ହୋଇଯାଇଥିଲେ । ଏମାର ମଠ ଲାଇବ୍ରେରୀରେ ପ୍ରଥମ ଭାଗଟି ପଢ଼ି ସାରିଲା ପରେ ଦ୍ୱିତୀୟ ଭାଗଟି ମିଳିଲା ନାହିଁ । ପୁଣିରେ ଖବର ପାଇଲେ ଯେ ଅନ୍ନଦା ପାଟଣାରେ ଗ୍ରେଟିଯାକ ଭଳି ପୁରସ୍କାର ପାଇଛନ୍ତି ଓ ସେ ସମସ୍ତ ବନ୍ଧୁ ହରିହରଙ୍କ ପାଖରେ ସତ୍ୟବାଦୀ ନିକଟବର୍ତ୍ତୀ ବିଶ୍ୱନାଥପୁର ଗ୍ରାମରେ ଅଛି । ଦ୍ୱିପ୍ରହର ଖରାରେ ସାଇକେଲରେ ବୈକୁଣ୍ଠ ବିଶ୍ୱନାଥପୁର ଦୌଡ଼ିଲେ ଓ ବନ୍ଧୁପତ୍ନୀଙ୍କଠାରୁ ସେ ସମସ୍ତ ଲାଭ କରି ଉଲ୍ଲସିତ ଭାବେ ପୁଣି ଫେରିଆସିଲେ ।

ଭକ୍ତଙ୍କ କାବ୍ୟର ଉତ୍କଟ ଆଦିରସ ତାଙ୍କୁ ଉତ୍ୟକ୍ତ କରୁଥିଲି । ଥରେ 'ଲାବଣ୍ୟବତୀ' ପଢ଼ୁ ପଢ଼ୁ ସେ ଫିଙ୍ଗି ଦେଇଥିଲେ । ଭକ୍ତରସିକ ପିତା ପଚାରିବାରୁ କହିଲେ—ଏସବୁ କାମକୁ କାବ୍ୟରେ ସ୍ଥାନ ଦେଲାବେଳେ କବିମାନେ ଲଜ୍ଜିତ ହୁଅନ୍ତି ନାହିଁ ? ଏ ବର୍ଣ୍ଣନା ତ ପୋକ ପରି ଯୁବକମାନଙ୍କୁ ନିଆଁକୁ ଟାଣିନେବ । କାବ୍ୟର ମହତ୍ତ୍ୱ ଆଉ ରହିଲା କେଉଁଠି ?

ଯେଉଁ ବର୍ଷ ବୈକୁଣ୍ଠ ବି. ଏ. ଫେଲ ହେଲେ, 'Great Hunger' ପାଠ ତାଙ୍କୁ ବିଶେଷ ଆଶ୍ୱାସନା ଦେଇଥିଲି । ସେ ପୁସ୍ତକଟି ପଢ଼ୁ ପଢ଼ୁ ଟେବୁଲ ଉପରେ ରଖିଦେଇ ଅଶ୍ରୁ ବିସର୍ଜନ କରୁଥିଲେ । ଅନ୍ୟାନ୍ୟ ପୁସ୍ତକ ମଧ୍ୟରେ ସେ 'ଆନା-କେରେନିନା', 'Mother', ଭିକ୍ଟର ହ୍ୟୁଗୋଙ୍କ 'ହଞ୍ଚବ୍ୟାକ୍ ଅଫ ନଟରଡ଼ାମ୍' ଓ ବିବେକାନନ୍ଦଙ୍କ ଗ୍ରନ୍ଥସବୁ ପାଠ କରିଥିଲେ । ବଙ୍କିମଚନ୍ଦ୍ରଙ୍କ 'ଆନନ୍ଦମଠ', ମାଇକେଲ୍ ମଧୁସୂଦନଙ୍କ 'ମେଘନାଦ ବଧ', ଶରତଚନ୍ଦ୍ରଙ୍କ 'ଗୃହଦାହ' ତାଙ୍କୁ

ଅନ୍ତର୍ଭୂକ୍ତ କରିଥିଲି, ଜୟଦେବ, ଚଣ୍ଡୀଦାସ, ବିଲ୍ୱମଙ୍ଗଳ, ବ୍ରହ୍ମ ରାମାନନ୍ଦ, ବିଦ୍ୟାପତି, ଦୀନକୃଷ୍ଣଙ୍କ 'ରସକଲ୍ଲୋଳ', ଭକ୍ତଚରଣଙ୍କ 'ମଥୁରାମଙ୍ଗଳ' ଓ ସାମନ୍ତ ସିଂହାରଙ୍କ 'ବିଦଗ୍ଧଚିନ୍ତାମଣି' ତାଙ୍କୁ ଅନୁପ୍ରାଣିତ କରିଥିଲା ।

କବି ହେବାର ବାସନା ତାଙ୍କର ନ ଥିଲା । ସେ ଲେଖିଛନ୍ତି—'If I am a poet that is by accident. ବାଲ୍ୟ କାଳରୁ ବିପ୍ଳବ କରିବାର ଇଚ୍ଛା ମୋର ଥିଲା ଓ ରାଜନୀତିକ ହେଲେ ରାଜ୍ୟର ପରିସ୍ଥିତି ବଦଳାଇ ପାରିବି ବୋଲି ବିଶ୍ୱାସ ଜନ୍ମିଥିଲା ।

ବି. ଏ. ପାସ୍ ବେଳକୁ ବୈକୁଣ୍ଠଙ୍କ ବୟସ ପ୍ରାୟ ୨୩ ବର୍ଷ । ଘରର ଆର୍ଥିକ ଅବସ୍ଥା ଶୋଚନୀୟ । ଚାକିରି ନ କଲେ ନ ଚଳେ, କିନ୍ତୁ ମିଳୁଛି କେଉଁଠି ? ବୈକୁଣ୍ଠ ପାଟଣା ଟ୍ରେନିଂ କଲେଜରେ ନାମ ଲେଖାଇବାକୁ ଚେଷ୍ଟା କଲେ । ଅଭିଜ୍ଞ ଶିକ୍ଷକଙ୍କ ବ୍ୟତୀତ ସେତେବେଳେ ଟ୍ରେନିଂ କଲେଜରେ ପ୍ରବେଶର ସୁଯୋଗ ନ ଥିଲା । ଇଂରେଜ ସାହେବ ଅଧ୍ୟକ୍ଷ । ଦେଖା କରିବାରୁ ସେ ପଚାରିଲେ—ତୁମେ ଏଇ କଲେଜରେ ସିଟ୍ ପାଇବାକୁ କାହିଁକି ଆଶା କରୁଛ ?

ବୈକୁଣ୍ଠ—ମୁଁ ଶିକ୍ଷକ ହେବାକୁ ଚାହେଁ, ତା ଛଡ଼ା ମୋର ଗତ୍ୟନ୍ତର ନାହିଁ । ଆପଣ ମୋତେ ଗ୍ରହଣ କରନ୍ତୁ । ଅଧ୍ୟକ୍ଷ ପ୍ରୀତ ହୋଇ ତାଙ୍କୁ ଗ୍ରହଣ କଲେ ଓ ମାସିକ ପଞ୍ଚିଶ ଟଙ୍କା ଗ୍ରାସାଚ୍ଛାଦନର ବ୍ୟବସ୍ଥା କରିଦେଲେ ।

ସେ ବର୍ଷ ପାଟଣାରେ ନୂଆ କରି ଦ୍ୱିତୀୟ ସ୍ତର ଟ୍ରେନିଂ କ୍ଲାସ୍ ( ଯାହା କି ଏବେ ଏମ୍. ଇଡ଼. ହୋଇଛି ) ଖୋଲିଲା । ବୈକୁଣ୍ଠ ସେଥିରେ ଯୋଗ ଦେଲେ । ପାଠ୍ୟ ବିଷୟ ନୂତନ ଓ କଷ୍ଟକର ହୋଇଥିବାରୁ ତାଙ୍କୁ କଠୋର ପରିଶ୍ରମ କରିବାକୁ ହୋଇଥିଲା । ପାଟଣା ଟ୍ରେନିଂକଲେଜ କୋଠା ଅଧାଅଧି ତୋଳା ହୋଇଥାଏ । ପ୍ରତିଦିନ କାର୍ଯ୍ୟର ଅଗ୍ରଗତି ବିଷୟ ସେ ପ୍ରିଫେକ୍ଟ ଭାବରେ ଅଧ୍ୟକ୍ଷଙ୍କୁ କଣାଉଥାନ୍ତି । ଏହି ସମୟର ସ୍ମୃତି ସେ 'ଉପେକ୍ଷିତା' ନାଟିକାରେ ଲିପିବଦ୍ଧ କରିଛନ୍ତି । ଗୀତିନାଟ୍ୟର ନାୟିକା ଗୋଟିଏ ଇଟାଚୂନ ବୋହୁଥିବା ବାଳିକା । ନାୟକ ନାଳନ୍ଦା ବିଶ୍ୱବିଦ୍ୟାଳୟର ଜଣେ ଦର୍ଶନ ଛାତ୍ର । ଦୁଇଜଣ ଜୀବନର ଶ୍ରେଷ୍ଠ ବସ୍ତୁ ଅନୁସନ୍ଧାନ କରିଛନ୍ତି । ବାଳିକାଟି ମନର ଦୁର୍ବଳତା ଭୁଲିଯାଇ ନୂତନ ଦର୍ଶନରେ ଆତ୍ମସତ୍ତା ହରାଇଅଛି ।

ଟ୍ରେନିଂ ପାସ୍ ପରେ ବୈକୁଣ୍ଠ ଚାକିରି ଅନୁସନ୍ଧାନରେ ଓଡ଼ିଶାକୁ ଆସିଲେ, କିନ୍ତୁ ବିଫଳ ହୋଇ ପୁଣି ପାଟଣା ଫେରିଗଲେ । ପ୍ରଥମେ ପୁରୁଲିଆ ସରକାରୀ ସ୍କୁଲରେ ସେ ଶିକ୍ଷକତା ଆରମ୍ଭ କଲେ; ସେଠାରୁ ପାଟଣା କଲେଜିଏଟ୍ ସ୍କୁଲକୁ

ବଦଳି ହେଲା । ସେଠା ପରିବେଶ ଅନୁକୂଳ ବୋଧ ନ ହେବାରୁ ସେ ଶିକ୍ଷା ବିଭାଗର ଡେପୁଟି ଡିରେକ୍ଟର ହ୍ୱାଇଟ୍‌ଲକ୍ ସାହେବଙ୍କ ସହିତ ସାକ୍ଷାତ କଲେ । ସାହେବ କହିଲେ—କଟକ କଲେଜିଏଟ୍ ସ୍କୁଲରେ ଗୋଟିଏ ଅଙ୍କ ଶିକ୍ଷକ ପଦ ଖାଲି ଅଛି । କିନ୍ତୁ ତୁମେ କେବଳ ଇଂରାଜୀ ଓ ଇତିହାସ ପଢ଼ାଇ ପାରିବ ।

ବୈକୁଣ୍ଠ—କଲେଜିଏଟ୍ ସ୍କୁଲରେ ଅଧିକଜଣେ ଅଙ୍କ ଶିକ୍ଷକ ଥିବା କଥା ମୁଁ ଜାଣେ । ସେମାନେ ସପ୍ତମ ଅଙ୍କ ଶିକ୍ଷକ ରଖିଛନ୍ତି କାହିଁକି ?

ତାଙ୍କ କଥା ଶୁଣି ସାହେବ ଖୁବ୍ ହସିଲେ ଓ କଣ ଟିପି ରଖିଲେ । ଏ ଘଟଣାର ସାତଦିନ ପରେ କଟକକୁ ବୈକୁଣ୍ଠଙ୍କର ବଦଳି ହୋଇଗଲା ।

ବୈକୁଣ୍ଠନାଥ ମୋଟରେ ବତିଶ ବର୍ଷ ସରକାରୀ ଚାକିରି କରିଥିଲେ । ହାଇସ୍କୁଲ ଓ ଟ୍ରେନିଂସ୍କୁଲର ଜଣେ ସହକାରୀ ଶିକ୍ଷକ ବା ପ୍ରଧାନ ଶିକ୍ଷକଭାବେ ତାଙ୍କ ଜୀବନ କଟିଥିଲା । ସେ ରେଭେନ୍‌ସା କଲେଜ ଓ ଫକୀରମୋହନ କଲେଜରେ ଅଳ୍ପ କେତେବର୍ଷ ଓଡ଼ିଆ ଅଧ୍ୟାପକ ହୋଇଥିଲେ । ଦ୍ୱିତୀୟ ମହାଯୁଦ୍ଧ କାଳରେ ସେ ପ୍ରାୟ ତିନି ବର୍ଷ ପ୍ରଚାରକାର୍ଯ୍ୟ କରିଥିଲେ । କିନ୍ତୁ 'ଅଣୁମାତ୍ର ବସିବାର ଅଭ୍ୟାସ ନ ଥିବାରୁ' ତାଙ୍କୁ ବହୁ କଷ୍ଟଭୋଗ କରିବାକୁ ହୋଇଥିଲା । ସାହିତ୍ୟ ରଚନା ପଥ କଣ୍ଟକସଙ୍କୁଳ ହୋଇଥିଲା । ଉପରିସ୍ଥଙ୍କ ସୁଦୃଷ୍ଟିରେ ନ ଥିବାରୁ ତାଙ୍କର ଘନଘନ ବଦଳି ହୋଇଥିଲା । ଶାସକ ଗୋଷ୍ଠୀରେ ଉଦାରଚେତା, ସହାନୁଭୂତିଶୀଳ ହାକିମଙ୍କ ସଂଖ୍ୟା ନଗଣ୍ୟ ଥିଲା । ଅବଶ୍ୟ ଚାକିରି ଜୀବନର ଶେଷପାଦକୁ ସରକାର ତାଙ୍କୁ ପ୍ରଥମଶ୍ରେଣୀର ଚାକିରିକୁ ଉନ୍ନୀତ କରିଥିଲେ । ତାଙ୍କୁ ସ୍କୁଲ ଇନସ୍‌ପେକ୍ଟର ଓ ପରେ ପ୍ରୌଢ଼ ଶିକ୍ଷା ଅଫିସର କରାଯାଇଥିଲା ।

କୌଣସି ସାହେବ ବା ଉଚ୍ଚପଦସ୍ଥ ହାକିମ ସ୍କୁଲ ପରିଦର୍ଶନ କଲେ ସମ୍ବର୍ଦ୍ଧନା ସଙ୍ଗୀତ ରଚନାର ଦାୟିତ୍ୱ ଶିକ୍ଷକଙ୍କୁ ଦିଆଯାଉଥିଲା । କବି ଭାବରେ ଏପରି କାର୍ଯ୍ୟ କରିବାକୁ ସେ ମର୍ମେ ମର୍ମେ ଘୃଣା କରୁଥିଲେ । ଥରେ ତାଙ୍କ ଉପରେ ଭାର ପଡ଼ିବାରୁ ମନର ମଙ୍ଗ ସମ୍ଭାଳି ନ ପାରି ସେ କହିଥିଲେ—ମୁଁ ଚାକିରି କରି ସରକାରଙ୍କୁ ମୋର ଏକାଂଶ ବିକ୍ରୀ କରିଛି । ବାକୀତକ ମୋର ଏକାନ୍ତ ନିଜର । ତା ଦେହରେ ତୁମେ ଟିପଦେଇ ପାରିବ ନାହିଁ ।

ଥରେ ଅଧେ ଏପରି ଦୁର୍ଘଟଣା ଘଟିଲା ପରେ ପ୍ରାରମ୍ଭିକ, ବିଦାୟ ବା ଅଭିନନ୍ଦନ ଗୀତ ରଚନା ଲାଗି ତାଙ୍କୁ କେହି ଅନୁରୋଧ କଲେ ନାହିଁ । କର୍ତ୍ତା ଓ

ସହକାରୀମାନେ କଣ ଗୁଡ଼ାଏ ଦୁର୍ବୋଧ ଲେଖୁଛୁ ବୋଲି ତାଙ୍କ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରୁଥିଲେ । ଏହା ହିଁ ତାଙ୍କ ସରସ୍ୱତୀଙ୍କର ଲୌହକବଚ ଥିଲା ।

୧୯୬୯ ରେ ଚାକିରୀରୁ ଅବସର ଗ୍ରହଣ କରି ସେ ଏକପ୍ରକାର ମୁକ୍ତିର ଆସ୍ୱାଦ ଅନୁଭବ କଲେ । ପିତାଙ୍କ ପ୍ରିୟ ପ୍ରବଚନଟି ତାଙ୍କ କର୍ଣ୍ଣରେ ଝଙ୍କୃତ ହେଉଥିଲା—Better a plough man at one's feet. ଶେଷ ଜୀବନରେ ସ୍କଟଲଣ୍ଡର କବି ବର୍‌ନସ୍ ତାଙ୍କର ମନେ ପଡ଼ୁନ୍ତି—ସେ ହଳରେ ହଳ ଠିଆକରି ପଦେ ପଦେ କବିତା ଖାତାରେ ଟାଣେଇ ଦେଉଥିଲେ । ୬୨ ବର୍ଷର ଦାଇତ୍ୱ ପରେ ସେ ଶରୀରରେ ଶକ୍ତି ଓ ମନରେ କୌଣସି ସ୍ଫୂର୍ତ୍ତି ଥିବାର ଅନୁଭବ କରୁ ନ ଥିଲେ ।

ଚାକିରୀ କାଳରେ ବୈକୁଣ୍ଠ ସାଧ୍ୟମତ ଅଧ୍ୟୟନ ଓ ରଚନାର ଅଭ୍ୟାସ ରଖିଥିଲେ ଓ ଆତ୍ମୋନ୍ନତି ପ୍ରତି ସର୍ବତୋଭାବେ ଦୃଷ୍ଟି ରଖିଥିଲେ । ସେ ପହିଲେ ଇତିହାସରେ ଏମ୍. ଏ. ହେବାପାଇଁ ଚେଷ୍ଟିତ ହେଲେ । କିନ୍ତୁ ପୁସ୍ତକ ଅଭାବରୁ ସେ ଚେଷ୍ଟାରୁ ବିରତ ହୋଇ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ୍. ଏ. ଦେଲେ । ପଦ୍ୟ ସାହିତ୍ୟରେ ତାଙ୍କର ଦଖଲ ନ ଥିବାରୁ ସେ ଓଡ଼ିଆ ପ୍ରଶ୍ନର ଉତ୍ତର ଇଂରାଜୀରେ ଲେଖିଥିଲେ । ଏମ୍. ଏ. ରେ ସେ ଦ୍ୱିତୀୟ ଶ୍ରେଣୀ ଲାଭ କଲେ ।

ସ୍ୱରଚିତ କବିତା ବିଷୟରେ ବୈକୁଣ୍ଠଙ୍କ ଭୂମିକା ପ୍ରଣିଧାନଯୋଗ୍ୟ ।

"ପ୍ରାପ୍ତବୟସ୍କ ହେବା ପରେ ବଳ୍ମଙ୍ଗଲ ଠାକୁର ମୋର ଆଦର୍ଶ ହେଲେ । ତାଙ୍କ ଭଳି ଅନ୍ଧହୋଇ ବୃନ୍ଦାବନ ଧାମରେ ଶ୍ୟାମସୁନ୍ଦରଙ୍କ ଭଜନ ଗାଇବା ନିଶା ବୟସ ବଢ଼ିବା ସଙ୍ଗେ ସଙ୍ଗେ ତୀବ୍ରତର ହେଲା । ତେଣୁ ଯେଉଁ କବିତାଗୁଡ଼ିକ ଛନ୍ଦ ବା ଅଙ୍କାରସାରରେ ଲେଖା ହୋଇଅଛି, ସେଗୁଡ଼ିକୁ ମୁଁ ଗୋଟାଏ ଅଳିଆଗଦା ଭଳି ମନେକଲି । ଅସଲ ଗୀତ ତ ଗାଇ ପାରିଲି ନାହିଁ । ଅଳିଆଗଦା ସାଇତି କ'ଣ ହେବ ?"

"ମୁଁ ଆଜି ନିଜକୁ ପଚାରେ—ଏ କାବ୍ୟ ପ୍ରକାଶ ବା ଦୃଷ୍ଟିରରେ ଲାଭ କଣ ? ଦୀପରେ ତେଲ ଢାଳି ଅଗ୍ନି ସଂଯୋଗ କଲେ ଯେ ଦୀପ ଜଳିଲା, ସେ ତ କର୍ତ୍ତା ଓ କରଣ ମଧ୍ୟରେ କଥା । ବାହାରେ ପ୍ରକାଶ କରିବାରେ କି ପ୍ରୟୋଜନ ଅଛି ? ଗୋଟାଏ ଦୀପ ଲିଭିଲେ ଆହୁରି ଏକଶତ ଜଳିଉଠିବେ ଏବଂ ତାଙ୍କରି ଦର୍ପଣରେ ଗୀତ ଗାଇବେ । ଆତ୍ମସନ୍ତୁଷ୍ଟି ବା ପ୍ରଚାରରେ ପ୍ରୟୋଜନ କଣ ? ବହୁ ଦ୍ୱନ୍ଦ୍ୱଚିନ୍ତା ବୈକୁଣ୍ଠଙ୍କୁ ଶେଷ ଜୀବନରେ ବିକ୍ଷୁବ୍‌ଧ କରିଛି । ସେ ସଂସାର ପ୍ରତି ବୀତସ୍ପୃହ ହୋଇଛନ୍ତି । ସେ ବୈଷ୍ଣବ ଧର୍ମଶାସ୍ତ୍ର ଚର୍ଚ୍ଚା କରିଥିଲେ । ପୂଜା ପ୍ରାର୍ଥନାରେ ସେ ସମସ୍ତ

ବଢ଼ାଉଥିଲେ । ନାନା ଅସ୍ଥିରତା ଓ ବିକ୍ଷୋଭ ମଧ୍ୟରେ କିନ୍ତୁ ତାଙ୍କ ଚିତ୍ତ ଶାନ୍ତ, ସ୍ଥିର ଓ ସୃଷ୍ଟିଶୀଳ । ସେ ରହସ୍ୟବାଦୀ କବିତା ରଚନା କଲାବେଳେ କବିର ବିପ୍ଳବ ଭୂମିକାକୁ ବିସ୍ମୃତ ହୋଇନାହାନ୍ତି । ଭଗବତ୍ ଭାବ ବ୍ୟତୀତ ଅନ୍ୟ ଭାବ ସମ୍ବଳିତ କବିତାକୁ ଅଲଗା ମନେ କରୁଥିଲେ ସେ 'ଗୃହ ମଜୁମଦାର' କବିତା ଲେଖି ନଥାନ୍ତେ । ପ୍ରକୃତପକ୍ଷେ ତାଙ୍କ ମାନବବାଦ ଓ ଈଶ୍ୱରବାଦ ଭିନ୍ନ ନୁହେଁ । ଜୀବନ ଭିତରେ ପରମ, ସୀମା ଭିତରେ ଅସୀମଙ୍କୁ ହିଁ ସେ ଦେଖିଥିଲେ ।

ତାଙ୍କ କବିତାର ପୃଷ୍ଠଭୂମି ଜାଣିବା ଲାଗି ତାଙ୍କ ମତ ବା ଚିନ୍ତା ଅନୁଧେୟ ।

"ରାଜନୀତିକ କବିତା ଅନେକ ଗୁଡ଼ିଏ ଲେଖିଅଛି । ବ୍ରିଟିଶ ସରକାର ଅମଳରେ କେତେକ ରାଜନୈତିକ ପଦ୍ୟ ପ୍ରଚ୍ଛନ୍ନଭାବରେ ଓ ଛଦ୍ମ ନାମରେ ଲେଖିଅଛି । ଛଦ୍ମନାମ ମଧ୍ୟରେ 'ବଜ୍ର ବାଦଲ', 'ଜରଦ୍‌ଗବ' ଦୁଇଟି ବର୍ତ୍ତମାନ ମନେ ପଡ଼ୁଛି ।"

"ମୋ ହୃଦୟ ଖଣ୍ଡିଏ କଠିନ ଶିଳାପଣ ରହସ୍ୟନ । କୈଶୋର ଜୀବନରେ ଚମ୍ପୂ ଓ ଗୋପାଳକୃଷ୍ଣଙ୍କ ସଙ୍ଗୀତ ଗାଉଥିବା ବାଳକ ନଟ (ଗୋଟିପୁଅ)ର ସୁଲଳିତ କଣ୍ଠସ୍ୱର ଓ ଅଙ୍ଗଭଙ୍ଗୀ ଓ ମୋହନ ଘୋସେଙ୍କ ରାସର ଲଳିତା ସେ ଶିଳାଖଣ୍ଡକୁ ତରଳାଇ ଦେଇଥିଲା । ମୁଁ ଜୀବନରେ ଆନନ୍ଦ ମୂର୍ତ୍ତିକୁ କେତେକାଂଶରେ ଉପଲବ୍ଧି କରିଥିଲି ।"

"ନବ ଯୌବନ" ପଦ୍ୟର ଛନ୍ଦ ବିନ୍ୟାସ ଓ ତାର ଅବାଧ ଉଚ୍ଛ୍ୱସିତ ଗତିମୂଳରେ ବଙ୍ଗୀୟ କବି ନଜରୁଲ୍ ଇସ୍‌ଲାମ୍ ଓ ରବୀନ୍ଦ୍ରନାଥଙ୍କ ପ୍ରଭାବ ପଡ଼ିଥିବାର ମୁଁ ଅନୁଭବ କରେ ।"

"ନିମେଷ ଦେଖା" କବିତା ପଢ଼ି ବିଶ୍ୱନାଥ କର ଏହାର ଛନ୍ଦ ବିନ୍ୟାସରେ ଅତ୍ୟନ୍ତ ପ୍ରୀତ ହୋଇ ମୋପାଖକୁ ଦୌଡ଼ି ଆସିଥିଲେ । ବ୍ରଣ ରୋଗରେ ପୀଡ଼ିତ ହୋଇ ମୁଁ ଦ୍ୱିପ୍ରହରେ ଶୋଇଥିବା ବେଳେ ଗୋଟିଏ ଘୋର ସ୍ୱପ୍ନ ଦେଖି ଏହି ପଦ୍ୟଟି ଲେଖି ପକାଇଥିଲି । ଏଥିରେ ଉଚ୍ଛ୍ୱାସର ଅଭାବ ନ ଥିଲା । ବିଶ୍ୱନାଥବାବୁ ସ୍ୱପ୍ନକଥା ଶୁଣି ତାଙ୍କ ସ୍ୱପ୍ନଲୋକରୁ ଖସି ଆସିଥିଲେ । ସେ କହିଲେ—ଅତି ସୁନ୍ଦର ହୋଇଛି । ଏହି କବିତାର ପ୍ରଥମ ପଦ ହେଲା—

"ନିମେଷ ଦେଖା ଆଗୋ ନିମେଷ ଦେଖା
ମରମେ ମରମେ ଗୋ ରହିଛି ଲେଖା ।"

"ଗଡ଼ଜାତ ମାଳଭୂମିର ଝଡ଼ ତୋଫାନ ପ୍ରାଣରେ ଯେଉଁ ଆବେଗ ସୃଷ୍ଟି କରିଥିଲା, ତାହା ପ୍ରକାଶ ପାଇଛି—

'ଆକାଶେ ମାତିଛୁ ବଜ୍ର ବାଦଲ' ଭଳି ପଂକ୍ତିମାନଙ୍କରେ ।"

"ତରୁଣ ବୟସରେ 'ସହକାର'ରେ ଚଳିକାର ପକ୍ଷୀମାରଣ ବନ୍ଦସ୍ୱର ଆଠ ଦଶୋଟି ପଦେଣ୍ଟ୍ 'ଘାଅରେ ସାରସ ହଂସ ମାନସକୁ ଛଡ଼ି' ଶୀର୍ଷକରେ ପ୍ରକାଶ ପାଇଥିଲା ।

ଚିଲିକାର ପକ୍ଷୀହତ୍ୟା ତରୁଣ ବୟସରେ ମୋତେ ବହୁତ ଶୋକାକୁଳ କରି ଦେଇଥିଲା । ମଧ୍ୟମ ବୟସରେ ବୃଦ୍ଧାବସ୍ଥା ଅବସ୍ଥାରେ ଥରେ ସହରରୁ ଫେରିବା ସମୟରେ କେତେକ ବର୍ଗୀୟ ଯୁବକ ଯୁବତୀ ଗୋଟିଏ ନିରୀହ ହଂସକୁ ମାରି ବସ୍‌ରେ ଆଣିଥିଲେ । ସେ ହଂସର ଚକ୍ଷୁରେ ଦୁଇଟୋପା ଲୁହ ଲାଗି ରହିଥିଲା । ଆଜି ପୁଣି ସେ ସ୍ମୃତି ମନରୁ ଯାଉନାହିଁ । ସେହି ଚଳନ୍ତାବସ୍ ମଧ୍ୟରେ ସମ୍ପୂର୍ଣ୍ଣ ପଦ୍ୟଟି ଲେଖି ନ ପାରି ଠାରରେ ଶବର ପ୍ରଥମ ଅକ୍ଷରଗୁଡ଼ିକ ଟିପି ରଖିଥିଲି— 'ନକଲି ଉଲକଡଅ ନ କହିବ ଜାତି', ଏହା 'ସହକାର'ରେ ପ୍ରକାଶିତ ହୋଇଥିଲା ।"

"ସାହିତ୍ୟିକ ଜନ୍ମ ବୈଷ୍ଣବ ଦର୍ଶନରୁ ଆରମ୍ଭ ହୋଇଥିଲେ ମଧ୍ୟ ଅସହଯୋଗ ଆନ୍ଦୋଳନ ପ୍ରତି ମୋର ସମ୍ପୂର୍ଣ୍ଣ ସହାନୁଭୂତି ଥିଲା । କମ୍ୟୁନିଷ୍ଟ ଦର୍ଶନ ମୋତେ ବହୁ ପରିମାଣରେ ଅନୁପ୍ରାଣିତ କରିଥିଲେ ମଧ୍ୟ ମୁଁ ବୈଷ୍ଣବ ଦର୍ଶନରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇପାରି ନ ଥିଲି । ତତ୍କାଳୀନ ଓଡ଼ିଶାର ରାଜନୈତିକ ପରିସ୍ଥିତି, ଗଡ଼ଜାତ ରାଜାମାନଙ୍କ ପ୍ରଜାପୀଡ଼ନ, ପ୍ରଜାମାନଙ୍କ ଦେଖି ମନ କରୁଣ ଅବସ୍ଥାପନ୍ନ ହୋଇଥିଲେ ମଧ୍ୟ ମୁଁ ସମ୍ପୂର୍ଣ୍ଣଭାବେ ନାସ୍ତିକତାରେ ଦୀକ୍ଷିତ ହୋଇପାରି ନ ଥିଲି । ସେ ସମୟରେ ଲିଖିତ 'ବାଜି ରାଉତ' ଓ ଅନ୍ୟ କେତେକ କବିତା 'ଉତ୍ତରାୟଣ'ରେ ପ୍ରକାଶିତ ହୋଇଅଛି ।

"ବୈଷ୍ଣବ ଦର୍ଶନ ମୋର ମୂଳପିଣ୍ଡ ହେଲେ ହେଁ ପ୍ରକୃତ ଜୀବନରେ ସାମାଜିକ ଓ ରାଜନୈତିକ ଅତ୍ୟାଚାର ଦେଖି ମୁଁ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇଥିଲି । ବୌଦ୍ଧ ଦର୍ଶନ ଯତ୍‌କିଞ୍ଚିତ୍ ପାଠ କରିଥିଲି ବା ତଦ୍‌ଦ୍ୱାରା ଅନୁପ୍ରାଣିତ ହୋଇଥିଲି । ତାହାକୁ ଭିତ୍ତି କରି ପଦ୍ୟ ଲେଖିଛି—'ବୁଦ୍ଧ ବନ୍ଦନା', 'ବୁଦ୍ଧ କର ହେ କ୍ଷମା', 'ଅମ୍ବାପାଲୀର ଉତ୍କଣ୍ଠା' ଇତ୍ୟାଦି ।"

"ପ୍ରକୃତ ଜୀବନରେ ଲେଖାଲେଖି ବିଶେଷ ବ୍ୟାହତ ହୋଇଅଛି । ଅନେକ ସମୟରେ ମନେ ହୋଇଛି—ମୋର କାବ୍ୟଜୀବନର ଇତି ହେଲା । ଅବସର ଗ୍ରହଣର ଛ'ମାସ ପରେ ଥରେ କେତେଗୁଡ଼ିଏ ଟେବୁଲ୍ ଗୋଲାପ ଫୁଟିଥିବାର ଦେଖି ପୂର୍ବ ଭାବୋଚ୍ଛ୍ୱାସ ପୁଣି ଫେରି ଆସିଛି । 'ନବ ବସନ୍ତ', 'କ୍ଷଣ ବସନ୍ତ' ଆଦି ସେହି ସମୟର ଲେଖା ।"

"ଶ୍ରୀକୃଷ୍ଣଙ୍କ ବହୁ ଲୀଳା ପାଠକରି ମନେ ହେଲା—ଏହି ବିଶାଳ ସୃଷ୍ଟି-ଦର୍ଶନରେ ତାଙ୍କର ସ୍ଥାନ ଅଦ୍ୱିତୀୟ । କେବଳ ପରମଗୁରୁ ବା ଅବତାରୀ ଭାବରେ ନୁହେଁ, ବନ୍ଧୁ ଭାବରେ, ପୁତ୍ର ଭାବରେ, ସଖା ଭାବରେ, ରାଜନୀତିକ ଭାବରେ ତାଙ୍କର ସ୍ଥାନ ଅଦ୍ୱିତୀୟ । ବିଦୁରଙ୍କ ଘରେ ତାଙ୍କର ଶାକାନ୍ନ ଭକ୍ଷଣ କଥା ପଢ଼ି ତାଙ୍କୁ ମୁଁ କମ୍ୟୁନିଜିମ୍‌ର ଜନ୍ମଦାତା ବୋଲି ଧାରଣା କରିନେଲି ଏବଂ ମୋର ଦୃଢ଼ବିଶ୍ୱାସ ହେଲା—ଶାନ୍ତିକାମୀ ଏହି ପରମପୁରୁଷ ପ୍ରୟୋଜନ ଦୃଷ୍ଟିରୁ ପାଞ୍ଚଜନ୍ୟ ବଜାଇ ଯୁଦ୍ଧର ଡାକରା ଦେଇପାରନ୍ତି । ନାନା ରାଜନୀତିକ କୌଶଳ ଦେଖାଇ ପାଣ୍ଡବମାନଙ୍କୁ ରକ୍ଷା ବି କରିପାରନ୍ତି । ସେ ଯେ ଅବତାରୀ—ନାନା ଅବତାରର ସ୍ରଷ୍ଟା ସେ ଧାରଣା ମୋର ବଦ୍ଧମୂଳ ହୋଇଗଲା । ଶ୍ରୀକୃଷ୍ଣଙ୍କ ରହସ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱର ପ୍ରକାଶ କୌଣସି କବି ବା ସ୍ରଷ୍ଟାର ଶକ୍ତି ବହିର୍ଭୂତ । ତେବେ ବି ତାଙ୍କ ବିଷୟରେ କିଛି ଲେଖିବାକୁ ପ୍ରେରଣା ପାଇଛି ଓ ଦୁର୍ବଳ ଲେଖନୀ ଚଳାଇଛି । 'କୁବ୍‌ଜା', 'ଶ୍ରୀରାଧା' ପ୍ରଭୃତି କବିତା 'ଜନ୍ମାନ୍ତର'ରେ ବାହାରିଛି ।"

ଶେଷ ଜୀବନରେ ସ୍ତ୍ରୀଙ୍କ ସହିତ ଆଳାପ ପ୍ରାୟ ବନ୍ଦ । ଥରେ ସେ ନାତୁଣୀ ହାତରେ ପଚାରି ପଠାଇଲେ—ସବୁବେଳେ ତ ଭଗବାନ୍ ଭଗବାନ୍ ହେଉଛ, ସେ କାହିଁକି ଏତେ ବିପଦରେ ପକାଉଛନ୍ତି ?

ବୈକୁଣ୍ଠ ଉତ୍ତର ଦେଲେ—ଭଗବାନ୍ ଯାହାକୁ ବେଶୀ ଭଲ ପାନ୍ତି, ତାକୁ ବେଶୀ ମାଡ଼ ଦିଅନ୍ତି । ଏହା ଶିକ୍ଷାଦିଗରୁ ମୋର ଜଣେ ଗୁରୁ ଓ ପରେ ଧର୍ମ ଦିଗରୁ ଜଣେ ଗୁରୁ ମତେ କହିଥିଲେ ।

ବୈକୁଣ୍ଠନାଥ ମୁଖ୍ୟତଃ ସାହିତ୍ୟର ଗୋଟିଏ ବିଭାଗର ସାଧକ । ସେ କବି, ସାରା ଜୀବନ ସେ ଗୋଟିଏ ଦିଗରେ ଲେଖନୀ ଚଳାଇଛନ୍ତି । ତାଙ୍କ ମନ ବାର୍ଦ୍ଧକ୍ୟ ଜାଣି ନାହିଁ, ଲେଖନୀ କ୍ଳାନ୍ତ ନୁହେଁ । ସେ କ୍ୱଚିତ୍ ପ୍ରବନ୍ଧ ବା ନାଟକ ଲେଖିଥାନ୍ତି । ତାଙ୍କ 'ମୁକ୍ତିପଥେ' ନାଟିକା ୧୯୩୩ ରେ ପ୍ରକାଶିତ; ପ୍ରେରଣାଦାତା ବିଶ୍ୱନାଥ କରଙ୍କୁ ଏହା ଉତ୍ସର୍ଗ କରାହୋଇଛି ।

ଆଦର୍ଶବାଦୀ ଯୁବକ ପୁଣ୍ଡରିକ ଓ ମୁକ୍ତିକାଂକ୍ଷିଣୀ ସ୍ତ୍ରୀ ଅପରାଜିତା—ସଂସାର କ୍ଷେତ୍ରରେ ମୁକ୍ତି ପେଇଁ ଉଭୟଙ୍କ ମଧ୍ୟରେ ସଂଘର୍ଷ ହୋଇଅଛି । ନାରୀର ମୁକ୍ତି ସ୍ୱଗୃହରେ, ସମାଜରେ ନୁହେଁ । ତାର ସାଧନାର କ୍ଷେତ୍ର ଗୃହ । ସେଠି ସେ ସଦ୍‌ଗୁଣର ବିକାଶ ଘଟାଇ ପାରିବ, ଜାତିକୁ ଶକ୍ତିର ଉତ୍ସ ଯୋଗାଇ ପାରିବ । ସଂସାର ଗୁଡ଼ି ପତିକୁ ଅବଜ୍ଞା କରି ସେ ଯେଉଁ ସ୍ୱପ୍ନଲୋକ ଗଢ଼େ ତାହା ଅଳୀକ । ନାରୀର ମୁକ୍ତି ସାଂସାରିକ ବନ୍ଧନ ଭିତରେ, ସେଇ ବନ୍ଧନକୁ ଛିନ୍ନ କରିବାରେ ଏହା ନିହିତ ନାହିଁ ।

"ସମସ୍ତ ବହିର୍ଜଗତର ଦୃଷ୍ଟି ଫେରାଇଆଣି ନିଜ ଅନ୍ତରରେ ପ୍ରତିଷ୍ଠା ଲାଭ କର । ସବୁ ଭାଗ୍ୟର ଚନ୍ଦ୍ରପୂଳୁ ଶିର ପତାଇ ଦିଅ । କିନ୍ତୁ ଆଜି ଶିକ୍ଷିତା ନାରୀର ଜାଗରଣ ବାହାରେ; ଭିତରେ ତାହାର ଅବିଶ୍ୱାସର ଅନ୍ଧକାର ।"

ନାରୀତ୍ୱର ଗୌରବ, ସୌନ୍ଦର୍ଯ୍ୟ, ବିନୟ, ଧୈର୍ଯ୍ୟ ଆଦି ସୂକ୍ଷ୍ମ ମନୋବୃତ୍ତି-ଗୁଡ଼ିକୁ ଅପମାନ କରି, ଅପମାନ ନୁହେଁ, ଧ୍ୱଂସ କରି, ସବୁପ୍ରକାର ଜୀବନକୁ ଅବଜ୍ଞା କରି ନାରୀ ଯେ ଆଜି ସାମାଜିକ ବନ୍ଧନକୁ ଚୂର୍ଣ୍ଣ କରିବାକୁ ବ୍ୟଗ୍ର ହୋଇ ଉଠିଛି, ତାର ପ୍ରତିବଦଳରେ ସେ କିପରି ମୁକ୍ତି ହାସଲ କରିଛି, ଜାଣ ? ଏକ ବିରାଟ ବୁଭୁକ୍ଷା, ଏକ ବିରାଟ ଭୋଗଲିପ୍ସା !!"

ପ୍ରକାଶ ଓ ପ୍ରଗ୍ରିର ଦିଗରେ ବୈକୁଣ୍ଠ ଚିର ଉଦାସୀନ । କବି ରୂପରେ ପରିଚିତ ହେବାର ପ୍ରାୟ ପଚିଶ ବର୍ଷ ପରେ ୧୯୨୩ ରୁ ୧୯୨୫ ମଧ୍ୟରେ ରଚିତ କବିତାକୁ ନେଇ ୧୯୪୪ ରେ ତାଙ୍କ 'କାବ୍ୟସଞ୍ଚୟନ' ପ୍ରକାଶିତ ହେଲା । ଜୟପୁରର ହୃଦୟବାନ୍ ମହାରାଜା ବିକ୍ରମଦେବ ବର୍ମା ତାଙ୍କ କାବ୍ୟକବିତା ପାଠରେ ମୁଗ୍ଧ ହୋଇ ସ୍ୱତଃପ୍ରବୃତ୍ତ ହୋଇ ଏହାର ବ୍ୟୟଭାର ବହନ କରିଥିଲେ । ସାହିତ୍ୟ ସମ୍ରାଟଙ୍କୁ ଏହି ଗ୍ରନ୍ଥ 'ଭକ୍ତ୍ୟର୍ପଣ, କରାଯାଇଛି । ଉତ୍ସର୍ଗପତ୍ରଟି ଭାଷାକୋଷକାର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଲେଖା । ସେ ସ୍ୱତଃପ୍ରବୃତ୍ତ ହୋଇ ବୈକୁଣ୍ଠଙ୍କ ଲାଗି ଏହା ଲେଖି ଦେଇଥିଲେ ।

"ସାହିତ୍ୟଗତପ୍ରାଣ, ସାହିତ୍ୟୈକବ୍ରତ, ସାହିତ୍ୟାନୁରାଗୀ, ସାହିତ୍ୟିକମାନଙ୍କ ପ୍ରଧାନ ସହାୟ, ରସଜ୍ଞ, ବହୁଭାଷାପ୍ରବୀଣ, ପୁରାତନ ଓ ନବୀନ ସାହିତ୍ୟର ପ୍ରଧାନ ପୃଷ୍ଠପୋଷକ, କବିବର, ଦାନବୀର, କର୍ମବୀର, ସାହିତ୍ୟବୀର, ଜୟପୁରାଧୀଶ୍ୱର, କଳାପ୍ରପନ୍ନ, ସାହିତ୍ୟସମ୍ରାଟ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା, ଡି. ଲିଟ୍, ମହୋଦୟଙ୍କ ଶ୍ରୀକରକମଳରେ ଏହି 'କାବ୍ୟ ସଞ୍ଚୟନ' ଅର୍ପଣ କରି ଗ୍ରନ୍ଥକାର ନିଜକୁ ଧନ୍ୟ ମନେ କରୁଅଛି ।" ୧୪୮ ଗୋଟି କବିତା 'କାବ୍ୟ ସଞ୍ଚୟନ'ରେ ସଂକଳିତ ହୋଇଥିଲା । ଏହାର ଏକ କ୍ଷୁଦ୍ରତର ସଂକଳନ ବି. ଏ. ଶ୍ରେଣୀରେ ପାଠ୍ୟପୁସ୍ତକ ରୂପେ ବହୁ ବର୍ଷ ଚାଲିଥିଲା ।

ତାଙ୍କ 'ପଙ୍ଗୁର ଆରତି' ସତେ ଯେପରି ତାଙ୍କର ବର୍ତ୍ତମାନ ଦୁରବସ୍ଥାର ପ୍ରତୀକ । ବହୁ ଆଗରୁ ସତେ ବା ଏହା ସେ କଳ୍ପନା କରି ପାରିଥିଲେ—

"ଦିବା ଅବସାନେ ଅସ୍ତ ଅରୁଣ ରାଗେ
ବ୍ୟଥିତ ପଙ୍ଗୁ କି ଗାଇବ ଅନୁରାଗେ ?
ଗମ୍ଭୀରେ ଗାଏ ଧନ୍ୟ କରିଛ ଅଙ୍ଗ ପଙ୍ଗୁ କରି
ଧନ୍ୟ ହରି ହେ ହରି ।"

‘ଗଗନେ ପବନେ ମୋର ଭରି ହାହାକାର
ମୋ ଲୋଚନ ଭରେ ଘାସ କୁସୁମ ସମ୍ଭାର
ଶ୍ୟାମଳ ସ୍ୱପନେ ମୋର ଝୁଲଇ ବେଦନା
ବେଦନାର ସୃଷ୍ଟି ଜନ୍ମ କରେ କଳପନା ।’

“ହତାଶ ମୁଁ ଗୋ ଜୀବନ ସାରା
ଜନମ ମୋର ବ୍ୟର୍ଥ
ଜୀବନ ଏକ ଅଶ୍ରୁଧାରା
ନ ବୁଝେ କିଛୁ ଅର୍ଥ !”

“ଏହି ତ ଜୀବନ ଶିବ ଆନନ୍ଦ
ଏଥି ଅମୃତ ଭ୍ରମ !
ସହି ହେବ ଶତ ସନ୍ତାନ ଶୋକ
ରହିଛି ରହିବ ପ୍ରାଣ
ସକଳ ଶୋକରୁ ବଳି ଅସହ୍ୟ
ଆତ୍ମାର ଅପମାନ ।”

“ଯେତେ ସହି ଗଲି ଅଶ୍ରୁର ଜ୍ୱାଳା
ମୁଖର ଅଟ୍ଟହାସ
ଚୂର୍ଣ୍ଣ କଲି ମୋ କ୍ଷୁଣ୍ଣ ପରାଣ
ପ୍ରସ୍ତର କଲି ପ୍ରାସ

ଦେଖିଛି ସଦା ସନ୍ତାନହରା
ନୟନେ ଶୁଷ୍କନୀର
ଡଶପ୍ରତିମା ସମାନ ଅଟଳ
ସ୍ତନୁଁ ବହିଯାଏ କ୍ଷୀର !”

ନୈରାଶ୍ୟରେ ଭାସିଲେ ବି କବି ଆଶାବାଦୀ । ଦୁଃଖ ଶୋକ ସହିତ ସେ ଗୋଟିଏ ବୁଝାମଣା କରିଛନ୍ତି । ସେଥିରୁ ଆହରଣ କରିଛନ୍ତି ବଞ୍ଚିବାର ସ୍ପୃହା । “ବ୍ୟଥାର ଭି ଅଛି ଆନନ୍ଦ, ନୈରାଶ୍ୟର ଜଣେବଦ ଶାନ୍ତି !”

“ପଙ୍କେ ଚରୁ ମୁଁ ଗୋ ପଙ୍କଜ ମୋ ପତର
ନିରାଶା ପରଶରେ ଝରିଛି ଅକାଳରେ
ତଥିଁ ତ ନାହିଁ ତଳେ ବାସନା ଖେଦ ମୋର !”

କବିତା ରଚନା କରି ସେ ଏହି ଦୁଃଖ ଶୋକରୁ ସାମୟିକ ଆଶ୍ୱାସନା ଲାଭ କରିଛନ୍ତି । କିନ୍ତୁ ଏହା ତାଙ୍କୁ ଚିର ଶାନ୍ତି ଦେଇପାରି ନାହିଁ ।

ଦୀର୍ଘ ଏଇ ଯାତ୍ରା ପଥେ କାବ୍ୟ ସ୍ୱପ୍ନ ମାୟା
ରହିବ କେତେଦିନ ବନ୍ଧୁ, ବାରିବାହ ଛାୟା ?
ମେଣ୍ଟିବ କି ତହିଁ ପ୍ରିୟ, ଜୀବନର କ୍ଷୁଧା ?
ନାହିଁ ତୁମ ସ୍ୱର୍ଗଲୋକେ ଅତ୍ୟ ନୃପ ସୁଧା ?

ସବୁ ଚିର ଯାତନାର ଦୁଃଖ ଲାଗି ସେ ମଣିଷକୁ ଦାୟୀ କରିଛନ୍ତି—

'ଭଗବାନ୍ ଅବା ସଇତାନ୍ କେହି ନାହିଁ
ଯେତେ ଯାହା ଦେଖୁଛୁ ମଣିଷ କରଣୀ ଭାଇ !'

ଶକ୍ତିଶାଳୀ ମାନବର କାରସାଦି କାହା ଘରେ ଦୀପାଳି ଜଳାଉଛି, କାହା ଘରେ ବା ଅନ୍ଧାର ଘୋଟାଇଛି ।

ଆଧୁନିକ ଗୃହିଣୀ ଉମା ମାତ୍ର ଛବିଶ ବର୍ଷରେ ଛ'ଟି ସନ୍ତାନର ମାଆ ହୋଇ ଦାରିଦ୍ର୍ୟ ଅନାଟନ ମଧ୍ୟରେ ଘୋର ଦୁଃଖ ଭୋଗ କରିଅଛି । କୁଳ କୁନ୍ତୀ କୋଉବେଳକେ ଛ'ଟି ସନ୍ତାନର ମାଆ ହୋଇଅଛି । ଆଖି ଫିଟି ନଥିବା ଏଇ ଛୁଆମାନଙ୍କ ଭବିଷ୍ୟତ ପ୍ରତି ଦୃଷ୍ଟିପାତ ନ କରି ମ୍ୟୁନିସିପାଲିଟିର ଚିର ବିଷ ଫୋଡ଼ ସେମାନଙ୍କ ମାଆକୁ ହତ୍ୟା କରିଛନ୍ତି । ଜୀବ ମଧ୍ୟରେ ଶିବାନ୍ୱେଷୀ କବିଙ୍କ ଅନ୍ତର ସମବେଦନାରେ ଉଛୁଳି ଉଠିଛି । ସେ ଛୁଆମାନଙ୍କୁ ଏକ ବହୁକୁଟୁମ୍ବୀ ପରିବାରର ଅନ୍ତର୍ଭୁକ୍ତ କରିଛନ୍ତି—

ସେ ଛଅଟିଙ୍କି ନିଅ କୋଳରେ ମିଶାଇ
ଅଛୁଁ ଏ ବଂଶେ ତୁମେ ଷୋଳ ଭଉଣୀ ଭାଇ !

କବି ନିଜକୁ ଜଣେ ଚିର ପଥିକ ବୋଲି କଳ୍ପନା କରିଛନ୍ତି । ପ୍ରଖର ଖରା ହେଉ ବା ଘୋର ବର୍ଷା ହେଉ, ଚାଲିବା ହିଁ ମାନବର ଚିର ପରମ୍ପରା—"ଚାଲିବା ଅଗମ୍ୟ ପଥ ତୁମରି ଐତିହ୍ୟ ଅବିଶ୍ରାନ୍ତ ।" ସେ ପଥ ଚାଲିବାକୁ ଭୟ କରିନାହାନ୍ତି । କାରଣ—"ଜୀବନ ଦେବତା ଯେ ଜୀବନ ପଥେ ବିଜେ !' 'ଗାଇବ ବନ୍ଦୀ ମୁଁ ଚରଣ ବନ୍ଦନା ।' ଚାଲିବା ଓ ଗାଇବା ତାଙ୍କର କାର୍ଯ୍ୟ । ସୁଖ ଓ ଦୁଃଖର ଗଙ୍ଗାଯମୁନା ତାଙ୍କ କବିତାରେ ଏକାଧାରରେ ହିଁ ମିଶିଯାଇଛି । କେତେବେଳେ ସେ ମହା ଦାର୍ଶନିକଙ୍କ ପରି ଗମ୍ଭୀର, ପ୍ରଶାନ୍ତ, କେତେବେଳେ ବିପ୍ଳବୀ ପରି ବିକ୍ଷୋଭିତ, ଅଶାନ୍ତ । କେତେବେଳେ ଏକାନ୍ତ ମାନବବାଦୀ, କେତେବେଳେ ବା ଈଶ୍ୱରପରାୟଣ । କେତେବେଳେ ଜୀବନରୁ ଦୂରେ ବହୁଦୂରେ—ସ୍ୱପନଲୋକେ

ଗୋପନପୁରେ, କେତେବେଳେ ବା ପୂର୍ଣ୍ଣଚନ୍ଦ୍ରବାଘା, ଜୀବନଚନ୍ଦ୍ରାରେ ଛଟଗୋଳୁକ । ଏହି ସବୁ ଭାବଧାରା କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ତାଙ୍କ କବିତା ସଞ୍ଚୟନ ଉତ୍ତରାୟଣରେ ପ୍ରସ୍ତୁତର ହୋଇଅଛି ।

'ଉତ୍ତରାୟଣ' ର 'ଅମୃତକଥା'ରେ କବି ଲେଖିଛନ୍ତି—

"ପଦ୍ମବଣରେ ପଶି ପଦ୍ମ ତୋଳିବା ସହଜ, ମାଡ ତଳେ ବସ୍ତିହୋଇ ପଡ଼ିଥିବା ଗଙ୍ଗଶିଉଳି ବା କାଠଚମ୍ପାକୁ ଗୋଟାଇ ଡାଲି ପୂର୍ଣ୍ଣ କରିବା ଯେ କି କଠିଣ କାମ, ସେ ଦୁଃଖ କେବଳ ମାଳୀକୁ ଜଣା । ତେବେ ଲେଖକ ଯେତେ ପାରିଛି, ଗୋଟାଇ 'ଉତ୍ତରାୟଣ'ରେ ସ୍ଥାନ ଦେଇଛି ।"

'ଉତ୍ତରାୟଣ' ତରୁଣ ବନ୍ଧୁମାନଙ୍କ ( ଆରମ୍ଭରେ ଥିଲେ ପାଞ୍ଚଜଣ, ପରେ ହେଲେ ସାତ ) ନାମରେ ଉତ୍ସର୍ଗ କରିହୋଇଛି । ବୈକୁଣ୍ଠ ଆର୍ଥିକ ସ୍ୱଚ୍ଛନ୍ଦ୍ୟ ମଧ୍ୟରେ ନ ଥିଲେ ବି ସାହିତ୍ୟ ଏକାଡେମୀରୁ ପ୍ରାପ୍ତ ପାଞ୍ଚ ହଜାର ଟଙ୍କା ବଡ଼ମ୍ବା କଲେଜରେ ଛାତ୍ରବୃତ୍ତିଭାବେ ଖଞ୍ଜି ଦେଇଥିଲେ ଓ ତାଙ୍କ ଗ୍ରନ୍ଥାବଳୀର ସ୍ୱତ୍ୱ 'ଉତ୍କଳସାହିତ୍ୟ ସମାଜ'କୁ ଦାନ କରିଥିଲେ । ଏହାର ଆୟ ଦୁଃସ୍ଥ ସାହିତ୍ୟିକମାନଙ୍କ ସେବାର୍ଥେ ବ୍ୟୟିତ ହେଉଅଛି ।

ବୈକୁଣ୍ଠଙ୍କ ଚରିତ୍ର ଓ ଚଳଣିରେ ଅନ୍ତଃସୂର୍ଯ୍ୟର ଉଜ୍ଜ୍ୱଳତା ପ୍ରକଟିତ । ସେଥିରେ ବୈରାଗ୍ୟ ଅଛି, ଉପେକ୍ଷା ନାହିଁ, ପ୍ରେମ ପ୍ରୀତିର ମାଧୁରୀ ଅଛି, ବିଚ୍ଛେଦର କାରୁଣ୍ୟ ନାହିଁ । ତୋଫାନର ଗତି ବେଗ ଓ ବିପ୍ଳବ ଅଛି, ଯଦି ବା ହୃଦୟର ପ୍ରଶାନ୍ତ ହୁଅନ୍ତି । ପକ୍ଷବାନ୍, ନିର୍ମମ ଅଥଚ ଜନତାର ମମତାକୁ ନିବିଡ଼ଭାବରେ ଆକର୍ଷଣ କରନ୍ତି ସେ । କବି କାହାରି ନୁହେଁ, ଅଥଚ ସମସ୍ତଙ୍କର—ସାର୍ବଜନୀନ ଆଦର୍ଶ ଓ ଆନନ୍ଦର ପ୍ରତୀକ । ତାଙ୍କ କବିତା ହିଁ ତାଙ୍କର ଶ୍ରେଷ୍ଠ ପରିଚୟପତ୍ର ।

ବୈକୁଣ୍ଠନାଥ ଗ୍ରନ୍ଥାବଳୀ, ଦ୍ୱିତୀୟ ଭାଗର ମୂର୍ତ୍ତିଙ୍କ ରୂପ ଦେଖିବା ଆଗରୁ ହଠାତ୍ ଦିନେ ଯବନିକାପାତ ହୋଇଗଲା । ୧୯୭୯, ଜାନୁୟାରୀ ୨୬ ତାରିଖ ସାଧାରଣତନ୍ତ୍ର ମହୋତ୍ସବରେ ସମଗ୍ର ଭାରତ ଉତ୍ଫୁଲ୍ଲ । ସନ୍ଧ୍ୟାବେଳେ କବି ରାଧାକାନ୍ତଙ୍କ ଦର୍ଶନ କରି ଫେରିଲେ । ଉପନିଷଦ ଚର୍ଚ୍ଚା ଚାଲିଥିଲା । ହଠାତ୍ ଅସୁସ୍ଥତା ଅନୁଭବ କଲେ । 'କୃଷ୍ଣ' 'କୃଷ୍ଣ' କହୁଁ କହୁଁ ତାଙ୍କ ପ୍ରାଣବାୟୁ ଉଡ଼ିଗଲା, ରାତି ପ୍ରାୟ ସାଢ଼େଏଗାରଟାବେଳେ ।

ଉତ୍କଳସାହିତ୍ୟ ସମାଜର ସଭାପତି ଉପେନ୍ଦ୍ରନାଥ ଷଡ଼ଙ୍ଗୀ, କବି ରାଧାମୋହନ ଗଡ଼ନାୟକ ଓ ମୁଁ ସମ୍ବାଦ ପାଇ ବଡ଼ମ୍ବା ଗଡ଼ରେ ପହଞ୍ଚିଲୁ ବେଳକୁ ସାଢ଼େବାର ।

କବିଙ୍କ ବଡ଼ମ୍ବା ଗଡ଼ ପରିକ୍ରମା କରାଇ ମାଳୀଭାଇମାନେ ବଡ଼ପାହାଡ଼ ତଳ ଉଦ୍ୟାନ ଶ୍ମଶାନକୁ ନେଇ ଯାଇଥିଲେ । ଏଠି ତାଙ୍କ ପିତା ନାରାୟଣ ସୁମନ୍ତଙ୍କ ଦାହ କରାହୋଇଥିଲା । ପୂର୍ବ ପ୍ରକାଶିତ କବିଙ୍କ ଇଚ୍ଛା ଅନୁଯାୟୀ ତାଙ୍କ ଦାହ ବ୍ୟବସ୍ଥା ସେହିଠାରେ କରାଯାଇଥିଲା; ବଡ଼ ବଡ଼ ଗଡ଼ ନଦାହୋଇ ଜୁଇ ସଜଡ଼ା ହେଉଥିଲା । ମୁଖମଣ୍ଡଳ ପ୍ରସନ୍ନ । ବୋଧହେଲା, ମୃତ୍ୟୁକୁ ବଡ଼ ଶାନ୍ତଭାବେ ଗ୍ରହଣ କରିଛନ୍ତି ସେ । ଟଳାଇଁ ଗ୍ଳାନି ନାହିଁ, କ୍ଷୋଭ ବା ଶଙ୍କା ନାହିଁ । ଫୁଲମାଳା ଦେଲୁ ।

ଫୁଲହାରକୁ ସେ ବିଷଧର ପରି ମନେ କରୁଥିଲେ । ଜୀବନ୍ତ ଥିଲେ ସେ ରୋଧ କରିଥାନ୍ତେ । ସମ୍ବର୍ଦ୍ଧନାକୁ ସେ ବର୍ଜନ କରିଥିଲେ । ପ୍ରଶଂସା ତାଙ୍କ ମନରେ ହତାଶ ସୃଷ୍ଟି କରୁଥିଲା ।

ସେତେବେଳକୁ ଭଟ୍ଟାରିକାର ମହାନଦୀ ଧାରରେ ସୂର୍ଯ୍ୟ ଅସ୍ତ ହେଉଥିଲେ: ପାହାଡ଼ୀ ଅରଣ୍ୟ ଉପରେ ଏକ ଫଗୁଲ ଆସ୍ତରଣ; ଆମ୍ର ମୁକୁଳର ସୁରଭିରେ ଚତୁର୍ଦ୍ଦିଗ ଆମୋଦିତ । ଶୀତଶେଷ ଗୋଧୂଳିର ରୋମାଣ୍ଟିକ୍ ପରିବେଶ ମଧ୍ୟରେ କବିଙ୍କ ଚିତାଗ୍ନି ଜଳି ଉଠିଲା ।

ଅଲଡୁଗରେ ସ୍ତ୍ରୀ ଆଦରମଣି କହୁଥିଲେ—ଏ ସମସ୍ତ ତୁଚ୍ଛ ମାୟା । ତା ନ ହେଲେ ସେ ଚାଲିଗଲା ପରେ ମୁଁ ବଞ୍ଚି ରହିଲି କିପରି ? କବି ରାଧାମୋହନ ଗଡ଼ନାୟକଙ୍କ କବିତା ଆଉଡ଼ାଇ ସେ କହୁଥିଲେ—ମୁଁ, ମୁଁ କେମିତି ମରନ୍ତି ?—

ଖର ବଇଶାଖ ତାପେ ଖିଟି ଖିଟି
ଝର ଝର ବରଷାରେ ଭିଜି ଭିଜି
× × ×
ସେ ଯେ ସବୁଦିନେ ଥିଲା ସେଇପରି !!

ମୃତ୍ୟୁ ପରେ ବୈକୁଣ୍ଠଙ୍କ ବିଷୟରେ କାଳିନ୍ଦୀଚରଣ କହିଥିଲେ—

“ତାଙ୍କ ନୀତି ଥିଲା ଆତ୍ମପ୍ରବଞ୍ଚନା । ସତ ସାଙ୍ଗରେ ମିଛର, ଆଲୁଅ ସାଙ୍ଗେ ଅନ୍ଧାରର ସାଲିସ୍ ଯେ ଅସମ୍ଭବ, ତାହା ଖାଲି ସେ କଥାରେ କହନ୍ତି ନାହିଁ, କାର୍ଯ୍ୟରେ କରନ୍ତି, କବିତାରେ ଫୁଟାନ୍ତି । ଜୀବନବ୍ୟାପୀ ଏହି ଆତ୍ମପ୍ରବଞ୍ଚନା ନୀତି ତାଙ୍କ ବନ୍ଧୁମେଳରେ ପୁଣି ପାରିବାରିକ କ୍ଷେତ୍ରରେ ମଧ୍ୟ ଅସୀମ ଦୁଃଖ ଡାକି ଆଣିଛି । ସେ ଦୁଃଖକୁ କିନ୍ତୁ ପ୍ରଧାନ ପାଇଛନ୍ତି ନିଜ ଲେଖାରେ, ଘୋର ଅନ୍ଧାର ଭିତରେ ସେ ଖୋଜିଛନ୍ତି ଆଲୋକର ଆଭାସ ।”

କାଳନ୍ଦୀଙ୍କୁ ଲିଖିତ ଏକ ପତ୍ରରେ ଅନ୍ନଦାଶଙ୍କର ଲେଖିଥିଲେ—"ବୈକୁଣ୍ଠ ଆଉ ନାହିଁ—ଖବରଟା ମୁଁ ପାଇଲି ଉତ୍କଳବ ମଧୁସୂଦନ ରାଓଙ୍କ ଜନ୍ମ ଶତବାର୍ଷିକୀ ସଭାରେ । ପଞ୍ଚସଖାଙ୍କର ଜଣେ ଚାଲିଗଲେ । 'ସବୁଜ କବିତା' ଓ 'ବାସନ୍ତୀ' ଉପନ୍ୟାସର ଫଳ ଆମ୍ଭେମାନେ ଆର୍ଥିକ ହିସାବରେ ପାଇବୁ ନାହିଁ । କିନ୍ତୁ ଆମ୍ଭମାନଙ୍କ ଲେଖା ସହିତ ବର୍ତ୍ତମାନ ଯୁଗର ତରୁଣତରୁଣୀମାନଙ୍କର ପରିଚୟ ଘଟିବ, ସେମାନେ ଆମ ଚିନ୍ତାଧାରା ଜାଣିବେ, ଆମ ଅନୁଭୂତିର ସରିକ ହେବେ । ଆମର ବର୍ତ୍ତମାନ ଯିବାଆସିବା ସମୟ । ଜଣେ ଚାଲିଗଲେଣି, ଯୋଉ ଚାରିଜଣ ରହିଲେ ସେମାନେ ନୋଟିସ୍ ପାଇଗଲେଣି ।"

ଶରତ ମୁଖାର୍ଜୀଙ୍କ ଭାଷାରେ "ବୈକୁଣ୍ଠନାଥ ସମାଜକୁ ଏକ ସୁନ୍ଦର ଜୀବନ ଦେଇଯାଇଛନ୍ତି । ସତାବନ ବର୍ଷ ଭିତରେ କେତେ ଅବସ୍ଥାରେ ମୁଁ ତାଙ୍କୁ ଦେଖିଛୁ, କିନ୍ତୁ ଦୁଃଖରେ ଅନୁଦ୍‌ବିଗ୍ନମନ, ସୁଖରେ ବିଗତସ୍ପୃହ । ଏମିତି ମଣିଷଟିଏ ମୁଁ ଆଉ ଦେଖିନାହିଁ ।"

ବୈକୁଣ୍ଠଙ୍କ ଚରିତ୍ର ଓ ବନ୍ଧୁବାତ୍ସଲ୍ୟ ଉପରେ ଆଲୋକପାତ କରିବାକୁ ଯାଇ ଶ୍ରୀ ହରିହର ମହାପାତ୍ର ଲେଖିଥିଲେ—"ଅପୂର୍ବ ସାହିତ୍ୟକୃତି ପରି ଅପୂର୍ବ ଥିଲା ତାଙ୍କ ଶିଶୁ ପ୍ରକୃତି । ଛଳ ଛଳନା ଶିଶୁର ଯେପରି ଅଜ୍ଞାତ, ବୈକୁଣ୍ଠଙ୍କର ସେହିପରି ପରିଚ୍ୟକ୍ତ । ପ୍ରାୟ ଷାଠିଏ ବର୍ଷର ଆମ ପାଞ୍ଚଜଣଙ୍କ ନିଗୂଢ଼ ସଖାତ୍ୱରେ ବୈକୁଣ୍ଠଙ୍କ ଅମଳିନ ସ୍ନେହ ସର୍ବଦା ଜୀବନ ସଞ୍ଚାର କରି ଆସିଅଛି । ଦୀର୍ଘଦିନର ଅହରହ ସମ୍ପର୍କ, ସବାକ୍ ଆଲୋଚନା, ଅଚ୍ଛିନ୍ନ ପତ୍ର ବିନିମୟରେ କେବେହେଲେ ସୀତସ୍ପୃହା ବା ମନାନ୍ତର ଘଟିନାହିଁ । ନିର୍ବିବାଦ ଆତ୍ମୀୟତାରେ ଆମ ସ୍ତ୍ରୀମାନେ ସର୍ବଦା ପରିପୂରକ ହୋଇଥିବା ଆମର ଅନ୍ୟ ଏକ ସୌଭାଗ୍ୟ ।"

ବୈକୁଣ୍ଠ ଶେଷ ନିଃଶ୍ୱାସ ଯିବା ପର୍ଯ୍ୟନ୍ତ ଲେଖୁଥିଲେ, ମୃତ୍ୟୁ ଦିନ ବି କବିତା ଲେଖିଥିଲେ । 'ନେତା ସାବଧାନ' ତାଙ୍କର ଶେଷ କବିତା । ତାର ପ୍ରଥମ ପଂକ୍ତି--

ସ୍ୱାର୍ଥ ସାଧନେ ଜନତାକୁ ଦେଉ ଖେଦ
ଆପଣା ଗଳାକୁ ନିଜ କରେ ଯାଉ ଛେଦ
ମୂର୍ଖ ଜନତାର ଜଗାଇବୁ ଯେଉଁ କ୍ରୋଧ
ଲୋକେ ଜଡ଼, ମୂକ ନେବ ଦିନେ ପ୍ରତିଶୋଧ ।

———●———